କିପରି ପିଲାଙ୍କୁ ଗଢ଼ିବା
Kipari Pilanku Gaḍhiba

ଲେଖକ : ନିତ୍ୟାନନ୍ଦ ସ୍ୱାଇଁ
Writer : Nityananda Swain



ପ୍ରକାଶକ : ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ
Publisher : Sahadev Pradhan
*Friends' Publishers,* Binodbehari,
Cuttack-753 002, Orissa (India)

ପ୍ରଥମ ସଂସ୍କରଣ : ୨୦୦୭
First Edition : 2007

ପ୍ରଚ୍ଛଦ : ଅସିତ୍ ମୁଖାର୍ଜୀ
Artist : Asit Mukherjee

ଅକ୍ଷରସଜ୍ଜା : ୟୁନିଟେକ, କଟକ
Typeset : Unitech, Cuttack

ମୁଦ୍ରଣ : କାଳିଆ ପ୍ରିଣ୍ଟର୍ସ, କଟକ
Printer : Kalia Printers, Cuttack

ISBN 81-7401-642-2

Price : **Rs. 150**



ଶିଶୁ ସାହିତ୍ୟର ଅନ୍ୟତମ କୃତୀ କାରିଗର
ଅଗ୍ରଜପ୍ରତିମ ପ୍ରଫେସର୍ ମହେଶ୍ୱର ମହାନ୍ତିଙ୍କୁ-

# ସୂଚୀ

# ଶିଶୁ-ଯାତନା

ସେଦିନ କର୍ମକ୍ଷେତ୍ରକୁ ଯିବାବେଳେ ଦୃଷ୍ଟିପଡ଼ିଥିଲା ମୋ' ସାମନାପଟୁ ଆସୁଥିବା ଏକ ରିକ୍ସା ଉପରେ । କୁନି ପିଲାଟିଏ ଥିଲା ରିକ୍ସାର ଆରୋହୀ । ଦେହରେ ତା'ର ସ୍କୁଲ ପୋଷାକ । ରିକ୍ସାର ଧକଡ଼ ଚକଡ଼ରେ ଯେକୌଣସି ମୁହୂର୍ତ୍ତରେ ଆରୋହୀଜଣକ ଓଲଟି ପଡ଼ିବାର ସମ୍ଭାବନା । ତେଣୁ ଗୋଟିଏ ନାଲି ଗାମୁଛା ତା' ଅଣ୍ଟାରେ ଗୁଡ଼େଇ ରିକ୍ସା ବାଡ଼ାରେ ବାନ୍ଧି ଦେଇଥିଲା ରିକ୍ସାବାଲା । ବାପମା'ଙ୍କ ଠାରୁ ବିଦାୟ ନେଲାପରେ ଆରୋହୀର ଦାୟିତ୍ୱ ଓ ନିରାପତ୍ତା ରିକ୍ସାବାଲା ଉପରେ ନ୍ୟସ୍ତ । ସେହି ଗାମୁଛା ପାଶରେ ମୁଁ ଦର୍ଶନ କରୁଥିଲି ମମତାର ପାଶ । ବାପମା'ଙ୍କର ମମତା ନୁହେଁ, ରିକ୍ସାବାଲାର ମମତା । ପୁଣି ଭାବୁଥିଲି, ''ଆରୋହୀ ଜଣକ ଏକ ବସ୍ତୁ ନା ଏକ ବ୍ୟକ୍ତି ?''

ଆଉ ଦିନେ ଦେଖିବାକୁ ପାଇଥିଲି ପ୍ରଖ୍ୟାତ ବ୍ୟଙ୍ଗ ଚିତ୍ରଶିଳ୍ପୀ ଶ୍ରୀଯୁକ୍ତ ଆର୍. କେ. ଲକ୍ଷ୍ମଣଙ୍କର ଏକ ବ୍ୟଙ୍ଗଚିତ୍ର । ଛବିରେ ଅଙ୍କିତ ହୋଇଥିଲା ଦୁଇଟି ମାଆ ଓ ତିନିଟି ପିଲା । ଗୋଟିଏ ପିଲାର ପିଠିରେ ବହି ବସ୍ତାନିର ବୋଝ । ବସ୍ତାନିର ଓଜନ ସହି ନପାରି ସେ ନଇଁ ପଡ଼ିଥାଏ । ତା' ପାଖରେ ଠିଆ ହୋଇଥାଏ ତା'ର ମାଆ । ଅନ୍ୟ ମାଆ ଜଣକ ପାଖରେ ଦୁଇଟି ପିଲା । ଗୋଟିଏ ପିଲା ପିନ୍ଧିଥାଏ ସ୍କୁଲ ପୋଷାକ । ଅନ୍ୟ ପିଲାଟିର ଦେହ ଫୁଙ୍ଗୁଳା । ଫୁଙ୍ଗୁଳା ପିଲାଟିର ପିଠିରେ ଲଦା ହୋଇଥାଏ ବହି ବସ୍ତାନି । ଦ୍ୱିତୀୟ ମାଆଟି ପ୍ରଥମ ମାଆକୁ କହୁଥାଏ, ''ବୁଝିଲନା, ପିଲାଙ୍କ ପିଠିରେ ବହିଖାତା ଲଦି ସ୍କୁଲ୍‌କୁ ପଠାଇବାର ନିଷ୍ଠୁରତା ମୁଁ ସହିପାରେନି । ସେଇଥିପାଇଁ ମୋ' ପୁଅର ବହି ବସ୍ତାନି ଆଉ ପାଣି ବୋତଲ ବୋହିବା ନିମନ୍ତେ ମୁଁ ଏହି ପିଲାଟିକୁ ଠିକାରେ 'ରଖିଛି ।''

ଏହି ଦୁଇଟି ଘଟଣା ମୋ' ମନରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି କରିଥିଲା ତା'ର ପ୍ରତିଫଳନ ହେଉଛି ନିମ୍ନ ପ୍ରବନ୍ଧଟି ।

ନିଘୋଡ଼ ନିଦରେ ଶୋଇଯାଇଥିଲା ଟୁଟୁଲ୍ । ତା' ଓଠରେ ବୋଳି ହୋଇଯାଇଥିଲା ଚେନାଏ ହସ । ସେ ହୁଏତ ସପନ ଦେଖୁଥିଲା ପରୀ ରାଇଜର । କିନ୍ତୁ ତାକୁ ସ୍ୱପ୍ନ ଦେଖିବାକୁ

ଫୁରୁସତ ଦେବ କିଏ ? ମା' ଆସି ତା' ମୁଣ୍ଡକୁ ଆଉଁସି ଦେଲେ । ତା' ଦୁଇଗାଲରେ ସେଦିନ ପାଇଁ ପୋତିଦେଲେ ଦୁଇଟି ଚୁମା । ଡାକିଲେ, "ଏ' ଟୁଟୁଲ୍ । ଟୁଟୁଲ୍ । ଉଠ୍ ବାପା । ବେଳ ହେଲାଣି ପରା । ସ୍କୁଲ୍‌କୁ ଯିବାକୁ ଡେରି ହୋଇଯିବ ଯେ !''

ପରୀରାଇଜର ସୁଖସ୍ୱପ୍ନ ଭାଙ୍ଗିଗଲା ଟୁଟୁଲ୍‌ର । ନା, ଆଜି ତା'ର ବିଛଣା ଛାଡ଼ିବାକୁ ମନ ହେଉନି । ମାଆକୁ କୁଣ୍ଢେଇ ଧରି ପୁଣି ଶୋଇଯିବାକୁ ମନ ହେଉଛି । କି ଜିଦିଆ ଏ' ମାଆଟି ତା'ର । ମା'ର ଯେଉଁ ସମୟରେ ଯାହା ଇଚ୍ଛା ହେବ, ସେହି ସମୟରେ ଟୁଟୁଲ୍‌ର ଇଚ୍ଛା ବି କ'ଣ ଠିକ୍ ସେଇଆ ହେବାକୁ ବାଧ ? ମାଆ ବରାଦରେ ସେ ଝାଡ଼ା ପରିସ୍ରା ଯିବ, ମାଆ ବରାଦରେ ଦଶମିନିଟ୍ ଭିତରେ ସକାଳ ଖିଆ ସାରିଦେବ ? ବଡ଼ ପାଟିରେ କାନ୍ଦିବାକୁ ଆରମ୍ଭ କରିଦେଲା ସେ । ଭାରି ଅଝଟ ହେଲା । ଯେତେ ବୁଝେଇଲେ ବି ବୁଝିଲାନି ଟୁଟୁଲ୍ ।

କାହିଁକି ବୁଝିବ ଯେ ! ଜମା ସାଢ଼େ ଦୁଇବରଷ ବୟସ ତା'କୁ, ସେ ଅବୁଝା ହେବାଟା କ'ଣ ଏକ ଅସ୍ୱାଭାବିକତା ? ଶିଶୁମାନେ ଏ' ବୟସରେ ଅବୁଝା ନା ତାଙ୍କ ବୁଝା-ଅବୁଝାର ସଂଜ୍ଞା ଆମେ ବଡ଼ମାନେ ବୁଝିପାରିବାକୁ ଅସମର୍ଥ ? ଶିଶୁମାନଙ୍କ ରାଇଜରେ ବଡ଼ମାନଙ୍କ ଢଙ୍ଗରେ ଶୃଙ୍ଖଳା ଆଉ ନିୟମ କାନୁନ ଜାରି କରିବାକୁ ବଡ଼ମାନଙ୍କୁ ଅଧିକାର ଦେଲା କିଏ ? ଭାବ ପ୍ରକାଶର ଅକ୍ଷମତା ଅଛି ବୋଲି ବାପମା'ଙ୍କର ବିକୃତ ଅନୁଶାସନକୁ ଉପେକ୍ଷା କରିବାର କ'ଣ ସେମାନଙ୍କର ସ୍ୱାଧୀନତା ନାହିଁ ?

''ନା, ସ୍ୱାଧୀନତା ନାହିଁ'' – ଏଇଆ କହୁଛନ୍ତି ବଡ଼ମାନେ । ପିଲାମାନେ ଚଞ୍ଚଳ ଚଞ୍ଚଳ ପାଠଗୁଡ଼ାକ ଅକ୍ତିଆର କରି ପକେଇଲେ ବଡ଼ ମଣିଷ ହେବାଟା କୁଆଡ଼େ ଥୁଆ ।

ହଁ, ଆମ ପିଲାଏ ପାଠ ପଢ଼ିବେ । ନିଶ୍ଚୟ ପଢ଼ିବେ । କିନ୍ତୁ କେଉଁ ବୟସରୁ ଆରମ୍ଭ କରିବେ ପାଠପଢ଼ା ? ଆମ ପିଲାବେଳେ ଛଅସାତ ବର୍ଷ ନ ହେବାଯାଏ ଆମେ ସ୍କୁଲ୍‌ର ପିଣ୍ଡା ମାଡ଼ୁନଥିଲୁ । ସ୍କୁଲ୍‌କୁ ଯିବା ପୂର୍ବରୁ ଗଣି ଶିଖିଥିଲୁ ୧, ୨, ୩, ୪ ....... ଆଦି କେତୋଟି ସଂଖ୍ୟା ଓ ସିଲଟରେ ମଡ଼େଇଥିଲୁ 'ଅ', 'ଆ', 'ଇ', 'ଈ' ..... ଇତ୍ୟାଦି ଅକ୍ଷର କେତୋଟି । କହିବାକୁ ଗଲେ ଏହି ଶିକ୍ଷା ଥିଲା ଏକ ସଉକ । ବାସ୍ ସେତିକି । ସ୍କୁଲ୍‌ରେ ନାଁ ଲେଖେଇବା ଦିନ ଆମର କି ଆମ ବାପମାଆଙ୍କର ଯୋଗ୍ୟତା ମପା ହେଉନଥିଲା ।

ଏବେ କିନ୍ତୁ ପ୍ରତ୍ୟେକ ସହର ଓ ସହରତଳି ଅଞ୍ଚଳରେ ଚାଲିଛି ଶିଶୁ-ଯାତନା ! ଶିଶୁ-ଯାତନା ପ୍ରସରିବାରେ ଲାଗିଲାଣି ମଫସଲ ଅଞ୍ଚଳକୁ । ଶିକ୍ଷା ନାଁରେ ଆମ ଶିଶୁମାନେ

ଏବେ ଶିକ୍ଷା-ଶ୍ରମିକ ପାଲଟିଗଲେଣି । ଶ୍ରମିକର ଗୋଟାଏ ବିଶ୍ରାମ କଅଣ ? ସେମାନଙ୍କ ଆଖିରୁ ଆମେ ଛଡ଼େଇ ନେଲୁଣି ନିଦ । ସେମାନଙ୍କ ସଂସାରରୁ ଧୂଳିଖେଳକୁ ତଡ଼ି ଦେଇସାରିଲୁଣି କେଉଁକାଳୁ । ସଳଖ ଭାବରେ ଚାଲି ନଶିଖୁଣୁ ଜୋତାମୋଜା ପିନ୍ଧି ସେମାନେ ସ୍କୁଲ୍‌ବସ୍ କି ବାକ୍‌ସ ଭଳି ତିଆରି ହୋଇଥିବା ରିକ୍‌ସାରେ ଚଢୁଛନ୍ତି, ଓହ୍ଲାଉଛନ୍ତି । ପିଠିରେ ସେମାନଙ୍କର ଲଦା ହୋଇଛି ବହିଖାତାର ବୋଜ୍‌ଟା । ବୋଜ୍‌ଟା ଭିତରେ ଜଳଖିଆ ଡବା । ହାତରେ ଓହଳିଚି ପାଣି ବୋତଲ । ଆମରି ଏହି ଶିକ୍ଷା-ଶ୍ରମିକମାନେ ଦିନମାନ ଭିତରେ ଅଧାଦିନ ଖଟନ୍ତି ସ୍କୁଲ୍‌ରେ । ଶ୍ରମିକ ମଜୁରି ପାଇଁ ଖଟେ । ଆମ ପିଲାଏ ମଜୁରି ପଇଠ କରି ଖଟନ୍ତି ।

ପିଲାଏ କେତେବେଳେ ପଢ଼ିବେ, କେତେବେଳେ ଖେଳିବେ, କେତେବେଳେ ଛବି ଆଙ୍କିବେ – ଏହି ସବୁର ସୂଚନା ଥାଏ ସ୍କୁଲ୍ ରୁଟିନ୍‌ରେ । ହେଲେ ସପ୍ତାହର କେଉଁଦିନ କଅଣ କଅଣ ଜଳଖିଆ ନେଇ ସେମାନେ ସ୍କୁଲ୍‌କୁ ଯିବେ, ତା' ପାଇଁ ବି କ'ଣ ରୁଟିନ୍ ଦରକାର ? ଏବେ କିନ୍ତୁ ସେଇଆ ହେଲାଣି । ପ୍ରତି ବାରରେ ଟିଫିନ୍ ଅଲଗା ସିନା, କିନ୍ତୁ ସେହିଦିନ ସମସ୍ତଙ୍କ ଟିଫିନ୍ ଡବାରେ ସମାନ ଟିଫିନ୍ । ଘଣ୍ଟା ବାଜିଲେ ସବୁପିଲା ସ୍କୁଲ୍ ଦ୍ୱାରା ନିର୍ଦ୍ଧାରିତ ଟିଫିନ୍ ଖାଇବାକୁ ବାଧ । ସେଠାରେ ଭୋକ ଟିଫିନ୍ ପାଖକୁ ବାଟ କଢ଼େଇ ନିଏନି, ବାଟ କଢ଼େଇ ନିଏ ପିଟା ଘଣ୍ଟା । ଝାଡ଼ା ପରିସ୍ରା ବି ପିଲାଙ୍କ ବୋଲରେ ଉଠ୍‌ବସ୍ ହୁଅନ୍ତି । କିନ୍ତୁ ଅଢ଼େଇ ବର୍ଷ ବୟସରେ ଝାଡ଼ା ପରିସ୍ରା ସେମାନଙ୍କର ବୋଲ ମାନିଲେ ତ ! ବୋଲ ନ ମାନିଲେ ଛାଡୁଛି ଅବା କିଏ ? ବେଳହୁଁ ସ୍କୁଲ୍‌କୁ ନଗଲେ ବଡ଼ ମଣିଷ ହେବାଟା ବିଳମ୍ବିତ ହୋଇଯିବନି ?

ଟୁଟୁଲ୍‌କୁ ସିନା ଏବେ ଅଢ଼େଇ ବର୍ଷ । ତା'ର ସାନଭଉଣୀକୁ ଅଢ଼େଇ ବର୍ଷ ଯାଏ ବି ଅପେକ୍ଷା କରିବାକୁ ପଡ଼ିବନି । ବର୍ଷେ ପୂରିବା ମାତ୍ରେ ସେ ହୁଏତ ସ୍କୁଲ୍‌କୁ ଯାଇ ସାରିଥିବ । ଆମେ ସିନା ସ୍କୁଲ୍‌ରେ ପାଠ ଶିଖୁଥିଲେ । ସେ କିନ୍ତୁ ସ୍କୁଲ୍‌ରେ ଚାଲି ଶିଖିବ । କଥା କହି ଶିଖିବ । ଝାଡ଼ା ପରିସ୍ରା ଅଟକେଇ ଶିଖିବ । ଆଗରୁ ଆଗରୁ ପଢ଼ିବା ଆରମ୍ଭ ନକଲେ ସେ ପଛରେ ପଡ଼ିଯିବନି ?

କିନ୍ତୁ ଗୋଟିଏ କଥା ବୁଝିପାରୁନି ମୁଁ । ଆମ ପିଲା ଚଞ୍ଚଳ ଚଞ୍ଚଳ ପାଠ ପଢ଼ି ପକାଉ ବୋଲି ଆମେ ଚାହୁଁଛେ ନା ଅନ୍ତତଃ କିଛି ଘଣ୍ଟା ପାଇଁ ତା' ଅଳି ଅର୍ଦ୍ଦଳିରୁ ମୁକ୍ତ ରହିବାକୁ ଆମେ ଚାହୁଁଛେ ? ତା'ର ଭବିଷ୍ୟତ ଆମ ମନରେ ଏକ ଅଜଣା ଆତଙ୍କ ସୃଷ୍ଟି କରୁଛି ନା ତା' ଜଞ୍ଜାଳ ଆମ ପାଇଁ କାଳ ହେଉଛି ?

ଏବେ ତ ଶିଶୁମାନଙ୍କ ସ୍କୁଲ୍ ପାଲଟିଗଲେଣି ଏକ ଏକ ଅର୍ଥକରୀ ସଂସ୍ଥା । ନିଜ ନିଜ ସ୍କୁଲ୍‌ର ପ୍ରଶସ୍ତି ଗାନକରିବା ଲକ୍ଷ୍ୟରେ ପ୍ରକାଶ ପାଉଛି ଆକର୍ଷଣୀୟ ବିଜ୍ଞାପନ । ବିଜ୍ଞାପନ ବାପମାଙ୍କୁ ପ୍ରଲୁବ୍‌ଧ କରୁଛି ।

ପିତାମାତା କିଛି ଘଣ୍ଟା ପାଇଁ ହେଲେ ବି ପରିବାରରୁ ପିଲାମାନଙ୍କୁ ଅନ୍ତର କରିବାକୁ ବ୍ୟଗ୍ର । ନିଜର ଦାୟିତ୍ୱ ନିଜ କାନ୍ଧରୁ ଖସେଇ ଶିକ୍ଷକମାନଙ୍କ କାନ୍ଧରେ ଲଦି ଦେବାକୁ ତତ୍ପର । କିଛି ସ୍ୱାର୍ଥ ନ ଥାଇ ଶିକ୍ଷକମାନେ ପିଲାମାନଙ୍କର ଅଳି ଅର୍ଦଳି ସମ୍ଭାଳିବେ କାହିଁକି ? ତେଣୁ ଅର୍ଥ ବିନିମୟରେ ପିଲା ଜଗିବା ପାଇଁ ବ୍ୟଗ୍ର ସେମାନେ । ଏହିପରି ଭାବରେ କ୍ରିୟାଶୀଳ ହୋଇଚାଲିଛି ଏକ ଦୁଷ୍ଟଚକ୍ର । ଏହି ଦୁଷ୍ଟଚକ୍ରରୁ ମୁନାଫା ଉଠାଉଛି ସ୍କୁଲ୍, କ୍ଷତି ସହୁଛି ପିଲା ।

ସ୍କୁଲ୍‌ଟିଏ ଖୋଲିବାରେ ବି ବିଶେଷ କଷ୍ଟ ଅବା କଅଣ ? ଦରକାର ଗୋଟିଏ ଦୁଇଟି କୋଠରି । ଜଣେ ଦୁଇଜଣ ଶିକ୍ଷକ । ଜଣେ ପିଲା ଜଗୁଆଳ । ଖେଳିବାକୁ ଜାଗା ନଥିଲେ ଚଳିବ । ବେଶୀ ପିଲାଙ୍କ ପାଇଁ ଛୋଟ କୋଠରିଟିଏ ହେଲେ ବି ଚିନ୍ତା ନାହିଁ ।

ହେ ବିଜ୍ଞ ବାପାମାଆମାନେ, ଆପଣଙ୍କ ସନ୍ତାନଠାରେ ସୃଜନଶୀଳତାର ବିକାଶ ପାଇଁ କ'ଣ ଏଭଳି ପରିବେଶ ଅନୁକୂଳ ? ଏହି ବୟସ ଅନୁକୂଳ ? ଏହିଭଳି ଔପଚାରିକ ଶିକ୍ଷା ଅନୁକୂଳ ? ଆପଣମାନେ କଅଣ ନିଜର କଅଁଳା କୁନିକୁନି ନୟନ ପିତୁଳାଗୁଡ଼ିକୁ କାଖେଇ, କୋଳେଇ ସେମାନଙ୍କର ବିଦ୍ୟାରମ୍ଭ କରିପାରିବେନି ? ଘରର ସ୍ୱର୍ଗୀୟ ପରିବେଶକୁ ଶିକ୍ଷା ମନ୍ଦିରରେ ରୂପାନ୍ତରିତ କରିପାରିବେନି ? ସେମାନଙ୍କୁ ମୂଲ୍ୟବୋଧ ଓ ନୈତିକତାର ମନ୍ତ୍ର ଶିଖେଇପାରିବେନି ? A, B, C, D .......... 'ଅ', 'ଆ', 'କ', 'ଖ' ......., 1, 2, 3, 4....... ଏବଂ ୧, ୨, ୩, ୪ ........ ଜାଣିବାରେ ବ୍ୟୁତ୍ପତ୍ତି ହାସଲ କରି ପକେଇବା କ'ଣ ଶିକ୍ଷାର ଏକମାତ୍ର ସାଫଲ୍ୟ । ଆପଣ ନିଜର ସନ୍ତାନକୁ 'ମଣିଷ' ଟିଏ କରି ଗଢ଼ିବାକୁ ଚାହାନ୍ତି ନା ତା'କୁ 'ଅଶିକ୍ଷିତ ସାକ୍ଷର' କରିବାକୁ ଚାହାଁନ୍ତି ?

ପଢ଼ିଲେଖି ଶିଖିବାର ପରିସରଠାରୁ ଅନେକ ଗୁଣ ବିସ୍ତୃତ ଶିକ୍ଷାର ପରିସର । 'ଅନନ୍ତ' ବୋଲି କହିଲେ ବି ଅତ୍ୟୁକ୍ତି ହେବନାହିଁ । ମୂଲ୍ୟବୋଧ ଓ ନୈତିକତା ଶିକ୍ଷା ଦେବା, ସ୍ନେହଶ୍ରଦ୍ଧା ଦେବା ସମୟରେ ସ୍ନେହଶ୍ରଦ୍ଧା ଦେବା, ତା' ସହ ଅନ୍ତରଙ୍ଗ ହେବା ସମୟରେ ଅନ୍ତରଙ୍ଗ ହେବା ପାଇଁ ଯଦି ଆପଣଙ୍କଠାରେ ନିଷ୍ଠା ନାହିଁ, ସମୟ ନାହିଁ, ତେବେ ଶିକ୍ଷକମାନେ ସେହି ଦାୟିତ୍ୱ ସମ୍ଭାଳିବା ପାଇଁ ଅଙ୍ଗୀକାରବଦ୍ଧ ହେବେ କାହିଁକି ? ଅର୍ଥ ବିନିମୟରେ ଆପଣ କ୍ରୟ କରିବାକୁ ଚାହୁଁଛନ୍ତି ସନ୍ତାନର ମଣିଷପଣିଆଁ ? ମଣିଷପଣିଆଁ କ'ଣ ଏକ ପଣ୍ୟ ଯେ ତାକୁ ବରାଦ ମୁତାବକ ଖରିଦ କରାଯାଇ ପାରିବ ?

ଆପଣଙ୍କ ପିଲା ଆପଣଙ୍କର ଏକ ମହାର୍ଘ ସଂପଦ । ଦେଶ ତଥା ସମାଜର ସେ ଏକ ଦୁର୍ମୂଲ୍ୟ ପୁଞ୍ଜି । ସମ୍ଭାବନାର ଏକ ଅସରନ୍ତି ଉତ୍ସ ସେ । ତେଣୁ ତା'ର ମେଧା, ତା'ର ସୃଜନଶୀଳତା ଆଦିର ଅକାଳ ମୃତ୍ୟୁ ଘଟାଇବାର ନାୟକ ସାଜିବା ଆପଣଙ୍କ ପକ୍ଷେ ଶୋଭନୀୟ ନୁହେଁ କି ନିରାପଦ ବି ନୁହେଁ ।

ମନ୍ଦିରର ସମସ୍ତ ସର୍ତ୍ତ ପୂରଣ କରୁଥିବା ଶିକ୍ଷାଳୟ ଲୋପ ପାଇଯାଇନାହିଁ । ଉତ୍ସର୍ଗୀକୃତ ଶିକ୍ଷକ-କୁଳ ବିଲୁପ୍ତ ହୋଇନାହିଁ । କିନ୍ତୁ ଆପଣ ଯେଉଁ ବିଦ୍ୟାଳୟକୁ ଆପଣଙ୍କ ପିଲାକୁ ପଠାଉଛନ୍ତି, ସେଠାରେ ତାହା ଉପଲବ୍ଧ ତ !

କୁହାଯାଏ ଯେ ଭ୍ରୁଣାବସ୍ଥାରୁ ଆରମ୍ଭ ହୁଏ ଶିଶୁର ଶିକ୍ଷା । ତେବେ ପ୍ରଥମ ପାଞ୍ଚବର୍ଷ ତା'ର ଶାରୀରିକ ଓ ମାନସିକ ବିକାଶ ପାଇଁ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ହିଁ ତା'ର ବ୍ୟକ୍ତିତ୍ୱର ବିକାଶ ପାଇଁ ମୂଳଦୁଆ ପଡ଼େ । ଏହି ବୟସରେ ସେ ପ୍ରକୃତ ଦିଗ୍‌ଦର୍ଶନ ପାଇଥିଲେ ସାରା ଜୀବନ ସେ ଏହାର ସୁଫଳ ଉପଭୋଗ କରେ । କିନ୍ତୁ ତା'ର ବ୍ୟକ୍ତିତ୍ୱ ଗଢ଼ିବାର ଦାୟିତ୍ୱ ନିଜ ମୁଣ୍ଡରୁ ଓହ୍ଲେଇ ଦେଇ ଶିକ୍ଷକମାନଙ୍କ ମୁଣ୍ଡରେ ଲଦି ଦେବାର କ୍ଷତି ଅପୂରଣୀୟ । ବରଂ ଏହା ଏକ ଯୌଥ ଦାୟିତ୍ୱ, ଏକକ ଦାୟିତ୍ୱ ନୁହେଁ ।

କପଟାଚାରୀ ନହୋଇ ସତ୍ୟ ସ୍ୱୀକାର କଲେ ଆମେ ସମସ୍ତେ ଏକମତ ହେବା ଯେ ସ୍ନେହ, ଶ୍ରଦ୍ଧା ଏବଂ ପ୍ରେମର ମନ୍ଦାକିନୀ ଆମର ଗୃହ ପରିବେଶ ଶିଶୁର ଶାରୀରିକ, ମାନସିକ, ଆବେଗପ୍ରବଣତା ଇତ୍ୟାଦିର ବିକାଶ ପାଇଁ ସର୍ବାଧିକ ଅନୁକୂଳ । ବିଦ୍ୟାଳୟ ପରିବେଶ ଗୃହ ପରିବେଶର ବିକଳ୍ପ ନୁହେଁ କି ଶିକ୍ଷକ-ଶିକ୍ଷିକା ପିତାମାତାଙ୍କର ଭୂମିକା ନେଇ ପାରିବେନି । ତେଣୁ ଘର ହେଉ ସନ୍ତାନର ପ୍ରଥମ ବିଦ୍ୟାଳୟ । ବାପମା' ହୁଅନ୍ତୁ ତା'ର ପ୍ରଥମ ଶିକ୍ଷକ-ଶିକ୍ଷିକା ।

କଅଁଳା ପିଲାର କଅଁଳାମନ ଅନୁଶାସନ ସହିପାରେନି । ଏ'ସବୁ ବି ଲୋଡ଼ା ନାହିଁ ତା'ର । ତା'ର ଭବିଷ୍ୟତ ବିଷୟରେ ଆତଙ୍କିତ ହୋଇପଡ଼ିବାରେ ବି ଆଦୌ ଯଥାର୍ଥତା ନାହିଁ । ତା'ର ପାଠପଢ଼ା ବର୍ଷେ ଛଅମାସ ଗଡ଼ିଗଲେ କୌଣସି ଅପୂରଣୀୟ କ୍ଷତି ହେବନାହିଁ । ଡେରିରେ ପାଠ ଆରମ୍ଭ କରି ମଧ୍ୟ ସେ ବିଜ୍ଞ ହୋଇପାରିବ, ଜ୍ଞାନୀ ହୋଇପାରିବ, ତଥ୍ୟାଶ୍ରୟୀ ହୋଇପାରିବ, ମଣିଷ ଭଳି ମଣିଷଟିଏ ହୋଇପାରିବ ।

ତେଣୁ ତା'ଠାରୁ ଶୈଶବର ଚପଳତା ଅପହରଣ କରିନେବାର ଅପଚେଷ୍ଟା କରି ତା'ର ଉଜ୍ଜ୍ୱଳ ଭବିଷ୍ୟତକୁ ଧୂସର କରନ୍ତୁ ନାହିଁ । ପାସୋରି ଯାଆନ୍ତୁନି ଯେ ଆପଣଙ୍କ ସନ୍ତାନର ଭବିଷ୍ୟତ ସହ ଆପଣଙ୍କ ଭବିଷ୍ୟତ ଓତପ୍ରୋତ ଭାବରେ ଜଡ଼ିତ ।



# ଆତ୍ମବିଶ୍ୱାସ ଲୋଡ଼ା

ଶିଶୁଟି ତା' ମାଆକୁ ପଚାରିଲା, "ମା', ମୁଁ କେଉଁଠୁ ଆସିଲି ? ମୋତେ ତୁମେ କେଉଁଠୁ ପାଇଲ ?"

ତା'କୁ ଛାତିରେ ଚାପିଧରି ଅଧାକାନ୍ଦ ଆଉ ଅଧାହସ ଭିତରେ ମାଆ ଉତ୍ତର ଦେଲେ, ''ଶୁନୁରେ, ତୁ' ତ ମୋ' ହୃଦୟ କନ୍ଦିରେ କାମନା ରୂପେ ଲୁଚି ରହିଥିଲୁ । ମୋ' ପିଲାଦିନର ଖେଳନାଗୁଡ଼ିକ ଭିତରେ ବି ତୋତେ ଦେଖୁଥିଲି ମୁଁ । ପିଲାବେଳେ ସବୁଦିନେ ସକାଳେ ମୁଁ ଯେତେବେଳେ ମାଟିର ଠାକୁର ଗଢୁଥିଲି, ସେତେବେଳେ ବି ମୁଁ ତତେ ଗଢୁଥିଲି ଆଉ ଭାଙ୍ଗୁଥିଲି ।''

–ରବୀନ୍ଦ୍ରନାଥ ଠାକୁର

ପିଲା କରିବା କି ପିଲା ନକରିବା ହେଉଛି ସମ୍ପୂର୍ଣ୍ଣ ଭାବେ ଏକ ବ୍ୟକ୍ତିଗତ ବ୍ୟାପାର । ତେଣୁ, ଏ' କ୍ଷେତ୍ରରେ ମତପାର୍ଥକ୍ୟ ରହିବା ସ୍ୱାଭାବିକ । ଏ' ବିଷୟରେ ଜଣେ ମାଆ ମତ ଦେଇଛନ୍ତି, ''ମୁଁ ଜନନୀ ହେବାକୁ ଚାହିଁଲି । କାରଣ, ସନ୍ତାନର ଆକର୍ଷଣ ହିଁ ମୋତେ ଘରବାହୁଡ଼ା କରିବା ପାଇଁ ଦାୟୀ । ପିଲାଟିଏ ନଥିଲେ କିଏ କାହିଁକି ଅବା ମୋ' ଫେରିବା ବାଟକୁ ଚାହିଁ ରହିବ ? ସନ୍ତାନ ନଥିଲେ ଜୀବନଟା ବଡ଼ ଏକୁଟିଆ ଏକୁଟିଆ ଲାଗେ । ଅନ୍ୟମାନେ ତୁମ ପାଇଁ ଅବା ସମୟ ଦେବେ କାହିଁକି ଯେ ? ତେଣୁ, ମୋ' ପାଇଁ ସମୟ ଦିଏ ମୋ' ସନ୍ତାନ । ସେ ମୋତେ ସ୍ନେହ କରେ, ଭଲପାଏ । ସେ ମୋତେ ଦେଖି ହସିଲେ, ମୋ' ମୁହଁରେ ଫୁଟିଉଠେ ହସ । ମୁଁ ବଞ୍ଚିଛି ବୋଲି ସେ ହିଁ ଜଣେଇଦିଏ ମୋତେ । ପିଲାଟିଏ ଥିବାରୁ ସିନା ମୁଁ ଜହ୍ନମାମୁ ଆଡ଼େ ଚାହୁଁଛି, ଆକାଶ ବକ୍ଷରେ ଭାସିଚାଲିଥିବା ବାଦଲଗୁଡ଼ିକୁ ଦେଖି ଆତ୍ମହରା ହୋଇଉଠୁଛି । ଦେଖୁଛି 'ହମ୍ମା', 'କକ' (କୁକୁର), କାଉ ଆଉ ବଗ କି ବଣି ! ସେ ମୋ'ର ସ୍ପର୍ଶ ଅନୁଭବ କରୁଛି । ମୋ' ପାଟିରୁ ବାହାରୁଥିବା କଥାକୁ କାନ ଡେରି ଶୁଣୁଚି । ମୋ' ଆଖିରେ ଆଖି ମିଳେଇ ମୁରୁକିହସା ଦେଉଛି । ମୁହଁ ଲୁଚେଇ

ମୋ' ସାଥିରେ ଖେଳୁଚି ଲୁଚକାଳି । ସେ ଖୁସି ହେଉଛି, ଖୁସି ବାଣ୍ଟି ଆହୁରି ଖୁସି ହେଉଛି ! ପିଲାଟିଏ ନଥିଲେ ଏଭଳି ଆନନ୍ଦ ମୋତେ ମିଳିଥାନ୍ତା କୁଆଡୁ ?"

ପିଲାମାନେ ହିଁ ଯଥାର୍ଥରେ ଦେବଶିଶୁ । ସେମାନେ ଜାତି, ଧର୍ମ, ଲିଙ୍ଗ ଓ ବର୍ଣ୍ଣର ପାର୍ଥକ୍ୟ ବୁଝନ୍ତି ନାହିଁ । ସେମାନେ କେବଳ ସ୍ନେହଶ୍ରଦ୍ଧା ଏବଂ ପ୍ରେମକୁ ବୁଝିପାରନ୍ତି, ବୁଝିପାରନ୍ତି ଅନାବିଳ ପ୍ରେମର ଭାଷାକୁ ।

ଏହି କାରଣରୁ ଅଧିକାଂଶ ଦମ୍ପତି ସନ୍ତାନ କାମନା କରିଥାନ୍ତି । ନାରୀଟିଏ ଗର୍ଭବତୀ ହେବାର ସମ୍ବାଦ ଶୁଣିଲେ ସାରା ପରିବାରରେ ଖେଳିଯାଏ ଆନନ୍ଦ ଏବଂ ଉତ୍ତେଜନା । ତାହାଛଡ଼ା, ସନ୍ତାନ ପ୍ରତ୍ୟାଶୀ ସ୍ୱାମୀ-ସ୍ତ୍ରୀ ନିଜର ଭବିଷ୍ୟତ ଦାୟିତ୍ୱ ସମ୍ପର୍କରେ ସଚେତନ ହୋଇଉଠନ୍ତି । ଶଙ୍କା ବିଜଡ଼ିତ ସତର୍କତା ସେମାନଙ୍କୁ କବଳିତ କରିପକାଏ । ବିଶେଷ କରି ଗର୍ଭିଣୀ ନାରୀଟି ହିଁ ମାନସିକ ଉଦ୍‌ବେଳନର ଶିକାର ହୋଇଥାଏ ।

ନାରୀଟିଏ ଗର୍ଭବତୀ ହେବା ଏକ ପ୍ରାକୃତିକ ସର୍ବଜନୀନ ପ୍ରକ୍ରିୟା । ସନ୍ତାନବତୀ ନ ହେଲେ ନାରୀତ୍ୱ ସାର୍ଥକ ହୁଏନାହିଁ ବୋଲି କୁହାଯାଉଥିଲେ ମଧ୍ୟ ଗର୍ଭବତୀ ହେବାପରେ ନାରୀଟି ଗର୍ଭ ଏବଂ ନବଜାତ ସନ୍ତାନ ସଂକ୍ରାନ୍ତ ବହୁ ବାସ୍ତବ ଏବଂ ଅବାସ୍ତବ ସମସ୍ୟାକୁ ନେଇ ଚିନ୍ତାଗ୍ରସ୍ତ ହେବା ଏକ ସ୍ୱାଭାବିକ ଘଟଣା । ତେବେ, ସେମାନଙ୍କ ମନରେ ଉଠୁଥିବା ବହୁ ପ୍ରଶ୍ନର ସମାଧାନ କରିବା ନିମନ୍ତେ ଏଠାରେ ଉଦ୍ୟମ କରାଯାଇଛି ।

**ପ୍ର : ମୁଁ ଏବେ ସନ୍ତାନସମ୍ଭବା । ବିଭିନ୍ନ ଲୋକଙ୍କଠାରୁ ବିଭିନ୍ନ କଥା ଶୁଣି ମୋତେ ବଡ଼ ଡର ମାଡୁଛି । ମୁଁ କ'ଣ ସତରେ ମୋ ପିଲାର ଯତ୍ନ ନେଇପାରିବି ?**

ଉ : ଏହା ଆପଣଙ୍କର ପ୍ରଥମ ଗର୍ଭ ହୋଇଥାଉ କି ଦ୍ୱିତୀୟ ଗର୍ଭ ହୋଇଥାଉ, ତାହା ଆପଣଙ୍କଠାରେ ଉତ୍ତେଜନାମିଶ୍ରିତ ଆନନ୍ଦ ସୃଷ୍ଟି କରିବା ସ୍ୱାଭାବିକ । ପୁଣି ସନ୍ତାନ ଲାଳନପାଳନ ସମ୍ପର୍କରେ ନିଜର ବନ୍ଧୁ ଏବଂ ଆତ୍ମୀୟମାନେ ଆପଣଙ୍କୁ ପରାମର୍ଶ ପରେ ପରାମର୍ଶ ଦେଇ ଅସ୍ତବ୍ୟସ୍ତ କରି ପକେଇବା ସ୍ୱାଭାବିକ ମଧ୍ୟ । ତାହାଛଡ଼ା, ଅଧିକ ଜାଣିବା ନିମନ୍ତେ କୌତୂହଳୀ ହୋଇ ଆପଣ ବିଭିନ୍ନ ସମ୍ବାଦପତ୍ର ଏବଂ ପତ୍ରପତ୍ରିକାରୁ ମଧ୍ୟ ଏ ସମ୍ବନ୍ଧୀୟ ଅନେକ ତଥ୍ୟ ଆହରଣ କରିସାରିବେଣି । ସନ୍ତାନଟି ପ୍ରସବ ହୋଇସାରିବା ମାତ୍ରେ ଡାକ୍ତର ଏବଂ ନର୍ସମାନେ ବି ଆପଣଙ୍କ ଉପରେ ପରାମର୍ଶ ଅଜାଡ଼ି ପକେଇବେ । ତେଣୁ, ଏହି 'କରିବ' ଏବଂ 'କରିବନି'ର ନିର୍ଦ୍ଦେଶନାମା ଆପଣଙ୍କ ପାଇଁ ଯେ ଅନେକ ଜଟିଳ ସମସ୍ୟାର ଉଦ୍ଭବ କରାଇବ, ଏଥିରେ କୌଣସି ବିଚିତ୍ରତା ନାହିଁ ।

କିଏ ଭିଟାମିନ୍ ଟନିକ୍ ପିଆଇବାକୁ ପରାମର୍ଶ ଦେବେ ତ ଅନ୍ୟ କିଏ ପ୍ରତିଷେଧକ ଟିକା ଦେବାର ଗୁରୁତ୍ୱ ବଖାଣି ବସିବେ । କିଏ ପିଲାକୁ ପ୍ଲାଷ୍ଟିକ୍ ପ୍ୟାଣ୍ଟ ପିନ୍ଧେଇବାକୁ କହିବେ ତ ଅନ୍ୟ କିଏ କପାଭ୍ର ତିଆରି କନା ପିନ୍ଧେଇବାର ସପକ୍ଷରେ ଯୁକ୍ତି ବାଢ଼ିବେ । କେହି କେହି କହିବେ ଯେ ପିଲାକୁ ସବୁବେଳେ କୋଳକୁ ନେଲେ ସେ 'କୋଳପାଳିଆ' ହୋଇ ଖରାପ ହୋଇଯିବ ତ ଅନ୍ୟ କେହି କହିବେ ପିଲାକୁ ଯେତେ ପାରିବ ସେତେ କୋଳରେ ଧରି ଗେଲ କରିବା ଭଲ । ଜଣଜଣଙ୍କ ମତରେ ପିଲାକୁ ପରୀଗପ ଶୁଣାଇ ଅବାସ୍ତବ ତଥ୍ୟ କହିବା ଅନୁଚିତ ତ ଅନ୍ୟ କେତେଜଣଙ୍କ ମତରେ ପରୀଗପ ଶୁଣାଇବା ଦ୍ୱାରା ଶିଶୁର ଯଥେଷ୍ଟ ମଙ୍ଗଳ ସାଧିତ ହୋଇଥାଏ ।

ଏହିସବୁ ପରସ୍ପର ବିରୋଧୀ ପରାମର୍ଶମାନ ଶୁଣିଲେ ଯେ କେହି ବ୍ୟକ୍ତି ଦ୍ୱନ୍ଦ୍ୱରେ ପଡ଼ିବା ସ୍ୱାଭାବିକ । କେଉଁ ପରାମର୍ଶ କରଣୀୟ ଏବଂ କେଉଁ ପରାମର୍ଶ ଅକରଣୀୟ, ତାହା ସ୍ଥିର କରିବା ନିଶ୍ଚିତ ଭାବରେ ଏକ ସମସ୍ୟା ।

କିନ୍ତୁ, ଆପଣ ନିଜ ଉପରେ ଆସ୍ଥା ରଖନ୍ତୁ । ଆପଣ ଏ' ବିଷୟରେ ଦୃଢ଼ ନିଶ୍ଚିତ ହେବା ଦରକାର ଯେ ଆପଣ ନିଜକୁ ଯେତେ ଅଜ୍ଞ ମନେ କରୁଛନ୍ତି, ବାସ୍ତବରେ ଆପଣ ସେତେ ଅଜ୍ଞ ନୁହଁନ୍ତି । ତେଣୁ ପଡ଼ାପଡ଼ୋଶୀଙ୍କ କଥା ଉପରେ ବିଶେଷ ଗୁରୁତ୍ୱ ଦିଅନ୍ତୁ ନାହିଁ । ବିଶେଷଜ୍ଞମାନଙ୍କ ପରାମର୍ଶ ଶୁଣି ଆତଙ୍କିତ ହୋଇପଡ଼ିବା ମଧ୍ୟ ଉଚିତ ନୁହେଁ । ନିଜର ସାଧାରଣ ଜ୍ଞାନକୁ ଆଦୌ ହେୟ ବିଚାରନ୍ତୁ ନାହିଁ । ସନ୍ତାନର ଲାଳନପାଳନକୁ ଖୁବ୍ ସହଜ ଭାବରେ ଗ୍ରହଣ କଲେ, ନିଜର ଅନ୍ତଃନିଃସୃତ ଧାରଣା ଉପରେ ନିର୍ଭର କଲେ ଏବଂ ଆପଣଙ୍କ ଡାକ୍ତରଙ୍କ ପରାମର୍ଶ ଅନୁସାରେ କାମ କଲେ ସନ୍ତାନର ଲାଳନପାଳନ ଆଦୌ ଏକ ସମସ୍ୟା ରୂପେ ଉଭା ହେବନାହିଁ । କାରଣ, ଏହା ଅବିସମ୍ବାଦୀ ସତ୍ୟ ଯେ ପିଲାକୁ କନା ପିନ୍ଧେଇବାର କଳା ନଜାଣିଲେ କି ପିଲାର ଖାଦ୍ୟ ପ୍ରସ୍ତୁତିରେ ଏପଟ ସେପଟ ହୋଇଗଲେ ସୃଷ୍ଟି ଓଲଟପାଲଟ ହୋଇଯିବନି । ଏହା ଅପେକ୍ଷା ସନ୍ତାନକୁ ବାପମା' ଅକପଟ ଭାବରେ ସ୍ନେହଶ୍ରଦ୍ଧା କରିବା ହେଉଛି ଶହେଗୁଣ ଅଧିକ ମୂଲ୍ୟବାନ । ତା'କୁ କୋଳରେ ଧରିବା, ଝାଡ଼ା ପରିସ୍ରା କରି ପକେଇଲେ ତା'ର ପିନ୍ଧାକନାକୁ ବଦଳେଇ ଦେବା, ତା'କୁ ଗାଧୋଇ ଦେବା, ଖୁଆଇ ଦେବା, ତା'କୁ ଚାହିଁ ମୁରୁକିହସା ଦେବା ଇତ୍ୟାଦି ତା'ର ପ୍ରତ୍ୟେକ ଚର୍ଯ୍ୟା ତା' ମନରେ ଏହି ଅନୁଭବ ଆଣେ ଯେ ସେ ହେଉଛି ଏକାନ୍ତ ଭାବରେ ଆପଣଙ୍କର ଏବଂ ଆପଣ ହେଉଛନ୍ତି ଏକାନ୍ତ ଭାବରେ ତା'ର । ସତ କହିଲେ, ଆପଣଙ୍କ ବ୍ୟତୀତ ଏହି ସଂସାରର ଅନ୍ୟ କିଏ ତା'କୁ ଏଭଳି ଅନୁଭୂତି ପ୍ରଦାନ କରିବା ନିମନ୍ତେ ସମର୍ଥ ?

ଆପଣ ଶୁଣି ହୁଏତ ଆଶ୍ଚର୍ଯ୍ୟ ହେବେ ଯେ ସନ୍ତାନ ଲାଳନପାଳନ ସମ୍ପର୍କରେ ଯେଉଁସବୁ ପଦ୍ଧତି ଅବଲମ୍ବନ କରାଯାଇଥାଏ, ତାହା ତୁଳନାରେ ସ୍ନେହୀ ପିତାମାତାଙ୍କ ନିଜସ୍ୱ ପଦ୍ଧତି ସର୍ବୋତ୍କୃଷ୍ଟ ବୋଲି ପ୍ରମାଣିତ । ସହଜ ଏବଂ ସରଳ ତଥା ସ୍ୱାଭାବିକ ଭାବରେ ଦୃଢ଼ ଆତ୍ମବିଶ୍ୱାସର ସହ ସନ୍ତାନର ଲାଳନପାଳନ କରିବାର ବିକଳ୍ପ ନାହିଁ । ନିଜ ଅନ୍ତଃପ୍ରେରଣାର ବଶବର୍ତ୍ତୀ ହୋଇ ସନ୍ତାନର ଯତ୍ନ ନେବାରେ ହୁଏତ କିଛି ଭୁଲ୍‌ଭଟକା ହୋଇପାରେ, କିନ୍ତୁ ଅନ୍ୟମାନଙ୍କ ଦ୍ୱାରା ନିର୍ଦ୍ଦେଶିତ ନିୟମକାନୁନ କି ପୁସ୍ତକ ପଠନରୁ ସଂଗୃହୀତ ତଥ୍ୟ ଅବଲମ୍ବନ କରିବା ଅପେକ୍ଷା ତାହା ଯଥେଷ୍ଟ ନିରାପଦ ।

ତେବେ ପଢ଼ାପଢ଼ି କରି ତଥ୍ୟ ଆହରଣ କରିବାରୁ ଏବଂ ଡାକ୍ତରମାନଙ୍କ ପରାମର୍ଶରୁ ଯେ ସୁଫଳ ମିଳିନଥାଏ ତାହା ନୁହେଁ, ଏହା ସତ୍ତ୍ୱେ ସନ୍ତାନ ଲାଳନପାଳନରେ ବ୍ରତୀ ରହିବା ସମୟରେ ପ୍ରତ୍ୟକ୍ଷ ଭାବରେ ଯେଉଁ ଅନୁଭୂତିମାନ ପ୍ରାପ୍ତ ହୋଇଥାଏ, ତାହା ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ । ତା'କୁ ଖୁଆଇଲେ, ଗାଧୋଇଦେଲେ, ତା'ର ଲୁଗାପଟା ବଦଳେଇଦେଲେ, ତା'କୁ ପିଠିରେ ପକେଇ ଥାପୁଡ଼େଇଲେ ଆପଣଙ୍କ ସନ୍ତାନ ଏହା ପ୍ରତି ଅନୁକୂଳ ପ୍ରତିକ୍ରିୟା ପ୍ରକାଶ କରିଥାଏ । ଏହା ଫଳରେ ଆପଣ ଦୁଇଜଣଙ୍କ ଭିତରେ ଅନ୍ତରଙ୍ଗତା ବୃଦ୍ଧିପାଇ ଆପଣଙ୍କଠାରେ ସ୍ନେହ, ପ୍ରେମ, ଆତ୍ମବିଶ୍ୱାସ ବୃଦ୍ଧି ପାଇଚାଲେ । ସନ୍ତାନ ପ୍ରସବ ପରେ ଆପଣ ଏବଂ ସେ, ଦୁଇଟି ସ୍ୱତନ୍ତ୍ର ସତ୍ତା ରୂପେ ବିବେଚିତ ହେଲେ ମଧ୍ୟ କ୍ରମେ ଆପଣ ଆଉ ଆପଣଙ୍କ ଶିଶୁ ସନ୍ତାନ ଅଚ୍ଛେଦ୍ୟ ବୋଲି ଆପଣ ଅନୁଭବ କରିପାରିବେ ।

ପ୍ରତ୍ୟେକ ପିତାମାତା ନିଜର ସନ୍ତାନମାନଙ୍କୁ ପ୍ରଭାବିତ କରିବା ନିମନ୍ତେ ଆଶା ପୋଷଣ କରିଥାନ୍ତି । କିନ୍ତୁ ଅନେକ ପିତାମାତା ବଡ଼ ବିସ୍ମିତ ଭାବରେ ଲକ୍ଷ୍ୟ କରିଥାନ୍ତି ଯେ ଏହା ହେଉଛି ଏକ ଦୁଇପାଖିଆ ରାସ୍ତାଭଳି । ସେମାନେ ସନ୍ତାନମାନଙ୍କୁ ଶିକ୍ଷା ପ୍ରଦାନ କରିବା ଅବସରରେ ନିଜେ ଯଥେଷ୍ଟ ଅନୁଭୂତି ଅର୍ଜନ କରିଥାନ୍ତି ଏବଂ ସନ୍ତାନମାନଙ୍କଠାରୁ ମଧ୍ୟ ଅନେକ କିଛି ଶିକ୍ଷାଲାଭ କରିଥାନ୍ତି । ଅନ୍ୟ କଥାରେ କହିବାକୁ ଗଲେ, ସନ୍ତାନ ଲାଳନପାଳନ କରିବା ହେଉଛି ବୟସ୍କ ବ୍ୟକ୍ତିଙ୍କ ନିଜସ୍ୱ ବିକାଶ ଦିଗରେ ଏକ ଗୁରୁତ୍ୱପୂର୍ଣ୍ଣ ସୋପାନ ।



# ମନରେ ବାନ୍ଧନ୍ତୁ ସାହସ

ପ୍ର : ମାତୃତ୍ୱ ଉପରେ ଆମେ ବେଶ୍ ଗୁରୁତ୍ୱ ଆରୋପ କରିଥାଉ । ଏପରିକି ମାତୃତ୍ୱ ଲାଭ କରିନଥିବା ନାରୀ ସମାଜରେ ହୀନମ୍ମନ୍ୟତାର ଶିକାର ହେବା ଅସ୍ୱାଭାବିକ ନୁହେଁ । କିନ୍ତୁ ପତ୍ନୀ ଗର୍ଭବତୀ ହେବାର ସମ୍ୱାଦ କ'ଣ ପତିପତ୍ନୀଙ୍କଠାରେ ସର୍ବଦା ଅନୁକୂଳ ଅନୁଭୂତି ଜାତ କରିଥାଏ ?

ଉ: ଆମର ଏକ ସାଧାରଣ ଧାରଣା ଯେ ନାରୀଟି ଗର୍ଭବତୀ ହେଲେ ସେ ସନ୍ତାନ ଲାଭ ଆଶାରେ ଅତ୍ୟନ୍ତ ଉତ୍‌ଫୁଲ୍ଲିତ ହୋଇଉଠେ । ଭାବୀସନ୍ତାନ କଥା ଭାବି ଭାବି ସ୍ୱପ୍ନବିଭୋର ହୁଏ । ପ୍ରସବ ପରେ ପରେ ସନ୍ତାନର ପରିଚର୍ଯ୍ୟାକୁ ଖୁବ୍ ଆନନ୍ଦର ସହ ନିର୍ବାହ କରିଚାଲେ । ହଁ, ଏପରି ଧାରଣା ସତ, ହେଲେ ସତ ଅଂଶିକ ଭାବରେ । ଏଭଳି ଅନୁଭୂତି କାହା କାହା କ୍ଷେତ୍ରରେ ଅଧିକ ତ ଅନ୍ୟ କାହା କାହା କ୍ଷେତ୍ରରେ ଊଣା । ଚିକିତ୍ସା ବିଜ୍ଞାନ ଶାଖାରେ କରାଯାଇଥିବା କେତେକ ଅନୁଧ୍ୟାନରୁ ପ୍ରମାଣ ମିଳୁଛି ଯେ ଅନେକ ନାରୀଙ୍କ କ୍ଷେତ୍ରରେ ସନ୍ତାନସମ୍ଭବା ହେବାର ସମ୍ୱାଦ ସ୍ୱାଗତଯୋଗ୍ୟ ବିବେଚିତ ହୁଏନାହିଁ ।

ବହୁ ଆଧୁନିକ ନାରୀ ଗର୍ଭାବସ୍ଥାକୁ ନିଜ ସ୍ୱାଧୀନତାର ଏକ ବାଧକ ରୂପେ ବିବେଚନା କରିଥାନ୍ତି । ନିଜ କିଶୋରୀ ଜୀବନର ଅନ୍ତ ଘଟିଲା ଭାବି ବିଷାଦଗ୍ରସ୍ତ ହୋଇପଡ଼ନ୍ତି । ନିଜ ଫୁଲାଫାଙ୍କିଆ ସାମାଜିକ ଜୀବନ ସୀମିତ ହୋଇଯିବ ବୋଲି ଚିନ୍ତାରେ ଭାଙ୍ଗି ପଡ଼ନ୍ତି । କେହି କେହି ସନ୍ତାନ ଲାଳନପାଳନର ବ୍ୟୟଭାରକୁ ସମ୍ଭାଳି ପାରିବେ ନାହିଁ ବୋଲି ଭାବି ଦୁଃଖ କରନ୍ତି ।

ତାହାଛଡ଼ା ଗର୍ଭାବସ୍ଥା ଅପ୍ରତ୍ୟାଶିତ ଭାବରେ ପହଞ୍ଚିଗଲେ, ତାହାପ୍ରତି ପ୍ରତିକୂଳ ମନୋଭାବ ଜାତ ହେବା ସ୍ୱାଭାବିକ । ଗର୍ଭାବସ୍ଥା ଯୋଗୁ ଶିକ୍ଷାଗ୍ରହଣ, ବୃତ୍ତି ନିର୍ବାଚନ ଇତ୍ୟାଦି ବ୍ୟାହତ ହେଲେ, ଶାରୀରିକ ଅସୁସ୍ଥତା ଥାଇ ଗର୍ଭବତୀ ହେଲେ, ସ୍ୱାମୀଙ୍କର କୌଣସି ସମସ୍ୟା ଥିଲେ ଓ ସ୍ୱାମୀ ଏବଂ ସ୍ତ୍ରୀଙ୍କ ମଧ୍ୟରେ ମନୋମାଳିନ୍ୟ ରହିଥିଲେ ଗର୍ଭ

ହୋଇଥିବା ଶୁଣିଲେ ମନ ମରିଯାଏ । ଦ୍ୱିତୀୟ କି ତୃତୀୟ ଗର୍ଭ ତ ସୃଷ୍ଟି କରିଥାଏ କେତେକ ଅତିରିକ୍ତ ସମସ୍ୟା । ଆର୍ଥିକ ବୋଝ ବଢ଼ିଯିବା ସାଙ୍ଗକୁ ଏକାଧିକ ସନ୍ତାନଙ୍କ ଲାଳନପାଳନ ପାଇଁ ସମୟ ଦେଇ ହୁଏନାହିଁ । ମାଆଙ୍କ ଶାରୀରିକ ଅକ୍ଷମତା ମଧ୍ୟ ବାଧକ ରୂପେ ଉଭା ହୋଇପଡ଼େ । ସନ୍ତାନମାନଙ୍କ ସେବାରେ ବ୍ୟସ୍ତ ରହିବାରୁ ପତ୍ନୀ ନିଜେ ପତିଙ୍କ ଯତ୍ନ ନେବା ନିମନ୍ତେ ସମର୍ଥ ହୋଇପାରନ୍ତି ନାହିଁ । ଫଳରେ ପତି ରୁଷ୍ଟ ହେବାର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ତେଣୁ ପତିପତ୍ନୀଙ୍କ ମଧ୍ୟରୁ ଯେ କେହି ଗର୍ଭାବସ୍ଥା ଦ୍ୱାରା ପ୍ରତିକୂଳ ଭାବରେ ପ୍ରଭାବିତ ହେଲେ ଅନ୍ୟ ଜଣକ ମଧ୍ୟ ଏହାର ଶିକାର ହୋଇପଡ଼ିବା ସ୍ୱାଭାବିକ ।

**ପ୍ର : ଆମେ ସ୍ୱାମୀ-ସ୍ତ୍ରୀ ଦୁଇଜଣ ଆମ ଶିଶୁ ସନ୍ତାନଟିକୁ ଭଲ ପାଇପାରିବୁ ତ ?**

ଉ : ପତ୍ନୀ ଗର୍ଭବତୀ ହେବାରେ ପତିପତ୍ନୀ ଉଭୟ ଉଲ୍ଲସିତ ହୋଇଉଠିବା ଏବଂ ବେଶ୍ ଗର୍ବିତ ଅନୁଭବ କରିବା ସତ୍ତ୍ୱେ ଗର୍ଭସ୍ଥ ସନ୍ତାନ ପ୍ରତି କେତେକ ପିତାମାତାଙ୍କଠାରେ କୌଣସି ବ୍ୟକ୍ତିଗତ ପ୍ରେମ ତଥା ସ୍ନେହଶ୍ରଦ୍ଧାର ଉଦ୍ରେକ ନହୋଇପାରେ । କିନ୍ତୁ, ଏଥିରେ ବ୍ୟସ୍ତତା ପ୍ରକାଶ କରିବା ଉଚିତ ନୁହେଁ । ବାତ୍ସଲ୍ୟ ପ୍ରେମ ଧୀରେ ଧୀରେ ଅଙ୍କୁରିତ ହୁଏ ଏବଂ ସ୍ୱାଭାବିକ ଭାବରେ ଏହା ବିକାଶ ଲାଭ କରେ । ଗର୍ଭସ୍ଥ ସନ୍ତାନକୁ ତ ଦେଖିହୁଏନି କି ଛୁଇଁହୁଏନି । ତେଣୁ ତାହା ପ୍ରତି କୌଣସି ଅନ୍ତରଙ୍ଗତା ଜାତ ନହେବାରେ ଅସ୍ୱାଭାବିକତା କିଛି ନାହିଁ । କିନ୍ତୁ ପ୍ରସବ ପରେ, ସନ୍ତାନଟିକୁ ଦେଖିଦେବା ମାତ୍ରେ ତା'ର ବାସ୍ତବ ସ୍ଥିତି ପ୍ରତି ପିତାମାତା ଉଭୟ ସଚେତନ ହୋଇଉଠନ୍ତି । ତେବେ ଗର୍ଭସ୍ଥ ଶିଶୁ ମା' ଗର୍ଭାଶୟରେ ଶରୀର ଚାଳନା ଆରମ୍ଭ କରିଦେଲେ ସେ ମାଆକୁ ନିଜ ପ୍ରତି ଆକର୍ଷିତ କରାଇଥାଏ । ବହୁ ପିତାମାତା ସ୍ୱୀକାର କରିଥାନ୍ତି ଯେ ଗର୍ଭ ସଂଚାର ସମ୍ବାଦ ସେମାନଙ୍କଠାରେ ପ୍ରଥମେ ପ୍ରଥମେ କିଛି ପରିମାଣର ନୈରାଶ୍ୟ ସୃଷ୍ଟି କରିଥିଲେ ମଧ୍ୟ ପ୍ରସବ ସମୟ ପାଖେଇ ଆସିବା ବେଳକୁ ଗର୍ଭସ୍ଥ ଶିଶୁ ପ୍ରତି ସେମାନଙ୍କଠାରେ ଆତ୍ମୀୟତା ଭାବ ବେଶ୍ ଦୃଢ଼ୀଭୂତ ହୋଇଯାଏ । ଅସ୍ୱସ୍ତି ଦୂରୀଭୂତ ହୋଇ ସେମାନଙ୍କଠାରେ ଅନୁଭୂତ ହୁଏ ଆଶ୍ୱସ୍ତି ।

ତଥାପି, କେତେକ କ୍ଷେତ୍ରରେ ନବଜାତ ସନ୍ତାନକୁ ଦେଖିଦେଇ ସେ ତାଙ୍କ ରକ୍ତମାଂସର ପ୍ରତିଭୂ ବୋଲି ପିତାମାତା ଧରିନେଇ ପାରନ୍ତି ନାହିଁ । ଏଭଳି ନିରୁତ୍ସାହଭାବ ଦିନେ ଦୁଇଦିନ କିମ୍ବା ପାଞ୍ଚଛଅଦିନ ରହି ଆପେ ଆପେ ଅପସାରିତ ହୋଇଯାଏ । ସନ୍ତାନ ସହ ଏକତ୍ର ରହିବା ଫଳରେ ଅନ୍ତରଙ୍ଗତା ଦୃଢ଼ରୁ ଦୃଢ଼ତର ହେବାରେ ଲାଗେ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ପତ୍ନୀ ଗର୍ଭବତୀ ହେଲେ ପତିପତ୍ନୀ ଉଭୟ ପୁତ୍ର କିମ୍ବା କନ୍ୟାସନ୍ତାନଟିଏ କାମନା କରିଥାନ୍ତି । ଏହା ପ୍ରଥମ ଗର୍ଭ ପାଇଁ ଯେତିକି ସତ୍ୟ,

ପରବର୍ତ୍ତୀ ଗର୍ଭ ପାଇଁ ମଧ୍ୟ ସେତିକି ସତ୍ୟ । କିନ୍ତୁ ସନ୍ତାନର ଲିଙ୍ଗ ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ । କାରଣ ସନ୍ତାନଟି ଆକାଂକ୍ଷିତ ଲିଙ୍ଗ ବିଶିଷ୍ଟ ନହୋଇଥିଲେ, ପିତାମାତାଙ୍କର ଅସ୍ୱସ୍ତି ଅଳ୍ପ କେଇଟା ଦିନ ପାଇଁ ରହି ପରେ ତାହା ଦୂର ହୋଇଯାଏ । କୌଣସି ପିତାମାତା ଲିଙ୍ଗ ଭେଦରେ ସନ୍ତାନଙ୍କୁ ପ୍ରେମ ତଥା ସ୍ନେହଶ୍ରଦ୍ଧା ବିତରଣ କରନ୍ତି ନାହିଁ । ସନ୍ତାନଙ୍କୁ ଭଲ ପାଇବା ପିତାମାତାଙ୍କଠାରେ ଏକ ସହଜାତ ପ୍ରବୃତ୍ତି ।

ତେଣୁ, ଆପଣ ଦୁଇଜଣ ଆପଣଙ୍କର ଗର୍ଭସ୍ଥ ସେହି କାଳ୍ପନିକ ଶିଶୁ ସନ୍ତାନଟିକୁ ଭଲ ପାଇବା ଆରମ୍ଭ କରିଦିଅନ୍ତୁ । ତା'ର ସୃଷ୍ଟିକୁ ଉପଭୋଗ କରନ୍ତୁ । ପୁଅଟିଏ ଚାହିଁ ଝିଅଟିଏ ପାଇଲେ କି ଝିଅଟିଏ ଚାହିଁ ପୁଅଟିଏ ଜନ୍ମ ନେଲେ ସେଥିପାଇଁ ନିଜକୁ ଅପରାଧୀ ବୋଲି ଭାବନ୍ତୁ ନାହିଁ ।

**ପ୍ର : ପ୍ରସବ ପରେ ପରେ ପିଲାର ଯତ୍ନ ନେବାବେଳେ ମନରେ ବିଷାଦ ଭାବ ଜାତ ହୁଏ କି ?**

ଉ : ହଁ, ଜଣଜଣଙ୍କ କ୍ଷେତ୍ରରେ ଏହା ସମ୍ଭବ । ବିଶେଷ କରି ପ୍ରଥମ ସନ୍ତାନର ସେବାଯତ୍ନ ଆରମ୍ଭ କଲାବେଳେ ମନରେ ବିଷାଦ ଭାବ ଜାତ ହୋଇପାରେ । ସେତେବେଳେ କୌଣସି ଭୁଲ୍ କାମଟିରେ ହାତ ଦେବା ପାଇଁ ଖୁବ୍ ଡର ମାଡ଼େ । ପିଲାର ଝଞ୍ଝଟକୁ ନେଇ ମାଆମାନେ ବେଳେବେଳେ କାନ୍ଦି ପକାନ୍ତି । ସେମାନଙ୍କୁ କିଛି ଭଲ ଲାଗେନି । କେଉଁ କାମରେ ଆଗ୍ରହ ଆସେନି । ମନର ସରସତା ହ୍ରାସ ପାଇଯାଏ । ପିଲାଟି ଅବୁଝା ହୋଇ କାନ୍ଦିଲେ ତା'ର ନିଶ୍ଚୟ କୌଣସି ରୋଗ ହୋଇଛି ବୋଲି ସେମାନେ ଧରି ନିଅନ୍ତି । ଏପରିକି କେହି କେହି ପତିଙ୍କଠାରୁ ପୂର୍ବ ସ୍ନେହଶ୍ରଦ୍ଧା ପାଉନାହାନ୍ତି ବୋଲି ବୃଥା ଅଭିଯୋଗ ବାଢ଼ିଥାଆନ୍ତି । ସନ୍ତାନ ଜନ୍ମ ପରେ ନିଜର ସୌନ୍ଦର୍ଯ୍ୟହାନି ଘଟିଛି ବୋଲି ଜଣଜଣଙ୍କ ମନରେ ଧାରଣା ଜନ୍ମିଥାଏ ।

ଏଭଳି ଅବସାଦ ଅନୁଭୂତି ସନ୍ତାନ ଜନ୍ମର କିଛିଦିନ ପରେ ପ୍ରକାଶ ପାଇପାରେ କିମ୍ବା ପ୍ରକାଶ ପାଇପାରେ ଅନେକ ସପ୍ତାହ ପରେ । ଡାକ୍ତରଖାନାରୁ ଘରକୁ ଆସିବା ପରେ ନବଜାତକର ସମସ୍ତ ଦାୟିତ୍ୱ ମାଆ ଉପରେ ପଡ଼ିଥାଏ । ତାହା ସାଙ୍ଗକୁ ଥାଏ ପରିବାରର ବିଭିନ୍ନ ଦାୟିତ୍ୱ । ତେବେ, କାମ କରିବାର ବୋଝ ମାଆ ପାଇଁ ବିଶେଷ ସମସ୍ୟା ସୃଷ୍ଟି କରିନଥାଏ । କାରଣ କାମଧନ୍ଦା କରିବା ପାଇଁ ହୁଏତ ଅନ୍ୟମାନଙ୍କ ସାହାଯ୍ୟ ମିଳିପାରେ । ହେଲେ, ପରିବାରର ଯାବତୀୟ ଦାୟିତ୍ୱ ମୁଣ୍ଡେଇବା ଏବଂ ଶିଶୁ ସନ୍ତାନର ଯତ୍ନ ତଥା

ନିରାପତ୍ତାଭଳି ନୂତନ ଦାୟିତ୍ୱକୁ ସମ୍ଭାଳିବା ହିଁ ସମସ୍ୟା ସୃଷ୍ଟିର ପ୍ରଧାନ କାରଣ ରୂପେ ଉଭା ହୋଇପଡ଼େ । ତାହାଛଡ଼ା, ପ୍ରସବ ପରେ ଶରୀରରେ ପ୍ରାକୃତିକ ଉପାୟରେ ଜାତ ହେଉଥିବା ଶାରୀରିକ, ମାନସିକ ଏବଂ ହର୍‌ମୋନୀୟ ପରିବର୍ତ୍ତନମାନ ମଧ୍ୟ ପ୍ରସୂତି ମନରେ ବିଷାଦ ଭାବ ଉଦ୍ରେକ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ ।

ତେବେ, ଏଥିପାଇଁ ହତୋତ୍ସାହିତ ହେବାର କୌଣସି କାରଣ ନାହିଁ । କାରଣ ଏଭଳି ଅନୁଭୂତି ପ୍ରସୂତିମାନଙ୍କ କ୍ଷେତ୍ରରେ ଖୁବ୍ ସାଧାରଣ ଏବଂ ଅନେକ ମହିଳା ଏହି ଅନୁଭୂତି ଅର୍ଜନ କରିଥାନ୍ତି ।

ଆପଣ ଯଦି ବାସ୍ତବରେ ବିଷାଦଗ୍ରସ୍ତ ହୋଇପଡ଼ିଥାନ୍ତି, ତେବେ ପ୍ରସବ ପରର ପ୍ରଥମ ମାସେ ଦୁଇମାସ ଧରି ପିଲାର ସବୁବେଳେ ଯତ୍ନ ନିଅନ୍ତୁ । ମନ ବହଲେଇବା ପାଇଁ ଟେଲିଭିଜନ ଦେଖନ୍ତୁ । ଅଳ୍ପ ସମୟ ପାଇଁ ହେଲେ ବି ବାହାରକୁ ବୁଲିଯାଆନ୍ତୁ । ନୂଆ ଶାଢ଼ି କି ଡ୍ରେସ୍ କିଣି ପିନ୍ଧନ୍ତୁ । ଯେଉଁମାନେ ପାରିବେ, ସେମାନେ ଲେଖାଲେଖି, ପଢ଼ାପଢ଼ି, ଚିତ୍ର ଅଙ୍କା, ସିଲେଇ ଇତ୍ୟାଦି ସୃଜନଶୀଳ ତଥା ସନ୍ତୋଷଜନକ କାର୍ଯ୍ୟରେ ମନୋନିବେଶ କଲେ ଯଥେଷ୍ଟ ଉପକାର ପାଇପାରିବେ । ନିକଟ ଆତ୍ମୀୟ ଏବଂ ଘନିଷ୍ଠ ବନ୍ଧୁଙ୍କ ଘରକୁ ବୁଲିଗଲେ କି ତାଙ୍କ ସହ ଫୋନ୍‌ରେ କଥାବାର୍ତ୍ତା କଲେ ମନର ଅବସାଦ ଭାବ ଦୂରୀଭୂତ ହୋଇଯାଏ । ନିଜର ପୁରାତନ ବନ୍ଧୁ କି ସ୍କୁଲ୍ ସାଥୀଙ୍କୁ ଘରକୁ ନିମନ୍ତ୍ରଣ କରି ଗପସପରେ ମଜ୍ଜି ରହିବାର ମଜା ଭିନ୍ନ ।

ଏହା ଅବଶ୍ୟ ସତ ଯେ ମନ ଭଲ ନଥିଲେ ଏହିସବୁ କାମ କରିବା ନିମନ୍ତେ ମନରେ ଆଗ୍ରହ ଜାତ ହେବନାହିଁ । ଏହାସତ୍ତ୍ୱେ ଆପଣ ମନକୁ ଦୃଢ଼ କରି ଏଭଳି କାର୍ଯ୍ୟରେ ନିମଗ୍ନ ରହିଲେ ବିଷାଦ ଭାବ କ୍ରମେ ମିଳେଇବାକୁ ଆରମ୍ଭ କରିଥାଏ । ଆପଣ ବିଷାଦ ଭାବ ପରିହାର କରିବା ନିଜ ସ୍ୱାମୀଙ୍କ ପାଇଁ, ଶିଶୁ ସନ୍ତାନଟି ପାଇଁ, ନିଜ ପାଇଁ ଏବଂ ପରିବାରର ଅନ୍ୟମାନଙ୍କ ପାଇଁ ମଙ୍ଗଳକର । କିନ୍ତୁ, ଏପରି ଅସ୍ୱସ୍ତି ଲାଗି ରହିଲେ ଆପଣ କାଳବିଳମ୍ବ ନକରି ମାନସିକ ରୋଗ ବିଶେଷଜ୍ଞଙ୍କ ପରାମର୍ଶ ଲୋଡ଼ିବା ନିରାପଦ ।

ପତ୍ନୀ ଅବସାଦର ଶିକାର ହୋଇପଡ଼ିଲେ ନିଜର ସ୍ୱାମୀ ତାଙ୍କୁ ଉଦାସୀନ ବୋଲି ମାଲୁମ ପଡ଼ନ୍ତି । ଏହି ମାନସିକ ଅସ୍ୱାଭାବିକତା ଯୋଗୁ ଅନ୍ୟମାନଙ୍କ ସ୍ନେହଶ୍ରଦ୍ଧାର ମାତ୍ରା ପ୍ରତି ମନରେ ସନ୍ଦେହ ଜାତ ହୋଇଥାଏ । ଅନ୍ୟ ପକ୍ଷରେ, ଶିଶୁ ସନ୍ତାନଟି ଉପରେ ପତ୍ନୀ ଏବଂ ପରିବାରର ଅନ୍ୟ ସଦସ୍ୟମାନଙ୍କ ଦୃଷ୍ଟି ନିବଦ୍ଧ ହେଉଥିବାରୁ, ସ୍ୱାମୀ ନିଜକୁ ଅବହେଳିତ ମନେ କରିବା ମଧ୍ୟ ସ୍ୱାଭାବିକ । ତେଣୁ, ମାଆଟି ନିଜ ସ୍ୱାମୀଙ୍କ ଭଲମନ୍ଦ

ପ୍ରତି ସଚେତନ ରହିବା ଏବଂ ସନ୍ତାନର ଯତ୍ନ ନେବାରେ ସ୍ୱାମୀଙ୍କୁ ଜଡ଼ିତ କରାଇବାର ସୁଫଳ ସୁଦୂରପ୍ରସାରୀ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ସନ୍ତାନ ଜନ୍ମ ପରେ କିଛି ସପ୍ତାହ ଧରି ବାପମାଆଙ୍କର ଉତ୍କଣ୍ଠାର ସୀମା ନଥାଏ । ପିଲାଟି କାନ୍ଦିଲେ, କି ଅସ୍ୱସ୍ତି ପ୍ରକାଶ କଲେ ତା'ର କୌଣସି ଗୁରୁତର ଅସୁବିଧା ଜାତ ହୋଇଛି ଭାବି ସେମାନେ ବିଚଳିତ ହୋଇପଡ଼ନ୍ତି । ସେ ଛିଙ୍କିଲେ ବାପମାଆ ଭୟଭୀତ ହୋଇପଡ଼ନ୍ତି । ତା' ଦେହରେ ଫଳିଗଲେ ସେମାନେ ବ୍ୟତିବ୍ୟସ୍ତ ହୋଇପଡ଼ନ୍ତି । ଏପରିକି ସେ ନିଃଶ୍ୱାସପ୍ରଶ୍ୱାସ ନେଉଛି କି ନା, ତାହା ଲୁଚେଇ ଲୁଚେଇ ଲକ୍ଷ୍ୟ କରିଥାନ୍ତି । ପିଲାର ନିରାପତ୍ତା ପ୍ରତି ଏଭଳି ମାତ୍ରାତିରିକ୍ତ ସଚେତନତା ହୁଏତ ପ୍ରବୃତ୍ତିଗତ । ନିଜ ପିଲାର ଦାୟିତ୍ୱକୁ ଗୁରୁତ୍ୱ ଦେବା ପାଇଁ ହୁଏତ ପ୍ରକୃତି ପିତାମାତାଙ୍କଠାରେ ଏହି ଧରଣର ପ୍ରତିକ୍ରିୟା ଜାତ କରିଥାଏ । କାରଣ, କେତେକ ଦାୟିତ୍ୱହୀନ ପିତାମାତାଙ୍କୁ ଦାୟିତ୍ୱ ସଚେତନ କରାଇବା ହିଁ ପ୍ରକୃତିର ଉଦ୍ଦେଶ୍ୟ । ସେ ଯାହାହେଉ, ପିଲାର ଭଲମନ୍ଦ ପ୍ରତି ପିତାମାତାଙ୍କର ମାତ୍ରାତିରିକ୍ତ ସଚେତନତା ଧୀରେ ଧୀରେ ହ୍ରାସ ପାଇ ସ୍ୱାଭାବିକତା ଫେରିଆସେ ।

ଯେଉଁ ମାଆମାନେ ସନ୍ତାନର ଦେଖାଶୁଣା କରିବା ନିମନ୍ତେ ନିଜକୁ ଅନୁପଯୁକ୍ତ ମନେକରିଥାନ୍ତି, ସେମାନେ ମନରେ ଦୃଢ଼ତା ଆଣି ନିଷ୍ଠାର ସହ ସନ୍ତାନ ଲାଳନପାଳନରେ ରତ ରହିଲେ ମାନସିକ ବିଷାଦ କ୍ରମେ କ୍ରମେ ଅପସରିଯାଏ । ତେଣୁ, ମାଆମାନେ ମନରେ ସାହସ ବାନ୍ଧିବାର ଆବଶ୍ୟକତା ଯଥେଷ୍ଟ ମହତ୍ତ୍ୱପୂର୍ଣ୍ଣ ।



# ପିତାଙ୍କ ଭୂମିକା

**ପ୍ର : ସନ୍ତାନର ଲାଳନପାଳନରେ ପିତାଙ୍କର ଭୂମିକା କଅଣ ?**

ଉ : ସନ୍ତାନର ଲାଳନପାଳନରେ ପିତା ଏବଂ ମାତାଙ୍କର ଭୂମିକା ସମାନ । କାହାର ଭୂମିକା ମୁଖ୍ୟ ନୁହେଁ କି କାହାର ଭୂମିକା ଗୌଣ ନୁହେଁ ।

ପତ୍ନୀ ଗର୍ଭବତୀ ହେବାର ଜାଣିଲେ ପତିଙ୍କଠାରେ ବିଭିନ୍ନ ପ୍ରକାରର ଅନୁଭବ ଜାଗେ । ପତ୍ନୀ ଗର୍ଭବ୍ତୀ ହେବା ହିଁ ହେଉଛି ପତିପତ୍ନୀଙ୍କ ପ୍ରଜନନ କ୍ଷମତାର ଅକାଟ୍ୟ ପ୍ରମାଣ । ତେଣୁ ଏହା ସ୍ୱାମୀଙ୍କ ମନରେ ଯଥେଷ୍ଟ ସନ୍ତୋଷ ଦେଇଥାଏ । ଏହି ସମୟରେ ସ୍ତ୍ରୀଙ୍କୁ ଯଥାସମ୍ଭବ ସୁରକ୍ଷା ଦେବା ନିମନ୍ତେ ସେ ଉତ୍ସାହୀ ହୋଇପଡ଼ନ୍ତି । ଭାବୀସନ୍ତାନର ସାନ୍ନିଧ୍ୟକୁ ଉପଭୋଗ କରିବାର ସ୍ୱପ୍ନରେ ମସ୍‌ଗୁଲ୍ ରହନ୍ତି । ତେବେ, ଜଣଜଣଙ୍କଠାରେ ଏହା ସାମାନ୍ୟ ବିଷାଦ ଭାବର ଉଦ୍ରେକ କରିଥାଏ । ପତ୍ନୀର ଗର୍ଭଧାରଣକୁ କେହି କେହି ସ୍ୱାମୀ ଯୌନଜୀବନର ବାଧକ ରୂପେ ବିବେଚନା କରିଥାନ୍ତି ।

ତେବେ, ସ୍ତ୍ରୀର ଗର୍ଭବେଦନା କାଳରେ ସ୍ୱାମୀଙ୍କୁ ପ୍ରସବ ଗୃହକୁ ପ୍ରବେଶ କରିବା ନିମନ୍ତେ ଅନୁମତି ମିଳେନାହିଁ । ସ୍ତ୍ରୀଙ୍କୁ ଡାକ୍ତରଖାନାରେ ପହଞ୍ଚେଇ ଦେବା ପରେ ଡାକ୍ତର, ନର୍ସ୍ କି ଧାଈ ପ୍ରସବ କରେଇବା କାର୍ଯ୍ୟରେ ନିୟୋଜିତ ରହନ୍ତି ଏବଂ ସ୍ୱାମୀଙ୍କୁ ବାହାରେ ଅପେକ୍ଷା କରି ବସିରହିବାକୁ ପଡ଼େ । ଏହା ସ୍ୱାମୀଙ୍କ ପାଇଁ ବେଶ୍ ଯନ୍ତ୍ରଣାଦାୟକ । ଏପରିକି, ପ୍ରସବ ପରେ ପତ୍ନୀ ଏବଂ ନବଜାତକଙ୍କୁ ଦେଖିବା ପାଇଁ ଗଲେ ଅନ୍ୟ ଆତ୍ମୀୟ କି ପରିଦର୍ଶକଙ୍କ ତୁଳନାରେ ସ୍ୱାମୀଙ୍କୁ କୌଣସି ବିଶେଷ ଗୁରୁତ୍ୱ ଦିଆଯାଏ ନାହିଁ । ଏପରିକି, ଡାକ୍ତରଖାନାରୁ ଘରକୁ ଫେରିଗଲା ବେଳେ ସ୍ୱାମୀଙ୍କ ମାଆ କି ସ୍ତ୍ରୀଙ୍କ ମାଆ ନିର୍ବାହ କରିଥାନ୍ତି ମୁଖ୍ୟ ଭୂମିକା । ସ୍ୱାମୀ ବିଚରା ବୋଲହାକ କରିବା କି ସେମାନଙ୍କର ନିର୍ଦ୍ଦେଶ ପାଳନ କରିବା କାର୍ଯ୍ୟ ତୁଲେଇ ଥାଆନ୍ତି । ଏପରି ଆଚରଣ ସ୍ୱାମୀଙ୍କ ଅଭିମାନକୁ ଆହତ କରିବାର ସମ୍ଭାବନା ଅଛି । ତେଣୁ, ସ୍ତ୍ରୀଙ୍କ ପ୍ରସବ ଯନ୍ତ୍ରଣା ଆରମ୍ଭ ହେବା ସମୟରୁ ହିଁ ସ୍ୱାମୀଙ୍କୁ ମୁଖ୍ୟ ଭୂମିକା ନିର୍ବାହ କରିବାର ସୁଯୋଗ ଦେଲେ ନବଜାତକଟି ପ୍ରତି ପିତାଙ୍କର ସ୍ନେହଶ୍ରଦ୍ଧା ପ୍ରଥମ ଦିନରୁ ହିଁ ପଲ୍ଲବିତ ହୋଇଉଠେ ।

ସ୍ୱାମୀମାନେ ମନେରଖିବା ଉଚିତ ଯେ ଗର୍ଭଧାରଣ କରିବା ଫଳରେ ପତ୍ନୀମାନେ ଅତିରିକ୍ତ ଶାରୀରିକ ଏବଂ ମାନସିକ ଚାପର ସମ୍ମୁଖୀନ ହୋଇଥାଆନ୍ତି । ସେମାନଙ୍କ ଶରୀରରେ ସଙ୍ଘଟିତ ହୋଇଥାଏ ତୀବ୍ର ହରମୋନୀୟ ପରିବର୍ତ୍ତନ । ନବଜାତକର ଆବିର୍ଭାବ ଓ ତା'ର ଲାଳନପାଳନ ସୃଷ୍ଟି କରେ ଅନେକ ସମସ୍ୟା ଏବଂ ଚାପ । ଫଳରେ, ସେମାନଙ୍କର ଉତ୍କଣ୍ଠା ବଢ଼ିଯାଏ । ତେଣୁ, ସେମାନେ ଆବଶ୍ୟକ କରିଥାନ୍ତି ଯଥେଷ୍ଟ ଆଶ୍ୱାସନା, ଭରସା ଏବଂ ସୁରକ୍ଷା । ଶିଶୁର ଯତ୍ନ ନେବା ଏବଂ ପରିବାରର ବିଭିନ୍ନ କାର୍ଯ୍ୟ ତୁଲେଇବାରେ ସ୍ୱାମୀଙ୍କର ସହଯୋଗ ସ୍ତ୍ରୀଙ୍କୁ ଆଶ୍ୱସ୍ତ କରିଥାଏ । ସ୍ତ୍ରୀଙ୍କୁ ଧୈର୍ଯ୍ୟଦେବା, ତାଙ୍କ ଉପରେ ସ୍ନେହଶ୍ରଦ୍ଧା ଅଜାଡ଼ିଦେବା, ତାଙ୍କୁ ପ୍ରଶଂସା କରିବା ଦ୍ୱାରା ତାଙ୍କର ଆବେଗ ଏବଂ ଭାବପ୍ରବଣତା ପ୍ରଶମିତ ହୋଇଯାଏ । ପତ୍ନୀ ମଧ ପତିଙ୍କର ସାହାଯ୍ୟ ସହଯୋଗକୁ ଉପଭୋଗ ତଥା ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ସେଥିପ୍ରତି ଅକୁଣ୍ଠିତ ସ୍ୱୀକୃତି ଦେବା ବାଞ୍ଛନୀୟ । ପତିଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ହେଲେ ଏବଂ ପତିଙ୍କର ସାହାଯ୍ୟ ଏବଂ ପ୍ରେମ ଉପରେ ଭରସା ରଖିପାରିଲେ, ପତିଙ୍କର ସହଯୋଗ ମିଳିବାରେ ସମସ୍ୟା ହୁଏନାହିଁ ।

ସନ୍ତାନକୁ ସ୍ନେହଦେବା, ତା' ପାଇଁ ସମୟ ଦେବା, ତା' ଆଖିରେ ସଂସାରକୁ ଦେଖିବାରେ ହିଁ ପିତୃତ୍ୱର ସାର୍ଥକତା । ମନସ୍ତତ୍ତ୍ୱବିତ୍ ରେ' ଗୁଆରେଣ୍ଡିଙ୍କ ମତରେ ସନ୍ତାନପାଇଁ ପିତାଙ୍କର ଉପସ୍ଥିତି ବହନ କରିଥାଏ ଏକ ସ୍ୱତନ୍ତ୍ର ଗୁରୁତ୍ୱ ଏବଂ ସନ୍ତାନର ବିକାଶରେ ଏହା ସ୍ୱତନ୍ତ୍ର ଶକ୍ତି ପ୍ରଦାନ କରିଥାଏ । ପାରମ୍ପରିକ ମୂଲ୍ୟବୋଧ, ପାରସ୍ପରିକ ଆସ୍ଥା ଏବଂ ଅନାବିଳ ପ୍ରେମ ହିଁ ସନ୍ତାନ ଲାଳନପାଳନର ମୂଳମନ୍ତ୍ର । ସନ୍ତାନମାନେ ପିତାଙ୍କଠାରୁ ସ୍ନେହ ଚାହାଁନ୍ତି, ଚାହାଁନ୍ତି ମଧ ମର୍ଯ୍ୟାଦା । ତେବେ, ବେଳେବେଳେ ପିତୃସୁଲଭ ପ୍ରବୃତ୍ତି ଅତି ସରଳ ଏବଂ ସ୍ୱାଭାବିକ ଭାବରେ ଉତ୍ସରିତ ହେଉଥିବା ବେଳେ, କେତେକ କ୍ଷେତ୍ରରେ ଏହାର ବିକାଶ ପାଇଁ କିଛି ଯତ୍ନ କରିବାର ଆବଶ୍ୟକତା ପଡ଼େ । କିନ୍ତୁ ସନ୍ତାନର ବିକାଶରେ ପିତାଙ୍କ ଅବଦାନର ଖୁବ୍ ଅନୁକୂଳ ପ୍ରଭାବ ରହିଛି ଏବଂ ଏହି ପ୍ରଭାବର ରହିଛି ଏକ ଚିରସ୍ଥାୟୀ ମୂଲ୍ୟ ।

ଅନେକ ପିଲାଙ୍କ ଇଚ୍ଛା ଯେ ସେମାନଙ୍କର ବାପାମାନେ ସେମାନଙ୍କୁ ଖୁବ୍ ସ୍ନେହ କରୁଛନ୍ତି ବୋଲି ସର୍ବ ସମକ୍ଷରେ ପ୍ରଦର୍ଶନ କରିବା ଉଚିତ । ଭଲ ପାଇବାଟାକୁ ସେମାନେ ନିଜ ମନ ଭିତରେ ଲୁକ୍କାୟିତ କରି ରଖିବା ଉଚିତ ନୁହେଁ । ଗୋପନ ପିତୃସ୍ନେହ ସନ୍ତାନମାନଙ୍କର ପସନ୍ଦ ନୁହେଁ ବୋଲି ବହୁ ଅନୁଧାନରୁ ପ୍ରମାଣିତ । ଏ' ସମ୍ପର୍କରେ ପ୍ରତିକ୍ରିୟା

ପ୍ରକାଶ କରି ଲେଖକ ୱାଲ୍ଟ୍ ହାରିଙ୍ଗ୍ଟନ୍ କହିଛନ୍ତି, ''ମୋ' ପିତା ଯେ ମୋତେ ସ୍ନେହ କରନ୍ତି; ଏଥିରେ ମୋର କୌଣସି ସନ୍ଦେହ ନାହିଁ । କିନ୍ତୁ, ସେ ମୋତେ କେବେ କୋଳ କରିବା, ଚୁମା ଦେବା କି ମୋତେ ଭଲପାଆନ୍ତି ବୋଲି କହିବା, ମୋର ମନେପଡୁନାହିଁ ।''

ଏ' ସଂକ୍ରାନ୍ତରେ ମନସ୍ତତ୍ତ୍ୱବିତ୍ ଗୁଆରେଣ୍ଡିଙ୍କ ପରାମର୍ଶ ପ୍ରଣିଧାନଯୋଗ୍ୟ । ସେ କହନ୍ତି, ''କେତେକ ପିତା ସନ୍ତାନମାନଙ୍କ ପ୍ରତି ସେମାନଙ୍କର ସ୍ନେହଶ୍ରଦ୍ଧାକୁ ଖୋଲାଖୋଲି ପ୍ରକାଶ କରିପାରନ୍ତି ନାହିଁ । ସେମାନେ ନିଜ ସ୍ନେହଶ୍ରଦ୍ଧା ବିଷୟ ଲେଖି ସନ୍ତାନପାଖକୁ ଚିଠି ଦେଇପାରନ୍ତି । ସେମାନଙ୍କ ଖାତାପତ୍ରରେ ଏ' ବିଷୟ ଉଲ୍ଲେଖ କରିପାରନ୍ତି । ଯେଉଁମାନେ ପାରିବେ, ସେମାନେ ନିଜ ସନ୍ତାନ ପାଇଁ କବିତା ଲେଖିପାରନ୍ତି କିମ୍ବା ସଙ୍ଗୀତ ରଚନା କରିପାରନ୍ତି । ସନ୍ତାନର କୃତିତ୍ୱ ପାଇଁ ଯେଉଁ ପିତା ବାକ୍ୟରେ ନିଜର ମନୋଭାବ ପ୍ରକାଶ କରିପାରିବେ ନାହିଁ, ସେମାନେ ସନ୍ତାନର ପିଠି ଥାପୁଡ଼େଇ କିମ୍ବା ତା'କୁ ସ୍ପର୍ଶ କରି ନିଜର ମନୋଭାବ ସଞ୍ଚାରିତ କରିପାରିବେ । ତାହାଛଡ଼ା ପିତାମାତାଙ୍କ ମଧ୍ୟରେ ଗଭୀର ତଥା ଆନ୍ତରିକ ସୌହାର୍ଦ୍ଦ୍ୟ ରହିଥିଲେ, ତାହା ସନ୍ତାନମାନଙ୍କର ଅନୁକୂଳ ବିକାଶରେ ଯଥେଷ୍ଟ ସହାୟକ ହୋଇଥାଏ ।"

କେତେକ ଅନୁଧ୍ୟାନରୁ ପ୍ରମାଣ ମିଳିଛି ଯେ ପରିବାରରେ ପିତାଙ୍କର ଉପସ୍ଥିତି ହିଁ ପିଲାମାନଙ୍କ ପାଇଁ ପ୍ରଶମକର କାର୍ଯ୍ୟ କରିଥାଏ । ନିଜର କର୍ମବ୍ୟସ୍ତତା ମଧ୍ୟରୁ ସମୟ ବାହାର କରି ବାପାମାନେ ସନ୍ତାନମାନଙ୍କ ଗହଣରେ ସମୟ କଟେଇବା ଶ୍ରେୟସ୍କର ।

'ମୋତେ ବିରକ୍ତ କରନା', 'ମାଆ ପାଖକୁ ଯା', 'ମୋର କାମ ଅଛି' – ଇତ୍ୟାଦି ବାକ୍ୟ ଶୁଣିବା ସନ୍ତାନମାନଙ୍କର ଆଦୌ ପସନ୍ଦ ନୁହେଁ । ବରଂ ସେମାନଙ୍କୁ ସାଥିରେ ଧରି ବାହାରକୁ ବୁଲିଯିବାରେ ପରବର୍ତ୍ତୀ ଜୀବନ ପାଇଁ ସନ୍ତାନମାନଙ୍କୁ ଯଥେଷ୍ଟ ପ୍ରତିଶ୍ରୁତି ମିଳିଥାଏ ।

ସନ୍ତାନମାନଙ୍କ ସହ ଆଚରଣ କଲାବେଳେ ବାପାମାନେ ନିଜର ପିଲାବେଳକୁ ମନେପକେଇଲେ ବହୁ ସମସ୍ୟା ଦୂରୀଭୂତ ହୋଇଯିବ । ପିଲାମାନଙ୍କର ଯେ ଏକ ସ୍ୱତନ୍ତ୍ର ଦୁନିଆ ଥାଏ, ସେମାନଙ୍କର ହାବଭାବ ଏବଂ ବ୍ୟବହାର ଯେ ଅନେକ ରହସ୍ୟ, ବିସ୍ମୟ ଏବଂ କୌତୁକରେ ଭରପୂର, ଏହା ସେମାନେ ହୃଦୟଙ୍ଗମ କରିବା ଉଚିତ । ସନ୍ତାନର ଚକ୍ଷୁରେ ଦୁନିଆକୁ ଦେଖିବାର ଅଭ୍ୟାସ ଜାରି ରଖିଲେ ସନ୍ତାନର ମାନସିକ ବିକାଶରେ ତାହା ସୁଦୂରପ୍ରସାରୀ ପ୍ରଭାବ ପକାଇଥାଏ । ସନ୍ତାନମାନଙ୍କ ପ୍ରଶ୍ନର ଯଥାଯଥ ଉତ୍ତର ଦେବା ଓ ସେମାନଙ୍କୁ ଯଥାର୍ଥ ଦିଗ୍‌ଦର୍ଶନ ଦେବାରେ ପିତାମାତାଙ୍କର ବିକଳ୍ପ ନାହିଁ ।

କେତେକ ପିତାମାତା ସନ୍ତାନମାନଙ୍କୁ ଶୃଙ୍ଖଳା ଶିକ୍ଷା ଦେବାପାଇଁ କୁଣ୍ଠିତ ହୋଇଥାନ୍ତି । କିନ୍ତୁ,ସେମାନେ ମନେ ରଖିବା ଉଚିତ ଯେ ଛୋଟ ପିଲାମାନଙ୍କର ମଧ୍ୟ ରହିଛି ଶୃଙ୍ଖଳାଜ୍ଞାନ । ସେମାନେ ମଧ୍ୟ ସମ୍ପୂର୍ଣ୍ଣ ସ୍ୱାଧୀନତା ଉପଭୋଗ କରିବା ପାଇଁ ଚାହାନ୍ତିନି । କିଛି ମାତ୍ରାର କଟକଣାକୁ ସେମାନେ ସ୍ୱାଗତ କରିଥାଆନ୍ତି । ଏପରିକି, ଯେଉଁ ଶିକ୍ଷକ ଶ୍ରେଣୀଗୃହରେ ଶୃଙ୍ଖଳା ରକ୍ଷା କରିବାରେ ଅକ୍ଷମ, ସେଭଳି ଶିକ୍ଷକଙ୍କୁ ଛାତ୍ରଛାତ୍ରୀମାନେ ଭଲ ଦୃଷ୍ଟିରେ ଦେଖିନଥାନ୍ତି ।

ପିଲାମାନଙ୍କୁ ଭଲ ମଣିଷ କରି ଗଢ଼ିବାର ଦ୍ୱାହି ଦେଇ କେତେକ ପିତା କଡ଼ା ଶୃଙ୍ଖଳା ଜାରି କରିବାରେ ଅଭ୍ୟସ୍ତ । କିନ୍ତୁ କଡ଼ା ଶୃଙ୍ଖଳା ହେଉଛି ସ୍ନେହ ପ୍ରଦର୍ଶନର ଏକ ପ୍ରତିକୂଳ ମାଧ୍ୟମ । ଶିଶୁ ଲାଳନପାଳନ ବିଶେଷଜ୍ଞ ଜେମ୍‌ସ୍ ଡବ୍‌ସନ୍‌ଙ୍କ ମତରେ, ‘‘ଶୃଙ୍ଖଳିତ କରିବାର ନାଆଁ ନେଇ ବାପାମାନେ ପ୍ରାୟତଃ ଦଣ୍ଡବିଧାନ କରିଥାନ୍ତି । କିନ୍ତୁ, ସେମାନେ ଜାଣିରଖିବା ଉଚିତ ଯେ ଶୃଙ୍ଖଳା ଆରୋପ କରାଯାଏ ‘ପିଲାପାଇଁ’, ହେଲେ ଦଣ୍ଡ ପ୍ରଦାନ କରାଯାଏ ‘ପିଲାକୁ’ । ଶୃଙ୍ଖଳା ହେଉଛି ସନ୍ତାନ ପାଇଁ ସ୍ନେହ ଶ୍ରଦ୍ଧାସିକ୍ତ ଏକ ସ୍ଥାୟୀ ଉପହାର । ଏହା କେବେ ବ୍ୟର୍ଥ ଯାଏନାହିଁ । ହେଲେ ଦଣ୍ଡପ୍ରଦାନ କୌଣସି ସୁଫଳ ଦେଇନଥାଏ ।’’

ସନ୍ତାନମାନଙ୍କୁ କଠିନ ଦଣ୍ଡ ପ୍ରଦାନ କଲେ ସେମାନେ ମିଛ କହିବା ଶିଖନ୍ତି । ନିଜର ପ୍ରିୟ ପିତାମାତାଙ୍କଠାରୁ ଦଣ୍ଡ ପାଇବା ଆଶା କରୁନଥିବାରୁ ସେମାନଙ୍କଠାରେ କ୍ରୋଧ ପ୍ରକାଶ ପାଏ ଏବଂ ଏହାର ପରିଣାମ ଆଦୌ ଶୁଭଙ୍କର ହୁଏନାହିଁ ।

ସନ୍ତାନମାନେ ବାପାମାନଙ୍କ ପାଇଁ ଏତେ ବ୍ୟଗ୍ରତା ପ୍ରକାଶ କରନ୍ତି କାହିଁକି ? ଏହାର କାରଣ କେବଳ ସନ୍ତାନମାନଙ୍କୁ ଜଣା । ଗୁରୁତର ବ୍ୟାଧିଗ୍ରସ୍ତ ପିଲାମାନଙ୍କ ଦାୟିତ୍ୱରେ ଥିବା ନାନ୍‌ସୀ କାରୋଥର୍‌ସ୍ ନାମ୍ନୀ ଜଣେ ନର୍ସ୍‌ଙ୍କର ଉକ୍ତି ଏଠାରେ ପ୍ରଣିଧାନ ଯୋଗ୍ୟ । ନିଜର ଅନୁଭୂତି ବଖାଣିବାକୁ ଯାଇ ସେ କହନ୍ତି, ‘‘ଅଧିକାଂଶ କ୍ଷେତ୍ରରେ ସେମାନଙ୍କର ଯନ୍ତ୍ରଣା ବଢ଼ିଗଲେ କି ମୃତ୍ୟୁ ସମୟ ପାଖେଇ ଆସିଲେ ସେହି ରୋଗଣା ପିଲାମାନେ ବ୍ୟାକୁଳ ହୋଇ ନିଜର ପିତାଙ୍କୁ ଖୋଜିଥା’ନ୍ତି । ମା’ଙ୍କୁ ଖୁବ୍ ଭଲ ପାଉଥିଲେ ମଧ୍ୟ ବାପାଙ୍କ ସାନ୍ନିଧ୍ୟ ପାଇବା ନିମନ୍ତେ ସେମାନେ ଜିଦ୍ ଧରନ୍ତି ।’’

‘‘ମା’ ଯେତେ ଯତ୍ନ ନେଲେ ଏବଂ ସୁଖସୁବିଧାରେ ରଖିଲେ ମଧ୍ୟ ପିଲାମାନେ ପିତାମାନଙ୍କ ଉପସ୍ଥିତିରେ ନିଜକୁ ସର୍ବାଧିକ ନିରାପଦ ଏବଂ ସୁରକ୍ଷିତ ମନେକରିଥାନ୍ତି ।’’

ଏହି ପରିପ୍ରେକ୍ଷୀରେ ଦେଖିଲେ, ସନ୍ତାନମାନଙ୍କ ଜୀବନରେ ପିତାଙ୍କର ବିକଳ୍ପ ନାହିଁ ।

କନ୍ନେକ୍ଟିକଟ୍ ବିଶ୍ୱବିଦ୍ୟାଳୟର ଗବେଷକ ଡକ୍ଟର୍ ରୋନାଲ୍ଡ୍ ପି. ରୋହନର୍ ଏବଂ ତାଙ୍କର ସହ-ଗବେଷକ ରବର୍ଟ୍ ଏ. ଭେନେଜିଆନୋ ଏକଶହ ସଂଖ୍ୟକ ଅନୁଧ୍ୟାନକୁ ଆଧାର କରି ମତ ଦେଇଛନ୍ତି ଯେ ବ୍ୟକ୍ତିତ୍ୱ, ଆଚରଣ, ଅପରାଧପ୍ରବଣତା ଏବଂ ମାଦକ ଦ୍ରବ୍ୟ ସେବନ ଇତ୍ୟାଦି କ୍ଷେତ୍ରରେ ସନ୍ତାନଠାରେ ଅନୁକୂଳ ପ୍ରଭାବ ପକାଇବାରେ ମାଆଙ୍କ ଅପେକ୍ଷା ପିତାଙ୍କର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ । ମାଆଙ୍କଠାରୁ ସ୍ନେହଶ୍ରଦ୍ଧା ପାଇବା କି ନପାଇବା ସନ୍ତାନର ବିକାଶକୁ ଯେଉଁଳି ଭାବରେ ପ୍ରଭାବିତ କରିଥାଏ, ପିତାଙ୍କଠାରୁ ସ୍ନେହଶ୍ରଦ୍ଧା ମିଳିବା କି ନମିଳିବା ଠିକ୍ ସମାନ ଭାବରେ ପ୍ରଭାବିତ କରିଥାଏ ସନ୍ତାନର ବିକାଶକୁ ।



# ନବଜାତକ

**ପ୍ର : ପ୍ରସବ ହେବାର ଠିକ୍ ପରେ ପରେ ଶିଶୁଟି କିପରି ଦେଖାଯାଇଥାଏ ?**

ଉ : ଏହା ସତରେ ଏକ ଭଲ ପ୍ରଶ୍ନ । କାରଣ, ଯେଉଁମାନେ ଡାକ୍ତରଖାନାରେ ପ୍ରସବ କରିଥାନ୍ତି, ପ୍ରସବ ପରେ ପରେ ଶିଶୁଟିର ଯତ୍ନ ନେଇଥାନ୍ତି ନର୍ସମାନେ । ମାଆର ଯାହା କେବଳ ଦୃଷ୍ଟି ପଡ଼ିଥାଏ ଶିଶୁଟି ଉପରେ । ପୁଅ ହୋଇଚି କି ଝିଅ ହୋଇଚି – ଏତିକି ମାତ୍ର ଜଣେଇଦେଲା ପରେ ବାକି ସବୁ ଦାୟିତ୍ୱ ତୁଲେଇଥାଆନ୍ତି ଡାକ୍ତରଖାନାର କର୍ମଚାରୀ । ଯେଉଁମାନେ ନିଜ ଘରେ ପ୍ରସବ କରିଥାନ୍ତି, ସେମାନେ ମଧ୍ୟ ସଦ୍ୟ ଭୂମିଷ୍ଠ ସନ୍ତାନର ଦାୟିତ୍ୱ ନନେଇ, ଦାୟିତ୍ୱ ନିର୍ବାହ କରିଥାନ୍ତି ପ୍ରସବ କରାଇଥିବା ଧାଈ କିମ୍ବା ବୟସ୍କା ନାରୀ ।

ସେ ଯାହାହେଉ, ଯେଉଁ ବାପମା' ନିଜର କୌଣସି ସନ୍ତାନକୁ କିମ୍ବା ଅନ୍ୟ କାହାର ସନ୍ତାନକୁ ଭୂମିଷ୍ଠ ହେବାମାତ୍ରେ ଦେଖିନାହାନ୍ତି, ସେମାନେ ଏଭଳି ଶିଶୁଟିକୁ ଦେଖିଲେ ହୁଏତ ନୈରାଶ୍ୟର ଶିକାର ହୋଇପାରନ୍ତି । କାରଣ, ସେତେବେଳେ ତା'ର ଚେହେରା ଆଦୌ ଆକର୍ଷଣୀୟ ହୋଇନଥାଏ । ତା'ର ଚମରେ ଲେସି ହୋଇ ରହିଥାଏ ମହମ ଭଳି ଦେଖାଯାଉଥିବା ଏକ ପ୍ରକାରର ନରମ ଧଳା ଜିନିଷ । ଏହାକୁ କୁହାଯାଏ 'ଗର୍ଭସ୍ନେହ' ବା 'ଭର୍‌ନିକ୍‌ସ୍' । ଏହା ତେଲିଆ ଏବଂ ସ୍ନେହସାରୀୟ ବା ଚର୍ବିଜାତୀୟ ଉପାଦାନ । ଏହାକୁ ସଫା କରି ନଦେଲେ, ଏହା ଧୀରେ ଧୀରେ ଚର୍ମ ଭିତରକୁ ଶୋଷିତ ହୋଇଯାଏ । ଏହାର ଉପସ୍ଥିତି ଯୋଗୁ ଚର୍ମରେ ଲାଲ୍ ଲାଲ୍ ହୋଇ ଫଳିଯିବାର ସମ୍ଭାବନା ରହେନାହିଁ । ତେବେ ଅନେକ କ୍ଷେତ୍ରରେ ତେଲ, ସାବୁନ ଲଗେଇ ନବଜାତକକୁ ଗାଧୋଇଦେବା ଦ୍ୱାରା ଉକ୍ତ ଗର୍ଭସ୍ନେହ ବାହାରିଯାଇ ଚର୍ମ ସଫା ହୋଇଯାଏ ।

ନବଜାତକର ଚର୍ମ ଦେଖାଯାଏ ଖୁବ୍ ଲାଲ୍ । ମୁହଁ ମାଲୁମ୍ ପଡ଼େ ଫୁଲିବା ଭଳି । ମୁଣ୍ଡଟି ସମ୍ପୂର୍ଣ୍ଣ ବର୍ତ୍ତୁଳାକାର ନହୋଇ ବଙ୍କାଡଙ୍କା ଦେଖାଯାଏ । କାରଣ, ମୁଣ୍ଡଟି ପ୍ରସବ ଦ୍ୱାର ଦେଇ ବାହାରିବା ବେଳେ ପ୍ରସବଦ୍ୱାର ଗଠନ କରିଥିବା ହାଡ଼ ଏବଂ ମାଂସର ଚାପ

ମୁଣ୍ଡ ଉପରେ ପଡ଼ିବା ସ୍ୱାଭାବିକ । ତେବେ, ଏହି ଚାପର ମାତ୍ରା କପାଳ ଆଡ଼କୁ କମ୍ ହୋଇ ପଛ ପଟକୁ ବେଶୀ ଅନୁଭୂତ ହୋଇଥାଏ । ତେଣୁ ମୁଣ୍ଡର ସାମନାପଟ ପ୍ରାୟତଃ ଚଟକା ରହି ପଛ ପଟଟା ହୋଇଥାଏ ସାମାନ୍ୟ ଗୋଜିଆ । ବୟସ୍କ ବ୍ୟକ୍ତିମାନଙ୍କର ଖପୁରିହାଡ଼ ସିନା ଟାଣ, କିନ୍ତୁ ପିଲାମାନଙ୍କ କ୍ଷେତ୍ରରେ ତାହା ଅପେକ୍ଷାକୃତ ନରମ । ସୁତରାଂ, ମୁଣ୍ଡ ଉପରେ ଚାପ ପଡ଼ିଲେ ଖପୁରି ହାଡ଼ ରବର ଭଳି ସାମାନ୍ୟ ଦବିଯାଏ ଓ କିଛିଦିନ ପରେ ପୁଣି ତାହା ସୁଧୁରିଯାଏ । ଖପୁରି ହାଡ଼ ନରମ ହୋଇଥିବାରୁ ପ୍ରସବ କାଳରେ ତାହା ଚାପି ହେଉଥିଲେ ମଧ୍ୟ ଖପୁରି ଭିତରେ ଥିବା ମସ୍ତିଷ୍କର କୌଣସି କ୍ଷତି ହୁଏନାହିଁ ।

ଜଣଜଣଙ୍କ କ୍ଷେତ୍ରରେ ପ୍ରସବ ସମୟରେ ମୁଣ୍ଡକୁ ଘୋଡ଼େଇ ରଖିଥିବା ଚର୍ମ ତଳେ ରକ୍ତସ୍ରାବ ହୋଇପାରେ । ଚର୍ମତଳେ ରକ୍ତ ଜମି ତାହା ଏକ ଆବୁ ଭଳି ଦେଖାଯାଏ । ଏହାକୁ କୁହାଯାଏ 'କେଫାଲୋହେମାଟୋମା' । ସେହି ରକ୍ତ ଆପେ ଆପେ ଚାଲିଯାଏ ସତ, କିନ୍ତୁ ଏଥିପାଇଁ ଅନ୍ତ କେଇ ସପ୍ତାହ ଲାଗିଯାଇପାରେ ।

ଜନ୍ମ ହେବାର ଅଳ୍ପ କେଇଦିନ ଭିତରେ ଶିଶୁଠାରେ ପ୍ରକାଶ ପାଇପାରେ ହଳଦିଆ କାମଳ ବା 'ଜଣ୍ଡିସ୍' । କାମଳ ପ୍ରକାଶ ପାଇଲେ ଶିଶୁର ଚର୍ମ ଏବଂ ଆଖିର ଧଳାଡୋଳା ଦେଖାଯାଏ ହଳଦିଆ । ତା'ର ପରିସ୍ରା ମଧ୍ୟ ହଳଦିଆ ହୁଏ । ସବୁ ପିଲାଙ୍କ କ୍ଷେତ୍ରରେ କାମଳ ଦେଖାଯାଏ ନାହିଁ । ଏ' ଧରଣର କାମଳ ପାଇଁ ବାପମା' ବ୍ୟସ୍ତ ହୋଇପଡ଼ିବାର କାରଣ ନାହିଁ । କିନ୍ତୁ, ଜନ୍ମ ହେବାର ପ୍ରଥମ ଦିନ କାମଳ ପ୍ରକାଶ ପାଇଲେ କିମ୍ବା ଶିଶୁଟି ଗାଢ଼ ହଳଦିଆ ଦେଖାଯାଉଥିଲେ ତୁରନ୍ତ ଡାକ୍ତରଙ୍କ ସହ ପରାମର୍ଶ କରିବା ନିରାପଦ । ନବଜାତକଠାରେ ପ୍ରକାଶ ପାଉଥିବା କାମଳ ପ୍ରାୟତଃ କ୍ଷତିକାରକ ନୁହେଁ । ତଥାପି, ସ୍ଥଳ ବିଶେଷରେ ଏହା ଶିଶୁପାଇଁ କ୍ଷତିକାରକ ସାବ୍ୟସ୍ତ ହୋଇପାରେ ।

ତାହାଛଡ଼ା ଶିଶୁର ମଳଦ୍ୱାର ଉପରକୁ, ଦୁଇ ପିଚାର ମଝିଆମଝି ସ୍ଥାନରେ ଚର୍ମ ସାମାନ୍ୟ ନେଳିଆ ଦେଖାଯାଇପାରେ । ଏହା ଧୀରେ ଧୀରେ ମନକୁମନ ଚାଲିଯାଏ । ତେଣୁ, ସେଥିପାଇଁ ବ୍ୟସ୍ତ ହେବେନାହିଁ ।

ନବଜାତ ଶିଶୁର ସାରା ଦେହରେ ରହିଥାଏ କୋମଳ କହରା ଲୋମ । ଏହି ଲୋମକୁ କୁହାଯାଏ 'ଗର୍ଭଲୋମ' ବା 'ଲାନୁଗୋ' । ଏହି ଲୋମଗୁଡ଼ିକ ପ୍ରାୟ ଗୋଟିଏ ସପ୍ତାହ ଭିତରେ ଖସିପଡ଼େ । ଦୁଇ ତିନି ସପ୍ତାହ ଧରି କଅଁଳା ପିଲାଙ୍କ ଚମରୁ କାତି ଛାଡ଼େ । ସେହି କାତିଗୁଡ଼ିକ ଆପେ ଆପେ ଝଡ଼ିଯାଏ ।

ଜନ୍ମ ହେବା ବେଳକୁ କେଉଁ ଶିଶୁର ମୁଣ୍ଡରେ ବିଶେଷ କେଶ ନଥାଏ ତ ଆଉ କାହା ମୁଣ୍ଡରେ ଥାଏ ଗହଳ କେଶ । ପୁଣି କାହାର କେଶ କଳା ତ ଅନ୍ୟ କାହାର କହରା । ନବଜାତକଟିର ମୁଣ୍ଡରେ ଥିବା କେଶ ଯେପରି ହୋଇଥାଉ କି ଯେଉଁ ରଙ୍ଗର ହୋଇଥାଉ ପଛେ, ତାହା କ୍ରମେ ଖସିପଡ଼ି ସଅଳ କି ବିଳମ୍ବରେ ନୂଆ କେଶ ଗଜୁରିଥାଏ । ଏହି କେଶ ସବୁ ଦିଗରୁ ପ୍ରଥମ କେଶଠାରୁ ଭିନ୍ନ ହେବାରେ ଅସ୍ୱାଭାବିକତା କିଛି ନାହିଁ ।

**ପ୍ର : କଅଁଳା ପିଲାମାନେ କ'ଣ ଦୁର୍ବଳ ?**

ଉ : ସାଧାରଣତଃ ପିତାମାତାଙ୍କର ଧାରଣା ଯେ ନବଜାତକମାନେ ଅତି ଦୁର୍ବଳ ଏବଂ କ୍ଷୀଣ । ଏଇଆ ଭାବି ନେଇ ପିଲାଙ୍କୁ ଧରାଧରି କରିବା ନିମନ୍ତେ ସେମାନେ ଭୟ କରିଥାନ୍ତି । ମାଆମାନେ କହୁଥିବାର ଶୁଣାଯାଏ, ''ତାକୁ ଧରିବା ପାଇଁ ମୋତେ ବଡ଼ ଡର ମାଡୁଛି । ମୁଁ ତାକୁ ଠିକ୍ ଭାବରେ ଧରାଧରି କରି ନପାରିଲେ ତା'ର ହାଡ଼ ଭାଙ୍ଗିଯିବ କାଳେ !'' ବିଶେଷ କରି ପ୍ରଥମ ସନ୍ତାନ କ୍ଷେତ୍ରରେ ମାଆ ମନରେ ଏହିଭଳି ଭୟ ରହିଥାଏ ଏବଂ ଏହା ସେମାନଙ୍କ କ୍ଷେତ୍ରରେ ସ୍ୱାଭାବିକ ମଧ୍ୟ ।

କିନ୍ତୁ ଏଥିପାଇଁ ଆଦୌ ଡରନ୍ତୁନାହିଁ କି ଚିନ୍ତା କରନ୍ତୁନାହିଁ । କଅଁଳା ପିଲାଟି ଦେଖିବାକୁ ସିନା କଅଁଳା ଆଉ ପତଳା, ହାତକୁ ସିନା ସେ ନରମ ଲାଗେ, ହେଲେ ସେ ବେଶ୍ ଟାଣୁଆ । ତେବେ, ପିଲାଙ୍କୁ ଧରାଧରି କରିବାର ବିଭିନ୍ନ ଉପାୟ ରହିଛି । ତାକୁ ଧରିବା ବେଳେ ସମୟ ସମୟରେ ତା'ର ମୁଣ୍ଡ ଭୁଲ୍‌ବଶତଃ ପଛ ପଟକୁ ଓହଳି ଯାଇଥାଏ । କଅଁଳା ପିଲା ତା' ମୁଣ୍ଡକୁ ସିଧା ରଖିବାରେ ଅକ୍ଷମ ହୋଇଥିବାରୁ ଏଭଳି ପରିଣତି ଉପୁଜେ । ତେବେ, ମୁଣ୍ଡ ପଛକୁ ବାଙ୍କିଗଲେ ସେଥିପାଇଁ ଆତଙ୍କିତ ହୋଇପଡ଼ନ୍ତୁ ନାହିଁ । ଏହା ତା'ର କୌଣସି କ୍ଷତି କରିବନି ।

ନବଜାତ ଶିଶୁର ମୁଣ୍ଡ ଉପରେ ହାତ ମାରନ୍ତୁ । ମୁଣ୍ଡ ଉପରେ ସାମାନ୍ୟ ଦବି କରି ରହିଥିବା ଏକ ନରମ ଅଂଶ ଆପଣ ଅନୁଭବ କରିପାରିବେ । ତା'କୁ ଗାଉଁଲି ଭାଷାରେ ଦୁକୁଦୁକି ବୋଲି କହିଥାନ୍ତି । ଡାକ୍ତରମାନେ ତା'ର ନାଁ ରଖିଛନ୍ତି ଫୋଣ୍ଟାନେଲ୍ଲି । ମୁଣ୍ଡର ଶୀର୍ଷସ୍ଥ ସେହି ସ୍ଥାନରେ ଖପୁରି ହାଡ଼ର ବିକାଶ ହୋଇନଥିବାରୁ ତାହା ଖୋଲା ଥାଏ ଓ ସେହି ଖୋଲା ସ୍ଥାନକୁ ଘୋଡ଼େଇ ରଖିଥାଏ ଏକ ଟାଣୁଆ ପରଦା । ପରଦାଟି ଏତେ ଟାଣ ଯେ ତାହା ସହଜରେ କ୍ଷତିଗ୍ରସ୍ତ ହୁଏନି । ଶିଶୁର ବୟସ ବଢ଼ିଚାଲିଲେ ଦୁକୁଦୁକିର ଚାରିଆଡୁ ହାଡ଼ର ବିକାଶ ଘଟି ସେହି ଖୋଲା ସ୍ଥାନଟି ହାଡ଼ରେ ଘୋଡ଼େଇ ହୋଇଯାଏ । କଅଁଳା ପିଲାର ଝାଡ଼ାବାନ୍ତି ହୋଇ ତା' ଦେହରୁ ଜଳୀୟ ଅଂଶ ବାହାରିଗଲେ ଦୁକୁଦୁକି

ଭିତରକୁ ପଶିଯାଇ ସେହି ଜାଗାଟି ଖାଲୁଆ ହୋଇଯାଏ ଏବଂ ଶିଶୁର ଚିକିତ୍ସା କରି ଜଳୀୟ ଅଂଶର ଭରଣା କରିଦେଲେ ଦୁକୁଦୁକି ପୁଣି ତା'ର ପୂର୍ବାବସ୍ଥାକୁ ଫେରିଆସେ ।

ତା'ର ଶରୀର ଓଜନ ସାଢ଼େ ତିନି କିଲୋଗ୍ରାମ୍ ପାଖାପାଖି ହୋଇଗଲେ ଶରୀରର ତାପମାତ୍ରା ରକ୍ଷା କରିବାରେ ତା'ର ନିୟନ୍ତ୍ରଣ ଆସିଯାଏ । ସେତେବେଳକୁ ଶରୀରର ପ୍ରାକୃତିକ ତାପମାତ୍ରା ନିୟନ୍ତ୍ରଣକାରୀ ବ୍ୟବସ୍ଥା ସୁରୁଖୁରୁରେ କାମ ଆରମ୍ଭ କରିଦିଏ । କିନ୍ତୁ, ତାହା ପୂର୍ବରୁ ଶିଶୁ ପାଇଁ ସୁରକ୍ଷା ଲୋଡ଼ା । ବିଶେଷ କରି ଶୀତଦିନେ ତାକୁ ଘୋଡ଼େଇ ଘାଡ଼େଇ ରଖିବା ନିହାତି ଜରୁରୀ ।

କଅଁଳା ପିଲା ହେଲେ ମଧ୍ୟ ଅଧିକାଂଶ ଜୀବାଣୁ ଭୂତାଣୁକୁ ପ୍ରତିହତ କରିବାର ଶକ୍ତି ରହିଥାଏ ତାହାଠାରେ । ଏପରିକି, ମା'ଆକୁ ସର୍ଦ୍ଦି ହେଲେ ବି ଶିଶୁଠାରେ ତାହା ତୀବ୍ର ଭାବରେ ପ୍ରକାଶ ପାଏନାହିଁ । ତାହାଛଡ଼ା, ତା'ର ଅସ୍ୱସ୍ତିକୁ କ୍ରନ୍ଦନ ମାଧମରେ ଜଣାଇଦେବା ନିମନ୍ତେ ସେ ସର୍ବଦା ତତ୍ପର । ତା'ର ହାତ କି ଗୋଡ଼ କନାରେ ଛନ୍ଦି ହୋଇଗଲେ ସେ ଚିତ୍କାର ଛାଡ଼େ । ତା' ପେଟ ନ ପୂରିଲେ, 'ଆହୁରି ଖାଇବି' ବୋଲି କାନ୍ଦ କରିଆରେ ଜଣେଇଦିଏ ସେ । ତା' ଆଖିରେ ଉଜ୍ଜ୍ୱଳ ଆଲୋକ ପଡ଼ିଲେ ସେ ଆଖି ମିଟିମିଟି କରେ ଏବଂ ରଡ଼ି କରିପାରେ ମଧ୍ୟ ।

କେତେ ସମୟ ଧରି ଶୋଇବା ଉଚିତ, ତାହା ତାକୁ ଭଲ ଭାବରେ ଜଣା । ତେଣୁ, ଶୋଇଯିବାରେ ସେ ଆଦୌ ହେଳା କରେନି ।

ସବୁଠାରୁ ବିସ୍ମୟକର କଥା ହେଉଛି ଯେ ନବଜାତ ଶିଶୁଟି ପଦେ କଥା କହି ପାରେନି । ସଂସାରର ଲୀଳାଖେଳା ବିଷୟରେ ସେ ସମ୍ପୂର୍ଣ୍ଣ ଅଜ୍ଞ । ଏହା ସତ୍ତ୍ୱେ, ସେ ନିଜେ ନିଜର ବେଶ୍ ହେପାଜତ କରିପାରେ !



# ଶିଶୁ ଯୋଗୁ ଖୁସି

**''ପରିବାରରେ ଶିଶୁଟିଏ ହେଉଛି ଆନନ୍ଦର ଝରଣା, ଶାନ୍ତି ଏବଂ ପ୍ରେମର ଦୂତ, ସେ ହିଁ ସଂସାରରେ ସରଳତାର ନୀଡ଼ ଏବଂ ଦେବତା ଓ ମାନବ ମଧ୍ୟରେ ଯୋଗସୂତ୍ର ।''**

**–ମାର୍ଟିନ୍ ଫାର୍‌କ୍ୟୁହର୍ ଟ୍ୟୁପର୍**

**ପ୍ର : ଶିଶୁଟିଏ ଜନ୍ମ ନେଲେ ଜଞ୍ଜାଳ ବଢ଼ିଯାଏନି ?**

ଉ : ଯେଉଁ କାମରୁ ଆମେ ତୃପ୍ତି ପାଉନା, ଯେଉଁ କାମ ଆମକୁ ଆନନ୍ଦ ଦେଇ ପାରେନା, ସେହିଭଳି କାମ ଆମକୁ 'ଜଞ୍ଜାଳ' ବୋଲି ମାଲୁମ୍ ପଡ଼ିଥାଏ । ସେଭଳି କାମ କରିବାରେ ଆମେ ବିରକ୍ତି ଅନୁଭବ କରିଥାଉ । କିନ୍ତୁ, ନିଜ ପିଲାମାନଙ୍କର ଲାଳନପାଳନ ଏକ ବିରକ୍ତିକର କାର୍ଯ୍ୟ ନୁହେଁ । କେହି କେହି କହିଥାନ୍ତି ଯେ 'ଶିଶୁଟି ଜନ୍ମ ନେଲା ପରେ ପରେ ସେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରେ । ବାପମା'ଙ୍କଠାରୁ ସେବା ଦାବି କରେ । ବାପମା'ଙ୍କୁ ତା' ମର୍ଜି ଅନୁସାରେ ନଚେଇଥାଏ । ଏଭଳି ଧାରଣା ଆଦୌ ଠିକ୍ ନୁହେଁ । ଶିଶୁ ହେଉଛି ପରିବାରର ଜଣେ ବିଶିଷ୍ଟ ବ୍ୟକ୍ତି । ସେ ଭାରି ବିଚାରବନ୍ତ । ଖୁବ୍ ମିତ୍ର-ଭାବାପନ୍ନ ମଧ୍ୟ ।

ତାକୁ ଖୁଆଇବା ପାଇଁ ଆପଣଙ୍କୁ ଡର ମାଡୁଛି ? ଜମା ଡରନ୍ତୁନି । ତାକୁ ଭୋକ କରିବଣି ବୋଲି ଆପଣ ଯେତେବେଳେ ଭାବିବେ, ଖୁଆଇବା ପାଇଁ ବସିଯିବେ । 'ମୋତେ ଭୋକ ଲାଗୁଚି' ବୋଲି ସେ ତ କହିପାରିବନି । ତେଣୁ, ଆପଣ ନିଜ ନିଷ୍ପତ୍ତି ଅନୁସାରେ ତାକୁ ଖୁଆଇବା ଆରମ୍ଭ କରନ୍ତୁ । ତାକୁ ଭୋକ କରିନଥିଲେ କି ଖାଇବା ପାଇଁ ତା'ର ଇଚ୍ଛାନଥିଲେ, ସେ ତ ଖାଦ୍ୟକୁ ପାଟିରେ ନେବନି । ତେଣୁ ଏଥିରେ ଅସୁବିଧା କେଉଁଠି ?

ତାକୁ ସ୍ନେହଶ୍ରଦ୍ଧା ଦେବାରେ ବି ଭୟ କରନ୍ତୁନି । କେମିତି ସ୍ନେହ କରିବେ, କେମିତି ପ୍ରେମ ଦେବେ ଏବଂ ତା'ର ଉପସ୍ଥିତିକୁ କିପରି ଉପଭୋଗ କରିବେ, ଏହା କ'ଣ ବାପମା'ଙ୍କୁ

ବଢେଇବାକୁ ପଡ଼ିବ ? ସବୁ ଶିଶୁଙ୍କ ଇଚ୍ଛା ଯେ ଅନ୍ୟମାନେ ତାଙ୍କୁ ଦେଖି ମୁରୁକିହସା ଦିଅନ୍ତୁ, ତାଙ୍କ ସହ କଥାବାର୍ତ୍ତା କରନ୍ତୁ, ତାଙ୍କ ସାଙ୍ଗରେ ଖେଳନ୍ତୁ, ତାଙ୍କୁ ଗେଲ କରନ୍ତୁ । ହେଲେ, ଏସବୁ କରନ୍ତୁ ଧୀରେ ଧୀରେ, ଶ୍ରଦ୍ଧା ଭରେ । ତା'ର ବୃଦ୍ଧି ଏବଂ ବିକାଶ ପାଇଁ ଖାଦ୍ୟ ଉପାଦାନ ଯେପରି ଅପରିହାର୍ଯ୍ୟ ସେହିପରି ଅପରିହାର୍ଯ୍ୟ ସ୍ନେହ, ପ୍ରେମ, ଶ୍ରଦ୍ଧା, ଗେଲ ଇତ୍ୟାଦି । ତାହାଠାରେ ଆପଣ ଯଦି ଏହି ଧରଣର ପୁଞ୍ଜି ଖଟେଇବେ, ତେବେ ସେ ଜୀବନରେ ମଜା ନେବାକୁ ଶିଖିବ । ଶିଖିବ ଅନ୍ୟମାନଙ୍କୁ ଭଲ ପାଇବା ପାଇଁ । ଯେଉଁ ପିଲା ତା'ର ବାପମା' ଏବଂ ଆତ୍ମୀୟମାନଙ୍କଠାରୁ ସ୍ନେହଶ୍ରଦ୍ଧା ପାଇନଥାଏ, ବଡ଼ ହୋଇଗଲା ପରେ ସେ ସର୍ବଦା ଉଦାସୀନ ରହେ । ଅନ୍ୟମାନଙ୍କ ପ୍ରତି ସେ ସହାନୁଭୂତିଶୀଳ ହୋଇପାରେନି ।

ତା'ର ଅନ୍ୟ ପ୍ରକାରର ଇଚ୍ଛା ଏବଂ ଅଳି ଅର୍ଦଳିକୁ ଦେଖି ଶଙ୍କିତ ହୋଇପଡ଼ନ୍ତୁନି । ତା'ର ଯେଉଁ 'ଦାବି' ଆପଣଙ୍କ ମନକୁ ପାଇବ, ତାକୁ ପୂରଣ କରିବେ । ଯେଉଁ ଦାବି ମନକୁ ଯିବନି, ତାକୁ ପୂରଣ କରିବେନି । ସବୁବେଳେ ତା' ବୋଲରେ ନାଚିବେନି । ଜନ୍ମ ହେବାର ପ୍ରଥମ କିଛି ସପ୍ତାହ ପର୍ଯ୍ୟନ୍ତ ସେ ବିଶେଷ କନ୍ଦାକଟା କରିପାରେ । କାରଣ, ତା' ପାଇଁ ଆମ ପରିବେଶଟା ପୂରାପୂରି ନୂଆ । ତେଣୁ ନାନା କାରଣ ଯୋଗୁ ସେ ଅସ୍ୱସ୍ତି ଅନୁଭବ କରିଥାଏ । ସେ ଭୋକ କଲେ କାନ୍ଦେ, ପେଟ ଭଲ ନ ଲାଗିଲେ କାନ୍ଦେ, କାନ୍ଦେ କ୍ଳାନ୍ତ ଲାଗିଲେ କି ଆରାମ ଅନୁଭବ କରି ନପାରିଲେ । ବିଛଣାରେ ପରିସ୍ରା କରି ପକେଇଲେ ମଧ୍ୟ କାନ୍ଦିଥାଏ ସେ । ଏହା ଅବଶ୍ୟ ସତ ଯେ ପିଲାର କାନ୍ଦ ଆପଣଙ୍କ କାନରେ ବାଜିବା ମାତ୍ରେ ଆପଣଙ୍କ ମାନସିକ ଚାପ ବଢ଼ିଯାଏ । ତା' କାନ୍ଦର ପ୍ରତିକାର କରିବାର ସମସ୍ୟା ଆପଣଙ୍କଠାରେ ଜାତ କରେ ଅସ୍ୱସ୍ତି । କିନ୍ତୁ, ଏହା ପ୍ରତି ଆପଣ ପ୍ରତିକ୍ରିୟା ପ୍ରକାଶ କରିବା ଉଚିତ ନୁହେଁ । ବାପମା'ମାନେ ଛୋଟ ଶିଶୁର କେତେକ ସମସ୍ୟାକୁ ସ୍ୱାଭାବିକ ବୋଲି ଧରିନେଲେ, ସେମାନଙ୍କର ମାନସିକ ଶାନ୍ତି ବ୍ୟାହତ ହେବାର ସମ୍ଭାବନା ରହିବନି । ପିଲାର କାନ୍ଦ ଶୁଣି ଆଦୌ ବ୍ୟତିବ୍ୟସ୍ତ ହୋଇପଡ଼ିବେନି । ପରିସ୍ରାରେ ଓଦା ହୋଇଯାଇଥିବା କନା ବଦଳେଇ ଦେଲେ କିଏ ଶାନ୍ତ ହୋଇଯାଏ ତ ଅନ୍ୟ କାହାକୁ କୋଳ କଲେ କି ଦୋଳିରେ ଝୁଲେଇଲେ ସେ ଚୁପ୍ ହୋଇଯାଏ । ଅନ୍ୟ କାହା ପାଇଁ ଖୁଆଇବା ଦରକାର ପଡ଼ିପାରେ ।

ମନେରଖନ୍ତୁ ଯେ ସନ୍ତାନପ୍ରତି ସ୍ନେହଶୀଳ ଏବଂ ଶ୍ରଦ୍ଧାଶୀଳ ହେଲେ ସନ୍ତାନ ନଷ୍ଟ ହୋଇଯାଏନି । ତେବେ, ଏହା ନିଜର ବିଚାରବୁଦ୍ଧି ଏବଂ ବିବେକର ଅନୁମୋଦନ ପାଇବା ଦରକାର । କୌଣସି ପିଲା ହଠାତ୍ ବି ବିଗିଡ଼ି ଯାଇନଥାଏ । ନିଜର ବିଚାରବୁଦ୍ଧି ନ ଖଟେଇ ଓ ନିଜର ସାଧାରଣ ଜ୍ଞାନ ନ ଖଟେଇ ଯେଉଁ ବାପମା'ମାନେ ସନ୍ତାନମାନଙ୍କୁ ଭୟ କରିବା ଆରମ୍ଭ କରିଦିଅନ୍ତି ଏବଂ ସନ୍ତାନମାନଙ୍କ ଇଙ୍ଗିତରେ ଉଠ୍‌ବସ୍ ହୁଅନ୍ତି, ସେହିଭଳି ସନ୍ତାନ ହିଁ ଅସାମାଜିକ ହୋଇ ଉଠିବାର ସମ୍ଭାବନା ବେଶୀ ।

ଶିଶୁଟି ସ୍ୱାସ୍ଥ୍ୟବାନ୍ ହେଉ ଏବଂ ସେ କୌଣସି ଜଞ୍ଜାଳ ସୃଷ୍ଟି ନକରୁ ବୋଲି ସବୁ ବାପମା' କାମନା କରିଥା'ନ୍ତି । ତେବେ, ବାପମା'ମାନେ ହିଁ ତାକୁ ଖାଇବାର ଅଭ୍ୟାସ, ମଳମୂତ୍ର ତ୍ୟାଗ କରିବାର ଅଭ୍ୟାସ ଏବଂ ଶୋଇବାର ଅଭ୍ୟାସ ଶିଖାଇବା ଦରକାର । ପ୍ରଥମେ ପ୍ରଥମେ ଏହା କଷ୍ଟକର ମାଲୁମ୍ ପଡ଼ିଥାଏ । କିନ୍ତୁ, ଧୀରେ ଧୀରେ ସେ ସବୁକଥା ଶିଖିନିଏ । ଏପରିକି, ପରିବାରର ଚଳଣି ଓ ଧାରାକୁ ମଧ୍ୟ ଆପଣେଇ ନିଏ । ତଥାପି, ଏ' ଦିଗରେ ତାକୁ ମନେଇବା ପିତାମାତାଙ୍କର ଦାୟିତ୍ୱ ।

ହଁ, ଆଉ ଗୋଟିଏ କଥା । ଆପଣଙ୍କ ସନ୍ତାନକୁ ଅନ୍ୟମାନଙ୍କ ସନ୍ତାନ ସହ ତୁଳନା କରି ସେ 'ଭଲ' କି 'ମନ୍ଦ', ତାହା ବିଚାର କରିବେନି । ଆପଣଙ୍କ ସନ୍ତାନ ଯଦି କହିପାରେ ଯେ ତା'ର ବାପମା' ହେଉଛନ୍ତି ସଂସାରର ସବୁଠାରୁ ଭଲ ବାପମା', ତେବେ ଆପଣ କାହିଁକି ଦାବି କରିବେନି ଯେ ଆପଣଙ୍କ ସନ୍ତାନ ହିଁ ସର୍ବୋତ୍କୃଷ୍ଟ ତଥା ସର୍ବୋତ୍ତମ ? ଆପଣଙ୍କ ସନ୍ତାନଟିକୁ ଯେଉଁ ପ୍ରକାରେ ଗଢ଼ି ପ୍ରକୃତି ଆପଣଙ୍କ ହାତରେ ଟେକି ଦେଇଛି, ଆପଣ ତାକୁ ସେହି ପ୍ରକାରେ ଗ୍ରହଣ କରିନିଅନ୍ତୁ । ମନରେ କୌଣସି ଖଟକା ନରଖି ସନ୍ତାନଟିକୁ ଗ୍ରହଣ କରିନେଲେ, ସେ ସବୁଠାରୁ ଭଲପିଲା ହିସାବରେ ବିକାଶ ଲାଭ କରି ପାରିବ ।

ପ୍ରତି ପିଲା ଦେଖିବାକୁ ଭିନ୍ନ । ସେହିପରି ପ୍ରତ୍ୟେକ ଶିଶୁର ବୃଦ୍ଧି ଏବଂ ବିକାଶର ହାର ମଧ୍ୟ ଅଲଗା । କେଉଁ ପିଲା ଚଞ୍ଚଳ ଚଞ୍ଚଳ ବସି ଶିଖେ, ଚଞ୍ଚଳ ଠିଆ ହୁଏ, ଚଞ୍ଚଳ ଚାଲେ । ହୋଇଥାଏ ମୋଟାସୋଟା । ଅଙ୍ଗଭଙ୍ଗୀ ଏବଂ ଶରୀର ଚାଳନାରେ ତାହାଠାରେ ଆଗରୁ ସମନ୍ୱୟ ପ୍ରକାଶ ପାଇପାରେ । ଏହିସବୁ ଶାରୀରିକ୍ ଉନ୍ନତି ସତ୍ତ୍ୱେ, ସେ ହୁଏତ ଭଲ ଭାବରେ ଅଙ୍ଗୁଳି ଚାଳନା କରି ନପାରେ । ଠିକ୍ ସମୟରେ କଥା କହି ନପାରେ ହୁଏତ । ଏପରି ବି କେତେକ ପିଲା ଅଛନ୍ତି, ଯେଉଁମାନେ ପେଟେଇବା, ବସିବା, ଗୁରୁଣ୍ଡିବା ଏବଂ ଠିଆହେବା କାମ ସୁରୁଖୁରୁରେ

କରି ଦେଇଥାନ୍ତି, ହେଲେ ସେମାନଙ୍କଠାରେ ଚାଲିଶିଖିବା ବିଳମ୍ବିତ ହୋଇଯାଏ । ଶାରୀରିକ ବିକାଶ ଆଶାନୁରୂପ ରହି ମଧ୍ୟ ଜଣଜଣଙ୍କଠାରେ ଡେରିରେ ଦାନ୍ତ ଉଠିଥାଏ । ଏପରିକି, ବିଳମ୍ବରେ କଥା କହି ଶିଖିଥିବା ପିଲା ଜଣେ ମେଧାବୀ ଛାତ୍ର ରୂପେ ବିକାଶ ଲାଭ କରିପାରେ ତ ଚଞ୍ଚଳ କଥା କହି ଶିଖିଥିବା ପିଲା ପାଠପଢ଼ାରେ ବିଶେଷ କୃତିତ୍ୱ ପ୍ରଦର୍ଶନ ନ କରିପାରେ ।

ଜାଣି ରଖିବା ମଧ୍ୟ ଦରକାର ଯେ ଜଣେ ଜଣେ ଶିଶୁ ଲମ୍ବା ଏବଂ ଟାଣୁଆ ହାଡ଼ ନେଇ ଜନ୍ମ ନେଇଥାଆନ୍ତି ତ ଅନ୍ୟ ଜଣଜଣଙ୍କର ହାଡ଼ଗୁଡ଼ିକ ଥାଏ ଛୋଟ ଏବଂ କୋମଳ । ଜନ୍ମବେଳେ ଜଣଜଣଙ୍କ ଦେହରେ ଅପେକ୍ଷାକୃତ ବେଶୀ ଚର୍ବି ରହିଥିବା ମଧ୍ୟ ଅସମ୍ଭବ ନୁହେଁ । ଏଭଳି ପିଲା ଅସୁସ୍ଥ ହୋଇ ତା'ର ଦେହ ଭାଙ୍ଗିଗଲେ, ଅଳ୍ପ ସମୟ ଭିତରେ ତା' ଦେହ ଲାଗି ସେ ସୁସ୍ଥ ହୋଇପଡ଼େ । ସେମାନେ ଖାଇବା ପାଇଁ ବେଶ୍ ରୁଚି ଦେଖେଇ ଥାଆନ୍ତି ଏବଂ ବିଭିନ୍ନ ପଦାର୍ଥ ଖାଇବାରେ ଆନନ୍ଦ ପାଇଥା'ନ୍ତି । ଅନ୍ୟ ପକ୍ଷରେ, ଏପରି କେତେକ ପିଲା ଥାଆନ୍ତି ଯେଉଁମାନେ ଭଲ ଧରଣର ପୁଷ୍ଟିକର ଖାଦ୍ୟ ଖାଇବା ସତ୍ତ୍ୱେ, ସେମାନଙ୍କର ଦେହରେ ଲାଗେ ନାହିଁ । ସେମାନେ ହୋଇଥାନ୍ତି ବେଶ୍ ପତଳା ବା କ୍ଷୀଣକାୟ । ତଥାପି, ଦୈନନ୍ଦିନ ଜୀବନ ଯାତ୍ରାରେ ସେମାନେ କୌଣସି ସମସ୍ୟାର ସମ୍ମୁଖୀନ ହୋଇନଥାନ୍ତି ।

ତେଣୁ, ଆପଣଙ୍କ ସନ୍ତାନଟି ଯେପରି, ଆପଣ ତାକୁ ସେହିପରି ଭାବରେ ଗ୍ରହଣ କରିନିଅନ୍ତୁ । ସେ ଯେମିତି ଦେଖାଯାଉ କି ଯାହା କରୁ ପଛେ, ତା' ଉପରେ ସ୍ନେହଶ୍ରଦ୍ଧା ଅଜାଡ଼ି ପକାଇବାରେ ଆଦୌ କାର୍ପଣ୍ୟ କରନ୍ତୁ ନାହିଁ । ତାହାଠାରେ ଯେଉଁ ଯେଉଁ ଗୁଣ ଅଛି, ସେହି ଗୁଣ ସବୁକୁ ଆଦର କରି ଶିଖନ୍ତୁ ଏବଂ ଯେଉଁ ଯେଉଁ ଗୁଣର ଅଭାବ ରହିଛି, ସେ ବିଷୟରେ ମୁଣ୍ଡ ଖେଳାନ୍ତୁ ନାହିଁ । କୌଣସି ଭାବପ୍ରବଣତାର ଶିକାର ହୋଇ ଆପଣଙ୍କୁ ଏହି ପରାମର୍ଶ ଦିଆଯାଉନାହିଁ । ବରଂ, ଏହା ଏକ ବାସ୍ତବବାଦୀ ସକାରାତ୍ମକ ପରାମର୍ଶ । ଯେଉଁ ପିଲାମାନେ ବାପମା'ଙ୍କଠାରୁ ଆଦର ଯତ୍ନ ଏବଂ ପ୍ରଶଂସା ତଥା ଭରସା ପାଇଥାନ୍ତି, ସେମାନଙ୍କଠାରେ ଆତ୍ମବିଶ୍ୱାସ ଏବଂ ମନରେ ପ୍ରଫୁଲ୍ଲ ଭାବ ଜାଗ୍ରତ ହେବାର ସମ୍ଭାବନା ବେଶୀ । ସେମାନଙ୍କ ଜୀବନରେ ଯେଉଁସବୁ ସୁଯୋଗ ଆସିଥାଏ, ସେମାନେ ତା'ର ସଦୁପଯୋଗ କରିବାର ମାନସିକତା ହାସଲ କରିଥାନ୍ତି । ପ୍ରତିକୂଳ ପରିସ୍ଥିତିକୁ ମଧ୍ୟ ଅତି ହାଲୁକା ଭାବେ ଗ୍ରହଣ କରି ତା'ର ସଫଳ ମୁକାବିଲା କରିପାରନ୍ତି ।

ଅପର ପକ୍ଷରେ, ଯେଉଁ ସନ୍ତାନମାନେ ବାପମା'ଙ୍କ ସ୍ନେହଶ୍ରଦ୍ଧା, ଆଦର ଯତ୍ନ, ଏବଂ ପ୍ରଶଂସା ପାଇବାରୁ ବଞ୍ଚିତ, ସେମାନେ ନିଜକୁ ଅସହାୟ ମନେ କରିଥାନ୍ତି । ନିଜର କୌଣସି କିଛି ତ୍ରୁଟି ରହିଯାଇଛି ଭାବି ଅନୁଶୋଚନାରେ ଘାରି ହୋଇଥାନ୍ତି । ତେଣୁ, ସେମାନଙ୍କଠାରେ ଆତ୍ମବିଶ୍ୱାସର ଯଥାର୍ଥ ବିକାଶ ହୋଇପାରେ ନାହିଁ । ଫଳରେ, ସେମାନଙ୍କ ଶାରୀରିକ ଆକର୍ଷଣ, ସେମାନଙ୍କ ମସ୍ତିଷ୍କର ସାମର୍ଥ୍ୟ ଏବଂ ସେମାନଙ୍କ କୃତିରୁ ସେମାନେ ବିଶେଷ ଫାଇଦା ଉଠେଇ ନ ପାରିବାରେ ଅସ୍ୱାଭାବିକତା ଅବା କ'ଣ ଅଛି ? ସେମାନଙ୍କର ଶାରୀରିକ ଏବଂ ମାନସିକ ବିକାଶର ପ୍ରାରମ୍ଭ ପରିବେଶ ଯଦି ପ୍ରତିକୂଳ, ତେବେ ବଡ଼ ହୋଇଗଲା ପରେ ତାହା ବହୁଗୁଣ ବୃଦ୍ଧି ପାଇ ସେମାନଙ୍କ ବିରୋଧରେ ଉଭା ହୋଇ ରହିଥିବ ।



# ଘନିଷ୍ଠ ସାନ୍ନିଧ

''ମାଆଟିଏ ହୋଇଗଲା ପରେ ନିଜ ଚିନ୍ତାରେ ଏକୁଟିଆ ଲାଗେନାହିଁ । କାରଣ ସେତେବେଳେ ଚିନ୍ତା କରିବାକୁ ପଡ଼େ ଦୁଇଜଣଙ୍କ ପାଇଁ – ନିଜ ପାଇଁ ଏବଂ ନିଜର ଶିଶୁ ସନ୍ତାନଟି ପାଇଁ ।''

–ସୋଫିଆ ଲୋରେନ୍

ପ୍ର : ଶିଶୁପାଇଁ ମା'ର ଘନିଷ୍ଠ ସାନ୍ନିଧ କ'ଣ ଗୁରୁତ୍ୱପୂର୍ଣ୍ଣ ?

ଉ : ହଁ, ଶିଶୁ ପାଇଁ ମା'ର ଘନିଷ୍ଠ ସାନ୍ନିଧ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏ' ବିଷୟରେ ଦ୍ୱନ୍ଦ୍ୱର ପ୍ରଶ୍ନ ନାହିଁ । ଜନ୍ମ ପୂର୍ବରୁ ଶିଶୁଟି ରହିଥାଏ ମା'ର ଗର୍ଭାଶୟରେ । ଗର୍ଭାଶୟ ଭିତରେ ତାକୁ ଘୋଡ଼େଇ କରି ରଖିଥାଏ ଜଳର କମ୍ବଳ ! ଏହା ସତ୍ତ୍ୱେ, ତାକୁ ଉଷୁମ ରଖିବା ଏବଂ ତା'ର ଖାଇବା ପିଇବାର ଦାୟିତ୍ୱ ବହନ କରିଥାଏ ତା'ର ମା । ମା' ରକ୍ତରୁ ସେ ସଂଗ୍ରହ କରିନିଏ ଜଳ ଏବଂ ଖାଦ୍ୟ ଉପାଦାନ । ତାହା ସାଙ୍ଗକୁ ମା'ର ବିଭିନ୍ନ ଶରୀର ଚାଳନାରେ ମଧ୍ୟ ଶିଶୁଟି ଅଂଶ ଗ୍ରହଣ କରିଥାଏ ।

ଜନ୍ମ ପରେ ପରେ ଶିଶୁକୁ କନାରେ ଗୁଡ଼େଇ ଦେଇ ଶୁଆଇ ଦିଆଯାଏ ମା' କୋଳରେ । ମା' ଶିଶୁକୁ ଆଉଁଶି ଦିଏ । ତା' ମୁଣ୍ଡରେ ହାତ ବୁଲାଏ । ତା' ହାତ ଗୋଡ଼ରେ ଅଙ୍ଗୁଳି ଚାଳନା କରେ । ତା' ଆଙ୍ଗୁଠିଗୁଡ଼ିକ ସାଙ୍ଗରେ ଖେଳେ । ପିଲାଟି ଝାଡ଼ା ପରିସ୍ରା କରି ପକେଇଲେ ତାକୁ କୋଳରେ ଧରି ବଦଳେଇ ଦିଏ ତା'ର କନାପଟା । ସେ କାନ୍ଦିଲେ ତାକୁ କୋଳେଇ ନିଏ । ଗୋଡରେ ପକେଇ କି କୋଳରେ ନେଇ ତାକୁ ବୋଧ ଦିଏ । ତାକୁ କୋଳରେ ଧରି ଖାଇବସେ । କୋଳରେ ଧରି ଛୋଟମୋଟ କାମ କରେ । କୋଳରେ ଜାକି ତାକୁ ନିଜର କ୍ଷୀର ଖୁଆଏ । ଖାଲି ସେତିକି ନୁହେଁ, ସନ୍ତାନଟି ମା'ର ଭାଷା ବୁଝୁ କି ନବୁଝୁ କିନ୍ତୁ ମା' ତା' ସହ ଆରମ୍ଭ କରିଦିଏ କଥାବାର୍ତ୍ତା ! ଏପରିକି ତାକୁ ଶୁଣେଇ ଚାଲେ ନାନାବାୟା ଗୀତ । ମା'ର ଏହି ସ୍ପର୍ଶ, କଥାବାର୍ତ୍ତା ଏବଂ ଗୀତ ଶୁଣେଇବାର କମ୍ପନକୁ ଶିଶୁ ଶୁଣିପାରେ ଏବଂ ଅନୁଭବ କରିପାରେ ମଧ୍ୟ ।

ପିଲାଟି ସାମାନ୍ୟ ବଡ଼ ହୋଇଗଲେ, ମା' ଶିଶୁକୁ କାଖେଇ କାମଧନ୍ଦା କରେ । ଆକାଶରେ ଜହ୍ନମାମୁ ଦେଖାଏ । କୁକୁର, ବିଲେଇ, ଗାଈଗୋରୁ, କାଉ, ବଣି ଏବଂ ରଙ୍ଗବେରଙ୍ଗ ଫୁଲସହ ପରିଚିତ କରାଇଦିଏ ।

କହିବାକୁ ଗଲେ ମା' ଆଉ ତା'ର ଶିଶୁ ସନ୍ତାନ ପାଖଛଡ଼ା ହେବାର ପ୍ରଶ୍ନ ଉଠେନାହିଁ ।

କିନ୍ତୁ, ଏବେ ପରିସ୍ଥିତିରେ କିଛିଟା ପରିବର୍ତ୍ତନ ଘଟିଛି । ପ୍ରସବ ଯନ୍ତ୍ରଣା ନ ସହିବା ପାଇଁ ନିଶ୍ଚେତନ ଲୋଡ଼ା ପଡୁଛି । ତେଣୁ, ଶୂଳ ସହି ଶିଶୁ ଜନ୍ମ କରିବାର ଅନୁଭୂତିରୁ ମାଆମାନେ ବଞ୍ଚିତ ହେଲେଣି । ସିଜାରିଆନ୍ ଅପରେସନ୍ ଦ୍ୱାରା ସନ୍ତାନ ପ୍ରସବର ହାର ବଢ଼ିଯିବାରୁ ମଧ୍ୟ ପ୍ରାକୃତିକ ଉପାୟରେ ସନ୍ତାନ ପ୍ରସବର ଅନୁଭୂତି ଅର୍ଜନ କରିପାରୁନାହିଁ ମାଆଟି । କେତେକ ଶିକ୍ଷୋନ୍ନତ ଦେଶରେ ସନ୍ତାନର ଲାଳନପାଳନ କରାଯାଉଛି ନର୍ସରୀରେ ବା ଶିଶୁପାଳନ କେନ୍ଦ୍ରରେ । ଏହା ଫଳରେ ଶିଶୁ ପିତାମାତାଙ୍କ ସାନ୍ନିଧ୍ୟ ତ ପାଉନାହିଁ, ତାହାଛଡ଼ା ସନ୍ତାନର ଯତ୍ନ ନେବାରେ ପିତାମାତା ଯେ ସମର୍ଥ, ଏହି ପ୍ରତ୍ୟୟ ମଧ୍ୟ ଜାତ ହେଉନାହିଁ ସେମାନଙ୍କଠାରେ ।

ତାହାଛଡ଼ା କେତେକ ମାଆ ସନ୍ତାନକୁ ସ୍ତନ୍ୟପାନ କରାଇବା ପରିବର୍ତ୍ତେ ଖୁଆଉଛନ୍ତି ଗାଈ ମଇଁଷି କ୍ଷୀର କିମ୍ବା ଡବାକ୍ଷୀର । ପିଲା ରବର ଠିପି ଚୁଚୁମି କ୍ଷୀର ଖାଉଛି । ବୋତଲ ହୋଇଛି ସ୍ତନର ବିକଳ୍ପ । ଏହା ଫଳରେ, ଶିଶୁଟି ମାଆର ଘନିଷ୍ଠ ସାନ୍ନିଧ୍ୟର ସୁଯୋଗ ହରେଇ ବସୁଛି । ମାଆ ଚର୍ମର ସ୍ପର୍ଶ ନପାଇ ଶିଶୁ ପାଉଛି ପ୍ଲାଷ୍ଟିକ୍ ବୋତଲର ସ୍ପର୍ଶ ।

ମାଆ କୋଳରେ ନଶୋଇ ଶିଶୁ ଶୋଉଛି ତା' ପାଇଁ ନିର୍ମିତ ସ୍ୱତନ୍ତ୍ର ଖଟରେ । ଏପରିକି ଉଠି ପଡ଼ିଲେ ପଡ଼ିଯିବାର ଡର ଥିବାରୁ ବେଲ୍ଟ୍ ସାହାଯ୍ୟରେ ତାକୁ ଅଟକେଇ ଦିଆଯାଉଛି ଖଟରେ ।

କିନ୍ତୁ, ମାଆ ଏବଂ ପିଲା ତଥା ବାପ ଏବଂ ଶିଶୁସନ୍ତାନ ମଧ୍ୟରେ ଘନିଷ୍ଠ ସାନ୍ନିଧ୍ୟ ରହି ନପାରିଲେ ଶିଶୁର ଶାରୀରିକ ଏବଂ ମାନସିକ ବିକାଶ ଉପରେ ପ୍ରତିକୂଳ ପ୍ରଭାବ ପଡ଼ିଥାଏ । ଏହା ଅବଶ୍ୟ ସତ ଯେ ଶିଶୁ ସନ୍ତାନର ଯତ୍ନ ନେବାରେ ବାପମା'ଙ୍କର ସ୍ୱାଧୀନତା କିଞ୍ଚିତ୍ ବ୍ୟାହତ ହୋଇଥାଏ । ସେମାନେ ନିଜର ରୁଚିପ୍ରତି ସମୁଚିତ ଧ୍ୟାନ ଦେବାକୁ ସମୟ ପାଆନ୍ତି ନାହିଁ । ସନ୍ତୋଷଜନକ ଭାବରେ ପଢ଼ାପଢ଼ି କରିପାରନ୍ତି ନାହିଁ । ସାଙ୍ଗସାଥୀମାନଙ୍କ ଘରକୁ ବୁଲିଯାଇ ପାରନ୍ତି ନାହିଁ । ଏହା ସତ୍ତ୍ୱେ, ଶିଶୁକୁ ଉପେକ୍ଷା କରିବା ଏବଂ ତାକୁ ନିଜର ସାନ୍ନିଧ୍ୟରୁ ବଞ୍ଚିତ କରିବା ଆଦୌ ସ୍ପୃହଣୀୟ ନୁହେଁ ।

ତେଣୁ, ଶିଶୁଟି ପ୍ରସବ ହେବାପରେ ବାପା ଏବଂ ମାଆ ପାଳିକରି ଶିଶୁକୁ କୋଳରେ ଧରିବା ଏବଂ ଗେଲ କରିବାର ପ୍ରଭାବ ଅତ୍ୟନ୍ତ ଅନୁକୂଳ ।

ଶିଶୁକୁ ସ୍ତନ୍ୟପାନ କରାଇବା ବାଧ୍ୟତାମୂଳକ । 'କ୍ଷୀର ହେଉନି' ବୋଲି କହିବା ଏକ ବାହାନା ମାତ୍ର । କ୍ଷୀର ଖୁଆଇଲେ ସ୍ତନରୁ କ୍ଷୀର ଝରିବାରେ ସମସ୍ୟା ରହେନି । 'କ୍ଷୀର ବାହାରିବନି' ବା 'କ୍ଷୀର ଖୁଆଇ ପାରିବିନି' ବୋଲି ମନରେ ଧାରଣା ଆଣିବେନି, ମନରେ କ୍ଷୀର ଖୁଆଇବାର ଭରସା ଆଣିପାରିଲେ ସ୍ତନ୍ୟପାନ କରାଇବାରେ ସମସ୍ୟା ରହିବନି । ପରିସ୍ଥିତି ବାଧ୍ୟ ନକଲେ ଶିଶୁକୁ ବୋତଲରେ ଖୁଆଇବାର ନାଁ ଧରିବେନି । ସ୍ତନ୍ୟପାନ କରାଇବା ଫଳରେ ମା' ଓ ଶିଶୁ ମଧ୍ୟରେ ସୃଷ୍ଟି ହୋଇଥାଏ ଘନିଷ୍ଠ ସାନ୍ନିଧ୍ୟ । ସନ୍ତାନକୁ କାଖେଇ ବୁଲେଇବା, କୋଳରେ ରଖି ଶୁଆଇବା, ଛାତି ଉପରେ ରଖି ଥାପୁଡ଼େଇବା ଇତ୍ୟାଦି ଶିଶୁର ଅଶେଷ ମଙ୍ଗଳ ସାଧନ କରିଥାଏ ।

ଏବେ ଅନେକ ପରିବାରରେ ପିତାମାତା ଉଭୟ କର୍ମଜୀବୀ । ସେମାନଙ୍କ ଶିଶୁ ସନ୍ତାନର ଭାର 'ଆୟା' କିମ୍ବା ପରିବାରର ଅନ୍ୟମାନଙ୍କ ଉପରେ ନ୍ୟସ୍ତ । ସକାଳେ ପିଲାର ନିଦ ଭାଙ୍ଗିବା ବେଳକୁ ବାପମା' ଘର ଛାଡ଼ିଥାନ୍ତି ଏବଂ ସଂଧ୍ୟାରେ ଘରେ ପହଞ୍ଚିବା ବେଳକୁ ପିଲା ଶୋଇଯାଇଥାଏ । ଫଳରେ, ଛୁଟିଦିନ ବ୍ୟତୀତ ଅନ୍ୟ ଦିନଗୁଡ଼ିକରେ ସନ୍ତାନଟି ପିତାମାତାଙ୍କ ଉପସ୍ଥିତିରୁ ବଞ୍ଚିତ । କିନ୍ତୁ, ବାପମା'ମାନେ ମନେ ରଖିବା ଉଚିତ ଯେ ନିଜର ସନ୍ତାନକୁ ଭଲ ମଣିଷ କରି ଗଢ଼ିବାକୁ ହେଲେ, ତା' ଉଦ୍ଦେଶ୍ୟରେ କିଛି ପୁଞ୍ଜି ଖଟେଇବାକୁ ପଡ଼ିବ । ତା' ସହ ଘନିଷ୍ଠ ସମ୍ପର୍କ ରକ୍ଷା କରିବା ହେଉଛି ସେହି ପୁଞ୍ଜି । ଏଥିପାଇଁ ଯାହା କିଛି ମୂଲ୍ୟ ଦେବାକୁ ପଡୁ ପଛେ ବାପମା' ସେହି ପୁଞ୍ଜି ବିନିଯୋଗ କରିବା କାମ୍ୟ ।

ସନ୍ତାନକୁ ସ୍ନେହରେ କୋଳ କରିବାର ପ୍ରଭାବ ସୁଦୂରପ୍ରସାରୀ । କୋଳ କରିବା ବୋଇଲେ କେବଳ ଆଲିଙ୍ଗନ କରିବା ନୁହେଁ, ତାକୁ ପାଦରେ ବସେଇ କା'ପଡେ କରିବା, ଆପଣ କୌଣସି କାମ କଲାବେଳେ ସେ ଆସି ଆପଣଙ୍କ ପିଠିରେ ଲାଉ ହେବା, କି ଆପଣଙ୍କ ଉପରେ ଚଢ଼ିବା ମଧ୍ୟ ସ୍ୱାଗତଯୋଗ୍ୟ । ତା' ସାଙ୍ଗରେ ମନ ଖୁସିରେ କଥାବାର୍ତ୍ତା ହେବା, ତାକୁ ଚାହିଁ ମୁରୁକିହସା ଦେବା, ତା' ସହ ଆଖି ମିଳେଇ ଆଖି ମିଟିମିଟି କରିବା, ତା'ର ହାତକୁ ଥାପୁଡ଼େଇବା ଓ ମୁଠେଇ ଧରିବା, ତା'ର ମୁଣ୍ଡ ବାଳରେ ଆଙ୍ଗୁଠି ଭର୍ତ୍ତିକରି ଆଉଁଶିବା, କାନ୍ଧ ଉପରେ ବସେଇ ଖେଳେଇବା ଇତ୍ୟାଦି ମଧ୍ୟ ସନ୍ତାନ ସହ ଘନିଷ୍ଠ ସମ୍ପର୍କ ରକ୍ଷା କରିବାରେ ଯଥେଷ୍ଟ ସହାୟକ ହୋଇଥାଏ ।

ପିଲା ବଡ଼ ହୋଇଗଲେ, କେତେକ ପିତାମାତା ବିଶେଷକରି ପିତାମାନେ ସନ୍ତାନ ପ୍ରତି ନିଜର ସ୍ନେହଶ୍ରଦ୍ଧା ଏବଂ ଆବେଗକୁ ସର୍ବସମକ୍ଷରେ ପ୍ରକାଶ କରିବାରେ ଅସ୍ୱସ୍ତି ଅନୁଭବ କରିଥାନ୍ତି । ସେମାନେ ଆନ୍ତରିକତାର ସହ ସନ୍ତାନର କୃତିତ୍ୱ ପାଇଁ ତାକୁ 'ପ୍ରଶଂସା' କରିବାରୁ ବିରତ ରହନ୍ତି । ସେମାନଙ୍କର ଧାରଣା ଯେ ପ୍ରଶଂସା କଲେ ପିଲା ମନରେ ଗର୍ବ ଆସି ସେ 'ନଷ୍ଟ' ହୋଇଯିବ । ପିଲାମାନେ ନିଜ ବିଷୟରେ ଉଚ୍ଚ ଧାରଣା ପୋଷଣ କଲେ ତାହା ପିତାମାତାଙ୍କୁ ସହ୍ୟ ନହେବା ଏକ ସ୍ୱାଭାବିକ ଚରିତ୍ର । କିନ୍ତୁ ସାଧାରଣ ଭାବରେ ଦେଖିଲେ ନିଜ ବିଷୟରେ ଉଚ୍ଚ ଧାରଣା ପୋଷଣ କରିବା ତୁଳନାରେ ନିଜ ସମ୍ପର୍କରେ ହୀନମନ୍ୟତା ପୋଷଣ କରିବା ହିଁ ଅଧିକାଂଶ ପିଲାଙ୍କର ସାଧାରଣ ଲକ୍ଷଣ ।

ଏପରି କେତେକ ପିତାମାତା ଅଛନ୍ତି ଯେଉଁମାନଙ୍କ ପାଇଁ ସନ୍ତାନର ସବୁକିଛି ଖରାପ । ସେମାନେ ଅତିଥିମାନଙ୍କ ସମ୍ମୁଖରେ ଦୁଷ୍ଟାମି କଲେ, ମଇଳା ଜାମାପଟା ପିନ୍ଧିଲେ, ନିୟମିତ ମୁଣ୍ଡ ନ କୁଣ୍ଡାଇଲେ, ବଡ଼ ପାଟିରେ ଗୀତ ଗାଇଲେ ତାହା ପିତାମାତାଙ୍କ ଦେହରେ ଯାଏନି । ଏଭଳି ସନ୍ତାନକୁ ଆଲିଙ୍ଗନ କରିବା କି କୋଳେଇ ନେବା ପାଇଁ ସେମାନେ ବୀତସ୍ପୃହ ଭାବ ପୋଷଣ କରିଥାନ୍ତି ।

ଏ' ସମ୍ପର୍କରେ ନିଉ ମେକ୍ସିକୋ ବିଶ୍ୱବିଦ୍ୟାଳୟର ପ୍ରଫେସର୍ ମେରୀ ହ୍ୟୁଗ୍ସ୍‌ଙ୍କ ପରାମର୍ଶ ପ୍ରଣିଧାନ ଯୋଗ୍ୟ । ସନ୍ତାନ ପ୍ରତି ଅନୁକୂଳ ମନୋଭାବ ପୋଷଣ କରିପାରୁନଥିବା ପିତାମାତାଙ୍କୁ ବାଟକୁ ଆଣିବା ନିମନ୍ତେ ମେରୀ ହ୍ୟୁଗ୍ସ୍ ଶିକ୍ଷକମାନଙ୍କର ସାହାଯ୍ୟ ଉପରେ ଅଧିକ ଆସ୍ଥା ସ୍ଥାପନ କରିଛନ୍ତି । ଶିକ୍ଷକମାନଙ୍କୁ ପରାମର୍ଶ ଦେଇ ସେ କହିଛନ୍ତି, ''ଆପଣମାନେ ପିଲାମାନଙ୍କ କୃତିତ୍ୱକୁ ପ୍ରଶଂସା କରି ପ୍ରତି ସପ୍ତାହରେ ପିତାମାତାଙ୍କୁ ଛୋଟ ଲେଖାଟିଏ ପଠାନ୍ତୁ । ଏହି ଲେଖାଟି ପାଇଲେ ପିତାମାତାମାନେ ଖୁସି ହେବେ ଏବଂ ସନ୍ତାନ ପ୍ରତି ସେମାନଙ୍କର ସ୍ନେହଶ୍ରଦ୍ଧା ଯଥେଷ୍ଟ ବୃଦ୍ଧି ପାଇଯିବ । ଏହା ଫଳରେ ସାଧାରଣ କୃତିତ୍ୱ ପ୍ରଦର୍ଶନ କରୁଥିବା ଛାତ୍ର ଅଧିକ କୃତିତ୍ୱ ପ୍ରଦର୍ଶନ କରିବା ନିମନ୍ତେ ପ୍ରୟାସୀ ହୋଇଉଠିବ । ଏପରିକି ପ୍ରଶଂସାଯୋଗ୍ୟ ହୋଇନଥିବା ପିଲା ମଧ୍ୟ ନିଜକୁ ସଂଶୋଧନ କରିବା ନିମନ୍ତେ ଉତ୍ସାହିତ ହେବ ।''

ଏହି ପରିପ୍ରେକ୍ଷୀରେ ବିଚାର କଲେ, ସନ୍ତାନକୁ ଗେଲ କରିବା, କୋଳ କରିବା, ଆଲିଙ୍ଗନ କରିବା, ବାହୁ ପାଶରେ ଭିଡ଼ି ଧରିବା, ପ୍ରଶଂସା କରିବା ଆଦି ଫଳରେ ସନ୍ତାନ ମନରେ ଭରସା ଏବଂ ଆତ୍ମବିଶ୍ୱାସ ଜାତ ହୋଇଥାଏ ।

ମନସ୍ତତ୍ତ୍ୱବିତ୍‌ମାନଙ୍କ ମତରେ ପ୍ରତ୍ୟେକ ପିତାମାତା ସେମାନଙ୍କ ସନ୍ତାନ ପ୍ରତି ଅତ୍ୟନ୍ତ ଭଦ୍ର ତଥା କୋମଳ ଆଚରଣ ପ୍ରଦର୍ଶନ କରିବା କାମ୍ୟ । ବୟସ୍କମାନଙ୍କ ପ୍ରତି ଆମେ ଯେଉଁଭଳି ବ୍ୟବହାର ଦେଖାଉ, ଛୋଟ ପିଲାଙ୍କ ପ୍ରତି ଅନୁରୂପ ବ୍ୟବହାର ଦେଖାଇବା ଉଚିତ । ଏପରି କଲେ ସନ୍ତାନ ଉପରେ ବିରକ୍ତ ହେବା, ରାଗିବା, ଗାଳିଦେବା କିମ୍ବା ଶାସନ କରିବା ଭଳି ମନୋଭାବ ପ୍ରକାଶ ପାଇବ ନାହିଁ । ନିଜ ପିଲାଙ୍କୁ ଅନ୍ୟମାନଙ୍କ ସମ୍ମୁଖରେ ନିନ୍ଦା କରିବା ଏକ ଖରାପ ଅଭ୍ୟାସ । କୌଣସି ପିତାମାତା ନିଜର ସନ୍ତାନ ପ୍ରତି ପ୍ରତିକୂଳ ମନ୍ତବ୍ୟ ଦେଲେ ଏହି ମନ୍ତବ୍ୟର ଶ୍ରୋତା ତତ୍‌କ୍ଷଣାତ୍ ଉକ୍ତ ସନ୍ତାନଟିର ପ୍ରଶଂସା ଆରମ୍ଭ କରିଦେବା ଆବଶ୍ୟକ । ଏହା ଫଳରେ ପ୍ରତିକୂଳ ମନ୍ତବ୍ୟ ପ୍ରଦାନ କରିଥିବା ପିତାମାତାଙ୍କଠାରେ ନିଜ ସନ୍ତାନ ପ୍ରତି ଏକ ଅନୁକୂଳ ପ୍ରତିକ୍ରିୟା ପ୍ରକାଶ ପାଇବ ।

ହୋସିଆ ବାଲୁ କହିଛନ୍ତି, "ମାଆ କୋଳରେ ହିଁ ଆରମ୍ଭ ହୋଇଥାଏ ଶିକ୍ଷା । ସେତେବେଳେ ଶିଶୁଟିର କାନରେ ମାଆର ଯେଉଁ କଥାଗୁଡ଼ିକ ପଡ଼ିଥାଏ, ତା'ର ପ୍ରତ୍ୟେକ ଶବ୍ଦ ହିଁ ରୂପ ଦେଇଥାଏ ଶିଶୁର ଚରିତ୍ରକୁ ।"



# ପିତାମାତାଙ୍କ ଅସନ୍ତୋଷ

"ଜାମା ଛିଣ୍ଡିଗଲେ ତାକୁ ସାଙ୍ଗେ ସାଙ୍ଗେ ସିଲେଇ କରାଯାଇପାରେ, କିନ୍ତୁ କର୍କଶ ବାକ୍ୟ ଶିଶୁର ହୃତ୍‌ପିଣ୍ଡକୁ କ୍ଷତବିକ୍ଷତ କରିଦିଏ ।"

— ଲଙ୍ଗ୍‌ଫେଲୋ

ପ୍ର : ସନ୍ତାନକୁ ନେଇ ପିତାମାତାଙ୍କର ଅସନ୍ତୋଷର କାରଣ କଅଣ ?

ଉ : ସନ୍ତାନଟିଏ ଜନ୍ମ ନେଲେ ସବୁ କ୍ଷେତ୍ରରେ ଯେ ପିତାମାତାମାନେ ଖୁସି ହୋଇଥାନ୍ତି, ଏହା ଭାବିନେବା ଠିକ୍ ନୁହେଁ । ତେବେ, ଏହି ଖୁସି ନ ହେବାର କାରଣ ବିବିଧ । ପିତାମାତାଙ୍କର ଅସନ୍ତୋଷ ପ୍ରାୟତଃ ଗୋପ୍ୟ ହୋଇ ରହେ । କାରଣ ସ୍ୱରୂପ କୁହାଯାଇପାରେ ଯେ, ଯେଉଁ ସ୍ୱାମୀ-ସ୍ତ୍ରୀ ସନ୍ତାନ ଆଶାୟୀ ନହୋଇଥିବା ସମୟରେ ସ୍ତ୍ରୀ ଗର୍ଭବତୀ ହେବାର ଜଣାପଡ଼େ, ସେ କ୍ଷେତ୍ରରେ ସେମାନଙ୍କଠାରେ ସନ୍ତାନଟି ପ୍ରତି ବୀତସ୍ପୃହତା ପ୍ରକାଶ ପାଇପାରେ । ତାହାଛଡ଼ା ପାରିବାରିକ ସମସ୍ୟା କିମ୍ବା ସ୍ୱାମୀ-ସ୍ତ୍ରୀଙ୍କର ବ୍ୟକ୍ତିଗତ ସମସ୍ୟା ଲାଗି ରହିଥିବା ବେଳେ ସ୍ତ୍ରୀଙ୍କର ଗର୍ଭ ଉଦୟ ସମ୍ବାଦ ଆଦୌ ସ୍ୱାଗତଯୋଗ୍ୟ ହୋଇପାରେ ନାହିଁ । ଏ' ତ ଗଲା ଗର୍ଭକୁନେଇ ସମସ୍ୟା । ଏତଦ୍ ବ୍ୟତୀତ କେତେକ ସ୍ୱାମୀ-ସ୍ତ୍ରୀ ପୁତ୍ରଟିଏ ଚାହୁଁଥିଲା ବେଳେ ସନ୍ତାନଟି ପୁଅ ବଦଳରେ ଝିଅ ହୋଇଥିଲେ, କିମ୍ବା କନ୍ୟା ସନ୍ତାନ ଆଶାୟୀ ପିତାମାତା କନ୍ୟା ବଦଳରେ ପୁତ୍ରଟିଏ ଲାଭ କଲେ ପିତାମାତାଙ୍କର ମନ ମରିଯାଏ । ସନ୍ତାନଟି ବାପମା' ଚାହିଁଲା ଭଳି ସୁନ୍ଦର ହୋଇନଥିଲେ କିମ୍ବା ସୁସ୍ଥ ସବଳ ନହୋଇ କ୍ଷୀଣକାୟ ହୋଇଥିଲେ, ସେଭଳି ସନ୍ତାନ ପିତାମାତାଙ୍କୁ ଆନନ୍ଦ ଦେଇ ନପାରିବା ସ୍ୱାଭାବିକ । କେତେକ ପିଲା କିଛି ମାଙ୍ଗ ଧରି ବେଶ୍ କନ୍ଦାକଟା କରିଥାନ୍ତି । ବିଶେଷ କରି ରାତିବେଳା ସେମାନଙ୍କର କାନ୍ଦ ପିତାମାତାଙ୍କ ବିଶ୍ରାମରେ ନିୟମିତ ବ୍ୟାଘାତ ଜନ୍ମାଇ ସେମାନଙ୍କଠାରେ ବିରକ୍ତି ଉଦ୍ରେକ କରିଥାଏ । ତାହାଛଡ଼ା ପିଲାଟି ବୃଦ୍ଧିପ୍ରାପ୍ତ ହେବା ପରେ ସେ ପିତାମାତାଙ୍କ ଚାହିଁବା ପ୍ରକାରେ କୃତିତ୍ୱ ପ୍ରଦର୍ଶନ କରି ନପାରିଲେ, ତାହା ପ୍ରତି ପିତାମାତା ଅସୁଖୀ ହେବାର ଦେଖାଯାଇଥାଏ ।

ପିତାମାତା ବେଶ୍ ଶିକ୍ଷିତ ଏବଂ ବିଜ୍ଞ ହୋଇଥିଲେ ମଧ୍ୟ ଏବଂ ନିଜ ବରାଦକୁ ଚାହିଁ ସନ୍ତାନ ଜନ୍ମ ଦେବା ସମ୍ଭବ ନୁହେଁ ବୋଲି ଜାଣିଥିଲେ ମଧ୍ୟ ସେମାନଙ୍କଠାରେ ସନ୍ତାନ ସମ୍ପର୍କରେ ଅସଙ୍ଗତ ଆଶାପୋଷଣ କରିବାରେ ଆଦୌ ଅସ୍ୱାଭାବିକତା ନାହିଁ । ତେ଼ବେ, ସନ୍ତାନମାନଙ୍କୁ ବିଚାରକୁ ନେଲାବେଳେ ପିତାମାତା ନିଜର ଶୈଶବକୁ ମନେ ପକେଇ ସଚେତନ ହୋଇଉଠିଲେ ସନ୍ତାନ ପ୍ରତି ସେମାନଙ୍କର ଆଚରଣ ଅନୁକୂଳ ହେବାର ସମ୍ଭାବନା ଅଧିକ ।

ବେଳେବେଳେ ସନ୍ତାନର ଚାଲିଚଳନ ଏବଂ ଆଚାର ବ୍ୟବହାର ପିତାମାତାଙ୍କ ପାଇଁ ରୁଚିକର ହୋଇନଥାଏ । ପ୍ରତ୍ୟେକ ପିତାମାତା ଶାନ୍ତଶିଷ୍ଟ, ବାଧ୍ୟ ଏବଂ ମେଧାବୀ ସନ୍ତାନ କାମନା କରିଥାନ୍ତି । ତେଣୁ ସନ୍ତାନଟି ସେମାନଙ୍କ ମନଲାଖି ନହୋଇପାରିଲେ ସେମାନଙ୍କଠାରେ କ୍ରୋଧ ଏବଂ ବିରକ୍ତି ପ୍ରକାଶ ପାଇଥାଏ । ତେଣୁ, ପିତାମାତା ନିଜର ସ୍ୱାର୍ଥ ତଥା ସନ୍ତାନର ସ୍ୱାର୍ଥକୁ ଆଖିଆଗରେ ରଖି ଅଧିକ ବିବେକବନ୍ତ ଭାବରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଉଚିତ । ପିତାମାତା ସନ୍ତାନ ପ୍ରତି ଅସ୍ୱାଭାବିକ ଭାବରେ ପ୍ରତିକ୍ରିୟାଶୀଳ ହୋଇଉଠିଲେ ଏହାର ପରିଣାମ ଆଦୌ ଶୁଭଙ୍କର ହୁଏନାହିଁ ।

ତେବେ ବହୁ ଆଦର୍ଶବାଦୀ ଯୁବ ଦମ୍ପତି ଭାବିଥାନ୍ତି ଯେ ସେମାନେ ନିଜ ସନ୍ତାନମାନଙ୍କ ଉପରେ ଅଜସ୍ର ସ୍ନେହଶ୍ରଦ୍ଧା ଢାଳିଦେବେ ଏବଂ କୌଣସି ପରିସ୍ଥିତିରେ ମଧ୍ୟ ସେମାନେ ଧୈର୍ଯ୍ୟହରା ହେବେନାହିଁ । କିନ୍ତୁ ଏହା କ'ଣ ମାନବୀୟ ସାମର୍ଥ୍ୟ ଦ୍ୱାରା ସମ୍ଭବ ? ଆପଣଙ୍କର ସମସ୍ତ ଚେଷ୍ଟା ଏବଂ ଧୈର୍ଯ୍ୟ ସତ୍ତ୍ୱେ ଆପଣଙ୍କ ଶିଶୁ କନ୍ୟାଟି ରାହାଧରି ଘଣ୍ଟା ଘଣ୍ଟା ଧରି କାନ୍ଦି ଚାଲିଲେ ଆପଣ ତା' ପ୍ରତି ସହାନୁଭୂତିଶୀଳ ହୋଇରହିବା ତ କାଠିକର ପାଠ । ତା'ର ଅମାନିଆପଣ ଏବଂ ଜିଦ୍ ଯୋଗୁ ଆପଣ ନ ରାଗି ରହିପାରିବେନି । ଆପଣଙ୍କର ପୁଅ ଘରର କୌଣସି ଦାମିକିଆ କିମ୍ବା ମୂଲ୍ୟବାନ ଜିନିଷକୁ ଭାଙ୍ଗିଦେଲେ ଆପଣଙ୍କର ମାନସିକ ଶାନ୍ତି ଅବ୍ୟାହତ ରହିପାରିବ ତ ? କିଶୋର ବୟସରେ ପହଞ୍ଚିଥିବା ପୁଅଝିଅଙ୍କ ଦୋଷତ୍ରୁଟି ବିଷୟରେ ଦର୍ଶାଇ ସେମାନଙ୍କୁ ଯେତେ ନିରୁତ୍ସାହିତ କଲେ ମଧ୍ୟ ସେମାନେ ଆପଣଙ୍କ କଥା ନ ମାନି ମୁହେଁ ମୁହେଁ ଜବାବ ଦେଲେ ଏବଂ ଆପଣଙ୍କ ଉପରେ କ୍ରୋଧ ଉଦ୍‌ଗାରିଲେ ଆପଣ ନିଜର ମାନସିକ ସନ୍ତୁଳନ ରକ୍ଷା କରିବା କ'ଣ ସହଜ ବ୍ୟାପାର ? ପ୍ରତ୍ୟେକ ପିତାମାତା ସନ୍ତାନର 'ଭଲ', 'ମନ୍ଦ', 'ଠିକ୍', 'ଭୁଲ୍' ପ୍ରତି ଅତ୍ୟନ୍ତ ସଚେତନ ଏବଂ ସମ୍ବେଦନଶୀଳ ମଧ୍ୟ । ତେଣୁ ସେମାନେ କୌଣସି ଅସଙ୍ଗତ କାମ କରିଚାଲିଲେ ପିତାମାତାମାନେ ନୀରବଦ୍ରଷ୍ଟା ହୋଇ ରହିପାରିବେନି । ସେମାନେ ନିଜ ନିଜ ଢଙ୍ଗରେ ଏହା ବିରୋଧରେ ପ୍ରତିକ୍ରିୟା ପ୍ରକାଶ କରିବାକୁ ଏକରକମ ବାଧ୍ୟ ବୋଲି କହିଲେ ଚଳେ ।

ବେଳେବେଳେ ଏପରି ପରିସ୍ଥିତି ଉପୁଜେ ଯେ ସନ୍ତାନର ଏକାଧିକ ଅପକର୍ମକୁ ଆପଣ କ୍ଷମା ଦେଇ ଚାଲନ୍ତି । ସେଥିରୁ ନିବୃତ୍ତ ହେବାପାଇଁ ବାରମ୍ବାର ବୁଝେଇ ଚାଲନ୍ତି । ସେ ଜାଣିଶୁଣି କ୍ଷୀର ବୋତଲ ଭାଙ୍ଗେ, ମନା ନମାନି ଦାମିକିଆ ଜିନିଷପତ୍ରରେ ଖେଳି ସେଗୁଡ଼ିକୁ ଭାଙ୍ଗିପକାଏ, ଯେତେ ଭଲ ଜିନିଷ ଖାଇବାକୁ ଦେଲେ ମଧ୍ୟ ଖାଦ୍ୟ ବିଷୟରେ ଅରୁଚିକର ମନ୍ତବ୍ୟ ଦିଏ । ଏମିତି କେତେ କ'ଣ । ସେଗୁଡ଼ିକୁ ସହି ସହି ଦିନେ ଆପଣଙ୍କର ସହିବା ବନ୍ଧ ଭାଙ୍ଗିଯାଏ । ପିଲାର ଦୁଷ୍ଟାମିକୁ କ୍ଷମା ଦେଇ ଦେଇ କେତେ ଅବା ଦେବେ ନିଜ ଧୈର୍ଯ୍ୟର ପରୀକ୍ଷା ?

ତେଣୁ, ଆପଣ ନିଜ ସନ୍ତାନ ଉପରେ କ୍ରୋଧାନ୍ୱିତ ହୋଇଉଠନ୍ତି । ନିଜର ମାନସିକ ଚାପ ଏବଂ ନୈରାଶ୍ୟ ଆପଣଙ୍କ ପାଇଁ ଅସହ୍ୟ ହୋଇଉଠେ । ସନ୍ତାନର ଅପକର୍ମ ପାଇଁ ସ୍ୱାମୀ ସ୍ତ୍ରୀଙ୍କୁ ଦୟା କରନ୍ତି । ସ୍ତ୍ରୀ ଦାୟୀ କରନ୍ତି ସ୍ୱାମୀଙ୍କୁ । ସନ୍ତାନକୁ ନେଇ ଦୁଇଜଣଙ୍କ ମଧ୍ୟରେ ଲାଗିଯାଏ ଝଗଡ଼ା । ଏହାର ପରିଣାମରେ କେହି ଜଣେ ସନ୍ତାନକୁ ଘୋଷାରି ଆଣି ତା' ଉପରେ ଥାପଡ଼ ପରେ ଥାପଡ଼ ଚଢ଼େଇ ଦିଏ ।

ପ୍ର : **ସନ୍ତାନ ପ୍ରତି ପିତାମାତାଙ୍କର ଏହି ବିରକ୍ତି, ଅସନ୍ତୋଷ ଏବଂ କ୍ରୋଧ ପ୍ରକାଶର ଅପନୋଦନ ପାଇଁ କ'ଣ କୌଣସି ଉପାୟ ନାହିଁ ?**

ଉ : ହଁ, ଉପାୟ ଅଛି । ପିତାମାତାମାନେ ଯେ ବେଳେବେଳେ ଧୈର୍ଯ୍ୟହରା ହୋଇପଡ଼ନ୍ତି ଏବଂ ନିଜର କ୍ରୋଧ ତଥା ବିରକ୍ତିଭାବ ପ୍ରକାଶ କରି ପକାନ୍ତି ଏହା କେତେକାଂଶରେ ସେମାନଙ୍କ ପକ୍ଷେ ସ୍ୱାଭାବିକ । କିନ୍ତୁ, ପିତାମାତାମାନେ ନିଜର ଏଭଳି ବ୍ୟବହାର ସମ୍ବନ୍ଧରେ ସଚେତନ ରହିଲେ ତା'ର ପ୍ରଭାବ ବେଶ୍ ଅନୁକୂଳ । ସେମାନେ ଏଭଳି ବ୍ୟବହାରକୁ ଅନୁଚିତ ବୋଲି ମାନିନେଲେ ସମସ୍ୟାର ଗୁରୁତ୍ୱ ହ୍ରାସ ପାଇଯାଏ । 'ମୋ' ପିଲାଟି ଖୁବ୍ ଦୁଷ୍ଟ, 'ତାକୁ ନେଇ ଗୋଟିଏ ମିନିଟ୍ ବି ମୁଁ ଘରେ ରହିପାରୁନି', 'ତାକୁ ପାନେ ନ ଚଖେଇଲେ ସେ ବାଟକୁ ଆସିବନି' – ଯେଉଁ ବାପମା' ନିଜ ସନ୍ତାନ ବିଷୟରେ ଏହିପରି ଭାବରେ ବାହାର ଲୋକଙ୍କ ଆଗରେ ନିଃସଙ୍କୋଚରେ ପ୍ରକାଶ କରିଥାନ୍ତି, ସେମାନେ ପ୍ରାୟତଃ ସନ୍ତାନ ପ୍ରତି ବିଶେଷ ନିଷ୍ଠୁର ହୋଇପାରନ୍ତିନି । ଏପରି କହିବା ଦ୍ୱାରା ସେମାନଙ୍କର କ୍ରୋଧ ଏବଂ ବିରକ୍ତି ମଧ୍ୟ ବହୁଳାଂଶରେ ପ୍ରଶମିତ ହୋଇଯାଏ ।

ତାହାଛଡ଼ା ପିତାମାତାମାନେ ନିଜକୁ ଅତି ଆଦର୍ଶସ୍ଥାନୀୟ ବୋଲି ଭାବିବା ଠିକ୍ ନୁହେଁ କି ସନ୍ତାନମାନଙ୍କୁ ଏକ ଅବାସ୍ତବ ସୁରକ୍ଷାବଳୟ ଭିତରେ ରଖିବା ଠିକ୍ ନୁହେଁ । କାରଣ, ଏଭଳି ମନୋଭାବ ପୋଷଣ କରୁଥିବା ବାପମା' ସନ୍ତାନର ସାମାନ୍ୟ ତ୍ରୁଟିକୁ ବି

ସହିପାରନ୍ତି ନାହିଁ । ତେଣୁ ପିଲାର ପିଲାଳିଆମି ପାଇଁ ମଧ୍ୟ ମନରେ କିଛି ରିହାତି ଦେବା ବାଞ୍ଛନୀୟ । ସେମାନେ ମନେ ରଖିବା ଉଚିତ ଯେ ସେମାନେ ଅସୁଖୀ ହେଲେ ସନ୍ତାନ ଅସୁଖୀ ହୁଏ । ସେମାନେ ଅସ୍ୱସ୍ତି ଅନୁଭବ କଲେ ତା'ର ପ୍ରତିକୂଳ ପ୍ରଭାବ ସନ୍ତାନ ଭୋଗିବାକୁ ବାଧ୍ୟ ହୁଏ । ସନ୍ତାନ ପ୍ରତି ନିଜର ବିରୋଧାଚରଣ ଏବଂ ପ୍ରତିକ୍ରିୟାକୁ ସ୍ୱୀକାର ନ କରିପାରିଲେ ତା'ର ଭୟାବହତା ଗ୍ରାସ କରିପକାଏ ସନ୍ତାନକୁ । ଯେଉଁ ପିଲାମାନେ ନିଜର ପିତାମାତାଙ୍କୁ ଖୁବ୍ ଭୟ କରନ୍ତି ଏବଂ ସେମାନଙ୍କ ପ୍ରତି କ୍ରୋଧଭାବ ପୋଷଣ କରନ୍ତି ସେହିଭଳି ପିଲା ସ୍କୁଲ୍‌କୁ ଯିବାକୁ ଭୟ କରେ, ପୋକଜୋକଙ୍କୁ ଦେଖିଲେ ଡରେ, ଏପରିକି ପିତାମାତାଙ୍କ ନିକଟରୁ ବିଚ୍ଛିନ୍ନ ହେବାପାଇଁ ମଧ୍ୟ ଭୟ କରିଥାଏ ।

ଅନ୍ୟ କଥାରେ କହିଲେ, ପିଲାଙ୍କ ଉପରେ ରାଗିବା ବିଷୟରେ ଯେଉଁ ପିତାମାତା ନିଃସଙ୍କୋଚରେ ମାନିଯାଆନ୍ତି, ସେମାନଙ୍କ ସନ୍ତାନମାନେ ପିତାମାତାଙ୍କ ସାନ୍ନିଧ୍ୟରେ ନିଜକୁ ବେଶ୍ ନିରାପଦ ମଣି ଉକ୍ତ ସାନ୍ନିଧ୍ୟକୁ ଉପଭୋଗ କରିଥା'ନ୍ତି ମଧ୍ୟ । ପିତାମାତାଙ୍କ କ୍ରୋଧର ଯଥାର୍ଥ କାରଣ ଥିଲେ ସନ୍ତାନମାନେ ସେଥିପ୍ରତି ବିଶେଷ ପ୍ରତିକ୍ରିୟା ପ୍ରକାଶ କରନ୍ତି ନାହିଁ । ଏପରି କେତେକ ପିତାମାତା ଅଛନ୍ତି, ଯେଉଁମାନେ ସନ୍ତାନମାନଙ୍କୁ ବିଶେଷ ସ୍ନେହଶ୍ରଦ୍ଧା ପ୍ରଦର୍ଶନ କରନ୍ତି ନାହିଁ । ସେମାନଙ୍କ ପ୍ରତି କର୍କଶ ବାକ୍ୟ ପ୍ରୟୋଗ କରିଥାନ୍ତି, ଗାଳିମନ୍ଦ କରନ୍ତି ଏବଂ ଶାରୀରିକ ନିର୍ଯାତନା ମଧ୍ୟ ଦିଅନ୍ତି । ଏପରି କରି ମଧ୍ୟ ସେମାନେ ଅନୁଶୋଚନା ପ୍ରକାଶ କରିବାର ଦେଖାଯାଏ ନାହିଁ । ଏ' ଧରଣର ପିତାମାତା ମନସ୍ତତ୍ତ୍ୱବିତ୍ ତଥା ମାନସିକରୋଗ ବିଶେଷଜ୍ଞଙ୍କର ପରାମର୍ଶ ଲୋଡ଼ିବା ନିରାପଦ ଏବଂ ସେମାନଙ୍କ ପାଇଁ ଓ ସନ୍ତାନମାନଙ୍କ ପାଇଁ ମଙ୍ଗଳକର ।

ପ୍ର : ବାପମା' ନିଜ ନିଜ ଭିତରେ କଳି କରୁଥିଲେ କଅଣ ତା'ର ପ୍ରତିକାର ?

ଉ : ବାପମା' କୌଣସି ବିଷୟକୁ ନେଇ ନିଜ ନିଜ ଭିତରେ ଯୁକ୍ତିତର୍କ କରିବାରେ ମନା ନାହିଁ କି ଏହା ଲଜ୍ଜାକର ମଧ୍ୟ ନୁହେଁ । ତେବେ, ସେମାନଙ୍କ ମଧ୍ୟରେ ରହିଥିବା ମନୋମାଳିନ୍ୟକୁ କିମ୍ବା ମତପାର୍ଥକ୍ୟକୁ ସନ୍ତାନମାନଙ୍କଠାରୁ ଗୋପନ ରଖି ପାରିଲେ ଭଲ । ବରଂ, ସନ୍ତାନମାନେ ଘରେ ନଥିବା ବେଳେ ସେମାନେ କଳିତକରାଳରେ ରତ ରହିପାରନ୍ତି । କିନ୍ତୁ, ଏହି ସମୟରେ ପୁଅ କି ଝିଅ ଆସି ପହଞ୍ଚିଗଲେ ସେମାନେ ହଠାତ୍ ଚୁପ୍ ହୋଇଯିବା ପରିବେର୍ତ୍ତ ଯୁକ୍ତିତର୍କ କରୁଥିଲେ ବୋଲି ସନ୍ତାନ ଆଗରେ ତାହା ମାନିଯିବା ଉଚିତ । ପିତାମାତାମାନେ ଜାଣି ରଖିବା ଦରକାର ଯେ ବାପମା'ଙ୍କ ଭିତରେ ରହିଥିବା ମତପାର୍ଥକ୍ୟ ବିଷୟରେ ସନ୍ତାନମାନଙ୍କୁ କିଛି ନ କହିଲେ ବି ସେମାନେ ଅନୁମାନ କରି

ସବୁକଥା ଜାଣିନେଇଥାନ୍ତି । ପିତାମାତାମାନେ ସନ୍ତାନମାନଙ୍କର ହୃଦ୍‌ବୋଧ କରେଇଦେବା ଦରକାର ଯେ ଉଭୟଙ୍କ ମଧ୍ୟରେ ମତପାର୍ଥକ୍ୟ ରହିବାରେ କିଛି ଅସ୍ୱାଭାବିକତା ନାହିଁ । କଳିତକରାଳ, ଯୁକ୍ତିତର୍କ ସତ୍ତ୍ୱେ ପରସ୍ପରର ପରସ୍ପର ପ୍ରତି ରହିଥିବା ସ୍ନେହଶ୍ରଦ୍ଧା, ପ୍ରେମ ଏବଂ ସମ୍ମାନକୁ ଯେ ଅକ୍ଷୁଣ୍ଣ ରଖିଦେବ, ସନ୍ତାନମାନେ ନିଜ ପରିବାରରେ ହିଁ ତା'ର ଦୃଷ୍ଟାନ୍ତ ପାଇବା ଦରକାର ।

ତେବେ, ପିତାମାନେ ମଧ୍ୟ ସନ୍ତାନମାନଙ୍କୁ ଉତ୍ତମ ଆଚରଣ ତଥା ନୈତିକ କର୍ତ୍ତବ୍ୟ ବିଷୟରେ ଶିକ୍ଷା ଦେବାପାଇଁ ଯତ୍ପରୋନାସ୍ତି ଉଦ୍ୟମୀ ହେବା ଆବଶ୍ୟକ । ଏପରିକି ଦରକାର ପଡ଼ିଲେ ସ୍ନେହଶ୍ରଦ୍ଧା ପ୍ରଦାନ ସାଙ୍ଗେ ସାଙ୍ଗେ ମୃଦୁ ଶାସନ କରିବା ମଧ୍ୟ ଦରକାର । ପିଲାଙ୍କୁ ଭଲ ମଣିଷ କରିବା ପାଇଁ କିଛି ଦୃଢ଼ତା ମଧ୍ୟ ଲୋଡ଼ା ଓ କିଛି ପରିମାଣରେ ଦୃଢ଼ତା ପ୍ରଦର୍ଶନ କରୁଥିବା ପିତାମାତାଙ୍କ ପ୍ରତି ସନ୍ତାନମାନଙ୍କର ସ୍ୱତନ୍ତ୍ର ସମ୍ମାନ ଥାଏ ।

ହାରୋଲ୍‌ଡ୍ ଏସ୍. ହୁଲ୍‌ବର୍ଟ୍ କହିଛନ୍ତି, ''ଶିଶୁମାନେ ପ୍ରଚୁର ପ୍ରେମ ଆବଶ୍ୟକ କରିଥା'ନ୍ତି । ବିଶେଷ କରି ପ୍ରେମ ପାଇବାକୁ ଯୋଗ୍ୟ ବିବେଚିତ ହେଉନଥିବା ସମୟରେ ହିଁ ସେମାନଙ୍କ ପାଇଁ ବେଶୀ ପ୍ରେମ ଲୋଡ଼ା ।''



# ପିତାମାତାମାନେ ବି ମଣିଷ

''ବାହା ହେବା ପୂର୍ବରୁ ସନ୍ତାନମାନଙ୍କୁ ଲାଳନପାଳନ କରିବା ସମ୍ବନ୍ଧରେ ମୁଁ ଛଅଟି ନୀତି ସ୍ଥିର କରିଥିଲି । ଏବେ ମୋର ଛଅଟି ପିଲା । ହେଲେ, ଛଅଟିଯାକ ନୀତି କେବେଠାରୁ ବୁଲିକୁ ଯାଇସାରିଛି ।''

– ଜନ୍ ଉଇଲ୍‌ମଟ୍

ପ୍ର : ସନ୍ତାନମାନଙ୍କୁ ଲାଳନପାଳନ କରିବା ତୃପ୍ତିଦାୟକ । ବେଳେବେଳେ ଯନ୍ତ୍ରଣାଦାୟକ ମଧ୍ୟ । ପିତାମାତାମାନେ ବି ତ ମଣିଷ । ତେଣୁ, କଅଣ ଏହାର ସମାଧାନ ?

ଉ : ହଁ, ଏ' ପ୍ରଶ୍ନଟି ନିଶ୍ଚିତ ଭାବରେ ଗୁରୁତ୍ୱପୂର୍ଣ୍ଣ । ଶିଶୁର ଯତ୍ନ ବିଷୟରେ ଯେତେ ବହି ଲେଖା ହୋଇଛି, ସବୁଥିରେ ଶିଶୁର ଆବଶ୍ୟକତାକୁ ଦିଆଯାଇଛି ଅଗ୍ରାଧିକାର । ଏହା ସ୍ୱୀକାର୍ଯ୍ୟ ଯେ ସନ୍ତାନମାନେ ସ୍ନେହ, ଶ୍ରଦ୍ଧା ଏବଂ ପ୍ରେମ ଚାହାଁନ୍ତି, ସେମାନଙ୍କ ପ୍ରତି ଏକ ସ୍ୱତନ୍ତ୍ର ଧରଣର ବୁଝାମଣା ଦରକାର ପଡ଼େ । ଦରକାର ପଡ଼େ ଅସୀମ ଧୈର୍ଯ୍ୟ, ଆଚରଣରେ ଶୃଙ୍ଖଳା ଏବଂ ସଙ୍ଗତି । ସେମାନେ ଆବଶ୍ୟକ କରନ୍ତି ସର୍ବାଧିକ ସୁରକ୍ଷା ଏବଂ କିଛି ପରିମାଣରେ ଶାସନ ମଧ୍ୟ । ସେମାନେ ପୁଣି ଚାହାଁନ୍ତି ବିଶ୍ୱସ୍ତ ବନ୍ଧୁ; ଏବଂ ପିତାମାତା ହିଁ ସେହି ବନ୍ଧୁର ଦାୟିତ୍ୱ ନିଅନ୍ତୁ ବୋଲି ସେମାନଙ୍କର ଦାବି । ତାହାଛଡ଼ା, ସନ୍ତାନ ପାଇଁ କାଲୋରୀ, ଭିଟାମିନ୍ ଇତ୍ୟାଦି ସମସ୍ତ ପ୍ରକାର ଖାଦ୍ୟ ଉପାଦାନ ମଧ୍ୟ ଲୋଡ଼ା । ଏହି ପରିପ୍ରେକ୍ଷୀରେ ଦେଖିଲେ, ପିତାମାତାଙ୍କ ନିକଟରେ ସନ୍ତାନମାନଙ୍କ ବରାଦର ସୀମା ନାହିଁ । ଏତେ ସବୁ ଦାୟିତ୍ୱ ମୁଣ୍ଡେଇବାକୁ ପଡ଼ିବ ବୋଲି ଭାବିନେଲେ ତ ବାପମା'ଙ୍କର ମୁଣ୍ଡ ଝାଇଁ ଝାଇଁ ହୋଇଯିବ । ଶାରୀରିକ ଦୃଷ୍ଟିରୁ ଏବଂ ଆବେଗ ତଥା ଭାବପ୍ରବଣତା ଦୃଷ୍ଟିରୁ ସେମାନେ ହୁଏତ କ୍ଳାନ୍ତି ଅନୁଭବ କରିବା ପାଇଁ ବାଧ୍ୟ ହେବେ । ସେମାନେ ହୁଏତ ଭାବିପାରନ୍ତି ଯେ ସନ୍ତାନର ସମସ୍ତ ଆବଶ୍ୟକତା ପୂରଣ କରି ଚାଲିଲେ ନିଜର ଆବଶ୍ୟକତାକୁ ହୁଏତ ସମ୍ପୂର୍ଣ୍ଣ ତ୍ୟାଗ କରିବାକୁ ପଡ଼ିବ । ତାହାହେଲେ ସନ୍ତାନମାନଙ୍କ

ସପକ୍ଷରେ ଓକିଲାତି କରୁଥିବା ଲେଖକମାନେ କ'ଣ ପିତାମାତାଙ୍କ ବିରୋଧୀ ! ସନ୍ତାନପାଳନରେ ଟିକିଏ ବଙ୍କାଡଙ୍କା ହୋଇଗଲେ କ'ଣ ନିସ୍ତାର ନାହିଁ ପିତାମାତାଙ୍କର ?

ଏହା ଅବଶ୍ୟ ସତ ଯେ ପିତାମାତାମାନଙ୍କର ମଧ୍ୟ ନିଜସ୍ୱ ଆବଶ୍ୟକତା ରହିଛି । ଘରେ ଏବଂ ବାହାରେ ସେମାନଙ୍କୁ ଅନେକ ସମସ୍ୟା ସହ ଯୁଝିବାକୁ ପଡ଼ିଥାଏ । ସେମାନଙ୍କୁ ମଧ୍ୟ ନୈରାଶ୍ୟ ଗ୍ରାସ କରେ । ସେମାନେ ବି କ୍ଳାନ୍ତି ଅନୁଭବ କରନ୍ତି । ପିଲାଏ ଟିକିଏ ସହଯୋଗ କଲେ ସେମାନଙ୍କ ଦୁର୍ଦ୍ଦଶା ଯେ ଯଥେଷ୍ଟ ହ୍ରାସ ପାଇଯିବ, ଏହି ଭାବନା ପୋଷଣ କରିଥାନ୍ତି ସେମାନେ । ଏଥିରେ ଆଦୌ ଦ୍ୱିମତ ନାହିଁ ଯେ ସନ୍ତାନର ଲାଳନପାଳନ ଏକ ଅତି କଠିନ କାର୍ଯ୍ୟ । ଏହି କାର୍ଯ୍ୟ ବେଶ୍ ଦୀର୍ଘ ମଧ୍ୟ । ପୁଣି ସନ୍ତାମାନଙ୍କର ଭଳି ପିତାମାତାମାନେ ମଧ୍ୟ ମଣିଷ !

ସନ୍ତାନର ଯତ୍ନ ନେବା ବାସ୍ତବରେ ଦୁରୂହ । ତା' ପାଇଁ ପୁଷ୍ଟିକର ଖାଦ୍ୟ ପ୍ରସ୍ତୁତ କରିବାକୁ ପଡ଼େ । ତା'ର ପୋଷାକ ପତ୍ର ନିୟମିତ ସଫା କରିବାକୁ ପଡ଼େ । ସେ ଝାଡ଼ା ପରିସ୍ରା କରି ପକେଇଲେ କନାପଟା ବଦଳେଇବାକୁ ପଡ଼େ । କିଏ ଖାଦ୍ୟପଦାର୍ଥକୁ ନିଜ ମୁହଁ ଏବଂ ଦେହସାରା ବୋଳି ହୋଇଥାଏ ତ ଆଉ କିଏ ସେଗୁଡ଼ିକୁ ଖେଳେଇ ମେଲେଇ ବିଞ୍ଚିଥାଏ ଭୂଇଁ ଉପରେ । ଏଗୁଡ଼ିକୁ ସଫାସୁତର କରିବାର ଦାୟିତ୍ୱ ମା'ର କିମ୍ବା ବାପମା' ଉଭୟଙ୍କର । ତାହା ସାଙ୍ଗକୁ ପିଲା ଟିକିଏ ବଡ଼ ହୋଇଗଲେ ଭାଇଭଉଣୀଙ୍କ ଭିତରେ ଆରମ୍ଭ ହୋଇଯାଏ ଝଗଡ଼ା । ଗୋଟିଏ ନିର୍ଦ୍ଦିଷ୍ଟ ଖେଳନା ପାଇଁ ଉଭୟ ଜିଦ୍ ଧରନ୍ତି । ଉଭୟେ ବାପମା'ଙ୍କଠାରୁ ପକ୍ଷପାତିତ୍ୱ ଦାବି କରନ୍ତି । କଥା ନ ରହିଲେ ନିରାଶ ହୋଇ କାନ୍ଦି ଘର କମ୍ପାନ୍ତି । ସେମାନଙ୍କୁ ବୁଝେଇ ସୁଝେଇ ଶାନ୍ତ କରିବା ଏବଂ ଲୁହ ପୋଛି ଗେଲ କରିବାର ଅତିରିକ୍ତ କାମ କରିବାକୁ ପଡ଼େ ବାପମା'ଙ୍କୁ । ତାହା ସାଙ୍ଗକୁ ପିଲାସହ ପିଲା ହୋଇ ଖେଳିବାକୁ ପଡ଼େ । ଗପ ବହି ପଢ଼ି ଗପ ଶୁଣେଇବାକୁ ପଡ଼େ । ସେମାନଙ୍କୁ ବାହାରକୁ ବୁଲେଇ ନେବାକୁ ହୁଏ । ଏହିସବୁ କାମ ତୁଲେଇବା ସଙ୍ଗେ ସଙ୍ଗେ ତୁଲେଇବାକୁ ପଡ଼େ ପରିବାରର ଅନ୍ୟାନ୍ୟ କାମଗୁଡ଼ିକୁ ।

କେବଳ ସେତିକିରେ ସମସ୍ୟାର ସମାଧାନ ହୋଇଯାଏନି । ସନ୍ତାନଟିଏ ସଂସାରକୁ ଆସିବା ମାତ୍ରେ ପରିବାରର ଆୟ ଉପରେ ପଡ଼େ ଅଧିକ ଚାପ । ସନ୍ତାନର ସ୍ୱତନ୍ତ୍ର ଖାଦ୍ୟ ବ୍ୟବସ୍ଥା, ପୋଷାକ ପତ୍ର, ଜୋତା ମୋଜା ଇତ୍ୟାଦିର ବ୍ୟବସ୍ଥା କରିବା ନିମନ୍ତେ ଅଧିକ ଅର୍ଥ ଆବଶ୍ୟକ ପଡ଼ିବା ସ୍ୱାଭାବିକ । ଏହି ଅତିରିକ୍ତ ଆର୍ଥିକ ବୋଝକୁ ସମ୍ଭାଳିବା ଏକ ସମସ୍ୟା ଏବଂ ସେହି ସମସ୍ୟା ସମାଧାନର ପନ୍ଥା ବାହାର କରିବାକୁ ହୁଏ ବାପମା'ଙ୍କୁ ।

ଏହାଛଡ଼ା, ଘରେ ପିଲାଏ ଥିଲେ ବାପମା'ଙ୍କର ସ୍ୱାଧୀନତା ବହୁଳାଂଶରେ ବ୍ୟାହତ ହୋଇପଡ଼େ । ସେମାନେ ନିଜ ଇଚ୍ଛାନୁସାରେ ମେଳା ମଉଛବେ, ଭୋଜିଭାତ, ସିନେମା ଥିଏଟର ଇତ୍ୟାଦିକୁ ଯାଇପାରନ୍ତିନି । ବନ୍ଧୁବାନ୍ଧବଙ୍କ ଘରକୁ ବୁଲି ଯାଇପାରନ୍ତିନି । ସାମାଜିକ ସମ୍ପର୍କ ରକ୍ଷା କରିବାରେ ଅସୁବିଧା ଭୋଗ କରନ୍ତି । ସେମାନଙ୍କର ପଢ଼ାପଢ଼ି ବ୍ୟାହତ ହୋଇପଡ଼େ ।

ବାପମା'ଙ୍କ ଏହିସବୁ ସମସ୍ୟା ସତ୍ତ୍ୱେ ସନ୍ତାନମାନଙ୍କ ଲାଳନପାଳନରୁ ମିଳେ ଏକ ସ୍ୱର୍ଗୀୟ ଆନନ୍ଦ । ପିଲାମାନଙ୍କୁ ଆନ୍ତରିକତାର ସହ ଭଲ ପାଉଥିବା ପିତାମାତାମାନେ ହିଁ ସନ୍ତାନ କାମନା କରିଥାନ୍ତି । ପିଲାମାନଙ୍କର ଯତ୍ନ ନେବା, ସେମାନଙ୍କର ବୃଦ୍ଧି ଏବଂ ବିକାଶର ଧାରାକୁ ଲକ୍ଷ୍ୟ କରିବା ଏବଂ ପରବର୍ତ୍ତୀ କାଳରେ ସେମାନଙ୍କୁ ଭଲ ମଣିଷଟିଏ ଭାବରେ ଦେଖିବାରେ ସ୍ୱତନ୍ତ୍ର ଧରଣର ସନ୍ତୋଷ ପ୍ରାପ୍ତ ହୋଇଥାଏ । ମନଲାଖି ପୁଅ କି ଝିଅଟିଏ ପାଇଲେ ପିତାମାତାଙ୍କର ସମସ୍ତ କ୍ଲେଶ ଦୂରୀଭୂତ ହୋଇଥାଏ । ଉତ୍ତମ ସ୍ୱଭାବର ସନ୍ତାନଟିଏ ପାଇବାରେ ତ ଜୀବନର ସର୍ବାଧିକ ସନ୍ତୋଷ । ଏହାହିଁ ସୃଷ୍ଟି । ଏହାହିଁ ଦୃଶ୍ୟମାନ ଅମରତ୍ୱ । ଏହା ତୁଳନାରେ ଅନ୍ୟାନ୍ୟ ସାଂସାରିକ କୃତିତ୍ୱର ଅହଙ୍କାର ଯଥେଷ୍ଟ ମ୍ଳାନ ।

ଏଥିରେ ଅବଶ୍ୟ ସନ୍ଦେହ ନାହିଁ ଯେ ଶିଶୁ ସନ୍ତାନଟି ପିତାମାତାଙ୍କ ପାଇଁ ଅନେକ ସମସ୍ୟା ସୃଷ୍ଟି କରିଥାଏ । ଏହି କାରଣରୁ ବହୁ ପିତାମାତା ସେମାନଙ୍କ ଅବଚେତନ ମନରେ ସନ୍ତାନ ପ୍ରତି ରୁଷ୍ଟ ହୋଇଥା'ନ୍ତି ଏବଂ ଏଥିରେ ଅସ୍ୱାଭାବିକତା କିଛି ନାହିଁ ।

କିନ୍ତୁ, ପିତାମାତାମାନେ ମନେରଖିବା ଉଚିତ ଯେ ଭିନ୍ନ ଭିନ୍ନ ପିଲା ଭିନ୍ନ ଭିନ୍ନ ସ୍ୱଭାବ ନେଇ ଜନ୍ମ ନେଇଥାନ୍ତି । ସମସ୍ତେ ପିଲା ବୟସର ହେଲେହେଁ ସମସ୍ତଙ୍କର ପ୍ରକୃତି ବା ସ୍ୱଭାବ ସମାନ ହୋଇନଥାଏ । ବାପମା'ମାନେ ମଧ୍ୟ ନିଜ ରୁଚିକୁ ଚାହିଁ ସନ୍ତାନ ଜନ୍ମ କରିବା ସମ୍ଭବ ନୁହେଁ । ପିଲାଟି ଯେଉଁ ଚରିତ୍ର ବହନ କରି ଜନ୍ମ ନେଇଥାଉ ପଛେ, ତାକୁ ସେହି ପ୍ରକାରେ ଏବଂ ଖୁସି ମନରେ ଗ୍ରହଣ କରିନେଇ ତା'ର ଚରିତ୍ର ଗଠନରେ ନିଜକୁ ନିୟୋଜିତ କରିବା ସବୁ ବାପମା'ଙ୍କର କର୍ତ୍ତବ୍ୟ । ବାପମା'ଙ୍କର ବ୍ୟକ୍ତିତ୍ୱ ମଧ୍ୟ ନିର୍ଦ୍ଦିଷ୍ଟ ରୂପ ନେଇ ସାରିଥାଏ । ସେହି ବ୍ୟକ୍ତିତ୍ୱକୁ ମଧ୍ୟ ସେମାନେ ରାତାରାତି ବଦଳେଇ ଦେଇ ପାରିବେ ନାହିଁ । କେତେକ ଭଦ୍ର ତଥା ଶାନ୍ତ ସ୍ୱଭାବର ପିତାମାତା ଶାନ୍ତ ତଥା ନମ୍ର ସ୍ୱଭାବର ସନ୍ତାନକୁ ବଢ଼େଇ କୁଢ଼େଇ ମଣିଷ କରେଇବାରେ ଆନନ୍ଦ ପାଇଥାନ୍ତି । ସେହି ପିତାମାତା କିନ୍ତୁ ବଡ଼ ଖର ଏବଂ ଜିଦିଆ ସନ୍ତାନର ଲାଳନପାଳନରେ ଅନୁଭବ କରିଥାନ୍ତି ଅସ୍ୱସ୍ତି '

ଏଭଳି ସନ୍ତାନଟିକୁ ଭଲ ପାଇବାରେ ସେମାନେ ଉଣା କରୁନଥିଲେ ମଧ୍ୟ ତାକୁ ଏକ ଆହ୍ୱାନ ରୂପେ ଗ୍ରହଣ କରିନେବା ସେମାନଙ୍କ ପାଇଁ ରୁଚିସଙ୍ଗତ ହୋଇପାରେ ନାହିଁ । ଅନ୍ୟ କେତେକ ପିତାମାତାଙ୍କ ପାଇଁ ଶେଷୋକ୍ତ ସନ୍ତାନ ବେଶ୍ ଗ୍ରହଣୀୟ, ହେଲେ ଶାନ୍ତ ତଥା ନମ୍ର ସ୍ୱଭାବର ସନ୍ତାନ ସେମାନଙ୍କର ରୁଚି ଅନୁକୂଳ ହୋଇପାରେ ନାହିଁ ।

**ପ୍ର : ପିତାମାତାମାନେ ସେମାନଙ୍କର ସନ୍ତାନମାନଙ୍କୁ ସମାନ ଭାବରେ ଭଲ ପାଇବା ପାଇଁ ବାଧ କି ?**

ଉ : ଏହା ବାସ୍ତବରେ ଏକ ଗୁରୁତ୍ୱପୂର୍ଣ୍ଣ ତଥା ସ୍ପର୍ଶକାତର ପ୍ରଶ୍ନ । କାରଣ, ଏକାଧିକ ସନ୍ତାନ ଥିବା ପିତାମାତା ଯେତେ ବିବେକୀ ହୋଇଥାଆନ୍ତୁ ନା କାହିଁକି, ସେମାନଙ୍କ ମନରେ ଏ' ସମ୍ପର୍କରେ କିଞ୍ଚିତ୍ ଅପରାଧବୋଧ ରହିବା ସ୍ୱାଭାବିକ । ସେମାନେ ପ୍ରତ୍ୟେକ ସନ୍ତାନକୁ ସମାନ ଭାବରେ ଭଲ ପାଇଥାନ୍ତି କି ନା, ସେଥିପାଇଁ ନିଜଠାରେ ସନ୍ଦେହ ପୋଷଣ କରିଥାନ୍ତି ମଧ୍ୟ । କିନ୍ତୁ ଏଥିନିମନ୍ତେ ବ୍ୟଥିତ ହେବା ଆଦୌ ସ୍ପୃହଣୀୟ ନୁହେଁ । ଅଧିକାଂଶ କ୍ଷେତ୍ରରେ ଏହା ସ୍ୱାର୍ଥ-ବର୍ଜିତ । ତାହାଛଡ଼ା, ଏହା ଉଦ୍ଦେଶ୍ୟ ପ୍ରଣୋଦିତ ନୁହେଁ ମଧ୍ୟ । ତେବେ, ପ୍ରତ୍ୟେକ ଆଦର୍ଶ ପିତାମାତା ନିଜର ସନ୍ତାନମାନଙ୍କୁ ପ୍ରାୟତଃ ସମାନ ଭାବରେ ଭଲ ପାଇଥା'ନ୍ତି ଏବଂ ସମସ୍ତଙ୍କ ପ୍ରତି ସମାନ ଭାବରେ ଶ୍ରଦ୍ଧାଶୀଳ ତଥା ଯତ୍ନଶୀଳ ହୋଇଥା'ନ୍ତି । ନିଜର ସବୁକିଛି ସମାନ ଭାବରେ ନ୍ୟସ୍ତ କରିଥାନ୍ତି ପ୍ରତ୍ୟେକ ସନ୍ତାନର ସ୍ୱାର୍ଥ ପାଇଁ । ପ୍ରତ୍ୟେକ ସନ୍ତାନର ସଫଳତା ପାଇଁ ଆବଶ୍ୟକୀୟ ତ୍ୟାଗ କରିବାକୁ ପ୍ରସ୍ତୁତ ଥାଆନ୍ତି ଏବଂ କରନ୍ତି ମଧ୍ୟ ।

କିନ୍ତୁ, ଏହା ନିଃସନ୍ଦେହ ଯେ ସବୁ ସନ୍ତାନଙ୍କର ନାଡ଼ି ନକ୍ଷତ୍ର ସମାନ ହୋଇପାରେନି । ସମସ୍ତଙ୍କର ସ୍ୱଭାବ ଚରିତ୍ର ସମାନ ହୋଇନଥିବାରୁ ପ୍ରତ୍ୟେକ ସନ୍ତାନ ପ୍ରତି ପିତାମାତାଙ୍କର ଅନୁଭବ ସମାନ ହୋଇ ନପାରିବା ସ୍ୱାଭାବିକ । ଏପରିକି ମାଆ ଗୋଟିଏ ସନ୍ତାନ ପ୍ରତି ଅଧିକ ଦୁର୍ବଳତା ପ୍ରକାଶ କରୁଥିବା ସ୍ଥଳେ ବାପ ମନରେ ଅନ୍ୟ ଏକ ସନ୍ତାନ ପ୍ରତି ଅଧିକ ଦୁର୍ବଳତା ରହିବାରେ ମଧ୍ୟ ବିଚିତ୍ରତା ନାହିଁ । ତେଣୁ, ପ୍ରତ୍ୟେକ ସନ୍ତାନର ଉପସ୍ଥିତିକୁ ସମାନ ଭାବରେ ଉପଭୋଗ କରିବା ଏବଂ ସମାନ ଧରଣର ତ୍ରୁଟି ପାଇଁ ପ୍ରତ୍ୟେକ ସନ୍ତାନ ପ୍ରତି ସମାନ ସହିଷ୍ଣୁତା ପ୍ରକାଶ କରିବାରେ କିଞ୍ଚିତ୍ ପାର୍ଥକ୍ୟବୋଧ ରହିବା ଅସମ୍ଭବ ନୁହେଁ ।

ତେଣୁ, ପ୍ରତ୍ୟେକ ସନ୍ତାନ ପ୍ରତି ଆମର ଅନୁଭବରେ ପାର୍ଥକ୍ୟ ରହିବା ପ୍ରାୟତଃ ନିଶ୍ଚିତ । ଏହା ସ୍ୱାଭାବିକ । ଏହା ମଣିଷ ଚରିତ୍ରର ପରିପନ୍ଥୀ ମଧ୍ୟ ନୁହେଁ । ସେଇଥିପାଇଁ ଦୁଇଟି ସନ୍ତାନଙ୍କ ସମାନ ପ୍ରକାରର ଆଚରଣ ଆମଠାରେ ସମାନ ପ୍ରତିକ୍ରିୟା ସୃଷ୍ଟି କରିନପାରେ ।

ପ୍ରତ୍ୟେକ ପିତାମାତା ପ୍ରତ୍ୟେକ ସନ୍ତାନ ପାଇଁ ସଚେତନ ଏବଂ ପ୍ରତ୍ୟେକଙ୍କ ପାଇଁ ବହନ କରିଥାନ୍ତି ଗଭୀର ଆନ୍ତରିକତା । ତେଣୁ, ପିତାମାତାଙ୍କ ପ୍ରତିକ୍ରିୟା ସନ୍ତାନମାନଙ୍କ ଉଦ୍ଦେଶ୍ୟରେ ପ୍ରାୟତଃ ମିଶ୍ରିତ ।

କୁହାଯାଇଛି ଯେ ପିତାମାତାମାନେ ହେଲେ ସାମାଜିକୀକରଣର କର୍ତ୍ତା । ସଂସ୍କୃତିର ସଞ୍ଚାରଣ ସେମାନଙ୍କର ପ୍ରଧାନ ଦାୟିତ୍ୱ । ପରିବାରର ପରିବେଶରୁ ହିଁ ଶିଶୁମାନେ ନିଜପ୍ରତି ଏବଂ ଅନ୍ୟମାନଙ୍କ ପ୍ରତି ନିଜର ଆଚାର ବ୍ୟବହାର ସମ୍ପର୍କରେ ଶିକ୍ଷାପ୍ରାପ୍ତ ହୋଇଥାନ୍ତି । ଶୈଶବ କାଳରେ ହିଁ ନିଜ ପିତାମାତାଙ୍କ ଘନିଷ୍ଠ ସାନ୍ନିଧ୍ୟରୁ ଏହି ଆଚାର ବ୍ୟବହାରର ରୂପରେଖ ସ୍ଥିର ହୋଇଥାଏ ।



# ସନ୍ତାନମାନଙ୍କ ପାଇଁ ଶାସନ ଓ ଶୃଙ୍ଖଳା

"ସନ୍ତାନମାନଙ୍କୁ ଶିକ୍ଷା ଦେବା ତ ପିତାମାତାମାନଙ୍କର କାମ । କିନ୍ତୁ, ସେମାନେ ମନେ ରଖିବା ଦରକାର ଯେ ସେମାନେ ମଧ୍ୟ ସନ୍ତାନମାନଙ୍କଠାରୁ ଶିକ୍ଷା ଗ୍ରହଣ କରିବା ଉଚିତ । କାରଣ, ସନ୍ତାନମାନଙ୍କଠାରୁ ପିତାମାତାମାନଙ୍କର ବହୁତ କିଛି ଶିଖିବାର ଅଛି ।"

– ଆର୍‌ନୋଲ୍‌ଡ୍ ବେନ୍ନେଟ୍

ପ୍ର : ସନ୍ତାନମାନଙ୍କୁ କଡ଼ା ଶୃଙ୍ଖଳାରେ ରଖିବା ଉଚିତ ନା ସାଧାରଣ ଶୃଙ୍ଖଳାରେ ରଖିବା ଉଚିତ ?

ଉ : ଶୃଙ୍ଖଳାକୁ ନେଇ ବିଶେଷ ଚିନ୍ତା କରନ୍ତୁନି । ପିଲାଟି ବଢ଼ିଚାଲିବା ସଙ୍ଗେ ସଙ୍ଗେ ପିତାମାତାମାନଙ୍କର ସନ୍ତାନ ପ୍ରତି ଆଚରଣ ସନ୍ତୁଳିତ ହୋଇଚାଲେ ଏବଂ ଅଳ୍ପ କିଛି ବର୍ଷ ଭିତରେ ଏହା ଆଉ ସମସ୍ୟା ହୋଇ ରହେନାହିଁ । ତଥାପି, ଯେତେ ଅନୁଭୂତି ସମ୍ପନ୍ନ ହୋଇଥିଲେ ମଧ୍ୟ କେତେକ ପିତାମାତା ସନ୍ତାନମାନଙ୍କ ଶୃଙ୍ଖଳା ତଥା ଶାସନ ବିଷୟରେ ବେଶ୍ ଘାରି ହେଉଥିବାର ଦେଖାଯାଇଥାଏ ।

ସାଧାରଣ ଶୃଙ୍ଖଳାକୁ କେହି କେହି କୋହଳ ବୋଲି ଅର୍ଥ କରିଥାନ୍ତି । କେହି କେହି ଶୃଙ୍ଖଳା ପରିଚାଳନାକୁ ବିଶେଷ ଗୁରୁତ୍ୱ ନଦେବା ପାଇଁ ଯୁକ୍ତି କରିଥା'ନ୍ତି । ଅନ୍ୟ କେହି କେହି ପିଲାକୁ ଲଗାମଛଡ଼ା କରିଦେବାର ପକ୍ଷପାତୀ । ପିଲା ଯାହା କହେ, ଯାହା କରେ ଏବଂ ଯାହା ଚାହେଁ ତାକୁ ସ୍ୱୀକୃତି ଦେଇ ଚାଲିଥାନ୍ତି ଏହି ଶେଷୋକ୍ତ ଗୋଷ୍ଠୀ । ଏଭଳି ଭାବରେ ପ୍ରତିପାଳିତ ପିଲା ପ୍ରାୟତଃ ଉଦ୍ଧତ ଓ ଅଶିଷ୍ଟ ଆଚରଣ ପ୍ରଦର୍ଶନ କରୁଥିବାର ଦେଖାଯାଇଥାଏ ।

ତେବେ, ମନେ ରଖନ୍ତୁ ଯେ କଡ଼ା ଶୃଙ୍ଖଳା କି କୋହଳ ଶୃଙ୍ଖଳାକୁ ନେଇ ଆଦୌ ମୁଣ୍ଡ ଖେଳାନ୍ତୁନି । ଯେଉଁ ବାପମା'ମାନେ ମହତ୍, ଯେଉଁ ବାପମା' ନିଜେ ଉତ୍ତମ ଆଚରଣ

ପ୍ରଦର୍ଶନ କରିଥାନ୍ତି, ଆବଶ୍ୟକ ପଡ଼ିଲେ ସେମାନେ ସନ୍ତାନମାନଙ୍କ କ୍ଷେତ୍ରରେ ଦୃଢ଼ତା ଦେଖେଇବା ନିମନ୍ତେ ଭୟ କରନ୍ତି ନାହିଁ । ବରଂ କଡ଼ା ଶାସନ ଏବଂ କୋହଳ ଶାସନ ମଧ୍ୟରେ ସମନ୍ୱୟ ରକ୍ଷାକରି ସେମାନେ ଏକ ମଝିମଝିଆ ପନ୍ଥା ଅନୁସରଣ କରିଥାନ୍ତି ଓ ଏଥିରୁ ବେଶ୍ କିଛି ସୁଫଳ ଉପଭୋଗ କରିଥାନ୍ତି । କିନ୍ତୁ ଅଧିକ କଡ଼ା ହେଲେ କି ଅଧିକ କୋହଳ ହେଲେ ତା'ର ପରିଣାମ ଆଦୌ ଶୁଭଙ୍କର ହୁଏନାହିଁ । ଏ' କ୍ଷେତ୍ରରେ ସନ୍ତାନକୁ ଗଢ଼ିବାରେ ପିତାମାତାଙ୍କ ବାସ୍ତବ ଉଦ୍ଦେଶ୍ୟ ତଥା ଦୃଷ୍ଟିକୋଣ ହିଁ ଗ୍ରହଣ କରିଥାଏ ଗୁରୁତ୍ୱପୂର୍ଣ୍ଣ ଭୂମିକା ।

ତେବେ ଯେଉଁ ପିତାମାତାଙ୍କଠାରେ ଦୃଢ଼ ଆତ୍ମବିଶ୍ୱାସ ଥାଏ, ସେମାନେ ପିଲାମାନଙ୍କୁ ଯଥାର୍ଥ ମାର୍ଗରେ ପରିଚାଳିତ କରିବାରେ ବିଶେଷ ସମସ୍ୟାର ସମ୍ମୁଖୀନ ହୋଇନଥାନ୍ତି । ଉତ୍ତମ ଆଚରଣ ପ୍ରଦର୍ଶନ କରିବା, ଗୁରୁଜନମାନଙ୍କର କଥା ମାନିବା, ଶୃଙ୍ଖଳିତ ବ୍ୟବହାର ଦେଖେଇବା ଭଳି ଗୁଣ ଶିକ୍ଷା ଦେବା ନିମନ୍ତେ ପିଲାମାନଙ୍କ ପ୍ରତି କିଛି ମାତ୍ରାରେ କଡ଼ା ହେବାରେ ବିଶେଷ କ୍ଷତି ନାହିଁ । ସେମାନେ ଅନୁକମ୍ପାଶୀଳ ଚରିତ୍ରର ହୋଇଥିଲେ ଏବଂ ସନ୍ତାନମାନଙ୍କୁ ସ୍ନେହଶ୍ରଦ୍ଧା ଦେଖେଇବାରେ କାର୍ପଣ୍ୟ କରୁନଥିଲେ, ସେମାନଙ୍କ ସନ୍ତାନମାନେ ପ୍ରାୟତଃ ପ୍ରତିକ୍ରିୟାଶୀଳ ହୋଇନଥାନ୍ତି । କିନ୍ତୁ, ପିତାମାତାମାନେ ହାକିମି ଦେଖେଇଲେ, ନିଷ୍ଠୁର ବ୍ୟବହାର କଲେ ପିଲାମାନଙ୍କର ପ୍ରତ୍ୟେକ କାର୍ଯ୍ୟରେ ଦୋଷ ଦେଖେଇଲେ ଏବଂ ପିଲାର ବୟସ ଓ ବ୍ୟକ୍ତିତ୍ୱକୁ ଚାହିଁ ତାକୁ କିଛି ସ୍ୱାଧୀନତା ନଦେଲେ କଡ଼ା ଶାସନର ପରିଣତି କ୍ଷତିକାରକ ହେବାର ସମ୍ଭାବନା ଯଥେଷ୍ଟ ବେଶୀ । କଡ଼ା ଶାସନରେ ପ୍ରତିପାଳିତ ପିଲା ସର୍ବଦା ଉଦାସ ରହିଥାଏ । ଶୈଶବକୁ ସେ ଯଥାର୍ଥ ଭାବରେ ଉପଭୋଗ କରିପାରେ ନାହିଁ । ତେଣୁ, ଜୀବନଟା ବଡ଼ ଦୁର୍ବିସହ ବୋଲି ଧାରଣା କରି ସେ ବୃଦ୍ଧି ଓ ବିକାଶ ପଥରେ ଅଗ୍ରସର ହେବାକୁ ବାଧ ହୁଏ ।

ଅନ୍ୟ ପକ୍ଷରେ ସନ୍ତାନକୁ କଡ଼ା ଶୃଙ୍ଖଳା ଭିତରେ ନ ରଖି ତାକୁ ସ୍ୱାଭାବିକ ଭାବରେ ଗ୍ରହଣ କରିନେଲେ ଓ ତାହାଠାରୁ ସହଯୋଗ ଓ ସମାଜ ଅନୁକୂଳ ବ୍ୟବହାର ମିଳୁଥିବା ପର୍ଯ୍ୟନ୍ତ ତାହା ସହ ଖୁସି ମିଜାଜିଆ ଆଚରଣ ଦେଖେଇ ଚାଲିଲେ ଏହାର ସୁପ୍ରଭାବ ସୁଦୂରପ୍ରସାରୀ । ପିତାମାତାଙ୍କଠାରୁ ଅନୁକୂଳ ବ୍ୟବହାର ପାଇଲେ ସନ୍ତାନ ଅନୁକୂଳ ବ୍ୟବହାର ପ୍ରଦର୍ଶନ କରିବା ନିମନ୍ତେ ଉତ୍ସାହିତ ହୋଇଥାଏ । ଏଭଳି ସନ୍ତାନ ତା'ର ପିତାମାତାଙ୍କୁ ଭୟ କରେନାହିଁ କି ପିତାମାତାମାନେ ମଧ୍ୟ ସନ୍ତାନକୁ ଭୟ କରନ୍ତି ନାହିଁ । ଏହା ଅବଶ୍ୟ ସତ ଯେ ସନ୍ତାନମାନଙ୍କ ପ୍ରତି ଅତି କୋହଳ ମନୋଭାବ ଦେଖେଇଲେ,

ସନ୍ତାନ ନିଜକୁ ଅଙ୍କୁଶବିହୀନ ବୋଲି ଧରିନେଇ ଅସାମାଜିକ ବ୍ୟବହାରରେ ଜଡ଼ିତ ହୋଇପଡ଼ିବାର ସମ୍ଭାବନା ଉପୁଜିପାରେ । ତେଣୁ, ପିତାମାତାମାନେ ଏଥିପ୍ରତି ସତର୍କ ରହିବା ଜରୁରୀ ।

ଏଭଳି କେତେକ ପିତାମାତା ଅଛନ୍ତି, ଯେଉଁମାନେ ସନ୍ତାନମାନଙ୍କ ପ୍ରତି ଅତି କୋହଳ । କହିବାକୁ ଗଲେ କୋହଳ ହେବା ସତେ ଯେପରି ତାଙ୍କର ସ୍ୱାଭାବିକ ଗୁଣ । ସେମାନଙ୍କ ମଧ୍ୟରୁ କେତେକ ଅନିଚ୍ଛା ସତ୍ତ୍ୱେ ନିଜକୁ ତିଳ ତିଳ ତ୍ୟାଗ କରିଥା'ନ୍ତି । ପିଲାଏ ସେମାନଙ୍କୁ କାଳେ ଭୁଲ୍ ବୁଝିବେ ଏବଂ କାଳେ ଘୃଣା କରିବାକୁ ଆରମ୍ଭ କରିବେ – ଏହି ଆଶଙ୍କାରେ ଘାରି ହୋଇଥାନ୍ତି ସେମାନେ । ସନ୍ତାନମାନଙ୍କର ଅଗ୍ରହଣୀୟ ଆଚରଣରେ ସେମାନେ ଯେ ବ୍ୟଥିତ ନହୁଅନ୍ତି ତାହା ନୁହେଁ, ବରଂ ଏଥିପାଇଁ ସେମାନେ ଭିତରେ ଭିତରେ ସନ୍ତୁଳି ହେଉଥାନ୍ତି, ହେଲେ ମୁହଁ ଫିଟେଇ କହିବାର ସାହସ ସେମାନଙ୍କର ନଥାଏ । ପିତାମାତାଙ୍କର ଏ ଧରଣର ଅସ୍ୱସ୍ତିକୁ ସନ୍ତାନ ଠିକ୍ ଠଉରେଇପାରେ । ତା'ର ଆଚରଣ ପିତାମାତାଙ୍କର ରୁଚି ଅନୁକୂଳ ହେଉନାହିଁ ଭାବି ସେ ନିଜକୁ ଅପରାଧୀ ବୋଲି ମଣେ; ଏଥିପାଇଁ କିଞ୍ଚିତ୍ ଭୀତ ହୋଇପଡ଼େ ମଧ୍ୟ । ତଥାପି, କେତେକ ପିଲା ଖୁବ୍ ସଂକୀର୍ଣ୍ଣମନା ତଥା ସ୍ୱାର୍ଥପର ହୋଇପଡ଼ି ପିତାମାତାଙ୍କର ଏହି ଅସହାୟତାରୁ ଯଥେଷ୍ଟ ଫାଇଦା ଉଠେଇବା ନିମନ୍ତେ ତତ୍ପର ହୋଇଉଠନ୍ତି । ଉଦାହରଣ ସ୍ୱରୂପ, ସଂଧ୍ୟା ହେବା ପୂର୍ବରୁ ଘରକୁ ଫେରିଆସିବା ପାଇଁ ପିଲାମାନେ ସାଧାରଣତଃ ପସନ୍ଦ କରନ୍ତି ନାହିଁ । କିନ୍ତୁ, ପିତାମାତାମାନେ ଚାହାଁନ୍ତି ଯେ ସେମାନେ ସଂଧ୍ୟା ପର୍ଯ୍ୟନ୍ତ ବାହାରେ ରହିବା ଉଚିତ ନୁହେଁ । ହେଲେ, ବହୁପିଲା ବାପମା'ଙ୍କର ଏହି ଧରଣର କଟକଣାକୁ ଭ୍ରୂକ୍ଷେପ କରନ୍ତି ନାହିଁ କି ବାପମା' ପିଲାଙ୍କୁ ଡରି ଏହାର ପ୍ରତିବାଦ କରିପାରନ୍ତି ନାହିଁ । ଏହା ଫଳରେ ସନ୍ତାନ ଏବଂ ପିତାମାତାଙ୍କ ଭିତରେ ଆରମ୍ଭ ହୋଇଯାଏ ଏକ ଶୀତଳ ଯୁଦ୍ଧ । ଦେଖିବାକୁ ଗଲେ ସନ୍ତାନମାନେ ବାପମା'ଙ୍କୁ ଡରେଇ ରଖିଥାନ୍ତି । ଏ' କ୍ଷେତ୍ରରେ ପିତାମାତାଙ୍କଠାରୁ କିଛି ଦୃଢ଼ତା ପ୍ରଦର୍ଶନ ଆଶା କରାଯାଏ । ସେମାନଙ୍କର ସାମାନ୍ୟ ଦୃଢ଼ତା ସମସ୍ୟାର ସମାଧାନ କରି ସନ୍ତାନକୁ ଉଚିତ ମାର୍ଗକୁ ନେଇ ଆସିବାରେ ଯଥେଷ୍ଟ ସହାୟକ ହୋଇଥାଏ । ସନ୍ତାନମାନେ ପିତାମାତାଙ୍କ ପ୍ରତି ବିଚାରବୁଦ୍ଧିସମ୍ପନ୍ନ ହେବା ଯେତିକି କାମ୍ୟ, ପିତାମାତାମାନେ ସନ୍ତାନମାନଙ୍କ ପ୍ରତି ବିଚାରବୁଦ୍ଧିସମ୍ପନ୍ନ ହେବା ସେତିକି କାମ୍ୟ ।

ତେବେ, ଏହା ଜଣାଶୁଣା କଥା ଯେ ପିଲାମାନଙ୍କୁ ଗଢ଼ିବାରେ ପିତାମାନେ ବିଶେଷ ଭୂମିକା ଗ୍ରହଣ କରନ୍ତି ନାହିଁ। ସେମାନେ ସନ୍ତାନମାନଙ୍କ ସହ ଖେଳନ୍ତି, ମଜାଗପ କରନ୍ତି। କିନ୍ତୁ ସେମାନଙ୍କୁ ନିୟନ୍ତ୍ରଣ କରିବା କିମ୍ବା ସୁଚିନ୍ତିତ ପରାମର୍ଶ ଦେବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନ ନେଇ ଏହି ଦାୟିତ୍ୱ ଖସେଇ ଦେଇଥାନ୍ତି ପତ୍ନୀଙ୍କ କାନ୍ଧକୁ। ସନ୍ତାନମାନେ ଘରେ କୌଣସି ଗଣ୍ଡଗୋଳ କଲେ କି ସେମାନଙ୍କୁ ନେଇ ପରିବାରରେ କୌଣସି ସମସ୍ୟା ଉପୁଜିଲେ ବାପାମାନେ ଟେଲିଭିଜନ ଦେଖା କି ଖବରକାଗଜ ପଢ଼ାରେ ବ୍ୟସ୍ତ ରହିବାର ବାହାନା ଦେଖେଇ ଏଥିରେ ମୁଣ୍ଡ ପୂରାନ୍ତି ନାହିଁ। ଏହା ସତ୍ତ୍ୱେ, ମାଆମାନେ "ହଉ ରହ, ବାପା ଘରକୁ ଫେରିବା ମାତ୍ରେ ତୋ' କୀର୍ତ୍ତିକଳାପ କଥା ତାଙ୍କୁ କହିଦେବି" – କହି ପିଲାମାନଙ୍କୁ ଡରେଇ ଆସୁଛନ୍ତି କାଳକାଳ ଧରି ! ସେମାନଙ୍କର ଏହି ବୀତସ୍ପୃହତାର କାରଣ କଅଣ ବୋଲି ପଚାରିଲେ, "ମୁଁ ତ ମୋ ବାପାଙ୍କ ଉପରେ ମନେ ମନେ ବିରକ୍ତ ହେଉଥିଲି, ମୋ' ପିଲା ଅନ୍ତତଃ ମୋ' ଉପରେ ମନେ ମନେ ବିରକ୍ତ ନହେଉ କି ମୋ' ଉପରେ ରାଗରେ ରକ୍ତଚାଉଳ ନ ଚୋବାଉ" ଭଳି କୈଫିୟତ ଦେଇଥାନ୍ତି ବାପାମାନେ। ସେମାନଙ୍କର ଯୁକ୍ତି ଯେ ସନ୍ତାନମାନଙ୍କ ସହ ବନ୍ଧୁ ଭଳି ସମ୍ପର୍କ ରଖିପାରିଲେ, ତାହାର ସୁଫଳ ଅଧିକ। ହଁ, ଏ' ଧରଣର ଯୁକ୍ତିରେ କିଛି ସାରବତ୍ତା ରହିଛି। ସନ୍ତାନମାନେ ବନ୍ଧୁଭାବାପନ୍ନ ପିତାମାତାଙ୍କୁ ଯେ ଅଧିକ ପସନ୍ଦ କରିଥାନ୍ତି, ଏଥିରେ ସନ୍ଦେହ ନାହିଁ। ହେଲେ, ସେମାନଙ୍କୁ ତ କେତେ ନା କେତେ ବନ୍ଧୁ ମିଳିପାରିବେ। ହେଲେ, ସେମାନଙ୍କର ଥାଆନ୍ତି କେବଳ ଜଣେ ପିତା ଏବଂ କେବଳ ଜଣେ ମାତ୍ର ମାତା। ପିତାମାତାମାନେ ଯେତେ ବନ୍ଧୁଭାବାପନ୍ନ ହେଲେ ମଧ୍ୟ ସନ୍ତାନମାନଙ୍କ ଜୀବନରେ ସେମାନଙ୍କର ସ୍ଥାନ ସ୍ୱତନ୍ତ୍ର ଏବଂ ସେମାନେ ନିଜର ସେହି ଗୁରୁଦାୟିତ୍ୱ ବହନ କରିବା ନିମନ୍ତେ ସମାଜ ତଥା ପରିବାର ନିକଟରେ ଉତ୍ତରଦାୟୀ। ବାପମା'ମାନେ ଡରୁଆ ହେଲେ କି ସନ୍ତାନମାନଙ୍କୁ ଦିଗ୍‌ଦର୍ଶନ ଦେବାରେ କୁଣ୍ଠିତ ହେଲେ, ସନ୍ତାନମାନେ କାହାକୁ ଆଶ୍ରୟ କରି ଜୀବନ ଯାତ୍ରାରେ ଅଗ୍ରସର ହେବେ ?

ବାପମା'ଙ୍କ ଚରିତ୍ରରେ ଦୃଢ଼ତାର ଅଭାବ ପରିଲକ୍ଷିତ ହେଲେ, ସନ୍ତାନମାନେ ଏଥିରୁ ବେଶ୍ କିଛି ଫାଇଦା ଉଠେଇ ବାପମା'ଙ୍କ ଜୀବନକୁ ଦୁର୍ବିସହ କରିଦିଅନ୍ତି ଏବଂ ନିଜେ ମଧ୍ୟ ଦୁର୍ବିସହ ଜୀବନ ବିତେଇବାକୁ ବାଧ୍ୟ ହୋଇଥା'ନ୍ତି। ସନ୍ତାନମାନଙ୍କ ଆଚରଣରେ ଯଥେଷ୍ଟ ଅତିଷ୍ଠ ହୋଇପଡ଼ିଲେହିଁ ପିତାମାତା ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥା'ନ୍ତି;

ହେଲେ ଏହା ସନ୍ତାନ ଏବଂ ପିତାମାତା, ଉଭୟ ଗୋଷ୍ଠୀ ପାଇଁ ଅତ୍ୟନ୍ତ ଅସ୍ୱସ୍ତିକର ହୋଇଥାଏ ।

ବହୁ ପରିବାରରେ ସନ୍ତାନମାନଙ୍କୁ ଶୃଙ୍ଖଳିତ କରିବାରେ ବାପମାନେ ଗୌଣ ଭୂମିକା ଗ୍ରହଣ କରିଥାନ୍ତି । ମୁଖ୍ୟ ଭୂମିକା ଗ୍ରହଣ କରିଥାନ୍ତି ମାଆମାନେ । କହିବାକୁ ଗଲେ ଏ' କ୍ଷେତ୍ରରେ ବାପ ଏବଂ ମା', ଉଭୟଙ୍କର ଦାୟିତ୍ୱ ବହନ କରିଥାନ୍ତି କେବଳ ମାଆ । ପିଲାମାନେ ଭଲ ଭାବରେ ଜାଣନ୍ତି ଯେ ସେମାନଙ୍କର ଅସଦାଚରଣ ବୟସ୍କମାନଙ୍କୁ ଖୁବ୍ ବିରକ୍ତିକର ହୋଇଥାଏ । କିନ୍ତୁ, ଅସଦାଚରଣକୁ ଦେଖି କିମ୍ୱା ସେ ବିଷୟରେ ଶୁଣି ପିତା ନିରବ ରହିଲେ ସନ୍ତାନ ତାହା ପସନ୍ଦ କରିପାରେ ନାହିଁ । ବିଭିନ୍ନ ଅନୁଧ୍ୟାନରୁ ପ୍ରମାଣ ମିଳୁଛି ଯେ ଏ ଧରଣର ନିଷ୍କ୍ରିୟ ପିତାଙ୍କୁ ସନ୍ତାନମାନେ ଖୁବ୍ ଭୟ କରିଥାନ୍ତି । ଯେଉଁ ପିତା ସନ୍ତାନକୁ ମଣିଷ କରି ଗଢ଼ିବାରେ ନିଜର ଯତ୍‌ପରୋନାସ୍ତି ଅବଦାନ ଦେଇଥାଆନ୍ତି, ସେ ସନ୍ତାନର ଅଶିଷ୍ଟ ଆଚରଣ ନିମନ୍ତେ ବିରକ୍ତି ପ୍ରକାଶ କରିବା ସତ୍ତ୍ୱେ ସନ୍ତାନ ଏ' ସମ୍ପର୍କରେ ପ୍ରତିକ୍ରିୟା ପ୍ରକାଶ କରି ନଥାଏ । ବରଂ, ପିତାଙ୍କ ଅସନ୍ତୋଷ ଓ ରୋଷ ପ୍ରକାଶକୁ ଶିକ୍ଷା ଗ୍ରହଣ କରିବାର ଏକ ସୁଯୋଗ ରୂପେ ମନେ କରିଥାଏ ସେ । ଏହା ଯେ ଭବିଷ୍ୟତ ଜୀବନ ପାଇଁ ଅନୁକୂଳ ହୋଇପାରିବ, ତା' ମନରେ ଏଭଳି ଧାରଣା ଜାତ ହୁଏ । ତା'ଠାରେ ଜାତ ହୁଏ ଆତ୍ମପ୍ରତ୍ୟୟ ଏବଂ ଆତ୍ମବିଶ୍ୱାସ । ତା' ମନରୁ ଭୟ ଅପସରି ଯାଏ । ସମାଜ-ଅନୁକୂଳ ଆଚରଣ ପ୍ରଦର୍ଶନ କରିବା ନିମନ୍ତେ ଉତ୍ସାହିତ ହୁଏ ସେ । ଯେଉଁ ପିତା ସନ୍ତାନ ପ୍ରତି ନିଜର ଅସନ୍ତୋଷକୁ ବ୍ୟକ୍ତ ନକରି ଗୋପନ ରଖିବାରେ ଆଗ୍ରହୀ, ସେହି ପିତା ନିଜର କ୍ରୋଧକୁ ଲୁକ୍କାୟିତ କରି ରଖିଛନ୍ତି ବୋଲି ସନ୍ତାନଟି କଳ୍ପନା କରିନିଏ । ଏହାର ପରିଣାମ କାହା ପାଇଁ ହେଲେ ବି ନିରାପଦ ବିବେଚିତ ହୋଇପାରେନାହିଁ ।



# ପିତାଙ୍କ କର୍ତ୍ତବ୍ୟ

"ବହୁ ପିତାମାତା ସନ୍ତାନମାନଙ୍କ ପାଇଁ ସବୁକିଛି ତ୍ୟାଗ କରିବାକୁ ପ୍ରସ୍ତୁତ; ହେଲେ କାଣିଚାଏ ସମୟ ତ୍ୟାଗ କରିବାରେ କୁଣ୍ଠିତ ।"

–ମରିସ୍ ସେଇଙ୍ଗର୍

ପ୍ର : ସନ୍ତାନର ଲାଳନପାଳନ ତଥା ଯତ୍ନ ନେବାରେ ପିତା କେଉଁ ଧରଣର ଭୂମିକା ଗ୍ରହଣ କରିବା ଉଚିତ ?

ଉ: ଯେଉଁ ମହିଳାମାନେ କର୍ମଜୀବୀ, ସେମାନଙ୍କ ସ୍ୱାମୀମାନେ ପରିବାର ଚଳେଇବା ଏବଂ ସନ୍ତାନର ଲାଳନପାଳନ ତଥା ଯତ୍ନ ନେବାରେ ଅଧିକ ଅଂଶଗ୍ରହଣ କରୁଥିବାର ଏବେ ପରିଲକ୍ଷିତ ହେଉଛି । ମାଆମାନେ ଯଦି ଏହି କାମକୁ ସୁଚାରୁରୂପେ ତୁଲାଇ ଆସୁଛନ୍ତି, ବାପାମାନେ ଏହା ପାରିବେନି କାହିଁକି ଯେ ? ସନ୍ତାନର ସୁରକ୍ଷା ଏବଂ ବିକାଶ ଦିଗରେ ପିତା ଏବଂ ମାତା ସମାନ ଭାବରେ ଅଂଶଗ୍ରହଣ କରିବା କାମ୍ୟ । ତେବେ, ବାପାମାନେ ମନେରଖିବା ଦରକାର ଯେ ସେମାନଙ୍କର ଏଭଳି ସହଯୋଗ ସ୍ତ୍ରୀଙ୍କର କାର୍ଯ୍ୟଭାରକୁ ଲାଘବ କରିବା ନିମନ୍ତେ ଅଭିପ୍ରେତ ନୁହେଁ । ଏହି ପ୍ରକାରର ଧାରଣା ପୋଷଣ କଲେ ସେମାନଙ୍କର ସହଯୋଗ ପତ୍ନୀଙ୍କ ପ୍ରତି ଅନୁକମ୍ପା ପ୍ରଦର୍ଶନ ବୋଲି ହିଁ ବିବେଚିତ ହେବ । ସନ୍ତାନ ପ୍ରତି ଯତ୍ନନେବା ପିତାମାତା ଉଭୟଙ୍କର ସାମାଜିକ କର୍ତ୍ତବ୍ୟ । ତେଣୁ ଏହି କାର୍ଯ୍ୟରେ ପିତାଙ୍କର ସମ୍ପୂର୍ଣ୍ଣ ଆନ୍ତରିକତା ରହିଥିବା ଆବଶ୍ୟକ । ସମ୍ପ୍ରତି ପରିସ୍ଥିତି ବଦଳିବାରେ ଲାଗିଛି । ବହୁ ମହିଳା ପୂରା ସମୟ ପାଇଁ ଚାକିରି କରୁଛନ୍ତି । ସୁତରାଂ, ସେମାନଙ୍କର ସ୍ୱାମୀମାନେ ପରିବାରର କାମଧନ୍ଦା କରିବା ଏବଂ ଶିଶୁ ସନ୍ତାନର ଲାଳନପାଳନରେ ସକ୍ରିୟ ଅଂଶ ଗ୍ରହଣ କରିବାର ଆବଶ୍ୟକତା ସୁଦୂରପ୍ରସାରୀ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ, ଛୋଟ ଛୋଟ ପିଲାମାନଙ୍କର ଯତ୍ନ ନେବା ପୁରୁଷମାନଙ୍କୁ ବିଶେଷ ସୁହାଏ ନାହିଁ । ପତ୍ନୀଙ୍କର ଅନୁପସ୍ଥିତିରେ ଶିଶୁ ସନ୍ତାନକୁ ଠିକ୍ ସମୟରେ ଖୁଆଇବା, ସେମାନଙ୍କ ଝାଡ଼ା ପରିସ୍ରା ସଫା କରିବା, ସେମାନଙ୍କ ପାଇଁ କୋମଳ

ବିଛଣା କରିବା ଏବଂ କାନ୍ଦିଲେ ବୁଝେଇ ସୁଝେଇ ବୋଧ କରିବା ଇତ୍ୟାଦି ସେମାନଙ୍କ ପାଇଁ ହୋଇଥାଏ ଖୁବ୍ ଅସ୍ୱସ୍ତିକର । ମାନସିକ ସ୍ତରରେ ମଧ୍ୟ ସେମାନେ ଏହାକୁ ଗ୍ରହଣ କରିପାରନ୍ତି ନାହିଁ । ନିଜ ପୌରୁଷ ପ୍ରତି ଏହା ଏକ ଅବମାନନା ବୋଲି ମନେ କରିଥା'ନ୍ତି ସେମାନେ । ଅବଶ୍ୟ ପିଲାମାନେ ଟିକିଏ ବଡ଼ ହୋଇଗଲେ ସେମାନଙ୍କୁ ଚଳେଇ ନେବାରେ ବାପାମାନଙ୍କୁ ବିଶେଷ ଅସୁବିଧା ଭୋଗ କରିବାକୁ ପଡ଼ିନଥାଏ । ହେଲେ, ପିଲାଟି ବଡ଼ ହେବାଯାଏ ତା'ର ପୁଣି ଦେଖାଶୁଣା କରିବ କିଏ ? ବଡ଼ ହେବାଯାଏ ଅପେକ୍ଷା କରିବା ଫଳରେ ବହୁ ମୂଲ୍ୟବାନ ସମୟର ଅପଚୟ ଘଟେ । ଶିଶୁର ଯତ୍ନ ନେବାର କଳାକୌଶଳ ଶିଖିବାପାଇଁ ବାପା ପ୍ରସ୍ତୁତ ହେଉ ହେଉ ମାଆଟି ଶିଶୁର ଯତ୍ନନେବା କଳାରେ କୁଶଳୀ ହୋଇଉଠେ । କୁଶଳୀ ପତ୍ନୀ ଏବଂ ଅକୁଶଳୀ ପତି ପିତାମାତା ଭାବରେ ସନ୍ତାନର ଦେଖାଶୁଣା କରିବାରେ ସମାନ ଅଂଶ ଗ୍ରହଣ କରିବା ଆଦୌ ସମ୍ଭବପର ହୋଇପାରେ ନାହିଁ ।

ଏହାଛଡ଼ା ଅଧିକାଂଶ ମାଆ ତାଙ୍କର ପ୍ରଥମ ସନ୍ତାନର ଯତ୍ନ ନେବାରେ ବେଳହୁଁ ଖୁବ୍ ତତ୍ପରତା ପ୍ରକାଶ କରିଥାନ୍ତି ଏବଂ ଏହି କାର୍ଯ୍ୟକୁ ଖୁବ୍ ଆନ୍ତରିକତାର ସହ ନିର୍ବାହ କରି ଚାଲନ୍ତି । ଏଥିରୁ ଅବ୍ୟାହତି ନେବାର ସୁଯୋଗ ସେମାନଙ୍କର ନଥାଏ । ଚଞ୍ଚଳ ଆରମ୍ଭ କରିବା ଫଳରେ ଚଞ୍ଚଳ ଶିଖିବାର ସୁବିଧା ହୁଏ ସେମାନଙ୍କ ପାଇଁ ।

ତେବେ, ପ୍ରଶ୍ନ ଉଠେ ଯେ ଯେଉଁ ପରିବାରରେ ସ୍ୱାମୀ ପୂରା ସମୟ ପାଇଁ କର୍ମଜୀବୀ ଏବଂ ସ୍ତ୍ରୀ ପୂରା ସମୟ ପାଇଁ ଗୃହିଣୀ, ସେ କ୍ଷେତ୍ରରେ ଶିଶୁ ସନ୍ତାନର ଯତ୍ନ ନେବା ନିମନ୍ତେ ପିତାଙ୍କର ଭୂମିକା କଅଣ ହେବା ଉଚିତ ?

ସେ କ୍ଷେତ୍ରରେ ପିତାମାନେ ସନ୍ତାନମାନଙ୍କ ସେବାଯତ୍ନ କରିବାରୁ ସମ୍ପୂର୍ଣ୍ଣ ଅବ୍ୟାହତି ନେବା ଆଦୌ ସ୍ପୃହଣୀୟ ନୁହେଁ । ସମୟ ବାହାର କରି ସେମାନେ ଏହି କାର୍ଯ୍ୟରେ ନିଜକୁ କିଛି ମାତ୍ରାରେ ନିୟୋଜିତ କରିବା ବାଞ୍ଛନୀୟ । ସାରା ଦିନ ଘର କାମ କରି କରି ଏବଂ ସନ୍ତାନର ଅଳି ଅର୍ଦ୍ଦଳି ସହି ଓ ତା'ର କାମଧନ୍ଦା କରି ସଂଧ୍ୟାବେଳକୁ ପତ୍ନୀ କ୍ଳାନ୍ତ ହୋଇପଡ଼ିବା ସ୍ୱାଭାବିକ । ସେତେବେଳକୁ ତାଙ୍କର ଧୈର୍ଯ୍ୟ ଊଣା ହୋଇ ଆସିବାରେ ମଧ୍ୟ ଅସ୍ୱାଭାବିକତା କିଛି ନାହିଁ । ତେଣୁ, ସ୍ୱାମୀ କାର୍ଯ୍ୟକ୍ଷେତ୍ରରୁ ଆସି ଘରେ ପହଞ୍ଚିଲା ପରେ କିଛି ଖାଇନେଇ ଏବଂ କିଛି ସମୟ ବିଶ୍ରାମ ନେଇ ପତ୍ନୀଙ୍କଠାରୁ ସନ୍ତାନର ଦାୟିତ୍ୱ ବହନ କରିବା ଉଚିତ । ଏପରି କରିବା ଦ୍ୱାରା ପତ୍ନୀଙ୍କୁ ବି ବିଶ୍ରାମ ମିଳିଯିବ ଏବଂ ସନ୍ତାନମାନେ ପିତାମାତା

ଉଭୟଙ୍କର ନେତୃତ୍ୱ ଏବଂ ନିୟନ୍ତ୍ରଣ କରିବାର ଧାରା ସମ୍ପର୍କରେ ଅନୁଭୂତି ଅର୍ଜନ କରିପାରିବେ ।

ପରିବାରର ଦାୟିତ୍ୱ ସମ୍ଭାଳିବାରେ ପିତା ନିଜର ଯଥୋଚିତ ଅଂଶ ଗ୍ରହଣ କଲେ କେବଳ ଯେ ପତ୍ନୀଙ୍କର କାର୍ଯ୍ୟଭାର ଲାଘବ ହୁଏ ତାହା ନୁହେଁ, ପତ୍ନୀଙ୍କ କାମରେ ସହଯୋଗ କଲେ ଉଭୟ ଉଭୟଙ୍କର ଘନିଷ୍ଠ ସାନ୍ନିଧ ଲାଭକରି ପାରସ୍ପରିକ ସମ୍ପର୍କକୁ ଅଧିକ ସୁଦୃଢ଼ କରିବାର ସୁଯୋଗ ଲାଭ କରନ୍ତି । ପରିବାରର ମଙ୍ଗଳ ସାଧନ ପାଇଁ ଏଭଳି ସହଯୋଗ ଅପରିହାର୍ଯ୍ୟ । କାରଣ, ପରିବାର ପରିଚାଳନା ପତିପତ୍ନୀ ଉଭୟଙ୍କର ଦାୟିତ୍ୱ । ପରିବାର ଚଳେଇବା ପାଇଁ ପିତା ଏବଂ ମାତା ଉଭୟଙ୍କର ସକ୍ରିୟ ସହଯୋଗ ରହିଥିବାର ଦେଖିଲେ, ସନ୍ତାନମାନେ ଏହାଦ୍ୱାରା ବହୁଳ ଭାବରେ ପ୍ରଭାବିତ ହୋଇଥାଆନ୍ତି । ଏହା ସେମାନଙ୍କ ଭବିଷ୍ୟତ ଗଠନରେ ଯଥେଷ୍ଟ ସହାୟକ ହୋଇଥାଏ । ବଡ଼ ହୋଇ ସେମାନେ ପିତାମାତାର ପରିଚିତି ଲାଭ କଲାପରେ ପରିବାର ତଥା ଶିଶୁ ସନ୍ତାନ ପ୍ରତି ନିଜ ନିଜର କର୍ତ୍ତବ୍ୟ ନିର୍ବାହ କରିବାରେ କୁଣ୍ଠିତ ହୋଇନଥାନ୍ତି ।

ଶିଶୁ ସନ୍ତାନର ଯତ୍ନ ନେବାର ପ୍ରଶ୍ନ ଉଠିଲେ, ବାପାମାନେ ଶିଶୁର ଯାବତୀୟ କାମ କରିବା ଉଚିତ । ତାକୁ ଖୁଆଇଦେବା, ତା'ର ପିନ୍ଧା ପୋଷାକ ପତ୍ର ଏବଂ ବିଛଣା ବଦଳେଇବା, ତା'ର ଝାଡ଼ା ପରିସ୍ରା ପରିଷ୍କାର କରିବା, କନାପଟା ଧୋଇବା, ଲୁହ ଏବଂ ସିଂଘାଣି ପୋଛିବା, ଗାଧୋଇଦେବା, ବିଛଣାରେ ନେଇ ଶୁଆଇବା, ଗପ କହିବା, ଖେଳନା ଧରି ଖେଳେଇବା, ଭାଇଭଉଣୀଙ୍କ ଝଗଡ଼ା ମେଣ୍ଟେଇବା, ସ୍କୁଲ୍ ପଢ଼ା କରିବାରେ ସାହାଯ୍ୟ କରିବା, ସେମାନେ ପଚାରୁଥିବା ପ୍ରଶ୍ନଗୁଡ଼ିକର ଠିକ୍ ଠିକ୍ ଉତ୍ତର କହିଦେବା ଇତ୍ୟାଦି କାମରେ ବାପାମାନେ ପୂର୍ଣ୍ଣ ସହଯୋଗ କରିବା ଉଚିତ । ଏପରିକି ପତ୍ନୀ ଘରେ ଥିଲେ ମଧ୍ୟ ପତି ନିଜେ ନିଜେ ଏହିସବୁ କାମ ସମ୍ପାଦନ କରିବା ମଧ୍ୟ ବାଞ୍ଛନୀୟ । ତାହାଛଡ଼ା, ସେମାନଙ୍କୁ ନୀତି ଶିକ୍ଷା ଦେବା, କଅଣ କଅଣ କରିବା ଉଚିତ, କଅଣ କଅଣ କରିବା ଉଚିତ ନୁହେଁ, ସେ ବିଷୟରେ ଅବଗତ କରାଇବା, ସାମାଜିକ ନୀତି ନିୟମ, କର୍ତ୍ତବ୍ୟ ଓ ଦାୟିତ୍ୱ ସମ୍ପର୍କରେ ଧାରଣା ପ୍ରଦାନ କରିବା ଇତ୍ୟାଦି ମଧ୍ୟ ପିତାଙ୍କ କର୍ତ୍ତବ୍ୟର ଅନ୍ତର୍ଭୁକ୍ତ ।

ଏତଦ୍‌ବ୍ୟତୀତ ବାପାମାନେ ସମସ୍ତ ପାରିବାରିକ କାର୍ଯ୍ୟ ମଧ୍ୟ କରିବା ଦରକାର । ଦୋକାନ ସଉଦା କରିବା, ପରିବା ପତ୍ର କିଣିବା, ଖାଦ୍ୟ ପ୍ରସ୍ତୁତ କରିବା, ରୋଷେଇ କରିବା, ଖାଦ୍ୟ ପରିବେଷଣ କରିବା, ବାସନପତ୍ର ଧୋଇବା, ବିଛଣା କରିବା, ଘରେ ଝାଡୁଦେବା ଓ ଲୁଗାପଟା ସଫା କରିବା ତଥା ଇସ୍ତ୍ରି ଦେବା ଭଳି ଘରର ଯାବତୀୟ କାର୍ଯ୍ୟ

କରିବା ପାଇଁ ସେମାନେ ତତ୍ପରତା ପ୍ରକାଶ କରିବା ଆବଶ୍ୟକ ଓ ଏହାକୁ ଆନ୍ତରିକତାର ସହ ନିର୍ବାହ କରିବା ମଧ୍ୟ ବାଞ୍ଛନୀୟ । ପିଲା ବୟସରେ ଏହିସବୁ କାମ କରିଥିଲେ ଏବଂ କରିବାର ଅଭ୍ୟାସ ରଖିଥିଲେ, ପରେ ଏ'ସବୁ କରିବା ନିମନ୍ତେ କୁଣ୍ଠା ପ୍ରକାଶ ପାଏନାହିଁ ।

ବାପାମାନଙ୍କଠାରେ ନିମ୍ନଲିଖିତ ସଚେତନତା ପ୍ରକାଶ ପାଇଲେ ପରିବାରର ଯେ ଅଶେଷ ମଙ୍ଗଳ ସାଧନ ହୋଇପାରନ୍ତା ଏବଂ ମାଆ ଓ ସନ୍ତାନମାନଙ୍କର ଯଥେଷ୍ଟ ଉପକାର ହୋଇପାରନ୍ତା, ଏଥିରେ ଆଦୌ ସନ୍ଦେହ ନାହିଁ ।

- ସେମାନଙ୍କର ଚାକିରି ଏବଂ ବୃତ୍ତି ସେମାନଙ୍କ ପାଇଁ ଯେତିକି ଗୁରୁତ୍ୱପୂର୍ଣ୍ଣ, ସେମାନଙ୍କ ସନ୍ତାନସନ୍ତତିମାନଙ୍କର ଯତ୍ନ ଏବଂ ଲାଳନପାଳନ ସେତିକି ଗୁରୁତ୍ୱପୂର୍ଣ୍ଣ ।
- ନିଜ ନିଜର ପତ୍ନୀ ଏବଂ ପିଲାପିଲିଙ୍କ ସହ ସମୟ ବିତେଇବା ପାଇଁ ନିଜ ବୃତ୍ତିରୁ ସମୟ ବାହାରି କରିବା ଅତ୍ୟନ୍ତ ଜରୁରୀ ।
- ପରିବାର ପାଇଁ ଯାହା ମଙ୍ଗଳକର, ତାହା ପତିପତ୍ନୀ ଉଭୟ ଆଲୋଚନା ଦ୍ୱାରା ସ୍ଥିର କରିବା ଉଚିତ ଓ ତଦନୁସାରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଉଚିତ ।
- କର୍ମକ୍ଷେତ୍ରରେ କାର୍ଯ୍ୟରତ ସହକର୍ମୀମାନଙ୍କୁ ଜଣେଇଦେବା ଆବଶ୍ୟକ ଯେ ବିଶ୍ୱସ୍ତ କର୍ମଚାରୀ ହେବା ସହିତ ପତ୍ନୀ ଏବଂ ସନ୍ତାନସନ୍ତତିଙ୍କର ସ୍ୱାର୍ଥ ଦେଖିବା ମଧ୍ୟ ତାଙ୍କର ପ୍ରାଥମିକ କର୍ତ୍ତବ୍ୟ ।
- କର୍ମକ୍ଷେତ୍ରରେ କାର୍ଯ୍ୟରତ ପ୍ରତ୍ୟେକ ପିତାଙ୍କୁ ମଧ୍ୟ ନିଜ ନିଜର ଏହି କର୍ତ୍ତବ୍ୟ ସମ୍ପର୍କରେ ସଚେତନ କରିଦେବା ବାଞ୍ଛନୀୟ ।



# ଉଚ୍ଚାଭିଳାଷର ଉତ୍ସ

"ଯେଉଁ ପରିବାରରେ ଶାନ୍ତି, ସଙ୍ଗତି ଏବଂ ଐକ୍ୟ ବାସ କରିଥାନ୍ତି, ସେଠାରେ ସହାବସ୍ଥାନ କରିଥାଏ ସଫଳତା ।"

–ପଲ୍ ହାର୍ଭେ

ପ୍ର : ସନ୍ତାନମାନଙ୍କଠାରେ ଚରିତ୍ରର ବିକାଶ ହୁଏ କିପରି ?

ଉ : ବର୍ତ୍ତମାନ ଯୁଗରେ ସନ୍ତାନ ଲାଳନପାଳନ ଉଭା ହୋଇଛି ଏକ କଠିନ ସମସ୍ୟା ରୂପେ । କାରଣ, ପିତାମାତା ଓ ଗୁରୁଜନମାନେ ଏବେ ପ୍ରାୟତଃ ଦିଗହରା । ପୁରୁଣା କାଳିଆ ପାରମ୍ପରିକ ପଦ୍ଧତି ଅବଲମ୍ବନ କରି ସନ୍ତାନମାନଙ୍କୁ ମୂଲ୍ୟବୋଧ ଓ ଚରିତ୍ରଗଠନ ସମ୍ପର୍କରେ ଶିକ୍ଷା ଦେବା ଠିକ୍ ନା ଏବକାର ବଡ଼ପଣ୍ଡାମାନଙ୍କ ପରାମର୍ଶ ମାନି ସେମାନଙ୍କ ପ୍ରଦର୍ଶିତ ପନ୍ଥାରେ ସନ୍ତାନମାନଙ୍କ ଚାରିତ୍ରିକ ବିକାଶ ପାଇଁ ପଦକ୍ଷେପ ନେବା ଠିକ୍ ?

ଅତୀତରେ ବିଶ୍ୱର ପ୍ରାୟ ପ୍ରତ୍ୟେକ ସମ୍ପ୍ରଦାୟରେ ମାନବିକତାର ବିକାଶ ଉପରେ ଦିଆଯାଉଥିଲା ଗୁରୁତ୍ୱ । ଧର୍ମ ଓ ଈଶ୍ୱରଙ୍କର ଅବତାରଣାକୁ ପ୍ରଦାନ କରାଯାଉଥିଲା ଅଗ୍ରାଧିକାର । ଜୀବନରେ ଈଶ୍ୱରଙ୍କୁ ସାକାର କରାଇବା ଥିଲା ଜୀବନର ପ୍ରଧାନ ଲକ୍ଷ୍ୟ । ତେଣୁ ନିଜର ମୌଳିକ ଚରିତ୍ରକୁ ଉପେକ୍ଷା କରି ଦିବ୍ୟାନୁକୂଳ ଚରିତ୍ର ବିକାଶ କରିବା ପ୍ରୋତ୍ସାହନ ପାଉଥିଲା । ଶିକ୍ଷକ, ପିତାମାତା ନିଜ ନିଜ ମଧ୍ୟରେ ସହଯୋଗ ଓ ସମନ୍ୱୟ ରକ୍ଷାକରି ମୂଲ୍ୟବୋଧଭିତ୍ତିକ ଶିକ୍ଷା ଦେବାରେ ତତ୍ପର ରହିଥିଲେ । ସନ୍ତାନମାନଙ୍କୁ ଶିକ୍ଷାନୁବର୍ତ୍ତୀ କରାଇବା ଓ ସମାଜରେ ପାରସ୍ପରିକ ସହଯୋଗ ରକ୍ଷା କରି ଚଳିବା ତଥା ଦେଶ ପ୍ରତି ଆନୁଗତ୍ୟ ପ୍ରକାଶ କରିବା ବିଷୟରେ ସେମାନଙ୍କୁ ସଚେତନ କରିଚାଲିଥିଲେ । ତେବେ, ପିତାମାତାମାନେ ସନ୍ତାନମାନଙ୍କ ବିକାଶ ଦିଗରେ ଏହି ଯେଉଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଥିଲେ, ତାହା ଠିକ୍ କି ଭୁଲ୍, ସେ ଚିନ୍ତା ମୁଣ୍ଡକୁ ଆଣୁନଥିଲେ ।

ପୃଥିବୀର ବହୁ ସମ୍ପ୍ରଦାୟ ଗ୍ରହଣ କରି ନେଇଥିଲେ ଯେ ପରିବାରର ସ୍ୱାର୍ଥରକ୍ଷା କରିବା ଉଦ୍ଦେଶ୍ୟରେ ହିଁ ସନ୍ତାନମାନଙ୍କୁ ସଂସାରକୁ ଆଣିବାକୁ ପଡ଼ିଥାଏ ଓ ସେମାନଙ୍କୁ ଲାଳନପାଳନ କରିବାକୁ ପଡ଼ିଥାଏ । ତେଣୁ, ଶୈଶବରେ ଓ ଯୌବନରେ ସେମାନଙ୍କୁ ପରିବାର ଅନୁକୂଳ ଦୃଷ୍ଟିକୋଣ ପୋଷଣ କରିବା ନିମନ୍ତେ ଶିକ୍ଷା ଦିଆଯାଉଥିଲା । ଗୁରୁଜନମାନଙ୍କୁ ସମ୍ମାନ ଦେବା ଥିଲା ଶିକ୍ଷାର ଏକ ପ୍ରଧାନ ଅଙ୍ଗ । ପରିବାରର କଲ୍ୟାଣକୁ ଦୃଷ୍ଟିରେ ରଖି ପରିବାରର ଜ୍ୟେଷ୍ଠମାନେ ପୁଅଝିଅଙ୍କ ବିବାହ ପାଇଁ ନିଜେ ପାତ୍ରୀ/ପାତ୍ର ସ୍ଥିର କରୁଥିଲେ । ପୁଅଝିଅ ନିଜ ନିଜର ଜୀବନସାଥୀ ନିର୍ବାଚନ କରିବା ଅସାମାଜିକ ବୋଲି ଗ୍ରହଣ କରାଯାଉଥିଲା ।

କିନ୍ତୁ ଆଜି ଯୁଗ ବଦଳିଯାଇଛି । ପରିବାର, ରାଷ୍ଟ୍ର କିମ୍ବା ଈଶ୍ୱରଙ୍କୁ ସେବା କରିବା ଭଳି ଚରିତ୍ରର ବିକାଶ କରାଇବା ପାଇଁ ଏବେ ତତ୍ପରତା ପ୍ରକାଶ ପାଉନାହିଁ । ପିଲାମାନେ ନିଜ ଜୀବନର ଲକ୍ଷ୍ୟ ନିଜେ ସ୍ଥିର କରିବା ଓ ନିଜ ମନ ପସନ୍ଦକୁ ଚାହିଁ ବୃତ୍ତି ନିର୍ବାଚନ କରିବାର ସ୍ୱାଧୀନତା ଉପଭୋଗ କରୁଛନ୍ତି । ଅଧିକାଂଶ କ୍ଷେତ୍ରରେ ଜୀବନର ଲକ୍ଷ୍ୟ ମୂଲ୍ୟବୋଧଭିତ୍ତିକ ନ ହୋଇ ହୋଇଛି ବସ୍ତୁବାଦଭିତ୍ତିକ ।

ବହୁ ସମ୍ପ୍ରଦାୟରେ ପ୍ରାଚୀନ ପରମ୍ପରାକୁ ସମ୍ମାନ ଜଣାଇ ପାରିବାରିକ ରୀତିନୀତିକୁ ସୁରକ୍ଷିତ ରଖିବା ପ୍ରତି ଗୁରୁତ୍ୱ ଦିଆଯାଉଛି । ତେଣୁ, ପିତାମାତା ଏବଂ ଗୁରୁଜନଙ୍କୁ ଆଦର୍ଶ ସ୍ଥାନୀୟ ବୋଲି ଧରିନେବା ପାଇଁ ପିଲାଙ୍କୁ ଶିକ୍ଷା ଦିଆଯାଉଛି । ସବୁ କଥାରେ ପରାମର୍ଶ ଏବଂ ସାହାଯ୍ୟ ନିଆଯାଉଛି ଅଜାଆଈଙ୍କଠାରୁ । କିନ୍ତୁ, ଏହି ପାରମ୍ପରିକ ପଦ୍ଧତି ଅବଲମ୍ବନ କରିବା ପ୍ରତି ଏବେ ପ୍ରକାଶ ପାଇଲାଣି ବୀତସ୍ପୃହତା । ସନ୍ତାନ ଲାଳନପାଳନ ଗୁରୁଜନ-କେନ୍ଦ୍ରିକ ନହୋଇ ସନ୍ତାନ-କେନ୍ଦ୍ରିକ ହେଲାଣି । ଶିଶୁ ସନ୍ତାନମାନଙ୍କୁ ଗୁରୁଜନମାନଙ୍କ ସମାନ ପର୍ଯ୍ୟାୟର ବୋଲି ଧରି ନିଆଗଲାଣି ।

ପିଲାମାନେ ଉଚ୍ଚାକାଂକ୍ଷୀ ହେବା ପ୍ରତ୍ୟେକ ପିତାମାତା ଚାହାଁନ୍ତି । ତେବେ, ସେମାନଙ୍କ ଉଚ୍ଚାକାଂକ୍ଷା ପୂରଣ କରିବାରେ ମାନବିକତା ଯେପରି ବଳି ନପଡ଼େ, ସେଥିପ୍ରତି ସତର୍କ ରହିବା ଆବଶ୍ୟକ । ଏବେ କୁହାଯାଉଛି ଯେ ଯେଉଁ ପିତାମାତାମାନେ ଧର୍ମବିଶ୍ୱାସୀ, ସେମାନେ ହେଉଛନ୍ତି ଭାଗ୍ୟବାନ୍ । କାରଣ, ସେମାନଙ୍କର ନିଜ ଉପରେ ଦୃଢ଼ ଆସ୍ଥା ଥାଏ । ବିଭିନ୍ନ ସମସ୍ୟାର ସମ୍ମୁଖୀନ ହେବା ସତ୍ତ୍ୱେ ସେମାନେ ରହିଥାନ୍ତି ପ୍ରଶାନ୍ତ ଓ ଅବିଚଳିତ । ପିତାମାତାଙ୍କର ଏହି ଗୁଣ ମଧ୍ୟ ଅଧିକାଂଶ ସନ୍ତାନଙ୍କଠାରେ ପ୍ରକାଶ ପାଇଥାଏ । କିନ୍ତୁ, ଯେଉଁମାନେ ଧର୍ମବିଶ୍ୱାସୀ ନୁହଁନ୍ତି, ସେମାନେ ଈଶ୍ୱର ବିଶ୍ୱାସରୁ ତ

ବସ୍ତୁତ, ତାହା ସାଙ୍ଗକୁ ସେମାନେ ମଣିଷ ଜାତିଟା ଉପରେ ମଧ୍ୟ ବିଶେଷ ବିଶ୍ୱାସ ପୋଷଣ କରିପାରୁନଥିବାର ଦେଖାଯାଏ । ମଣିଷ ଯେ କ୍ରମେ ମଣିଷଠାରୁ ମୋହମୁକ୍ତ ହୋଇଉଠୁଛି, ଏହାହିଁ ହେଉଛି ଏ ସମୟର ବଡ଼ ବିଡ଼ମ୍ବନା ।

ଏବକାର ସାହିତ୍ୟ, ନାଟକ, ଚଳଚ୍ଚିତ୍ର ଇତ୍ୟାଦି ସବୁଥିରେ ମଣିଷର ସୁଗୁଣ ଏବଂ ଆଧ୍ୟାତ୍ମିକତା ସମ୍ପର୍କିତ ବିଭାବ ହ୍ରାସ ପାଇ ମଣିଷର ପାଶବିକ ପ୍ରବୃତ୍ତି ପାଉଛି ଅଗ୍ରାଧିକାର । ସାମାଜିକ ଜୀବନରେ ଅନୁକୂଳ ଆଚରଣ ପ୍ରଦର୍ଶନକୁ ଗୌଣ ମନେ କରାଯାଉଛି । ଏପରିକି, ମଣିଷର ଦୁଃଖ, କଷ୍ଟ, କ୍ଳେଶ ଇତ୍ୟାଦି ପ୍ରତି ଅନ୍ୟମାନଙ୍କଠାରେ ସମବେଦନା ପ୍ରକାଶ ପାଉନାହିଁ । ଏଥିପାଇଁ କେହି କେହି ବିଜ୍ଞାନକୁ ଦାୟୀ କରୁଛନ୍ତି । ଜୀବବିଜ୍ଞାନ, ମନୋବିଜ୍ଞାନ ଏବଂ ସମାଜବିଜ୍ଞାନର ବିକାଶ ଫଳରେ ମଣିଷ ଯେ ପଶୁମାନଙ୍କର ନିକଟତର, ଏହି ଧାରଣା ବଳବତ୍ତର ହେବାରେ ଲାଗିଛି । ପଶୁମାନଙ୍କର ଅମାର୍ଜିତ ମୌଳିକ ପ୍ରବୃତ୍ତି ଏବଂ ପଶୁମାନଙ୍କ ଆଚରଣରେ ପ୍ରତିଭାତ ହେଉଥିବା ଯାନ୍ତ୍ରିକତା ସ୍ଥାନ ଦଖଲ କରିନେଲାଣି ମଣିଷମାନଙ୍କଠାରେ । ବିଜ୍ଞାନର ପ୍ରଭୁତ୍ୱ ବଢ଼ି ବଢ଼ି ଯାଉଛି, କମି କମି ଯାଉଛି ଧର୍ମବିଶ୍ୱାସର ଗୁରୁତ୍ୱ । ତେଣୁ, ମଣିଷ ଯେ ଏକ ମହତ୍‌ସତ୍ତା, ସେ ଯେ ଈଶ୍ୱରଙ୍କର ପ୍ରତିଭୂ, ଏହି ଧାରଣା ଅପସରି ଚାଲିଛି ଧୀରେଧୀରେ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ବିବର୍ତ୍ତନ ତତ୍ତ୍ୱ ଅନୁସାରେ ଆମେ ମଣିଷମାନେ ପଶୁଜାତିର ସମ୍ପର୍କୀୟ । କିନ୍ତୁ, ଆମଠାରେ ତ ରହିଛି ଅନେକ ସ୍ୱାତନ୍ତ୍ର୍ୟ । ଆମେ ଆଦର୍ଶର ପ୍ରତିପାଳନ କରୁ । ଉଚ୍ଚତର ଚେତନାରେ ଉପନୀତ ହେବାର ଅଭୀପ୍ସା ପୋଷଣ କରୁ । ଆମର ପାରସ୍ପରିକ ସମ୍ପର୍କରେ ଆଧ୍ୟାତ୍ମିକତା ପ୍ରାଧାନ୍ୟ ଗ୍ରହଣ କରିଥାଏ । ଲୋକେ ଈଶ୍ୱରବିଶ୍ୱାସୀ ହୋଇ ନପାରନ୍ତି । କିନ୍ତୁ ସ୍ନେହ, ପ୍ରେମ, ଦୟା, ଅନୁକମ୍ପା, ସହାନୁଭୂତିଶୀଳତା, ସମାନୁଭୂତିଶୀଳତା ଆଦି ଗୁଣରେ ଯେ ଦିବ୍ୟତା ଭରି ରହିଛି, ତାହା ସେମାନେ ବିଶ୍ୱାସ କରିବା ଉଚିତ ।

ଏହି ପରିପ୍ରେକ୍ଷୀରେ ଦେଖିଲେ ସନ୍ତାନମାନଙ୍କର ଆଧ୍ୟାତ୍ମିକ ବିକାଶ ପାଇଁ ପିତାମାତାମାନେ ଯତ୍‌ପରୋନାସ୍ତି ଉଦ୍ୟମୀ ହେବା ଆବଶ୍ୟକ ।

୩ ରୁ ୬ ବର୍ଷ ବୟସ ଭିତରେ ସନ୍ତାନମାନେ ନିଜ ପିତାମାତାଙ୍କୁ ଗଭୀର ଶ୍ରଦ୍ଧା ଏବଂ ସମ୍ମାନ କରିଥାନ୍ତି । ପିତାମାତାଙ୍କ ବିଜ୍ଞତା, ଶକ୍ତି ଓ ସୌନ୍ଦର୍ଯ୍ୟ ଅତୁଳନୀୟ ବୋଲି ମନେକରିଥାନ୍ତି ସେମାନେ । ପୁଅମାନେ ନିଜ ପିତାଙ୍କ ଭଳି ହେବା ନିମନ୍ତେ ଅଭିଳାଷ ପୋଷଣ କରନ୍ତି । ନାରୀମାନଙ୍କ ମଧ୍ୟରେ ନିଜର ମା'ଙ୍କୁ ଧରିନିଅନ୍ତି ଆଦର୍ଶ ରୂପେ ।

ତେଣୁ, ପରବର୍ତ୍ତୀ କାଳରେ ପତ୍ନୀ ନିର୍ବାଚନ କଲାବେଳେ ନିଜ ମା'ଙ୍କ ଚରିତ୍ର ବହନ କରିଥିବା ଝିଅକୁ ହିଁ ପତ୍ନୀରୂପେ ପାଇବାର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ରହିଥାଏ ସେମାନଙ୍କଠାରେ ।

ଝିଅମାନଙ୍କ କ୍ଷେତ୍ରରେ ଏହାର ଠିକ୍ ବିପରୀତ । ସେମାନେ ନିଜ ମାଆଙ୍କ ଛାଞ୍ଚରେ ହିଁ ଗଢ଼ି ହେବାକୁ ଚାହାଁନ୍ତି ଓ ପିତାଙ୍କ ସୁଗୁଣ ବହନ କରିଥିବା ବ୍ୟକ୍ତିକୁ ପତିରୂପେ ପାଇବାର ଗୋପନ କାମନା ପୋଷଣ କରିଥା'ନ୍ତି ।

ଏହି ପରିପ୍ରେକ୍ଷୀରେ ଦେଖିଲେ ସନ୍ତାନମାନଙ୍କର ଆବେଗିକ ବିକାଶ ଦିଗରେ ୩ ରୁ ୬ ବର୍ଷ ବୟସ ସୀମା ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ଏହି ସମୟରେ ପିତାମାତାଙ୍କଠାରୁ ଯଥେଷ୍ଟ ସ୍ନେହଶ୍ରଦ୍ଧା ଓ ପ୍ରେମ ପାଇଥିବା ସନ୍ତାନମାନେ ନିଜ ପିତାମାତାଙ୍କୁ ଏବଂ ସମାଜର ଅନ୍ୟମାନଙ୍କୁ ମଧ୍ୟ ଯଥେଷ୍ଟ ସ୍ନେହଶ୍ରଦ୍ଧା ଦେଖାଇଥାଆନ୍ତି ଓ ପ୍ରେମ କରିଥା'ନ୍ତି । ନିଜ ସନ୍ତାନମାନଙ୍କୁ ସ୍ନେହଶ୍ରଦ୍ଧା ଦେଖେଇବାର ପ୍ରବୃତ୍ତି ଓ ନିଃସ୍ୱାର୍ଥପର ହେବାର ପ୍ରବୃତ୍ତିର ବିକାଶରେ ପିତାମାତାଙ୍କଠାରୁ ଆହରଣ କରିଥିବା ଉପରୋକ୍ତ ବିଭାବଗୁଡ଼ିକ ଯଥେଷ୍ଟ ସହାୟକ ହୋଇଥାଏ ।

ବଡ଼ କୌତୂହଳର ବିଷୟ ଯେ ଏହି ବୟସ ସୀମା ଭିତରର ପିଲାମାନେ ବିବାହ ଓ ସନ୍ତାନ ପ୍ରସବ ପ୍ରତି ଆଗ୍ରହାନ୍ୱିତ ହୋଇପଡ଼ିଥାନ୍ତି । ପୁଅମାନେ ଯେ ନିଜ ଶରୀର ଭିତରେ ସନ୍ତାନଧାରଣ କରିପାରିବେ ନାହିଁ ଏହା ସେମାନଙ୍କୁ ସହଜରେ ବୁଝେଇ ହୁଏନାହିଁ । ତେଣୁ, ସେମାନଙ୍କଠାରେ ପ୍ରକାଶ ପାଏ ନୈରାଶ୍ୟ ଓ ଝିଅମାନଙ୍କ ପ୍ରତି ଦ୍ୱେଷ । ଏହି ଅଭାବର ପରିପୂରଣ ପାଇଁ କଳା, ବିଜ୍ଞାନ, ଉଦ୍‌ଭାବନ ଓ ଯନ୍ତ୍ରପାତି ନିର୍ମାଣ ଭଳି ସୃଜନଶୀଳତା ଆବଶ୍ୟକ କରୁଥିବା କାର୍ଯ୍ୟଗୁଡ଼ିକ ଉପରେ ସେମାନେ ଅଧିକ ମନୋନିବେଶ କରୁଥିବାର ଦେଖାଯାଏ ।

ସୃଜନଶୀଳତାର ବିକାଶରେ ବିପରୀତ ଲିଙ୍ଗୀ ବ୍ୟକ୍ତି ଗ୍ରହଣ କରିଥାନ୍ତି ଗୁରୁତ୍ୱପୂର୍ଣ୍ଣ ଭୂମିକା । ସ୍ଥାପତ୍ୟ, ଯାନ୍ତିକୀ, ପ୍ରଯୁକ୍ତିବିଦ୍ୟା, ବୈଜ୍ଞାନିକ ଆବିଷ୍କାର ଓ ଉଦ୍‌ଭାବନ, ସାହିତ୍ୟ, ନାଟକ ସଙ୍ଗୀତ ତଥା ଶିଳ୍ପକଳାରେ ବ୍ୟୁତ୍ପତ୍ତି ଅର୍ଜନ କରିବାରେ ବିପରୀତ ଲିଙ୍ଗୀ ବ୍ୟକ୍ତିତ୍ୱର ଅବଦାନ ଅନସ୍ୱୀକାର୍ଯ୍ୟ ।

ତେବେ, ମନେ ରଖିବାର କଥା ଯେ ଆଦର୍ଶବାଦ, ସୃଜନଶୀଳତା, ଆଧ୍ୟାତ୍ମିକତା ଇତ୍ୟାଦିର ସାମର୍ଥ୍ୟ ସମସ୍ତ ଶିଶୁଙ୍କଠାରେ ରହିଥାଏ । କିନ୍ତୁ କାହା କାହାଠାରେ ଏହା ଅତି ମାତ୍ରାରେ ବିକଶିତ ହେଉଥିବା ବେଳେ ଅନ୍ୟ କାହା କାହାଠାରେ ଏହା ମଧ୍ୟମ ମାତ୍ରାରେ ବିକଶିତ । ଆଉ କାହାଠାରେ ଏହାର ବିଶେଷ ବିକାଶ ଘଟିପାରେ ନାହିଁ । କିନ୍ତୁ, ପ୍ରତି

ପିଲାଠାରେ ଯେ ଏହି ସାମର୍ଥ୍ୟ ରହିଛି, ସେ ସମ୍ପର୍କରେ ଅବଗତ ରହିବା ପିତାମାତାଙ୍କ ଉପରେ ନିର୍ଭର କରିଥାଏ । ପିତାମାତାଙ୍କଠାରେ ଯଦି ଉଚ୍ଚାଭିଳାଷ ରହିଥାଏ, ସେମାନଙ୍କଠାରେ ପରସ୍ପର ପ୍ରତି ଯଦି ସମ୍ମାନ ରହିଥାଏ, ଏବଂ ସନ୍ତାନମାନଙ୍କ ପ୍ରତି ସେମାନେ ଯଦି ସହାନୁଭୂତିଶୀଳ ହୋଇ ସେମାନଙ୍କୁ ମର୍ଯ୍ୟାଦାଜନକ ଆଚରଣ ପ୍ରଦର୍ଶନ କରିଥାନ୍ତି, ତେବେ ସନ୍ତାନମାନେ ସେମାନଙ୍କଠାରୁ ପ୍ରେରଣା ଗ୍ରହଣ କରି ତଦନୁଯାୟୀ ଗଠିତ ହେବାରେ କୌଣସି ସମସ୍ୟା ଉପୁଜେ ନାହିଁ । ଏପରିକି, ପରବର୍ତ୍ତୀ ସମୟରେ ପିତାମାତାଙ୍କଠାରୁ ଅଲଗା ହୋଇଗଲେ ମଧ୍ୟ ସେମାନଙ୍କ ମୂଲ୍ୟବୋଧ କଳଙ୍କିତ ହୋଇନଥାଏ ।



# ପୁଅଝିଅଙ୍କ ଭିତରେ ପାତରଅନ୍ତର

"ମଣିଷ ମଣିଷକୁ କ'ଣ କରିଛି, ତାହା ଚିନ୍ତାକଲେ ମୋ'ର ହୃଦୟ ଶୋକାଭିଭୂତ ହୋଇଉଠେ ।"

–ଓର୍ଡ଼ସ୍‌ଓର୍ଥ୍‌

**ପ୍ର : ସମାଜରେ ଝିଅମାନେ ହୀନମନ୍ୟତାର ଶିକାର କାହିଁକି ?**

ଉ : ପ୍ରତ୍ୟେକ ଦେଶରେ ଏବେ ଶିକ୍ଷର ପ୍ରସାର ବଢ଼ି ବଢ଼ି ଚାଲିଛି । ନାରୀ ଓ ପୁରୁଷ ଘରଛାଡ଼ି ଦୂରବର୍ତ୍ତୀ ସ୍ଥାନରେ ଚାକିରିବାକିରି କରିବାର ଧାରା ବୃଦ୍ଧି ପାଉଛି । ତାହା ସାଙ୍ଗକୁ ନାରୀମାନଙ୍କୁ ସବୁପ୍ରକାରର ସ୍ୱାଧୀନତା ପ୍ରଦାନ କରିବା ପାଇଁ ପ୍ରବଳ ଦାବି ହେଉଛି । ଏହା ଯେ ଶିଶୁମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଉଛି, ଏଥିରେ ଆଦୌ ସନ୍ଦେହ ନାହିଁ ।

ସମାଜରେ ନାରୀମାନେ ସବୁ ଦିଗରୁ ଅବହେଳିତ । ବୈଷୟିକ ଅନୁଷ୍ଠାନରେ ଶିକ୍ଷାଲାଭ କରିବାରେ ସେମାନେ ବାଛବିଚାରର ଶିକାର ହେଉଛନ୍ତି । ମୋଟା ଦରମା ମିଳୁଥିବା ଉଚ୍ଚ ପଦପଦବୀରେ ସେମାନଙ୍କୁ ନ୍ୟାଯ୍ୟ ନିଯୁକ୍ତି ମିଳୁନାହିଁ । ନାରୀ ଓ ପୁରୁଷ ସମାନ କାମ କରି ମଧ୍ୟ ନାରୀମାନଙ୍କୁ ପୁରୁଷମାନଙ୍କ ତୁଳନାରେ କମ୍ ଦରମା ଦିଆଯାଉଛି । ତାହାଛଡ଼ା, ସମାଜ ମଧ୍ୟ ନାରୀ ଓ ପୁରୁଷଙ୍କୁ ସମାନ ମର୍ଯ୍ୟାଦା ଦେଉନାହିଁ ।

ଯେଉଁ ମହିଳାମାନେ ସେମାନଙ୍କ ସନ୍ତାନମାନଙ୍କ ଯତ୍ନନେବା ପାଇଁ ଘରେ ରହୁଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ନିଜର ଏହି କାର୍ଯ୍ୟରୁ ଆତ୍ମସନ୍ତୋଷ ଲାଭ କରିଥାନ୍ତି ଓ ଏଥିପାଇଁ ଗର୍ବ ଅନୁଭବ କରନ୍ତି ମଧ୍ୟ । ହେଲେ ଅନ୍ୟ କେତେକଙ୍କ ଦୃଷ୍ଟିକୋଣ ଭିନ୍ନ । ସେମାନଙ୍କର ମତ ଯେ ଘରେ ବନ୍ଦୀ ହୋଇ ପିଲାମାନଙ୍କ ସେବାଯତ୍ନରେ ଛନ୍ଦି ହେବା ନିମନ୍ତେ ତ ସେମାନଙ୍କୁ ଦରମା ମିଳେନାହିଁ । ଏ' କାମରେ ପଦୋନ୍ନତି ହେବାର ତ ପ୍ରଶ୍ନ

ନଥାଏ ! ଘରେ ଅଟକି ରହିବାରୁ ବାହାର ଲୋକଙ୍କ ସହ ମିଶିବାର ସୁଯୋଗରୁ ସେମାନେ ବଞ୍ଚିତ । ଏହା ସେମାନଙ୍କ ପାଇଁ ବଡ଼ ଅପମାନଜନକ ବୋଲି ସେମାନେ ମନେ କରନ୍ତି ଓ ନିଜକୁ ଦ୍ୱିତୀୟ ଶ୍ରେଣୀର ନାଗରିକ ବୋଲି ଭାବନ୍ତି ।

ତେବେ, ନାରୀମାନଙ୍କୁ ପୁରୁଷମାନଙ୍କ ଅଧସ୍ତନ ବୋଲି ଧରିନେବାରେ ଅନେକ କାରଣ ରହିଛି । ଏହାର ମୂଳଦୁଆ ପଡ଼ିଥାଏ ବାଲ୍ୟକାଳରୁ । କହିବାକୁ ଗଲେ ଗର୍ଭସଞ୍ଚାର ବେଳୁ । ଝିଅମାନେ ଯେ ପରିବାର ପ୍ରତି ଏକ ବୋଝ, ସମାଜରେ ଏପରି ଧାରଣା ବଳବତ୍ତର । ତେଣୁ, ଗର୍ଭସ୍ଥ ଭ୍ରୂଣଟି କନ୍ୟାଭ୍ରୂଣ ବୋଲି ଜଣାପଡ଼ିଲେ ଗର୍ଭପାତ କରାଇ ତାର ଜୀବନାବସାନ କରାଇବା ନିମନ୍ତେ କେତେକ ପତିପତ୍ନୀ ତତ୍ପର ହୋଇଉଠନ୍ତି । କନ୍ୟା ସନ୍ତାନଟିଏ ଜନ୍ମ ନେଲେ ମା' ସମେତ ପରିବାରର ସମସ୍ତଙ୍କର ମୁହଁ ଶୁଖିଯାଏ । ମାଆମାନେ କନ୍ୟା ସନ୍ତାନକୁ ପୁତ୍ର ସନ୍ତାନ ତୁଳନାରେ କମ୍ ଥର ନିଜର କ୍ଷୀର ଖୁଆଉଥିବାର ଦେଖାଯାଏ । ପୁଅ ଅସୁସ୍ଥ ହୋଇପଡ଼ିଲେ ବାପମା' ତାକୁ ସାଙ୍ଗେ ସାଙ୍ଗେ ଡାକ୍ତରଙ୍କ ପାଖକୁ ନେଇଯାଉଥିବା ବେଳେ, ଝିଅ ଅସୁସ୍ଥ ହୋଇପଡ଼ିଲେ ତାକୁ ଡାକ୍ତରଙ୍କୁ ଦେଖେଇବାରେ ସେମାନେ ବେଶ୍ ଟାଳଟୁଳ କରନ୍ତି । 'ଝିଅ ଜନମ ପରଘରକୁ' – ଏହି କଥା ବାରମ୍ବାର ଶୁଣେଇ ପରିବାର ଲୋକେ ଓ ପଡ଼ାପଡ଼ୋଶୀ ଝିଅମାନଙ୍କ ମାନସିକତାରେ ସୃଷ୍ଟିକରି ଚାଲନ୍ତି ଏକ ହୀନମନ୍ୟ ଭାବ ।

ସବୁପ୍ରକାର କାମରେ ପୁଅମାନଙ୍କ କୃତିତ୍ୱକୁ ପ୍ରଶଂସା ମିଳୁଥିଲା ବେଳେ ଝିଅମାନଙ୍କ କ୍ଷେତ୍ରରେ ସମାନ ସଫଳତା ପାଇଁ ସମାନ ମାତ୍ରାର ପ୍ରଶଂସା ମିଳେନାହିଁ । ଝିଅମାନଙ୍କୁ ଶାରୀରିକ ଦୃଷ୍ଟିରୁ ଆକର୍ଷଣୀୟ କରିବା ପାଇଁ ସମସ୍ତଙ୍କଠାରେ ଆଗ୍ରହ ପ୍ରକାଶ ପାଇଥାଏ । ଏପରି କରିବାରେ ଦୋଷ ନାହିଁ । କିନ୍ତୁ, ଝିଅମାନଙ୍କ ସୌନ୍ଦର୍ଯ୍ୟକୁ ପ୍ରଶଂସା କରିବା ଦ୍ୱାରା ସେମାନଙ୍କ ମତରେ ଏହି ଧାରଣା ଜାତ ହୁଏ ଯେ ସେମାନଙ୍କ ସୌନ୍ଦର୍ଯ୍ୟ ହେଉଛି ମୁଖ୍ୟ ଓ କୃତିତ୍ୱ ହେଉଛି ଗୌଣ । ଝିଅମାନଙ୍କୁ 'ଝିଅଟିଏ' ବୋଲି ମନେ ପକେଇଦେବାରେ ଆମ ପ୍ରଚେଷ୍ଟାର ଅନ୍ତ ନଥାଏ । ଝିଅମାନଙ୍କର ପୋଷାକପତ୍ର ଭିନ୍ନ । ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ଅନେକ ପୁସ୍ତକର ଚିତ୍ରଗୁଡ଼ିକରେ ପୁଅ ପିଲାମାନଙ୍କ ଛବିକୁ ଅଧିକ ପ୍ରାଧାନ୍ୟ ଦିଆଯାଏ । ପାଠ୍ୟପୁସ୍ତକର ବିଷୟବସ୍ତୁରେ ପୁଅମାନଙ୍କ ନାଁ, ପୁଅମାନଙ୍କର ଉଦାହରଣ ଇତ୍ୟାଦିର ଉଲ୍ଲେଖ ଥାଏ ବେଶୀ । କଠିନ କାମରେ ହାତ ଦେବା ପାଇଁ ଝିଅମାନଙ୍କୁ ବାରଣ କରାଯାଏ । ସେମାନଙ୍କ ପାଇଁ ଗଛ ଚଢ଼ିବା ମନା, ପହଁରିବା ମନା, ଗାଡ଼ିମଟର

ଚଳେଇବା ମନା ଇତ୍ୟାଦି ଇତ୍ୟାଦି । ପୁଅ ଓ ଝିଅମାନଙ୍କ ପାଇଁ ଖେଳନା ନିର୍ବାଚନ କରିବାରେ ମଧ୍ୟ ଆମେ ପାତରଅନ୍ତର କରିଥାଉ । ପୁଅମାନଙ୍କ ପାଇଁ ଖେଳନା କାର୍, ଉଡ଼ାଜାହାଜ, ହେଲିକପ୍ଟର୍, ମୋଟର ସାଇକଲ୍, ଖେଳନା ଡାକ୍ତରୀ ସେଟ୍ ଇତ୍ୟାଦି କିଣୁଥିବା ବେଳେ ଝିଅମାନଙ୍କ ପାଇଁ କିଣିଥାଉ କଣ୍ଢେଇ, ଖେଳନା ରୋଷେଇ ସାମଗ୍ରୀ ଇତ୍ୟାଦି । ତେବେ, ଖେଳନା ପସନ୍ଦ କରିବାରେ ପିଲାମାନଙ୍କ ପସନ୍ଦକୁ ଗୁରୁତ୍ୱ ଦେବାରେ ମନା ନାହିଁ । କିନ୍ତୁ, ଆମ ପସନ୍ଦର ଖେଳନାକୁ ସେମାନଙ୍କ ଉପରେ ଲଦି ଦେବାର ଧାରା ଆଦୌ କାମ୍ୟ ନୁହେଁ ।

ସେହିପରି ପୁଅମାନଙ୍କୁ ଘର ବାହାରେ, ଏପରିକି ଘରଠାରୁ ଦୂରରେ ଖେଳିବା ପାଇଁ ବାରଣ କରାଯାଏ ନାହିଁ । ହେଲେ ଝିଅମାନଙ୍କ ପାଇଁ କେତେ ନା କେତେ କଟକଣା । ସେମାନଙ୍କୁ ଘର ଭିତରେ କିମ୍ବା ଘର ବେଢ଼ା ଭିତରେ ଖେଳାଖେଳି କରିବା ନିମନ୍ତେ ଚାପ ଦିଆଯାଏ । ଘରର କାମଧନ୍ଦା କରିବାରେ ମଧ୍ୟ ସମାନ ପାର୍ଥକ୍ୟ । ଘରର ଦୈନନ୍ଦିନ କାମ କରିବା ପାଇଁ ପୁଅମାନଙ୍କୁ ପ୍ରାୟତଃ କୁହାଯାଏ ନାହିଁ । କିନ୍ତୁ ଝିଅମାନେ ଅଧିକାଂଶ ସମୟରେ ବୟସ୍କ ସ୍ତ୍ରୀ ଲୋକଙ୍କ କାମ ମଧ୍ୟ ତୁଲେଇଥାଆନ୍ତି । ପାଣି ଆଣିବା, ଜାଳ ସଂଗ୍ରହ କରିବା, ରୋଷେଇ କରିବା, ପିଲାପାଳିବା ଇତ୍ୟାଦିର ଭାର ଝିଅମାନଙ୍କ ମୁଣ୍ଡ ଉପରେ ଲଦି ଦିଆଯାଏ । କହିବାକୁ ଗଲେ ଝିଅମାନେ ନିଜ ଘରେ ସତେ ଯେପରି ଚାକରାଣୀ ।

ତାହାଛଡ଼ା, ପୁଅପ୍ରଧାନ ସମାଜରେ ଝିଅମାନଙ୍କ ଶାରୀରିକ ଅସାମର୍ଥ୍ୟକୁ ନେଇ ପୁଅମାନଙ୍କଠାରୁ ବହୁ ଟାହିଟାପରା ଶୁଣିବାକୁ ପଡ଼ିଥାଏ ମଧ୍ୟ ।

ଏପରିକି, କେତେକ ପିତାମାତା ଏବଂ ଶିକ୍ଷକ ଝିଅମାନଙ୍କ ମେଧା-ସାମର୍ଥ୍ୟକୁ ଯଥାର୍ଥ ମର୍ଯ୍ୟାଦା ଦିଅନ୍ତି ନାହିଁ । ସେମାନଙ୍କର ଧାରଣା ଯେ ଝିଅପିଲାମାନେ ଗଣିତ, ପଦାର୍ଥ ବିଜ୍ଞାନ ଓ ଇଞ୍ଜିନିୟରିଂ ଭଳି ଶ୍ରମସାପେକ୍ଷ ତଥା ମେଧାସାପେକ୍ଷ ବିଷୟଗୁଡ଼ିକରେ ବିଶେଷ କୃତିତ୍ୱ ପ୍ରଦର୍ଶନ କରିବାର ସମ୍ଭାବନା ଊଣା । ସେମାନଙ୍କର ଏହି ଧାରଣାକୁ ସେମାନେ ଝିଅମାନଙ୍କ ଆଗରେ ଖୋଲାଖୋଲି ପ୍ରକାଶ କରିବାରେ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ଏହା ଶୁଣି ଶୁଣି ଝିଅମାନେ ନିଜ ଉପରେ ମଧ୍ୟ ଅନାସ୍ଥା ଭାବ ପୋଷଣ କରିଥାନ୍ତି । ସେମାନେ ଧରିନେବାକୁ ବାଧ୍ୟ ହୁଅନ୍ତି ଯେ ସେମାନେ ବୁଦ୍ଧି ଖଟେଇ କୌଣସି କଷ୍ଟକର ସମସ୍ୟାର ସମାଧାନ କରିପାରିବେନି, ପ୍ରଶାସନିକ କାର୍ଯ୍ୟ ତୁଲେଇପାରିବେ ନାହିଁ ଏବଂ

ନିଜ ଆବେଗ ଓ ଭାବପ୍ରବଣତା ଉପରେ ନିୟନ୍ତ୍ରଣ ରଖିପାରିବେନି । ଝିଅମାନଙ୍କ ଅକ୍ଷମତାକୁ ନେଇ ଯେଉଁ ମିଥ୍ୟା ଅପବାଦ ରଟୁଛି, ତାହାକୁ ଝିଅମାନେ ନୀରବରେ ସହ୍ୟ କରିନେବା ପାଇଁ ବାଧ ହେଉଛନ୍ତି । ଏହାର ପରିଣାମରେ ଲୋପ ପାଇଯାଉଛି ସେମାନଙ୍କର ଆତ୍ମବିଶ୍ୱାସ । ଏପରିକି ସେମାନଙ୍କର ଏହି ତଥାକଥିତ ଅକ୍ଷମତା ସହଜାତ ବୋଲି ଧାରଣା ପୋଷଣ କରିଚାଲିଛନ୍ତି ସେମାନେ ।

**ପ୍ର : ପୁଅମାନେ କ'ଣ ସାମାଜିକ ରକ୍ଷଣଶୀଳତାରୁ ମୁକ୍ତ ?**

ଉ: ନା, ପୁଅମାନେ ମଧ୍ୟ କେତେକ କ୍ଷେତ୍ରରେ ସାମାଜିକ ରକ୍ଷଣଶୀଳତାର ଶିକାର । ଏହା ପ୍ରାୟତଃ ଦେଖାଯାଇଥାଏ ଯେ ପୁଅମାନେ ନିଜର ମାନସିକ ଭାବାବେଗକୁ ଖୋଲାଖୋଲି ପ୍ରକାଶ କରିପାରନ୍ତି ନାହିଁ । ସେମାନଙ୍କ ମନରେ ଆଘାତ ଲାଗିଲେ, ସେମାନେ ଅସୁଖୀ ହେଲେ କି ଭୟଭୀତ ହେଲେ କ୍ରନ୍ଦନ ମାଧ୍ୟମରେ ସେମାନଙ୍କର ପ୍ରତିକ୍ରିୟା ପ୍ରକାଶ କରିପାରନ୍ତି ନାହିଁ । କାରଣ, ସମାଜ ଦୃଷ୍ଟିରେ ଏହାକୁ ପୁଅମାନଙ୍କ ଦୁର୍ବଳତା ବୋଲି ଧରି ନିଆଯାଏ । ଏପରିକି ନିଜର ଆନନ୍ଦ ଓ ସ୍ନେହଶ୍ରଦ୍ଧା ପ୍ରକାଶ କରିବାରେ ସେମାନଙ୍କୁ ବେଶ୍ ସାବଧାନତା ଅବଲମ୍ବନ କରିବାକୁ ପଡ଼ିଥାଏ । ଆବେଗ ପ୍ରକାଶ କରିବା ନିମନ୍ତେ ସେମାନେ ନିଜକୁ ଅତି ସଙ୍କୁଚିତ ମନେ କରିଥାନ୍ତି । ଏହି କାରଣରୁ ମୁମୂର୍ଷୁ ରୋଗୀ କିମ୍ବା ମୃତବ୍ୟକ୍ତିଙ୍କ ପ୍ରତି ପୁରୁଷ ଡାକ୍ତରମାନଙ୍କର ପ୍ରତିକ୍ରିୟା ବେଶ୍ ଶିଥିଳ ହେଉଥିବାର ପ୍ରତିଭାତ ହୁଏ । ସ୍ୱାମୀ ହିସାବରେ, ପିତା ହିସାବରେ, ବନ୍ଧୁ ହିସାବରେ ଏବଂ ଜନସାଧାରଣଙ୍କୁ ମୁକାବିଲା କରିବାରେ ବିଶେଷ ସହନଶୀଳ ଓ ସହାନୁଭୂତିଶୀଳ ହେବାର ଅଭାବ ପରିଲକ୍ଷିତ ହୋଇଥାଏ ପୁଅମାନଙ୍କଠାରେ ।

ପ୍ରଥମରୁ ପୁଅମାନଙ୍କୁ ଧାରଣା ଦିଆଯାଇଥାଏ ଯେ ସେମାନେ କଠୋର, ଉଗ୍ର, ନିର୍ଭୀକ, ପ୍ରତିଯୋଗିତା ମନୋଭାବାପନ୍ନ ହେବା ହିଁ କାମ୍ୟ । କୌଣସି ନା କୌଣସି ପ୍ରକାରେ ସେମାନଙ୍କୁ ସଫଳ ହେବାକୁ ହିଁ ପଡ଼ିବ । ପୁଅମାନଙ୍କ ପାଇଁ ଉଦ୍ଦିଷ୍ଟ ବୃତ୍ତିକୁ ଗ୍ରହଣ କରିନେବାକୁ ପଡ଼ିବ । ତେଣୁ, ସେମାନଙ୍କ ଚରିତ୍ରରେ ଏକ ଅନମନୀୟ ଭାବର ବିକାଶ ଘଟିବା ସ୍ୱାଭାବିକ । ଯେଉଁ ପୁଅ କି ପୁରୁଷ କଠୋର ହୋଇପାରନ୍ତି ନାହିଁ, ପ୍ରତିଯୋଗିତାର ସମ୍ମୁଖୀନ ହୋଇପାରନ୍ତି ନାହିଁ, ସେମାନେ ନିଜକୁ ନିପାରିବାର ବା ଅପାରଗ ବୋଲି ମନେ କରିବାର ଶିକ୍ଷା ଦିଆଯାଇଥାଏ ସେମାନଙ୍କୁ । ଏହା ସେମାନଙ୍କ ସାମର୍ଥ୍ୟ ଓ ସଫଳତା

ପ୍ରାପ୍ତି ପାଇଁ ପ୍ରୟାସରେ ଏକ ବାଧକ ରୂପେ ଉଭା ହୋଇଥାଏ । ଫଳରେ ସେମାନେ ଆତ୍ମତୃପ୍ତି ଲାଭ କରିପାରନ୍ତି ନାହିଁ ।

ଏହି ପରିପ୍ରେକ୍ଷୀରେ ଦେଖିଲେ, ପୁଅ ଓ ଝିଅମାନଙ୍କୁ ଏକ ପାରମ୍ପରିକ, ରକ୍ଷଣଶୀଳ ବ୍ୟବସ୍ଥାର ଗଣ୍ଡି ଭିତରେ ହିଁ ପ୍ରତିପାଳନ କରାଯାଇଥାଏ । ଏହାର ପରିଣାମରେ ସେମାନଙ୍କର ପ୍ରାକୃତିକ ପ୍ରବୃତ୍ତିର ସ୍ୱତଃସ୍ଫୂର୍ତ୍ତ ବିକାଶ ହୋଇପାରେ ନାହିଁ । ଏହି ପ୍ରକାରେ, ସମାଜ ବହୁ ମୂଲ୍ୟବାନ ଚରିତ୍ର ଓ ବ୍ୟକ୍ତିତ୍ୱକୁ ହରେଇ ବସେ । ପ୍ରତ୍ୟେକ ବ୍ୟକ୍ତି ନିଜକୁ ଅସମ୍ପୂର୍ଣ୍ଣ ବୋଲି ମନେକରନ୍ତି ଓ ସେମାନଙ୍କ ଆଦର୍ଶ ତଥା ମୂଲ୍ୟବୋଧର ଅକାଳ ମୃତ୍ୟୁ ଘଟେ ।



# ଅସାଧାରଣ ପ୍ରତିଭାଧାରୀ ସନ୍ତାନ

"ପ୍ରତ୍ୟେକ ବ୍ୟକ୍ତି ପ୍ରତିଭାଧର ହୋଇ ଜନ୍ମ ନେଇଥାନ୍ତି । କିନ୍ତୁ ଅଧିକାଂଶ ବ୍ୟକ୍ତି ପ୍ରତିଭାର ପୋଷଣ ପ୍ରତି ଧ୍ୟାନ ଦିଅନ୍ତିନି ।"

–ଏଡ୍‌ଗାର୍ଡ୍ ଭାରେସେ

ପ୍ର : ସନ୍ତାନମାନଙ୍କୁ ଅସାଧାରଣ ପ୍ରତିଭାସମ୍ପନ୍ନ କରି ଗଢ଼ିବା ପାଇଁ ଉଦ୍ୟମୀ ହେବା କେତେଦୂର ନିରାପଦ ?

ଉ : ଯେଉଁ ପିଲାମାନଙ୍କୁ ଉଚ୍ଚ ଆଦର୍ଶ ସମ୍ବନ୍ଧରେ ଶିକ୍ଷା ଦିଆଯାଇଥାଏ ଓ ଯେଉଁ ପିଲାମାନେ ଆଦର୍ଶକୁ ଗ୍ରହଣ କରି ନେଇଥାନ୍ତି, ନିଜ ଜୀବନରେ ଏହାର ପ୍ରୟୋଗ କରିବା ପାଇଁ ସେମାନଙ୍କୁ ପର୍ଯ୍ୟାପ୍ତ ସୁଯୋଗ ମିଳିଥାଏ । ଜୀବନ ହେଉଛି ଏକ ସଂଗ୍ରାମ କ୍ଷେତ୍ର । କେତେ ନା କେତେ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥାଏ ଜୀବନ ସଂଗ୍ରାମରେ । ଏହା ଅବଶ୍ୟ ସତ ଯେ ଆମେ ବେଳକୁ ବେଳ ଅଧିକରୁ ଅଧିକ ବସ୍ତୁବାଦୀ ହୋଇଉଠୁଛେ । ପ୍ରଯୁକ୍ତି ବିଜ୍ଞାନ କ୍ଷେତ୍ରରେ ସଙ୍ଘଟିତ ହୋଇ ଚାଲିଛି ଅସାଧାରଣ ପ୍ରଗତି । ଏହା ଆମର ଶାରୀରିକ ଆବଶ୍ୟକତା ପୂରଣ କରିବାରେ ଯଥେଷ୍ଟ ଅବଦାନ ଦେଇପାରିଛି । କିନ୍ତୁ, ପରସ୍ପର ଭିତରେ ମାନବିକ ସମ୍ପର୍କ ରକ୍ଷା କରିବାରେ ଆମର ପ୍ରଗତି ଆଦୌ ସନ୍ତୋଷଜନକ ନୁହେଁ । ଆମେ ଆଧ୍ୟାତ୍ମିକ ପ୍ରଶାନ୍ତି ଉପଭୋଗ କରିପାରୁନାହୁଁ । ଆତ୍ମହତ୍ୟା, ହତ୍ୟା, ଧର୍ଷଣ, ଧର୍ତ୍ତବ୍ୟ ଅପରାଧ, ମାଦକ ଦ୍ରବ୍ୟର ବ୍ୟବହାର ଇତ୍ୟାଦି ଅସାମାଜିକ କ୍ରିୟାର ହାର ବଢ଼ି ବଢ଼ି ଚାଲିଛି । ସ୍ୱାଧୀନତା, ସମାନତା ଉପରେ ବିଶ୍ୱାସ ଏବଂ ଈଶ୍ୱର ବିଶ୍ୱାସ କ୍ଷେତ୍ରରେ ଆମର କୃତିତ୍ୱ ଆଶାନୁରୂପ ନୁହେଁ । କହିବାକୁ ଗଲେ ଆମେ କ୍ରମେ ବେଶୀ ବେଶୀ ନୃଶଂସ ଓ ଅହଙ୍କାରୀ ହୋଇପଡୁଛୁ ।

ବଡ଼ ବିଡ଼ମ୍ବନାର ବିଷୟ ଯେ ପୃଥିବୀରେ ଅନାହାର ଏବଂ ଖାଦ୍ୟ ପ୍ରାଚୁର୍ଯ୍ୟ ପାଖାପାଖି ଅବସ୍ଥାନ କରୁଛି । ଲୋକେ ଭୋକ ଉପାସରେ ମରୁଥିବା ବେଳେ ଯୁଦ୍ଧାସ୍ତ୍ର

ନିର୍ମାଣରେ କୋଟି କୋଟି ଟଙ୍କା ବ୍ୟୟ ହେଉଛି । ଧନୀ ଦେଶ ଗରିବ ଦେଶ ଉପରେ ପ୍ରଭୁତ୍ୱ ବିସ୍ତାର କରିବାରେ କୁଣ୍ଠା ପ୍ରକାଶ କରୁନାହିଁ ।

ଏହି ପରିପ୍ରେକ୍ଷୀରେ ଦେଖିଲେ, ଆମ ସନ୍ତାନମାନଙ୍କୁ ଆମେ ମାନବବାଦୀ କରି ଗଢ଼ିବାର ଆବଶ୍ୟକତା ସୁଦୂରପ୍ରସାରୀ । ସନ୍ତାନମାନଙ୍କୁ ଆମେ ଶିକ୍ଷା ଦେବା ଉଚିତ ଯେ ସେମାନେ କେବଳ ନିଜର ସନ୍ତୋଷବିଧାନ ପାଇଁ ଏ ସଂସାରରେ ଜନ୍ମ ନେଇ ନାହାନ୍ତି । ଅନ୍ୟମାନଙ୍କର ସ୍ୱାର୍ଥ ରକ୍ଷା କରିବାରେ ଯତ୍ନଶୀଳ ହେବା ସେମାନଙ୍କ ଜୀବନର ଧ୍ୟେୟ । ସେମାନେ ଯେ ଅନ୍ୟମାନଙ୍କ ସେବାରେ ଲାଗିପାରିବେ, ଏହି ଆତ୍ମବିଶ୍ୱାସ ସେମାନଙ୍କଠାରେ ଜାଗ୍ରତ କରିପାରିଲେ ସେମାନେ ନିଜକୁ ଗର୍ବିତ ମନେକରିବେ ଏବଂ ଉକ୍ତ ଆହ୍ୱାନର ସମ୍ମୁଖୀନ ହେବା ନିମନ୍ତେ ମାନସିକ ସ୍ତରରେ ନିଜକୁ ପ୍ରସ୍ତୁତ ରଖିପାରିବେ ।

ହେଲେ, ଏହାର ମୂଳଦୁଆ ପକେଇବାକୁ ପଡ଼ିବ ବାଲ୍ୟକାଳରୁ ଓ ସନ୍ତାନମାନଙ୍କୁ ଏହି ତାଲିମ ଦେବାରେ ପ୍ରଧାନ ଭୂମିକା ଗ୍ରହଣ କରିବେ ପିତାମାତା । ଛୋଟ ଛୁଆଟିଏ ତା' ମା'ର କେଶ ଟାଣିପାରେ, ମାଆର ଗାଲକୁ କାମୁଡ଼ିପାରେ ; ତଥାପି ମା'କୁ ସମ୍ମାନ ଦେବା ବିଷୟରେ ତାକୁ ଶିକ୍ଷା ଦେବା ଉଚିତ । ନିଜ ଜିନିଷପତ୍ର ଭଙ୍ଗାରୁଜା ନ କରିବା ପାଇଁ ବର୍ଷେ ଦି'ବର୍ଷର ପିଲାକୁ ବୁଝେଇଦେବା ଆବଶ୍ୟକ । ଏପରିକି ୩ ବର୍ଷ ହେବା ବେଳକୁ ସେ ଅତି ଛୋଟ ଛୋଟ କାମରେ ବାପମା'ଙ୍କୁ ସାହାଯ୍ୟ କରିପାରେ । ଛୋଟ ଛୋଟ ବୋଲହାକ କରିପାରେ । ସାତ ଆଠ ବର୍ଷର ହୋଇଗଲେ ସେମାନଙ୍କୁ ଜନହିତକର କାର୍ଯ୍ୟ କରିବା ନିମନ୍ତେ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଏହି କାର୍ଯ୍ୟରେ ବିନିଯୋଗ କରାଯାଇପାରେ ମଧ୍ୟ । କିଶୋର ବୟସରେ ସେମାନେ ରୋଗୀମାନଙ୍କୁ ସାହାଯ୍ୟ କରିପାରିବେ । ଛୋଟ ଛୋଟ ପିଲାଙ୍କୁ ପଢ଼େଇ ପାରିବେ । ବିଭିନ୍ନ ଅନୁଷ୍ଠାନ ପାଇଁ କାମ କରିବାରେ ନିଜକୁ ନିୟୋଜିତ କରିପାରିବେ ।

ପିତାମାତାମାନେ ବିଶ୍ୱସମସ୍ୟା, ରାଷ୍ଟ୍ରସମସ୍ୟା, ଗୋଷ୍ଠୀସମସ୍ୟା ଓ ତା'ର ସମାଧାନ ପନ୍ଥା ବିଷୟରେ ଆଲୋଚନା କଲାବେଳେ ପିଲାମାନେ ତାହା ଶୁଣିବା ଉଚିତ । ସାମାଜିକ କାର୍ଯ୍ୟରେ ପିତାମାତାଙ୍କୁ ଅଂଶଗ୍ରହଣ କରୁଥିବାର ଦେଖିଲେ ସନ୍ତାନମାନେ ଏହି ଚରିତ୍ରକୁ ନିଜଠାରେ ବିକଶିତ କରିବା ପାଇଁ ଉତ୍ସାହିତ ହେବା ସ୍ୱାଭାବିକ । ବିଦ୍ୟାଳୟ, ମହାବିଦ୍ୟାଳୟ ଓ ବିଶ୍ୱବିଦ୍ୟାଳୟରେ ମଧ୍ୟ ଛାତ୍ରମାନଙ୍କୁ ମାନବବାଦୀ ହେବା ନିମନ୍ତେ ଶିକ୍ଷା ଦିଆଯିବା ଦରକାର । ଏ'କ୍ଷେତ୍ରରେ ଶିକ୍ଷକମାନେ ନେତୃତ୍ୱ ନେବା ଆବଶ୍ୟକ ।

ପାଠ୍ୟ ନିର୍ଘଣ୍ଟରେ ଏହି ଦିଗ ପ୍ରତି ସ୍ୱତନ୍ତ୍ର ଧ୍ୟାନ ଦିଆଯିବା ଉଚିତ । ପରିବାରରେ ପିତାମାତାଙ୍କଠାରୁ ଏବଂ ଶିକ୍ଷାଳୟରେ ଶିକ୍ଷକମାନଙ୍କଠାରୁ ସମାଜ ଅନୁକୂଳ ଶିକ୍ଷା ଗ୍ରହଣ କରିପାରିଲେ ପିଲାମାନଙ୍କଠାରେ ଆଦର୍ଶବାଦର ଉନ୍ମେଷ ଘଟେ । ଆଦର୍ଶବାଦର ଭିତ୍ତିରେ ଗଠିତ ପିଲାମାନେ ସମାଜ ପାଇଁ ଏକ ସମ୍ବଳ ରୂପେ ବିବେଚିତ ହୋଇଥାଆନ୍ତି ।

ପିଲାମାନଙ୍କୁ ଅବହେଳା କଲେ କି ନିରବଚ୍ଛିନ୍ନ ଭାବରେ ସେମାନଙ୍କୁ ଉପେକ୍ଷା କଲେ, ସେମାନଙ୍କର ଉତ୍ସାହ ମରିଯାଏ ଓ ସେମାନଙ୍କର ମାନସିକ ବିକାଶ ବହୁଳାଂଶରେ ବ୍ୟାହତ ହୋଇପଡ଼େ । ସେମାନଙ୍କଠାରେ ସମ୍ପୂର୍ଣ୍ଣ ବିକାଶ ସମ୍ଭବ ହୁଏନାହିଁ ।

ଅନ୍ୟ ପକ୍ଷରେ, ସେମାନଙ୍କର ମାନସିକ ବିକାଶକୁ ତ୍ୱରାନ୍ୱିତ କରିବା ମଧ୍ୟ ସମ୍ଭବ । ଆପଣଙ୍କର ଯଦି ଦୃଢ଼ ନିଷ୍ଠା ଥାଏ ଓ ଆପଣ ଆନ୍ତରିକତାର ସହ ଉଦ୍ୟମ କରନ୍ତି, ତେବେ ଦୁଇ ବର୍ଷର ପିଲାକୁ ମଧ୍ୟ ଆପଣ ପଢ଼ିବା ଶିଖେଇପାରିବେ । ଏକ ବର୍ଷର ପିଲା ମଧ୍ୟ ଛବି ଚିହ୍ନିପାରିବ । ଏହା ଜଣାପଡ଼ିବା ପରେ ବହୁ ପିତାମାତା ଖୁବ୍ ଉତ୍ସାହୀ ହୋଇପଡ଼ିଛନ୍ତି । ଶୈଶବ କାଳରେ ଉପଯୁକ୍ତ ଖେଳନା ସାମଗ୍ରୀ ମିଳିଲେ ପରିବାରରେ ଏବଂ ସ୍କୁଲ୍‌ରେ ମାନସିକ ବିକାଶ ପାଇଁ ଯଥାର୍ଥ ଧ୍ୟାନ ଦେଇପାରିଲେ, ସନ୍ତାନମାନଙ୍କୁ ଅତି ମେଧାବୀ କରିହେବ ଓ ଭବିଷ୍ୟତରେ ସେମାନେ ଯଥେଷ୍ଟ ଖ୍ୟାତି ଅର୍ଜନ କରିପାରିବେ ବୋଲି ଆଶା ପୋଷଣ କରୁଛନ୍ତି ପିତାମାତାମାନେ । ପିତାମାତାମାନଙ୍କ କ୍ଷେତ୍ରରେ ଏଭଳି ଆଶା ପୋଷଣ କରିବା ସ୍ୱାଭାବିକ ହେଲେ ମଧ୍ୟ ଏପରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଆଦୌ ନିରାପଦ ନୁହେଁ । ବରଂ ଲାଭ ଅପେକ୍ଷା ଏଥିରେ କ୍ଷତି ଅଧିକ । ଜୀବନରେ ସାଫଲ୍ୟ ଅର୍ଜନ କରିବାରେ ମାନସିକ ସାମର୍ଥ୍ୟ ସାହାଯ୍ୟ କରିଥାଏ ସତ କିନ୍ତୁ କେବଳ ମାନସିକ ସାମର୍ଥ୍ୟ ବୃଦ୍ଧି ପାଇଁ ଉଦ୍ୟମୀ ହୋଇ ସନ୍ତାନର ଅନ୍ୟାନ୍ୟ ବିକାଶ ପ୍ରତି ଦୃଷ୍ଟି ନଦେଲେ ବିକାଶରେ ଅସନ୍ତୁଳନ ସୃଷ୍ଟି ହେବ । ସର୍ବାଙ୍ଗୀଣ ବିକାଶ ହୋଇ ନପାରିଲେ ସନ୍ତାନଟି ଜୀବନସଂଗ୍ରାମ ସହ ଖାପଖୁଆଇ ନପାରି ସବୁ ଦିଗରୁ ଅନୁପଯୁକ୍ତ ହୋଇପଡ଼ିବ ।

ବ୍ୟକ୍ତିତ୍ୱର ସର୍ବାଙ୍ଗୀଣ ବିକାଶ ପାଇଁ ବୌଦ୍ଧିକ, ଆବେଗିକ ଓ ସାମାଜିକ ବିକାଶରେ ସନ୍ତୁଳନ ଲୋଡ଼ା । ମଣିଷ, ପଶୁପକ୍ଷୀ ଓ ଜିନିଷପତ୍ର ସହ ସମ୍ପର୍କ ସ୍ଥାପନ କରିବା ପିଲାମାନଙ୍କର ସହଜାତ ପ୍ରବୃତ୍ତି । ସ୍ନେହୀ ପିତାମାତା ଶିଶୁ ସନ୍ତାନକୁ ଗେହ୍ଲା କରନ୍ତି, ତାକୁ କୋଳରେ ଧରି ଗେଲ କରନ୍ତି, ତା'ର ପ୍ରଥମ ମୁରୁକିହସାକୁ ନିଜେ ହସି ସ୍ୱାଗତ କରନ୍ତି ଓ ମୁଣ୍ଡ ହଲେଇ ତଥା ଅନ୍ୟ ପ୍ରକାରେ ନିଜର ସ୍ନେହ ଶ୍ରଦ୍ଧା ପ୍ରଦର୍ଶନ କରିଥାନ୍ତି ।

ଶିଶୁଟି ଚିହ୍ନାଇଥିବାବେଳେ ଏହି ପ୍ରକାରର ଆଚରଣ ମାସମାସ ଧରି କରିଚାଲିବା, ତାକୁ ବାରମ୍ବାର କୋଳେଇ ନେବା, ସେ ଅସ୍ୱସ୍ତି ଅନୁଭବ କଲାବେଳେ ତାକୁ ଆଶ୍ୱାସନା ଦେବା, ଭୋକ ଲାଗିଲେ ଖୁଆଇଦେବା ଇତ୍ୟାଦି କାର୍ଯ୍ୟ ଦ୍ୱାରା ଶିଶୁ ସନ୍ତାନ ଓ ପିତାମାତାଙ୍କ ମଧ୍ୟରେ ସ୍ନେହ, ପ୍ରେମ ଓ ବିଶ୍ୱାସର ବନ୍ଧନ ଦୃଢ଼ୀଭୂତ ହୋଇଥାଏ । ଭବିଷ୍ୟତରେ ଅନ୍ୟମାନଙ୍କ ସହ ଅନୁକୂଳ ପାରସ୍ପରିକ ସମ୍ପର୍କ ପ୍ରତିଷ୍ଠା କରିବାରେ ଶିଶୁ ପାଇଁ ଏହା ଯଥେଷ୍ଟ ସହାୟକ ହୋଇଥାଏ ବୋଲି ପ୍ରମାଣିତ । ସ୍ନେହ, ପ୍ରେମ ଓ ବିଶ୍ୱାସର ଭିତ୍ତି ବିଦ୍ୟାଳୟରେ ଓ କର୍ମକ୍ଷେତ୍ରରେ ତା'ର ଧାରଣା ଓ ଅବଧାରଣାକୁ ଅନେକାଂଶରେ ପରିପୁଷ୍ଟ କରିଥାଏ ।

ଶିଶୁଟି ବର୍ଷେ ଦୁଇବର୍ଷର ହୋଇଗଲେ ସେ ପିତାମାତାଙ୍କର କାର୍ଯ୍ୟଗୁଡ଼ିକୁ ଅନୁକରଣ କରିବା ନିମନ୍ତେ ଚେଷ୍ଟା ଜାରି ରଖେ । ପିତାମାତା ମଧ୍ୟ ସନ୍ତାନର ଏହି ପ୍ରୟାସକୁ ପ୍ରଶଂସା କରି ତାକୁ ଉତ୍ସାହିତ କରିଥାନ୍ତି । ଏହି ପ୍ରକାରେ ତ ଦୁଇବର୍ଷ ବୟସ୍କ ସନ୍ତାନର ଶବ୍ଦଜ୍ଞାନ ବୃଦ୍ଧିପାଏ । ସେ ନିଜ 'ଭାଷା ସଂଗ୍ରହାଳୟ'ରେ ନୂଆ ନୂଆ ଶବ୍ଦ ଶିଖି ତା'ର ଭାଷା ସାମର୍ଥ୍ୟକୁ ବଢ଼େଇଚାଲେ । ତିନି ବର୍ଷ ବୟସ ବେଳକୁ ସନ୍ତାନଠାରେ ଜାତ ହୁଏ କୌତୂହଳ । ସେ ଯାହା ଦେଖେ କି ଯାହା ଶୁଣେ, ତା'ର କାରଣ ଜାଣିବା ନିମନ୍ତେ ପିତାମାତାଙ୍କୁ ପ୍ରଶ୍ନ ପଚାରେ । ପିତାମାତାଙ୍କଠାରୁ ବାହାବା ଶୁଣିବା ପାଇଁ ଆଗ୍ରହୀ ହୁଏ । ପ୍ରଶଂସା ଶୁଣିଲେ ଉଲ୍ଲସିତ ହୋଇପଡ଼େ । ତିନିରୁ ଛଅବର୍ଷ ବୟସ ଭିତରେ ତାହାଠାରେ ଘଟେ ଆବେଗିକ ବିକାଶ, ବିକଶିତ ହୁଏ ମେଧା । ସେ ନିଜର ଅତି ଆଦରର ପିତାମାତାଙ୍କ ଢାଞ୍ଚାରେ ନିଜକୁ ଗଢ଼ିବା ନିମନ୍ତେ ପ୍ରୟାସୀ ହୁଏ ।

ପିତାମାତା ଓ ସନ୍ତାନ ମଧ୍ୟରେ ନିବିଡ଼ ପାରସ୍ପରିକ ସମ୍ପର୍କ ପ୍ରତିଷ୍ଠିତ ହୋଇପାରିଲେ ପ୍ରତିଭାବାନ୍, ସୁଦକ୍ଷ, ବନ୍ଧୁଭାବାପନ୍ନ, ସ୍ନେହୀ ବ୍ୟକ୍ତିତ୍ୱଧାରୀ ସନ୍ତାନ ରୂପେ ବିକାଶ ଲାଭ କରିବା ସୁଗମ ହୋଇଯାଏ । ସନ୍ତାନମାନଙ୍କୁ ମଣିଷ କରି ଗଢ଼ିବା ପାଇଁ ପିତାମାତାମାନେ ଉଦ୍ୟମୀ ହେବା ସେମାନଙ୍କର କର୍ତ୍ତବ୍ୟ । କିନ୍ତୁ, ସେମାନଙ୍କୁ ଇଚ୍ଛାମୁତାବକ ଅସାଧାରଣ ମଣିଷ ବା ମହାମାନବ କରି ଗଢ଼ିବା ପାଇଁ ଉଦ୍ୟମୀ ହେବାର ପରିଣାମ ଆଦୌ ଶୁଭଙ୍କର ହୁଏନାହିଁ । ଏପରି କଲେ 'ଦିଅଁ ଗଢ଼ିବାକୁ ଯାଇ ମାଙ୍କଡ଼ ଗଢ଼ିବା' ଭଳି ହେବ । ସନ୍ତାନଟି 'ମଣିଷ' ନହୋଇ ହୋଇଯିବ ଏକ 'ଯନ୍ତ୍ର ମଣିଷ' ବା କଥାକୁହା ରୋବୋଟ୍ । ପୁଅକୁ

'କୃତୀ କ୍ରୀଡ଼ାବିତ୍' କରିବା କି ଝିଅଙ୍କୁ 'ବିଶ୍ୱସୁନ୍ଦରୀ' କରି ଗଢ଼ିବାର ମାନସିକତା ଆଦୌ ଶୁଭଦାୟୀ ନୁହେଁ ।

ସନ୍ତାନମାନଙ୍କୁ ସ୍ୱାଭାବିକ ଭାବରେ ବିକଶିତ ହେବାକୁ ଦେବା ହିଁ କାମ୍ୟ । ସେମାନଙ୍କ ବ୍ୟକ୍ତିତ୍ୱର ସର୍ବାଙ୍ଗୀଣ ବିକାଶ ହୋଇପାରିଲେହିଁ ସେଥିରେ ସେମାନଙ୍କ ବ୍ୟକ୍ତିତ୍ୱର ସାର୍ଥକତା । କିନ୍ତୁ, ସେମାନଙ୍କ ମସ୍ତିଷ୍କ କି ସୌନ୍ଦର୍ଯ୍ୟ କି ମାଂସପେଶୀ କି ଗୀତ ଗାଇବାର ସାମର୍ଥ୍ୟ ଉପରେ କେବଳ ଏକାଗ୍ର ରହିଲେ ଓ ଏଗୁଡ଼ିକୁ ପ୍ରାଥମିକତା ପ୍ରଦାନ କଲେ ଏହା ଅନେକ ସମସ୍ୟା ସୃଷ୍ଟି କରିବାର କାରଣ ହୋଇପଡେ । ସନ୍ତାନର ବୈଶିଷ୍ଟ୍ୟକୁ ପ୍ରଶଂସା କରିବା କି ଉତ୍ସାହିତ କରିବାରେ ମନା ନାହିଁ । ହେଲେ, ଏଥିପ୍ରତି ପ୍ରାଧାନ୍ୟ ଦେବା ଆଦୌ ଉଚିତ ନୁହେଁ ।



# ଶିଶୁର ଆବେଗିକ ଆବଶ୍ୟକତା

**"ପିଲାମାନଙ୍କୁ ଖୁସି ରଖିବା ହେଉଛି ସେମାନଙ୍କୁ ଭଲ ଭାବରେ ଗଢ଼ିବାର ସର୍ବୋତ୍କୃଷ୍ଟ ପନ୍ଥା ।"**

**– ୱାଇଲଡ୍**

**ପ୍ର : ଶିଶୁର ଆବେଗ ତଥା ଭାବପ୍ରବଣତାକୁ ଏକ ଅନୁକୂଳ ରୂପ ଦେବାପାଇଁ କି ପ୍ରକାରର ଯତ୍ନ ନେବା ଉଚିତ ?**

ଉ : ଶିଶୁର ୨ ରୁ ୩ ବର୍ଷ ବୟସ ବେଳେ ତା'ର ବ୍ୟକ୍ତିତ୍ୱ ଗଠନ ନିମନ୍ତେ ପିତାମାତାମାନେ ତତ୍ପର ହୋଇଉଠିବା ଆବଶ୍ୟକ । ପିତାମାତା କିମ୍ବା ଅନ୍ୟ ଯେଉଁମାନେ ଶିଶୁର ଲାଳନପାଳନରେ ସକ୍ରିୟ ଭୂମିକା ଗ୍ରହଣ କରିଥାନ୍ତି, ସେଇମାନଙ୍କ ମନୋଭାବ ଓ ଦୃଷ୍ଟିଭଙ୍ଗୀ ଶିଶୁର ବ୍ୟକ୍ତିତ୍ୱକୁ ବହୁଳ ଭାବରେ ପ୍ରଭାବିତ କରିଥାଏ ।

ବିଭିନ୍ନ ଅନୁଧ୍ୟାନରୁ ପ୍ରମାଣ ମିଳିଛି ଯେ ପରିଚାଳନାଗତ ତ୍ରୁଟି ଥିବା ଅନାଥାଶ୍ରମରେ ପ୍ରତିପାଳିତ ଶିଶୁମାନଙ୍କର ଯଥାର୍ଥ ଯତ୍ନ ନିଆଯାଇପାରେ ନାହିଁ । ସେମାନଙ୍କର ବୃଦ୍ଧି ଏବଂ ବିକାଶ ବେଳେ ସେମାନେ ଅବହେଳିତ ହେବାକୁ ବାଧ୍ୟ ହୁଅନ୍ତି । ଫଳରେ ସେମାନଙ୍କ ଶରୀର, ବୃଦ୍ଧି, ଆବେଗ ଇତ୍ୟାଦି ଯଥାର୍ଥ ଭାବରେ ବିକଶିତ ହୋଇପାରେ ନାହିଁ କି ଏ ପ୍ରକାରର ଅଭାବକୁ ପରବର୍ତ୍ତୀ କାଳରେ ସମ୍ପୂର୍ଣ୍ଣ ସୁଧାରି ହୁଏନାହିଁ ।

ଅନ୍ୟ ପକ୍ଷରେ, ଅତ୍ୟନ୍ତ ସ୍ନେହପ୍ରବଣ ପିତାମାତାଙ୍କଠାରୁ ଆଦର ଯତ୍ନ ଓ ସ୍ନେହଶ୍ରଦ୍ଧା ପାଇଥିବା ଶିଶୁର ବିକାଶ ପ୍ରୋତ୍ସାହନ ପାଇଥାଏ । ପିତାମାତା ସନ୍ତାନମାନଙ୍କ ଉପରେ ଅଜାଡ଼ି ଦେଉଥିବା ପ୍ରେମ, ଖୁସି, ଭଲପାଇବା ଇତ୍ୟାଦି ଆଦୌ ବ୍ୟର୍ଥ ଯାଏନାହିଁ । ସନ୍ତାନସନ୍ତତିମାନଙ୍କ ସହ ଖେଳିବା, ସେମାନଙ୍କର ଅନାବନା ପ୍ରଶ୍ନର ଠିକ୍ ଠିକ୍ ଉତ୍ତର ଦେବା, ସେମାନଙ୍କୁ ଗପ କହିବା, ଛବି ଦେଖେଇବା ଇତ୍ୟାଦିର ଅନୁକୂଳ ପ୍ରଭାବ ସୁଦୂରପ୍ରସାରୀ । ଶିଶୁମାନଙ୍କଠାରେ ଏହି ଧରଣର ପୁଞ୍ଜି ଖଟେଇ ପାରିଲେ ସେମାନଙ୍କର

ଆବେଗ ଓ ଭାବପ୍ରବଣତା ସମାଜ ଅନୁକୂଳ ହୋଇଥାଏ ଓ ଏହା ସେମାନଙ୍କ ବୁଦ୍ଧି ଓ ମେଧାର ଉନ୍ନତି ସାଧନରେ ଯଥେଷ୍ଟ ସହାୟକ ହୋଇଥାଏ ।

ପିଲାମାନେ ଆଜୀବନ ଆଶାବାଦୀ ହୋଇ ଜୀବନ ପ୍ରତି ଏକ ସକାରାତ୍ମକ ମନୋଭାବ ପୋଷଣ କରିଚାଲିବେ କି ନୈରାଶ୍ୟବାଦୀ ହୋଇ ଜୀବନ ପ୍ରତି ପୋଷଣ କରି ଚାଲିବେ ଏକ ନକାରାତ୍ମକ ମନୋଭାବ, ସେମାନେ ସହୃଦୟ ଓ ଉଦାର ହେବେ କି ହେବେ ଉଦାସୀନ, ସେମାନେ ବିଶ୍ୱାସୀ ହେବେ କି ହେବେ ସନ୍ଦେହୀ – ଏହା ନିର୍ଦ୍ଧାରିତ ହୋଇଯାଏ ସେମାନଙ୍କ ଜୀବନର ପ୍ରଥମ ଦୁଇ ତିନି ବର୍ଷ ବୟସରେ । ତେଣୁ, ଯେଉଁ ବ୍ୟକ୍ତି ଏହି ମୂଲ୍ୟବାନ ସମୟରେ ଶିଶୁର ଲାଳନପାଳନର ଭାର ନେଇଥାନ୍ତି, ତାଙ୍କ ମନୋଭାବ ଉପରେ ଶିଶୁର ପୂର୍ଣ୍ଣାଙ୍ଗ ବିକାଶ ନିର୍ଭର କରିଥାଏ । ଏହି ପରିପ୍ରେକ୍ଷୀରେ ଦେଖିଲେ, ଶିଶୁର ଆବେଗ ଓ ବ୍ୟକ୍ତିତ୍ୱ ଗଠନରେ ସେମାନଙ୍କ ଲାଳନପାଳନକାରୀଙ୍କ ଆବେଗ ଓ ବ୍ୟକ୍ତିତ୍ୱ ମୁଖ୍ୟତଃ ନିର୍ଭରଶୀଳ ତଥା ଗୁରୁତ୍ୱପୂର୍ଣ୍ଣ ।

ଏଇ ଦେଖନ୍ତୁ, କେତେକ ବ୍ୟକ୍ତିଙ୍କ ଧାରଣା ଯେ ପିଲାମାନେ ମୂଳତଃ ଦୁଷ୍ଟ ଓ ଖରାପ । ଏହି ଧାରଣାର ବଶବର୍ତ୍ତୀ ହୋଇଥିବା ବ୍ୟକ୍ତିମାନେ ପିଲାମାତ୍ରକେ ସେମାନଙ୍କୁ ସନ୍ଦେହ ଦୃଷ୍ଟିରେ ଦେଖିଥାନ୍ତି ଓ ସବୁବେଳେ ତିରସ୍କାର କରୁଥାନ୍ତି, ଗାଳି ଦେଉଥାନ୍ତି । ଏଭଳି ବ୍ୟକ୍ତିଙ୍କ ତତ୍ତ୍ୱାବଧାନରେ ପ୍ରତିପାଳିତ ଶିଶୁମାନେ ସନ୍ଦେହକୁ ନିଜ ବ୍ୟକ୍ତିତ୍ୱରେ ସ୍ଥାନ ଦେଇ ନିଜେ ନିଜକୁ ସନ୍ଦେହ କରିଥାନ୍ତି । ସେମାନେ ଅପରାଧବୋଧର ଶିକାର ହୋଇପଡ଼ନ୍ତି । ପିଲାମାନଙ୍କ ପ୍ରତି ସାଧାରଣ ବୈରତା କି ପ୍ରତିକୂଳତା ମନୋଭାବ ପୋଷଣ କରୁଥିବା ବ୍ୟକ୍ତି ସାମାନ୍ୟ କଥାରେ ପିଲାମାନଙ୍କର ଭୁଲ ବାଛିବାରେ ଆଗ୍ରହୀ । ସେମାନଙ୍କ ଦ୍ୱାରା ପ୍ରତିପାଳିତ ପିଲା ସେମାନଙ୍କଠାରୁ ସେହି ବୈରଭାବ ହିଁ ଅବିକଳ ଭାବରେ ନକଲ କରିନିଏ । ଫଳରେ ତା'ର ଆଚରଣରେ ପ୍ରକାଶ ପାଏ ଦ୍ୱେଷ । ଏପରି କେତେକ ବ୍ୟକ୍ତି ଅଛନ୍ତି, ଯେଉଁମାନେ ପିଲାମାନଙ୍କ ଉପରେ ହାକିମି କରିବା ନିମନ୍ତେ ଖୁବ୍ ଭଲ ପାଆନ୍ତି । ସେମାନଙ୍କଠାରୁ ଶିଖି ପିଲାମାନେ ମଧ ବଡ଼ ହୋଇଗଲେ ଅନ୍ୟମାନଙ୍କ ଉପରେ ଆରମ୍ଭ କରିଦିଅନ୍ତି ହାକିମି ।

ଭୂମିଷ୍ଠ ହେବାର ଏକ ବର୍ଷ ଭିତରେ ଶିଶୁଟି ଏକାଗ୍ରତା, ଅନ୍ତର୍ଦୃଷ୍ଟି ଓ ଅନ୍ୟମାନଙ୍କୁ ସାହାଯ୍ୟ କରିବାର ପ୍ରବୃତ୍ତି ଶିକ୍ଷା କରିଥାଏ । ତା'ର ଲାଳନପାଳନ ଭାର ବହନ କରୁଥିବା ବ୍ୟକ୍ତିଙ୍କ ଛାଞ୍ଚରେ ପଡ଼ି ସେ ତାଙ୍କଠାରୁ ଏହି ଗୁଣଗୁଡ଼ିକ ଗ୍ରହଣ କରିନିଏ । କିନ୍ତୁ, ଦାୟିତ୍ୱ

ସମ୍ପାଦନ କରୁଥିବା ବ୍ୟକ୍ତି ନିଜେ ଏ' ଦୃଷ୍ଟିରୁ ଦୁର୍ବଳ ହୋଇଥିଲେ, ଶିଶୁଟି ତାଙ୍କୁ ହିଁ ମଡ଼େଲ୍ ଭାବରେ ଗ୍ରହଣ କରିନିଏ ଓ ତାଙ୍କରି ଭଳି ହେବା ନିମନ୍ତେ ପ୍ରତିଯୋଗିତା ଆରମ୍ଭ କରିଦିଏ । ଫଳରେ, ତାହାଠାରେ ପ୍ରକାଶ ପାଏ ବିଷାଦ ଓ ଉଦାସୀନତା ।

ଶିଶୁକୁ ଅଳ୍ପ କେତେମାସ ହୋଇଗଲେ ସେ ଅନ୍ୟମାନଙ୍କୁ ଭଲପାଇବା ଆରମ୍ଭ କରିଦିଏ । ସେମାନଙ୍କ ଉପରେ ନିର୍ଭର କରିବାକୁ ଶିଖେ । ତେଣୁ, ଯେଉଁ ବ୍ୟକ୍ତି ତା'ର ଯତ୍ନ ନେଉଥାନ୍ତି ଓ ତା'ର ଭଲମନ୍ଦ ବୁଝୁଥାନ୍ତି, ସେ ତା'ର ନିରାପତ୍ତା ପାଇଁ ସେହି ବ୍ୟକ୍ତିଙ୍କ ଉପରେ ହିଁ ଭରସା କରେ । ଏହା ମଧ୍ୟ ଦେଖାଯାଇଥାଏ ଯେ ତା'ର ଯତ୍ନ ନେଉଥିବା ଓ ତାକୁ ଲାଳନପାଳନ କରୁଥିବା ପିତାମାତା ତାହାଠାରୁ ହଠାତ୍ ଦୂରେଇଗଲେ ୬ ମାସର ଶିଶୁ ମଧ୍ୟ ଏହି ଅଭାବ ଅନୁଭବ କରିପାରେ । ସେ ଅତି ଗୁରୁତର ଭାବରେ ବିଷାଦଗ୍ରସ୍ତ ହୋଇପଡ଼େ । ତା' ଓଠରୁ ହସ ଲିଭିଯାଏ । ତା'ର ଭୋକ ମରିଯାଏ । ସେ ନିଜର ଖେଳନା ପ୍ରତି କୌଣସି ଆଗ୍ରହ ଦେଖାଏ ନାହିଁ । ବଡ଼ କୌତୂହଳର କଥା ଯେ ଶିଶୁର ଲାଳନପାଳନରେ ନିୟମିତ ପିତାମାତାଙ୍କୁ ସାହାଯ୍ୟ କରୁଥିବା ଚାକରବାକର କି ଅନ୍ୟ କୌଣସି ଆତ୍ମୀୟ ଘରୁ ଚାଲିଗଲେ, ଶିଶୁର ବିଷାଦ ଭାବ ବିଶେଷ ତୀବ୍ର ହୁଏନାହିଁ । ପୁନଶ୍ଚ ଯେଉଁ ପିଲା ପାଳକ ପିତାମାତାଙ୍କ ଦାୟିତ୍ୱରେ ଥାଏ, ତାଙ୍କଠାରୁ ଆଦର ଯତ୍ନ, ସ୍ନେହଶ୍ରଦ୍ଧା ପାଇବାରେ କମ୍ ହୋଇଗଲେ, ଭବିଷ୍ୟତରେ ସେ ଅନ୍ୟମାନଙ୍କୁ ଆଦରଯତ୍ନ କରିପାରେନି ଓ ସ୍ନେହଶ୍ରଦ୍ଧା ଦେବାରେ କେତେକାଂଶରେ ଅକ୍ଷମ ହୋଇପଡ଼େ । କାରଣ, ବାରମ୍ବାର ନୈରାଶ୍ୟର ସମ୍ମୁଖୀନ ହେବା ତାହା ପାଇଁ ହୋଇଉଠେ ଯନ୍ତ୍ରଣାଦାୟକ ଓ ସେ ଏହି ଯନ୍ତ୍ରଣାକୁ ନିଜ ଭିତରେ ଅନୁଭବ କରିବାପାଇଁ ଚାହେଁନାହିଁ ।

ତେଣୁ, ସେ ପିତାମାତା ହୁଅନ୍ତୁ, ଅଥବା ଅନ୍ୟ କେହି ହୁଅନ୍ତୁ, ଜନ୍ମ ଦିନଠାରୁ ହିଁ ଶିଶୁର ଯତ୍ନ ଓ ଲାଳନପାଳନର ଦାୟିତ୍ୱ ନେଇଥିଲେ ଶିଶୁକୁ ୩ ବର୍ଷ ନପୂରିଲା ଯାଏ ସେମାନେ ଏହି ଦାୟିତ୍ୱରୁ ଅବ୍ୟାହତି ନେବା ଆଦୌ ନିରାପଦ ନୁହେଁ । ଅବ୍ୟାହତି ନେବା ଅପରିହାର୍ଯ୍ୟ ହୋଇଥିଲେ ତାଙ୍କ ପରିବର୍ତ୍ତେ ଅନ୍ୟ ଯିଏ ଏହି ଦାୟିତ୍ୱ ବହନ କରିବେ, ସେ ଧୀରେ ଧୀରେ ଶିଶୁ ସହ ସମ୍ପର୍କ ସ୍ଥାପନ କରି ସମ୍ପର୍କକୁ ସୁଦୃଢ଼ କଲାପରେ ହିଁ ତା'ର ସମ୍ପୂର୍ଣ୍ଣ ଭାର ନିଜ ଉପରକୁ ନେଇପାରନ୍ତି । ଶେଷୋକ୍ତ ବ୍ୟକ୍ତି ଥରେ ଏହି ଦାୟିତ୍ୱ ନେଲେ, କୌଣସି ପ୍ରକାରେ ସେଥିରୁ ଓହରିଯିବା ପାଇଁ ମନ କରିବେନି । ତାହାଛଡ଼ା ଯେଉଁ କ୍ଷେତ୍ରରେ ଏକାଧିକ ବୟସ୍କ ବ୍ୟକ୍ତି ଗୁଡ଼ାଏ ପିଲାଙ୍କର ଲାଳନପାଳନ ଭାର ନେଇଥାନ୍ତି, ସେ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ପିଲାର ଭାର ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ ରହିବା ନିରାପଦ । ଏହା ସମ୍ଭବ

ହୋଇପାରିଲେ ସେହି ଶିଶୁଟି ନିଜ ପିତା/ମାତାଙ୍କର ଅଭାବ ଅନୁଭବ କରିନପାରି ଉକ୍ତ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ହିଁ ନିଜ ପିତାମାତାଙ୍କ ଆସନରେ ବସେଇଥାଏ ଓ ଉଭୟଙ୍କ ମଧ୍ୟରେ ଅନୁରୂପ ସମ୍ପର୍କ ମଧ୍ୟ ଗଢ଼ିଉଠେ ।

**ପ୍ର : ତିନିବର୍ଷ ପୂରିଗଲେ ପିଲାମାନେ କେଉଁ ଧରଣର ଆବେଗିକ ସହାୟତା ଆବଶ୍ୟକ କରିଥାନ୍ତି ? କଅଣ ଅବା ସେମାନଙ୍କର ଆବେଗିକ ଆବଶ୍ୟକତା ?**

ଉ : ୩ ବର୍ଷ ବୟସ କିମ୍ବା ତଦୂର୍ଦ୍ଧ୍ୱ ବୟସର ପିଲାମାନେ ଜାଣନ୍ତି ଯେ ସେମାନେ ଅନଭ୍ୟସ୍ତ ଓ ଅନଭିଜ୍ଞ । ସେମାନେ ଯେ ଅନ୍ୟମାନଙ୍କ ଉପରେ ନିର୍ଭରଶୀଳ, ତାହା ମଧ୍ୟ ଜାଣିଥାନ୍ତି ସେମାନେ । ତେଣୁ, ସେମାନେ ନିଜ ପିତାମାତାଙ୍କଠାରୁ ସହାୟତା ଲୋଡ଼ିଥାନ୍ତି । ପିତାମାତାଙ୍କର ନେତୃତ୍ୱ, ପ୍ରେମ, ସ୍ନେହଶ୍ରଦ୍ଧା ଏବଂ ନିରାପତ୍ତା ଉପରେ ଅଶେଷ ଆସ୍ଥା ସ୍ଥାପନ କରିଥାନ୍ତି ସେମାନେ ।

ପିଲାମାନେ ଅତି ଗଭୀରତାର ସହ ପିତାମାତାଙ୍କୁ ନିରୀକ୍ଷଣ କରନ୍ତି ଓ ଏହା ସେମାନଙ୍କର ପ୍ରବୃତ୍ତିଗତ । ସେମାନେ ପିତାମାତାଙ୍କ ଛାଞ୍ଚରେ ନିଜକୁ ଗଢ଼ିନେବା ପାଇଁ ମଧ୍ୟ ପୋଷଣ କରିଥାନ୍ତି ଧାରଣା । ଏହି ପ୍ରକାରେ ସେମାନଙ୍କର ନିଜସ୍ୱ ବ୍ୟକ୍ତିତ୍ୱ ବିକଶିତ ହୋଇଚାଲେ । ବିକଶିତ ହୋଇଚାଲେ ଏକ ସ୍ୱତନ୍ତ୍ର ଚରିତ୍ର ଓ ସଂସାରର ଦୁଃଖଦୁର୍ଦ୍ଦଶାର ସମ୍ମୁଖୀନ ହେବାର ସାମର୍ଥ୍ୟ । ବୟସ୍କ ନାଗରିକ, କର୍ମଜୀବୀ, ପତି-ପତ୍ନୀ ଏବଂ ପିତାମାତା ରୂପେ ଦାୟିତ୍ୱ ନିର୍ବାହ କରିବାର ଶିକ୍ଷା ଆରମ୍ଭ ହୁଏ ଶୈଶବରୁ । ଏଥିପାଇଁ ସେମାନେ ପିତାମାତାଙ୍କର ଘନିଷ୍ଠ ସାନ୍ନିଧ୍ୟ କାମନା କରିଥାନ୍ତି ।

ସନ୍ତାନମାନଙ୍କୁ ପିତାମାତାଙ୍କର ସର୍ବଶ୍ରେଷ୍ଠ ଉପହାର ହେଉଛି ବାତ୍ସଲ୍ୟପ୍ରେମ । ସେମାନେ ଏହାକୁ ଭିନ୍ନ ଭିନ୍ନ ପ୍ରକାରେ ଅଭିବ୍ୟକ୍ତ କରିପାରନ୍ତି । ସନ୍ତାନଙ୍କୁ ମୁଗ୍ଧ ଭାବରେ ଚାହିଁବା, ତାଙ୍କୁ କୋଳେଇ ଆଲିଙ୍ଗନ କରିବା, ଆଉଁଶିବା, ସନ୍ତାନର କୃତିତ୍ୱକୁ ମନଭରି ଉପଭୋଗ କରିବା, ସେମାନେ ଯନ୍ତ୍ରଣା ପାଇଲେ କି ଭୟ ପାଇଲେ କି ଆଘାତପ୍ରାପ୍ତ ହେଲେ ସେମାନଙ୍କୁ ସାନ୍ତ୍ୱନା ଦେବା, ସେମାନଙ୍କୁ ସୁରକ୍ଷା ଦେବାପାଇଁ ନିଜର ନିରାପତ୍ତାକୁ ବିପନ୍ନ କରିବା ନିମନ୍ତେ ଆଗଭର ହୋଇପଡ଼ିବା, ସେମାନଙ୍କୁ ଆଦର୍ଶ ପଥରେ ବାଟ କଢ଼େଇ ନେଇ ଦାୟିତ୍ୱ ସମ୍ପନ୍ନ ନାଗରିକ ଭାବରେ ଗଢ଼ିବା ପାଇଁ ଯତ୍ପରୋନାସ୍ତି ଉଦ୍ୟମ କରିବା ଇତ୍ୟାଦି ସନ୍ତାନପ୍ରତି ସ୍ନେହପ୍ରଦର୍ଶନର କେତୋଟି ବିଭାବ ।

ପିତାମାତାଙ୍କ ପାଇଁ ବାତ୍ସଲ୍ୟପ୍ରେମ ଏକ ପୁଞ୍ଜି ସଦୃଶ । ପିତାମାତାଙ୍କ ପ୍ରେମ ପାଇଲେ ସନ୍ତାନଠାରେ ପ୍ରେମ ଭାବର ଉଦ୍ରେକ ହୋଇଥାଏ । ପିତାମାତାଙ୍କୁ ପ୍ରେମ କରି ଶିଖିଲେ ବନ୍ଧୁ, ଶିକ୍ଷକ, ପତି/ପତ୍ନୀ, ସନ୍ତାନ, ପ୍ରତିବେଶୀ ଏବଂ ସହକର୍ମୀମାନଙ୍କୁ ପ୍ରେମ କରିବାରେ ସମସ୍ୟା ଉପୁଜେ ନାହିଁ । ଜୀବନ ପ୍ରତି ସକାରାତ୍ମକ ମନୋଭାବ ପୋଷଣ କରିବାରେ ଏହା ଯଥେଷ୍ଟ ସହାୟକ ହୋଇଥାଏ ।

ପିତାମାତା ସନ୍ତାନମାନଙ୍କୁ 'ମଣିଷ' ଭାବରେ ମର୍ଯ୍ୟାଦା ଦେଇପାରିଲେ ସନ୍ତାନମାନଙ୍କଠାରେ ଆତ୍ମମର୍ଯ୍ୟାଦା ଜାତ ହୁଏ । ଏହା ଫଳରେ ସେମାନଙ୍କଠାରେ ଆତ୍ମନିର୍ଭରଶୀଳତାର ଉନ୍ମେଷ ହୁଏ । ସେମାନେ ନିଜକୁ ବେଶ୍ ସହଜ ମନେକରନ୍ତି ଓ ସାରା ଜୀବନ ଧରି ବିଭିନ୍ନ ବର୍ଗର ବ୍ୟକ୍ତିଙ୍କ ସହ ଉତ୍ତମ ସମ୍ପର୍କ ରକ୍ଷା କରି ଚଳନ୍ତି ।

ଯେଉଁ ପିତାମାତା ସନ୍ତାନମାନଙ୍କୁ ସମ୍ମାନ ଦେଇଥାନ୍ତି, ସେମାନେ ସନ୍ତାନମାନଙ୍କଠାରୁ ମଧ୍ୟ ସମ୍ମାନ ଉପଭୋଗ କରିଥାନ୍ତି ।



# ପିଲା, ପିତାମାତା ଓ ଅଜାଆଈ

"ଆପଣଙ୍କ ସନ୍ତାନ ଆପଣଙ୍କ ପରାମର୍ଶ ଅପେକ୍ଷା ଆପଣଙ୍କ ପଦାଙ୍କ ଅନୁସରଣ କରିବାରେ ଅଧକ ତତ୍ପରତା ପ୍ରକାଶ କରିଥାଏ ।"

–ବେଞ୍ଜାମିନ୍ ଫ୍ରାଙ୍କ୍ଲିନ୍

ପ୍ର : ପିତାମାତା ଉଭୟେ ନା ସେମାନଙ୍କ ମଧ୍ୟରୁ କେହି ଜଣେ ସନ୍ତାନର ସର୍ବାଙ୍ଗୀଣ ବିକାଶ ପାଇଁ ଯଥେଷ୍ଟ ?

ଉ : ଶିଶୁ ଚିକିତ୍ସାବିଜ୍ଞାନ ଦୃଷ୍ଟିକୋଣରୁ ହେଉ କିମ୍ବା ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ହେଉ, ସନ୍ତାନମାନଙ୍କର ବୃଦ୍ଧି ଓ ବିକାଶ ପାଇଁ ପିତାମାତା ଉଭୟଙ୍କର ସାନ୍ନିଧ ଯଥେଷ୍ଟ ଅନୁକୂଳ ବିବେଚିତ ହୋଇଥାଏ । ଏପରିକି, ସାବତବାପା କି ସାବତମା'ଙ୍କ ଅବଦାନ ମଧ ବେଶ୍ ଉପଯୋଗୀ । କିନ୍ତୁ, ନିଜ ପିତାମାତା ହୁଅନ୍ତୁ କିମ୍ବା ସାବତପିତା କି ସାବତମାତା ହୁଅନ୍ତୁ, ଉଭୟଙ୍କ ମଧରେ ପାରସ୍ପରିକ ସମ୍ପର୍କ ଘନିଷ୍ଠ ହୋଇଥିବା ଆବଶ୍ୟକ । ଉଭୟେ ପରସ୍ପର ପରସ୍ପରକୁ ଭଲ ପାଇବା ସଙ୍ଗେ ସଙ୍ଗେ ପରସ୍ପରକୁ ସମ୍ମାନ ଦେଉଥିବା ମଧ ଦରକାର । ପିତା ଓ ମାତା ଦୁଇଜଣଙ୍କର ସାନ୍ନିଧ ପାଇଲେ ସନ୍ତାନମାନେ ବାସ୍ତବ ଦୃଷ୍ଟିକୋଣରୁ ଓ ଆଦର୍ଶଗତ ଦୃଷ୍ଟିକୋଣରୁ ଦୁଇ ବିପରୀତ ଲିଙ୍ଗୀଙ୍କ ଚରିତ୍ର, ଆଚରଣ ଆଦିର ସଂସ୍ପର୍ଶରେ ଆସିଥାଆନ୍ତି । ଏହା ଫଳରେ, ସେମାନଙ୍କର ଭବିଷ୍ୟତ ଜୀବନ ତଥା ବୈବାହିକ ଜୀବନରେ ସ୍ଥିରତା ଆସିଥାଏ । ତାହାଛଡ଼ା, ସନ୍ତାନମାନଙ୍କର ଲାଳନପାଳନରେ ପିତାମାତା ଉଭୟେ ପରିପୂରକ ଭାବରେ ଦାୟିତ୍ୱ ନିର୍ବାହ କରିବାର ସୁଯୋଗ ସୃଷ୍ଟି ହୁଏ । କାହାରି ଜଣକର ଉଦ୍ଦଣ୍ଡୀ ଓ ଅସ୍ୱାଭାବିକ ମାନସିକତାକୁ ଅନ୍ୟଜଣକ ସନ୍ତୁଳିତ କରିଦେଇ ପରିବାରରେ ଏକ ଅନୁକୂଳ ବାତାବରଣ ସୃଷ୍ଟି କରିଥା'ନ୍ତି । ଏହା ଫଳରେ, ସନ୍ତାନମାନଙ୍କର ବୃଦ୍ଧି ଓ ବିକାଶ ଧାରା ଅନୁକୂଳ ପରିବେଶ ଉପଭୋଗ କରିପାରେ ।

ତେବେ, ଏହା ଭାବିନେବା ଉଚିତ ନୁହେଁ ଯେ କେବଳ ପିତା କିମ୍ବା କେବଳ ମାତା – ଯେ କେହି ଜଣକର ସାନ୍ନିଧ ମିଳିଲେ ସନ୍ତାନର ବିକାଶ ବ୍ୟାହତ ହୋଇପଡ଼ିବ । ସମାଜ-ବିଜ୍ଞାନୀମାନେ ମତ ଦିଅନ୍ତି ଯେ ଯେଉଁ ସନ୍ତାନମାନେ ପିତୃହୀନ, ସେମାନେ ନିଜ କଳ୍ପନାରେ ପିତାଙ୍କର ଏକ କାଳ୍ପନିକ ଉପସ୍ଥିତି ସୃଷ୍ଟି କରିଥାଆନ୍ତି । ପିତାଙ୍କର ସାନ୍ନିଧ କଥା ଯଦି ସେମାନଙ୍କର ମନେ ଥାଏ ଏବଂ ମା'ଙ୍କଠାରୁ ପିତାଙ୍କ ବିଷୟରେ ସେମାନେ ଯାହା ଯାହା ଶୁଣିଥାନ୍ତି – ଏହାକୁ ଆଧାର କରି ସେମାନେ ନିଜ ପିତାଙ୍କ ବିଷୟରେ କଳ୍ପନା କରିପକାନ୍ତି । ଏହି 'ସଂଶ୍ଲେଷିତ ପିତା'ଙ୍କୁ ଆଦର୍ଶ କରି ତାଙ୍କଠାରୁ ହିଁ ଆହରଣ କରନ୍ତି ପୁରୁଷୋଚିତ ଗୁଣାବଳୀ । ଠିକ୍ ସେହିପରି ମାତୃହୀନ ସନ୍ତାନମାନେ ମଧ୍ୟ ନିଜ ସ୍ମୃତିରୁ କଳ୍ପନା କରିବସନ୍ତି ନିଜ ଜନ୍ମଦାତ୍ରୀଙ୍କ ବିଷୟରେ । ମା'ଙ୍କ ବିଷୟରେ ନିଜର ଅତୀତ ସ୍ମୃତି ଓ ପରିବାରର ଅନ୍ୟମାନଙ୍କଠାରୁ ମା'ଙ୍କ ସମ୍ବନ୍ଧରେ ଶୁଣିଥିବା ବିଭିନ୍ନ କଥାକୁ ଆଧାର କରି ସେମାନେ ନିଜ ମନ ଭିତରେ ଗଢ଼ି ବସନ୍ତି ନିଜ ମା'ଙ୍କ ଅବିକଳ ରୂପ ଓ ଚରିତ୍ର । ଏହି କାଳ୍ପନିକ ମା' ବା 'ସଂଶ୍ଲେଷିତ ମାତା' ମା'ଙ୍କ ଅନୁପସ୍ଥିତିର କିଞ୍ଚିତ୍ ଭରଣା କରିଦିଏ । ପିତୃହୀନ କିମ୍ବା ମାତୃହୀନ ସନ୍ତାନ ନିଜ କଳ୍ପନାରେ ପିତା କିମ୍ବା ମାତାଙ୍କର ଛବି ଆଙ୍କି ତାଙ୍କୁ ପିତା କି ମାତାଙ୍କ ଆସନରେ ବସେଇ ଦେଇଥିବାରୁ ସେମାନେ ସାବତମାତା କି ସାବତପିତାଙ୍କୁ ନିଜ ମାନସିକତାରେ ଗ୍ରହଣ କରିନେବା କି ସ୍ୱୀକୃତି ଦେବାରେ ସମସ୍ୟା ଉପୁଜିବା ସ୍ୱାଭାବିକ । ତେଣୁ, ପିତା କିମ୍ବା ମାତା ପୁନର୍ବିବାହ କରିବା ପୂର୍ବରୁ ବହୁବାର ଚିନ୍ତା କରିବାର ଆବଶ୍ୟକତା ରହିଛି ।

ମନେ ରଖିବାର କଥା ଯେ ପୁଅ ଓ ଝିଅ ଉଭୟେ ନିଜ ପିତାମାତାଙ୍କ ଗହଣରେ ରହିବାର ସୁଯୋଗ କାମନା କରିଥାନ୍ତି । ପିତାମାତାଙ୍କ ସାନ୍ନିଧକୁ ସେମାନେ ଖୁବ୍ ଉପଭୋଗ କରିଥା'ନ୍ତି ମଧ୍ୟ । ସେମାନଙ୍କୁ ବିଭିନ୍ନ କାମଧନ୍ଦାରେ ସାହାଯ୍ୟ କରିବା ତଥା ସେମାନଙ୍କ ସହ ଏକତ୍ର ମିଳିମିଶି କାମ କରିବାରେ ସନ୍ତାନମାନଙ୍କୁ ଖୁବ୍ ଆନନ୍ଦ ମିଳିଥାଏ । କିନ୍ତୁ ଦୁର୍ଭାଗ୍ୟର କଥା ଯେ କର୍ମଜୀବୀ ପିତାମାତା ଦିନସାରା ଘରୁ ଅନୁପସ୍ଥିତ ରହି ସଂଧ୍ୟାରେ ଘରକୁ ଫେରିଲେ ସେମାନେ ଖୁବ୍ କ୍ଲାନ୍ତ ହୋଇପଡ଼ିଥାନ୍ତି । ଏହା ସତ୍ତ୍ୱେ, ସେମାନେ ସନ୍ତାନମାନଙ୍କ ଆବେଗିକ ଆବଶ୍ୟକତାକୁ ଅଗ୍ରାଧିକାର ଦେବା ବାଞ୍ଛନୀୟ । ସନ୍ତାନମାନଙ୍କୁ ଆଲିଙ୍ଗନ କରି ସ୍ନେହଶ୍ରଦ୍ଧା ପ୍ରଦର୍ଶନ କରିବା, ସେମାନଙ୍କର ଯାବତୀୟ ପ୍ରଶ୍ନର ଯଥାର୍ଥ ଉତ୍ତର ଦେବା ପାଇଁ ଚେଷ୍ଟିତ ହେବା ଓ ସେମାନଙ୍କର ଆଗ୍ରହ ପ୍ରତି ଅନୁକୂଳ ମନୋଭାବ ପୋଷଣ କରିବା ଦ୍ୱାରା ପିତାମାତା ଓ ସନ୍ତାନମାନଙ୍କ ମଧ୍ୟରେ ପାରସ୍ପରିକ ସମ୍ପର୍କ ଅଧିକ

ଦୃଢ଼ୀଭୂତ ହୋଇଥାଏ । କାର୍ଯ୍ୟକ୍ଷେତ୍ରରୁ ଫେରି ଘରେ ପହଞ୍ଚିବାର ପ୍ରଥମ ୧୫ ରୁ ୨୦ ମିନିଟ ସନ୍ତାନ ସହ ହସଖୁସିରେ ମଜିଗଲେ ନିଜର କ୍ଳାନ୍ତି ଉପଶମ ହେବା ସଙ୍ଗେ ସଙ୍ଗେ ପିତାମାତାଙ୍କ ଅନୁପସ୍ଥିତିଜନିତ ସନ୍ତାନର ବିରକ୍ତି ମଧ୍ୟ ପ୍ରଶମିତ ହୋଇଯାଏ ।

ପୁଅ ପିଲାମାନେ ସାଧାରଣତଃ ବନ୍ଧୁଭାବାପନ୍ନ ପିତାଙ୍କୁ ଅଧିକ ପସନ୍ଦ କରିଥାନ୍ତି । ଯେଉଁ ପିତା ବାରମ୍ବାର ପୁଅକୁ ସମାଲୋଚନା କରିବାରେ ଅଭ୍ୟସ୍ତ, ସେ ନିଜ ପୁଅର ବିକାଶରେ ଏକ ବାଧକ । କାରଣ, ପୁଅର ସଫଳତା ଯେତେ ସାମାନ୍ୟ ହୋଇଥାଉ ପଛେ, ପିତାଙ୍କଠାରୁ 'ବାହାବା' ଶୁଣିଲେ ସେ ଅଧିକ ଉତ୍ସାହିତ ହୋଇଥାଏ । ଏହା ଫଳରେ, ତା'ର ବିକାଶ ପାଇଁ ଏକ ଅନୁକୂଳ ବାତାବରଣ ମିଳିଯାଏ । ଏହା ସନ୍ତାନର ଆତ୍ମବିଶ୍ୱାସ ବୃଦ୍ଧି କରିବାରେ ମଧ୍ୟ ସହାୟକ ହୋଇଥାଏ ।

ଏହା ସ୍ୱୀକାର୍ଯ୍ୟ ଯେ ପିଲାମାନେ ଯାହାକୁ ଭଲ ପାଆନ୍ତି ଓ ଯାହାର ଆଚରଣକୁ ଅନୁମୋଦନ କରନ୍ତି, ତାଙ୍କୁ ହିଁ ନିଜର ଆଦର୍ଶ ରୂପେ ଗ୍ରହଣ କରିନିଅନ୍ତି । ତେଣୁ, ସନ୍ତାନକୁ ନିଜ ଆଦର୍ଶ ତଥା ଅନୁକରଣରେ ଗଠନ କରିବାକୁ ଚାହୁଁଥିବା ପିତା, ସନ୍ତାନଦ୍ୱାରା ପ୍ରଥମେ ଗ୍ରହଣୀୟ ହେବା ଆବଶ୍ୟକ । ଯେଉଁ ପିତା ଅଧୈର୍ଯ୍ୟ ଓ ସାମାନ୍ୟ ସାମାନ୍ୟ କଥାରେ ବିରକ୍ତ ହୋଇଥାନ୍ତି, ସେଭଳି ପିତାଙ୍କର ସାନ୍ନିଧ୍ୟ ପୁଅପାଇଁ ଅତି ଅସ୍ୱସ୍ତିକର । ଏହି କାରଣରୁ, ପୁଅକୁ ଘୃଣା କରିବା, ଗାଳିଗୁଲଜ କରିବା ଓ ନିଜର ନିଷ୍ପତ୍ତିକୁ ତା' ଉପରେ ଜୋର-ଜବରଦସ୍ତ ଲଦିବାରେ ଚେଷ୍ଟିତ ହେବାର ପ୍ରଭାବ ଆଦୌ ଅନୁକୂଳ ହୋଇନଥାଏ । ବରଂ, ପିତାଙ୍କର ଏଭଳି ଆଚରଣ ପୁତ୍ରର ବିକାଶକୁ ଯଥେଷ୍ଟ ବ୍ୟାହତ କରିପକାଏ ।

ଝିଅମାନଙ୍କ କ୍ଷେତ୍ରରେ ମଧ୍ୟ ଏହା ସମାନ ଭାବରେ ପ୍ରଯୁଜ୍ୟ । ବନ୍ଧୁଭାବାପନ୍ନ ପିତା ଝିଅର ବିକାଶରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ପିତାଙ୍କ ଢାଞ୍ଚାରେ ନିଜକୁ ଗଢ଼ିବା ଝିଅମାନଙ୍କଠାରେ ବିଶେଷ ପରିଲକ୍ଷିତ ହେଉନଥିଲେ ମଧ୍ୟ କନ୍ୟା କିମ୍ବା ନାରୀ ଭାବରେ ଆତ୍ମବିଶ୍ୱାସ ପ୍ରାପ୍ତ ହେବାପାଇଁ ପିତାଙ୍କ ଘନିଷ୍ଠ ସାନ୍ନିଧ୍ୟ ଯଥେଷ୍ଟ ସହାୟକ ହୋଇଥାଏ । ପୁଅମାନଙ୍କ ତୁଳନାରେ କୌଣସି ଗୁଣରେ ନ୍ୟୁନ ନହେବାପାଇଁ ସେମାନେ ପିତାଙ୍କର ଅବଦାନ ଉପରେ ଯଥେଷ୍ଟ ନିର୍ଭର କରିଥାନ୍ତି । ଏପରିକି ନିଜଠାରେ ପୁରୁଷ ସୁଲଭ କେତେକ କ୍ରିୟାକଳାପର ବିକାଶ ସାଧନ ନିମନ୍ତେ ସେମାନେ ପିତାଙ୍କର ସହଯୋଗ କାମନା କରନ୍ତି ।

ତେବେ, ପ୍ରତ୍ୟେକ ପୁତ୍ରକନ୍ୟା ପିତାଙ୍କର ଘନିଷ୍ଠ ସାନ୍ନିଧ କାମନା କଲାଭଳି ପ୍ରତ୍ୟେକ ପୁତ୍ରକନ୍ୟା ମାତାଙ୍କର ଘନିଷ୍ଠ ସାନ୍ନିଧ କାମନା କରିଥାନ୍ତି । ଏପରିକି, ଦୈନନ୍ଦିନ କାର୍ଯ୍ୟରେ ମାତାଙ୍କର ସାହଚର୍ଯ୍ୟ ଆଶା କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବହୁ ପ୍ରକାରରେ ମାଆଙ୍କର ଉପରେ ନିର୍ଭର କରିଥାନ୍ତି ସେମାନେ ।

ଏହି ପରିପ୍ରେକ୍ଷୀରେ ଦେଖିଲେ, ସନ୍ତାନମାନଙ୍କୁ ଏକୁଟିଆ ଘରେ ଛାଡ଼ିଦେଇ ପିତାମାତା ଅଧିକାଂଶ ସମୟ ଘରେ ଅନୁପସ୍ଥିତ ରହିବା ଆଦୌ ସ୍ପୃହଣୀୟ ନୁହେଁ । ଉଭୟଙ୍କ ମଧ୍ୟରୁ କେହି ଜଣେହେଲେ ବି ସେମାନ୍‌ଙ୍କ ଗହଣରେ ଉପସ୍ଥିତ ରହିବା ବାଞ୍ଛନୀୟ । ବିଶେଷ କରି ସନ୍ତାନକୁ ୩ ବର୍ଷ ବୟସ ହେବା ପର୍ଯ୍ୟନ୍ତ ସେ ପିତା କିମ୍ବା ମାତାଙ୍କ ଉପସ୍ଥିତିରୁ ବଞ୍ଚିତ ହେବା ଉଚିତ ନୁହେଁ । ପିତାମାତା ଉଭୟ କର୍ମଜୀବୀ ହୋଇ ସେମାନଙ୍କର କାର୍ଯ୍ୟ-ସମୟ ସମାନ ହୋଇଥିଲେ କୌଣସି ନିକଟ ସମ୍ପର୍କୀୟ ବ୍ୟକ୍ତି ଶିଶୁ ସନ୍ତାନର ଯତ୍ନ ନେଲେ ଚଳିଯାଇପାରେ । କେତେକ ପରିବାରରେ ଛୋଟ ପିଲାମାନଙ୍କର ଦାୟିତ୍ୱ ଚାକରଚାକରାଣୀଙ୍କ ଉପରେ ନ୍ୟସ୍ତ କରାଯାଇଥାଏ । ନିଜର ଅନିଚ୍ଛା ସତ୍ତ୍ୱେ କେତେକ ପିତାମାତା ଏଭଳି ବ୍ୟବସ୍ଥା କରିବାପାଇଁ ଏକରକମ ବାଧ ହୋଇଥାନ୍ତି । ଏ' କ୍ଷେତ୍ରରେ ସ୍ନେହୀ, ଦାୟିତ୍ୱସମ୍ପନ୍ନ ବ୍ୟକ୍ତିଙ୍କ ଉପରେ ଉକ୍ତ ଦାୟିତ୍ୱ ଅର୍ପଣ ନକରି ଚାରା ଅବା କ'ଣ ଅଛି ?

**ପ୍ର : ନାତିନାତୁଣୀମାନଙ୍କର ଯତ୍ନ ନେବାରେ ଅଜା ଆଈଙ୍କର ଭୂମିକା କ'ଣ ?**

ଉ : କହିବାକୁ ଗଲେ, ନାତିନାତୁଣୀ ଓ ଅଜା ଆଈ ନିଜ ନିଜର ସ୍ୱାର୍ଥ ପାଇଁ ପରସ୍ପର ଉପରେ ନିର୍ଭରଶୀଳ । ଉଭୟ ଗୋଷ୍ଠୀ ଏହି ସମ୍ପର୍କ କାମନା କରିଥା'ନ୍ତି ଓ ଏଥିରୁ ଯଥେଷ୍ଟ ଫାଇଦା ଉଠେଇଥାଆନ୍ତି । ପରସ୍ପରର ଆନନ୍ଦ ବର୍ଦ୍ଧନ ପାଇଁ ଏହି ସମ୍ପର୍କ ଅନୁକୂଳ ବାତାବରଣ ଯୋଗାଇ ଦେଇଥାଏ । ଏପରିକି, ଅଜା ଆଈମାନେ ସ୍ୱୀକାର କରିଥାନ୍ତି ଯେ ନିଜର ପୁଅଝିଅଙ୍କ ଅପେକ୍ଷା ନିଜ ନାତିନାତୁଣୀ ସେମାନଙ୍କର ଅଧିକ ପ୍ରିୟ !

ବିଶେଷ କରି ସନ୍ତାନ ଲାଳନପାଳନରେ ଅଳ୍ପ ବୟସ୍କ ମାଆମାନଙ୍କୁ ବା ନିଜ ବୋହୂ ଓ ଝିଅକୁ ଯଥାର୍ଥ ପରାମର୍ଶ ଦେବାରେ ଆଈମାନଙ୍କର ଭୂମିକା ସୁଦୂରପ୍ରସାରୀ । କାରଣ, ଏ' କ୍ଷେତ୍ରରେ କୌଣସି ସମସ୍ୟାର ସମ୍ମୁଖୀନ ହେଲେ ସଦ୍ୟ ମାତୃତ୍ୱ ଲାଭ କରିଥିବା ନାରୀ ନିଜର ଶାଶୁ କିମ୍ବା ମା'ଙ୍କଠାରୁ ପରାମର୍ଶ ଲୋଡ଼ିଥାଏ । ତେବେ, ଏବେ

ଏଭଳି ବ୍ୟବସ୍ଥାରେ କିଞ୍ଚିତ୍ ବ୍ୟତିକ୍ରମ ପରିଲକ୍ଷିତ ହେଉଛି । କେତେକ ପରିବାରରେ ଶାଶୁଙ୍କ ପରାମର୍ଶ ବୋହୂମାନଙ୍କ ପାଇଁ ଗ୍ରହଣୀୟ ହୋଇପାରୁନାହିଁ । ନିଜ ମନକୁ ନ ପାଇଲେ ଶାଶୁଙ୍କ ଉପଦେଶ ମାନିବା ପାଇଁ ବୋହୂ ଅନିଚ୍ଛା ପ୍ରକାଶ କରୁଛି । ଏହି ପରିବର୍ତ୍ତିତ ପରିସ୍ଥିତିରେ ଶାଶୁ-ଶ୍ୱଶୁରମାନେ ନାତିନାତୁଣୀଙ୍କ ସେବାଯତ୍ନ ସମ୍ପର୍କରେ ନୀରବ ରହିବା ନିମନ୍ତେ ଶ୍ରେୟସ୍କର ମଣୁଛନ୍ତି । ନିଜର ନାତିନାତୁଣୀଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ ମଧ ସେମାନଙ୍କ ବିଷୟରେ ମୁକ୍ତ ମତାମତ ଦେବା ଉଚିତ ମଣୁନାହାନ୍ତି ସେମାନେ ।

ତେବେ, ଶାଶୁଶ୍ୱଶୁର ଓ ବୋହୂଙ୍କ ମଧ୍ୟରେ ଖୋଲାଖୋଲି ଆଲୋଚନା ହୋଇପାରିଲେ ଅନେକ ଭୁଲ ବୁଝାମଣା ଦୂରୀଭୂତ ହୋଇପାରିବ । ନାତିନାତୁଣୀମାନେ ଅଜାଆଈଙ୍କୁ ଆଦରି ନେଲେ ବାପମା'ଙ୍କର ଦାୟିତ୍ୱ ଯଥେଷ୍ଟ ଲାଘବ ହୋଇଯିବ । ଅଜାଆଈଙ୍କ ମାନସିକ ଚାପ ହ୍ରାସ ପାଇବା ସଙ୍ଗେ ସଙ୍ଗେ ନାତିନାତୁଣୀଙ୍କୁ ଅନୁକୂଳ ସାମାଜିକ ପରିବେଶ ଉପଲବ୍ଧ ହୋଇଯିବ ।



# ବାପ କିମ୍ବା ମାଆ ଛେଉଣ୍ଡ ସନ୍ତାନ

"ଶିଶୁମାନେ ଅସୁଖୀ ରହିଥିବା ପର୍ଯ୍ୟନ୍ତ ପୃଥିବୀର ପ୍ରଗତି ସମ୍ଭବ ହୋଇପାରିବନି ।"

–ଆଲବର୍ଟ୍ ଆଇନ୍‌ଷ୍ଟାଇନ୍

**ପ୍ର : ଛାଡ଼ପତ୍ର କାରଣରୁ ହେଉ କି ମୃତ୍ୟୁ ହେତୁ ହେଉ କିମ୍ବା ଅବିବାହିତା ଯୁବତୀ ମାତୃତ୍ୱ ଲାଭ କରିବା ଯୋଗୁ ହେଉ, ସନ୍ତାନପାଇଁ ପିତା ଓ ମାତା ଉଭୟଙ୍କର ସାନ୍ନିଧ୍ୟ ସମ୍ଭବ ହୋଇପାରେ ନାହିଁ । ଏଭଳି ପରିସ୍ଥିତିରେ ସନ୍ତାନର ସର୍ବାଙ୍ଗୀଣ ବିକାଶ ପାଇଁ କି' କି' ପଦକ୍ଷେପ ଗ୍ରହଣ କରାଯାଇପାରେ ?**

ଉ : ପ୍ରତ୍ୟେକ ସନ୍ତାନ ପିତା ଓ ମାତା ଉଭୟଙ୍କର ଉପସ୍ଥିତି ଓ ସାହଚର୍ଯ୍ୟ କାମନା କରିଥାନ୍ତି । ଏହା ସେମାନଙ୍କର ବିକାଶରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । କିନ୍ତୁ, କେତେକ ପିଲାଙ୍କ ପାଇଁ ଏ' ପ୍ରକାରର ସୁଯୋଗ ମିଳିପାରେ ନାହିଁ । ପିତାମାତାଙ୍କର ବିବାହ ବିଚ୍ଛେଦ ଘଟିଲେ ସନ୍ତାନମାନେ କେବଳ ପିତା କିମ୍ବା କେବଳ ମାତାଙ୍କ ଦ୍ୱାରା ଲାଳିତପାଳିତ ହେବା ନିମନ୍ତେ ବାଧ୍ୟ ହୁଅନ୍ତି । ପିତା କିମ୍ବା ମାତାଙ୍କର ଅକାଳ ମୃତ୍ୟୁ ହେଲେ ମଧ୍ୟ ଏହି ପରିଣତି ଉପୁଜିଥାଏ । ତାହାଛଡ଼ା ଏବେ ସମାଜରେ ଅବିବାହିତା ଯୁବତୀ ମାଆ ହୋଇପଡ଼ିବାର ହାର ବୃଦ୍ଧି ପାଇଚାଲିଛି । ଅସାମାଜିକ ହେଲେ ମଧ୍ୟ ଶେଷୋକ୍ତ ଘଟଣା ପ୍ରତି ସମାଜ କ୍ରମେ ସହନଶୀଳ ହୋଇଉଠିଲାଣି । ତେବେ, ପରିସ୍ଥିତି ଅନୁକୂଳ ନହେଲେ ମଧ୍ୟ ଶିଶୁ ସନ୍ତାନର ବୃଦ୍ଧି ଓ ମାନସିକ ତଥା ଆବେଗିକ ବିକାଶ ଧାରା ତ ଅବ୍ୟାହତ ରହିବାକୁ ବାଧ୍ୟ । କିନ୍ତୁ, ଏହି ବିକାଶ ଧାରା ପିତା କିମ୍ବା ମାତାଙ୍କର ସ୍ଥାୟୀ ଅନୁପସ୍ଥିତି ଯୋଗୁ ପ୍ରଭାବିତ ହୋଇଥାଏ ଓ କେତେକ କ୍ଷେତ୍ରରେ ବ୍ୟାହତ ହୋଇଥାଏ ମଧ୍ୟ । ତେଣୁ, ସନ୍ତାନର ଦାୟିତ୍ୱ ବହନ କରିଥିବା ପିତା କିମ୍ବା ମାତାଙ୍କ ପାଇଁ ଏହା ଯେ ଏକ ଆହ୍ୱାନ, ଏଥିରେ କୌଣସି ସନ୍ଦେହ ନାହିଁ ।

ପ୍ରଥମେ ପିତୃହୀନ ସନ୍ତାନ କଥା ବିଚାର କରାଯାଉ । ପିତାଙ୍କର ଅନୁପସ୍ଥିତି ହେତୁ ସନ୍ତାନଠାରେ କୌଣସି ପାର୍ଥକ୍ୟ ପରିଲକ୍ଷିତ ହୁଏନାହିଁ ବୋଲି କହିବା ମୂର୍ଖତାର

ପରିଚାୟକ । ସେହିପରି ଏକୁଟିଆ ମାଆଟି ପାଇଁ ସନ୍ତାନର ଲାଳନପାଳନ କୌଣସି ସମସ୍ୟା ସୃଷ୍ଟି କରିନଥାଏ ବୋଲି କହିବା ମଧ୍ୟ ଭୁଲ୍ । ତେବେ, ସନ୍ତାନ ଲାଳନପାଳନର ଦାୟିତ୍ୱକୁ ସୁଚାରୁରୂପେ ନିର୍ବାହ କରିପାରିଲେ ଝିଅ କିମ୍ବା ପୁଅ ପରିସ୍ଥିତି ସହ ବୁଝାମଣା କରିନେଇ ବୃଦ୍ଧି ଓ ବିକାଶ ପଥରେ ଅଗ୍ରସର ହୋଇପାରେ ।

ତେବେ, ଏ' କ୍ଷେତ୍ରରେ ମା'ର ମନୋବୃତ୍ତି ସବୁଠାରୁ ବଳି ଗୁରୁତ୍ୱପୂର୍ଣ୍ଣ । ସେ ନିଜକୁ ଏକାକିନୀ, ଅସହାୟ ଓ ବନ୍ଦିନୀ ବୋଲି ମନେ କରିବା ସ୍ୱାଭାବିକ । ବେଳେବେଳେ 'ସବୁକିଛି ନିଃଶେଷ ହୋଇଗଲା' ବୋଲି ଅନୁଭବ ଆସିପାରେ । ତା'ର ଏହି ଦୁଃସ୍ଥିତିରେ ସନ୍ତାନଟି ପ୍ରଭାବିତ ହେବାରେ ଅସ୍ୱାଭାବିକତା କିଛି ନାହିଁ । ସେ ଯାହାହେଉ, ମାଆଟି ନିଜକୁ ଯେତେଦୂର ସମ୍ଭବ 'ସ୍ୱାଭାବିକ' ବୋଲି ଭାବିବା ହିଁ ଅତି ଗୁରୁତ୍ୱପୂର୍ଣ୍ଣ । ସେ ନିଜର ବନ୍ଧୁବାନ୍ଧବମାନଙ୍କ ସହ ସୁସମ୍ପର୍କ ରକ୍ଷା କରିବା, ନିଜର ରୁଚି ପ୍ରତି ପୂର୍ବବତ୍ ଧ୍ୟାନ ଦେବା, ବିଭିନ୍ନ ମନୋରଞ୍ଜନ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିବା ଓ ବାହ୍ୟ କାର୍ଯ୍ୟକଳାପ ପୂର୍ବପରି ଜାରି ରଖିବା ଅପରିହାର୍ଯ୍ୟ । ସନ୍ତାନଟି ଅତି ଛୋଟ ହୋଇଥିଲେ ଓ ସାହାଯ୍ୟ କରିବା ନିମନ୍ତେ କେହି ବିଶ୍ୱାସୀ ବ୍ୟକ୍ତି ନଥିଲେ ମା'ର ସମସ୍ୟା ବହୁଗୁଣିତ ହୋଇଯାଏ । ହେଲେ, ନିଜର ପରିସ୍ଥିତି ଓ ସମ୍ପର୍କକୁ ବିଚାରକୁ ନେଇ ଏହାର ସମାଧାନ ପନ୍ଥା ବାହାର କରିବା ବ୍ୟତୀତ ଅନ୍ୟ ଚାରା ଅବା କଅଣ ଅଛି ? ହେଲେ, ନିଜର ଅସୁବିଧା ଯୋଗୁ ଜାତ ହେଉଥିବା କ୍ରୋଧ ସନ୍ତାନ ଉପରେ ଅଜାଡ଼ିବା ଉଚିତ ନୁହେଁ । ମା'ର ମନ ଖୁସି ରହିଲେ ଓ ସେ ଥଟ୍ଟାମଜାରେ କାଳ କାଟିଲେ ସନ୍ତାନ ଉପରେ ଅନୁକୂଳ ପ୍ରଭାବ ପଡ଼ିବାର ସମ୍ଭାବନା ଯଥେଷ୍ଟ ଅଧିକ ।

ସେ ପୁଅ ହେଉ କି ଝିଅ ହେଉ, ତା'ର ବୟସ ବେଶୀ ହୋଇଥାଉ କି କମ୍ ହୋଇଥାଉ, ପିତାଙ୍କ ସାନ୍ନିଧ୍ୟରୁ ବଞ୍ଚିତ ସନ୍ତାନ ଅନ୍ୟ ପୁରୁଷ ବ୍ୟକ୍ତିମାନଙ୍କ ସହ ସୁସମ୍ପର୍କ ରକ୍ଷା କରିବାର ଆବଶ୍ୟକତା ରହିଛି । ଅଜା, କକା, ପୁଡୁରା, ମାମୁ, ପୁରୁଷ ଶିକ୍ଷକ, ପରିବାରର ପୁରୁଣା ବନ୍ଧୁ ତଥା ଅନ୍ୟାନ୍ୟ ସମ୍ପର୍କୀୟମାନେ ବିଭିନ୍ନ ପ୍ରକାରେ ସହାୟତା ଯୋଗାଇ ଦେଇଥାନ୍ତି । କିନ୍ତୁ, ଏ ପ୍ରକାରର ସମ୍ବନ୍ଧ ରକ୍ଷା କରିବାରେ ମା'ଙ୍କର ପରାମର୍ଶ ଲୋଡ଼ା । କାରଣ, ଭଲ ଓ ଭେଲର ପାର୍ଥକ୍ୟ ବାରିବାରେ ତାଙ୍କର ଅତୀତ ଅନୁଭୂତି ଯଥେଷ୍ଟ ସାହାଯ୍ୟ କରିଥାଏ । ତଥାପି, ପିତୃହୀନ ସନ୍ତାନମାନେ ନିୟନ୍ତ୍ରଣ ଅଭାବରୁ

କୁସଙ୍ଗରେ ପଡ଼ିବାର ଦେଖାଯାଇଥାଏ । ମା'ଟି ଏଥିପ୍ରତି ସତର୍କ ରହିବା ଉଚିତ । ମା' ନିଜେ ସନ୍ତାନ ପାଇଁ ସମୟ ଦେଇପାରିଲେ, ତା' ସହ ହସଖୁସିରେ ମଜି ରହିଲେ ଓ ତାକୁ ବିଶ୍ୱାସକୁ ନେଇପାରିଲେ, ବାପଛେଉଣ୍ଡ ପିଲା କୁପଥଗାମୀ ହେବାର ଆଶଙ୍କା କମ୍ । ସନ୍ତାନର ରୁଚିକୁ ଅଗ୍ରାଧିକାର ଦେଲେ ସନ୍ତାନଟି ନିଜ ମା'କୁ ଭଲ ପାଇ ଶିଖେ ଓ ମା'ର କଥା ମାନିବାକୁ ଆଗ୍ରହୀ ହୁଏ । ବେଳେବେଳେ ସନ୍ତାନର ସାଙ୍ଗସାଥୀମାନଙ୍କୁ ଘରକୁ ନିମନ୍ତ୍ରଣ କରି ସେମାନଙ୍କ ପାଇଁ ଖାଇବା ପିଇବାର ବ୍ୟବସ୍ଥା କରିବା ଓ ସେମାନଙ୍କ ସାଥିରେ ବାହାରକୁ ବୁଲିଯିବା ଦ୍ୱାରା ସନ୍ତାନଟି ନିଜକୁ ଭିନ୍ନ ମନେ କରେନାହିଁ । ଏହାଦ୍ୱାରା ତା'ର ଆତ୍ମମର୍ଯ୍ୟାଦା ଓ ଆତ୍ମବିଶ୍ୱାସ ବୃଦ୍ଧି ପାଇ 'ସେ ନିଜକୁ ଅନ୍ୟମାନଙ୍କ ପରି ଜଣେ' ବୋଲି ମନେ କରିଥାଏ ।

ସନ୍ତାନଟି ମାତୃହରା ହୋଇଥିଲେ, ତା'ର ଲାଳନପାଳନର ଭାର ପିତାଙ୍କ ଉପରେ ପଡ଼ିବା ସ୍ୱାଭାବିକ । ତେବେ, ପିତୃହରା ସନ୍ତାନର ଲାଳନପାଳନ ପାଇଁ ଯାହା ଯାହା ପ୍ରଯୁଜ୍ୟ, ମାତୃହରା ସନ୍ତାନ ପାଇଁ ମଧ୍ୟ ଠିକ୍ ସେଇଆ ସେଇଆ ପ୍ରଯୁଜ୍ୟ । କିନ୍ତୁ, ବାପ ପାଇଁ କେତେକ ଅତିରିକ୍ତ ସମସ୍ୟା ଉପୁଜିଥାଏ । ଆମ ସମାଜରେ ବାପାମାନେ ସନ୍ତାନର ଯତ୍ନ ନେବାରେ ଓ ତା'ର ଲାଳନପାଳନରେ ବିଶେଷ ଅଂଶ ଗ୍ରହଣ କରିନଥାନ୍ତି । ଅଧିକାଂଶ ପୁରୁଷଙ୍କର ଧାରଣା ଯେ "ସନ୍ତାନମାନଙ୍କ ଖବର ଅନ୍ତର ବୁଝିବା ପାଇଁ 'କୋମଳ' ମନୋଭାବ ପୋଷଣ କରିବା ଅପରିହାର୍ଯ୍ୟ ଓ 'କୋମଳତା' କେବଳ ନାରୀମାନଙ୍କ ଚରିତ୍ରରେ ପରିଲକ୍ଷିତ ହୋଇଥାଏ ।" ଏହା ଏକ ଭ୍ରାନ୍ତ ଧାରଣା । ତଥାପି, ଏ' ପ୍ରକାର ମନୋଭାବର ଶିକାର ହୋଇଥିବାରୁ ସନ୍ତାନ ଲାଳନପାଳନର ଦାୟିତ୍ୱ ବାପାମାନଙ୍କ ନିମନ୍ତେ ବଡ଼ ଅସ୍ୱସ୍ତିକର ହୋଇଥାଏ । ସେମାନେ ସନ୍ତାନକୁ କୋଳ କରିବା, ଆଲିଙ୍ଗନ କରିବା, କାଖେଇ ବୁଲେଇବା, କୋଳ କରି ଖୁଆଇଦେବା, ପାଖରେ ଶୁଆଇ ନାନାବାୟା ଗୀତ ଗାଇ ଶୁଆଇବା ଇତ୍ୟାଦି କାର୍ଯ୍ୟକୁ ସହଜରେ ଆଦରି ନେଇପାରନ୍ତି ନାହିଁ । ତାହାଛଡ଼ା, ନାରୀମାନଙ୍କ ତୁଳନାରେ ପୁରୁଷମାନେ ଅଧିକ ସମୟ ବାହାରେ ବିତେଇବାରେ ଅଭ୍ୟସ୍ତ । ପୁଣି, ସେମାନେ ପ୍ରାୟତଃ କର୍ମଜୀବୀ । ତେଣୁ, ସନ୍ତାନର ଲାଳନପାଳନ କରିବା ସେମାନଙ୍କ ପାଇଁ ସୁଗମ ହୁଏନାହିଁ । କିନ୍ତୁ ଅନ୍ୟ କୌଣସି ଉପାୟ ନଥିବାରୁ ସେମାନେ ନିଜର ମାନସିକତାକୁ ଅନୁକୂଳ ଭାବରେ ପରିବର୍ତ୍ତିତ କରିବାର ଆବଶ୍ୟକତା ରହିଛି ।

**ପ୍ର : ପିତା କିମ୍ବା ମାତାଙ୍କର ମୃତ୍ୟୁ ସନ୍ତାନମାନଙ୍କୁ କି' ପ୍ରକାରରେ ପ୍ରଭାବିତ କରିଥାଏ ?**

ଉ : ଏ' ସମ୍ପର୍କରେ ଜାଣି ରଖିବା ଉଚିତ ଯେ ବିଭିନ୍ନ ବୟସର ସନ୍ତାନ ପିତା କିମ୍ବା ମାତାଙ୍କର ମୃତ୍ୟୁ ପ୍ରତି ଭିନ୍ନ ଭିନ୍ନ ପ୍ରକାରେ ପ୍ରତିକ୍ରିୟା ପ୍ରକାଶ କରିଥାନ୍ତି । ତେବେ, ହାରାହାରି ଭାବରେ ଦେଖିଲେ ସବୁ ବୟସର ପିଲା ଓ ବୟସ୍କ ବ୍ୟକ୍ତିଙ୍କ ପକ୍ଷେ ପିତୃ/ମାତୃ ବିଚ୍ଛେଦଜନିତ ଶୋକାବସ୍ଥାରୁ ଅପେକ୍ଷାକୃତ ସ୍ୱାଭାବିକ ଅବସ୍ଥା ପ୍ରାପ୍ତ ହେବାପାଇଁ ପାଖାପାଖି ଦୁଇବର୍ଷ ଲାଗିଯାଏ । ନଅ, ଦଶ ବର୍ଷ ନହେବା ପର୍ଯ୍ୟନ୍ତ ପିଲାମାନେ ମୃତ୍ୟୁର ପରିଣାମ ବିଷୟରେ କିଛି ହୃଦୟଙ୍ଗମ କରିପାରନ୍ତିନି । ବ୍ୟକ୍ତିଟିଏ ମରିଗଲେ ସେ ଯେ ପୁନର୍ବାର ଫେରି ଆସିପାରେ ନାହିଁ – ଏ'କଥା ପିଲାମାନଙ୍କ ଧାରଣାରେ ନଥାଏ । ତେଣୁ, ପିତା କିମ୍ବା ମାତା ମରିଗଲେ ନଅ, ଦଶବର୍ଷରୁ ସାନ ହୋଇଥିବା ପିଲା ଧରି ନେଇଥାଏ ଯେ ତା'ର ପିତା/ମାତାଙ୍କର ଅନୁପସ୍ଥିତି ସାମୟିକ ଓ ଅଳ୍ପଦିନ ଭିତରେ ସେ ପରିବାରରେ ପୁଣି ଉପସ୍ଥିତ ହୋଇପଡ଼ିବେ । ସୁତରାଂ, ସେ ଏଥିପ୍ରତି କୌଣସି ପ୍ରତିକ୍ରିୟା ପ୍ରକାଶ କରିନଥାଏ । କିନ୍ତୁ, ସମୟ ଗଡ଼ି ଚାଲିବା ସଙ୍ଗେ ସେ ନିଜର ଅପୂରଣୀୟ 'କ୍ଷତି' ପ୍ରତି ସଚେତନ ହୋଇଯାଏ ଓ ନିଜକୁ କିଛି ପରିମାଣରେ ଅସହାୟ ମଣେ । ଆଶଙ୍କା, କ୍ରୋଧ, ଅପରାଧବୋଧ, ଦୁଶ୍ଚିନ୍ତା, ବିଷାଦ ଆଦି ବିଭାବ ପରିବାରର ପ୍ରତ୍ୟେକ ସଦସ୍ୟଙ୍କୁ କବଳିତ କରିଥିଲେ ମଧ୍ୟ ପିଲାମାନଙ୍କ ପାଇଁ ଏହାର କୁପ୍ରଭାବ ସୁଦୂରପ୍ରସାରୀ । ଏହି କାରଣରୁ, ସନ୍ତାନମାନଙ୍କୁ ଭରସା, ଆଶ୍ୱାସନା ଆଦି ପ୍ରଦାନ କରି ସେମାନଙ୍କ ମନରେ ଆସ୍ଥା ଜାଗ୍ରତ କରିବା ଜୀବିତ ପିତା କିମ୍ବା ମାତାଙ୍କର ପ୍ରଧାନ କର୍ତ୍ତବ୍ୟ ।

**ପ୍ର : ପିତା କିମ୍ବା ମାତାଙ୍କ ମୃତ୍ୟୁ ପରେ ପିତା ନାରୀ ସାଥୀଟିଏ କିମ୍ବା ମାତା ପୁରୁଷ ସାଥୀଟିଏ ଖୋଜି ତାଙ୍କ ସହ ସମ୍ପର୍କ ସ୍ଥାପନ କଲେ ସନ୍ତାନମାନେ କେଉଁ ପ୍ରକାରର ପ୍ରତିକ୍ରିୟା ପ୍ରକାଶ କରିଥାନ୍ତି ?**

ଉ: ଏଥିପ୍ରତି ସନ୍ତାନମାନେ ସାଧାରଣତଃ ମିଶ୍ର ପ୍ରତିକ୍ରିୟା ପ୍ରକାଶ କରୁଥିବାର ଦେଖାଯାଇଥାଏ । ତଥାପି ନୂଆ 'ମାଆ' କିମ୍ବା ନୂଆ 'ବାପା' ମିଳିଯିବ ବୋଲି ଭାବି କେତେକ ସନ୍ତାନଙ୍କଠାରେ ଆନନ୍ଦ ପ୍ରକାଶ ପାଏ । ପୁଣି ନୂତନ ଆଗନ୍ତୁକଟି ପିତା/ମାତାଙ୍କଠାରୁ ମିଳୁଥିବା ସ୍ନେହଶ୍ରଦ୍ଧାରେ ଭାଗୀଦାର ହେବାର ଆଶଙ୍କା କରି କେତେକ ସନ୍ତାନ ଈର୍ଷାଳୁ ହୋଇପଡ଼ନ୍ତି । ତେଣୁ, ଏ' କ୍ଷେତ୍ରରେ ନୂତନ ବିବାହ କରିବା ନିମନ୍ତେ ଅନେକ ଚିନ୍ତା, ଭାବନା ଓ ସାବଧାନତା ଅବଲମ୍ବନ କରିବାର ଆବଶ୍ୟକତା ରହିଛି ।

**ପ୍ର : ପିତାମାତାଙ୍କ ମଧ୍ୟରେ ବିବାହ ବିଚ୍ଛେଦ ପ୍ରତି ସନ୍ତାନମାନେ କି' ପ୍ରକାରର ମନୋଭାବ ପୋଷଣ କରିଥା'ନ୍ତି ?**

ଉ : ଏବେ ଆମ ସମାଜରେ ବିବାହ ବିଚ୍ଛେଦର ହାର ବଢ଼ିବାରେ ଲାଗିଲାଣି । ବିବାହ ବିଚ୍ଛେଦ ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ପାଇଁ ଅତ୍ୟନ୍ତ ଯନ୍ତ୍ରଣାଦାୟକ । ବିବାହ ବିଚ୍ଛେଦ ପୂର୍ବରୁ ପିତାମାତାଙ୍କ ମଧ୍ୟରେ କଳହ ଲାଗିବା, ବହୁ ସମୟରେ ଯୁକ୍ତିତର୍କ ହେବା ଅତି ସାଧାରଣ । ପିତାମାତା ଉଭୟେ ନିଜ ନିଜକୁ 'ଠିକ୍' ବୋଲି ସାବ୍ୟସ୍ତ କରିଚାଲିଲେ ମଧ୍ୟ ସନ୍ତାନମାନଙ୍କ ମାନସିକତା ଉପରେ ଏହାର ପ୍ରତିକୂଳ ପ୍ରଭାବ ପଡ଼ିଥାଏ । ସେମାନେ ଉଭୟଙ୍କୁ ସମାନ ଭାବରେ ଭଲ ପାଉଥିବାରୁ ବିବାହ ବିଚ୍ଛେଦକୁ ଆଦୌ ସମର୍ଥନ କରିପାରନ୍ତି ନାହିଁ । ବରଂ ଏଥିପାଇଁ ସନ୍ତାନମାନଙ୍କଠାରେ କେତେକ ଶାରୀରିକ ଓ ମାନସିକ ବିକୃତି ପ୍ରକାଶ ପାଇପାରେ । ନିଜକୁ ଅସହାୟ ମଣିବା, ନିଦ ନହେବା, ବିଛଣାରେ ପରିସ୍ରା କରି ପକେଇବା, ଜିଦିଆ ହେବା, ସାମାନ୍ୟ କଥାରେ କ୍ରୋଧିତ ହୋଇଉଠିବା, ବିଷାଦଗ୍ରସ୍ତ ରହିବା, ମୁଣ୍ଡ ବଥେଇବା, ପେଟରେ ଯନ୍ତ୍ରଣା ଅନୁଭବ କରିବା, ନିଜକୁ ଲଜ୍ଜିତ ମନେ କରିବା, ଝିଅମାନେ ପୁଅମାନଙ୍କ ସହ ଅବୈଧ ସମ୍ପର୍କ ରକ୍ଷା କରିବା ନିମନ୍ତେ ଉତ୍ସାହିତ ହେବା ଆଦି ଲକ୍ଷଣ ପ୍ରକାଶ ପାଏ ସନ୍ତାନମାନଙ୍କଠାରେ ।

ତାହାଛଡ଼ା ସନ୍ତାନର ଦାୟିତ୍ୱ ବହନ କରିଥିବା ପିତା କିମ୍ବା ମାତାଙ୍କ ପାଇଁ ଏହି ପରିଣତି ଅନେକ ନୂତନ ସମସ୍ୟାର ଉଦ୍ଭବ କରିପକାଏ ଓ ଏହାର ସହଜ ଶିକାର ହୋଇପଡ଼ନ୍ତି ସନ୍ତାନମାନେ ।



# ମା' ହେବା ପଥରେ

"ଶିଶୁର ଶିକ୍ଷା ଆରମ୍ଭ ହୋଇଥାଏ ମା' କୋଳରେ । ମା' ପାଟିରୁ ବାହାରୁଥିବା ପ୍ରତ୍ୟେକ ଶବ୍ଦ ପିଲାଟି କାନରେ ପହଞ୍ଚିଗଲେ, ତାହାହିଁ ଗଠନ କରିଚାଲେ ପିଲାର ଚରିତ୍ର ଓ ବ୍ୟକ୍ତିତ୍ୱ ।"

–ହୋସିଆ ବାଲୁ

ପ୍ର : ମାଆଟିଏ ହେବା ସତରେ ବଡ଼ କାଠିକର ପାଠ । ମୁଁ ଜଣେ ଭଲ ମାଆ ହୋଇପାରିବି କିପରି ?

ଉ : ହଁ, ଗର୍ଭ ହେବାର ଜଣାପଡ଼ିବା ମାତ୍ରେ କେତେକ ମା' ମାତୃତ୍ୱ କଥା ଚିନ୍ତାକରି ଖୁବ୍ ଆତଙ୍କିତ ହୋଇପଡ଼ନ୍ତି ଓ ଏଭଳି ଡର ସ୍ୱାଭାବିକ । ବିଶେଷ କରି ପ୍ରଥମ ସନ୍ତାନ ପାଇଁ ଚିନ୍ତାଦକ ବେଶୀ ବଢ଼ିଯାଏ । ହେଲେ, ଆମ ଦେଶର ଚଳଣି ଏହି ସମସ୍ୟା ସମାଧାନ କରିବାରେ ବେଶ୍ ସହାୟକ ହୋଇପାରୁଛି । ଏଠାରେ ଗର୍ଭବତୀ ମହିଳାଟି ନିଜେ ନିଜର ନିଷ୍ପତ୍ତି ନେଇନଥାଏ । ସନ୍ତାନର ଜନ୍ମ ଓ ପରବର୍ତ୍ତୀ ଲାଳନପାଳନରେ ସ୍ୱାମୀ, ଶାଶୁ, ଶ୍ୱଶୁର ଓ ମହିଳାଙ୍କ ପିତାମାତାଙ୍କ ନିଷ୍ପତ୍ତି ପ୍ରାୟତଃ କାର୍ଯ୍ୟକାରୀ ହୋଇଥାଏ । ଶିଶୁ ସନ୍ତାନର ଦାୟିତ୍ୱ ନେବାରେ ସେମାନେ ମଧ୍ୟ କିଛି କିଛି ଅବଦାନ ଦେଇଥାନ୍ତି । ତେବେ, ସ୍ୱାମୀଙ୍କର ଭରସା ପ୍ରଦାନ ସ୍ତ୍ରୀଙ୍କୁ ଅଧିକ ଆଶ୍ୱସ୍ତ କରିଥାଏ । ସ୍ୱାମୀ-ସ୍ତ୍ରୀ ଦୁଇଜଣଯାକ ପିଲାର ଦାୟିତ୍ୱ ନିର୍ବାହ କରିବା ବିଷୟରେ ଏକତ୍ର ଆଲୋଚନା କରିବା ଓ 'ଏ ଆମର ସନ୍ତାନ' ବୋଲି ସର୍ବଦା ସଚେତନ ରହିବାର ସୁଫଳ ସୁଦୂରପ୍ରସାରୀ ।

ତେବେ, ପ୍ରତ୍ୟେକ ଦମ୍ପତି ବିବାହର ବର୍ଷେ ଦୁଇବର୍ଷ ପରେ ସନ୍ତାନ ପାଇଁ ଚିନ୍ତା କଲେ ଭଲ । କାରଣ ଏହି ବର୍ଷେ ଦୁଇବର୍ଷ ସମୟ ଭିତରେ ସ୍ୱାମୀ-ସ୍ତ୍ରୀ ପରସ୍ପରକୁ ଭଲଭାବରେ ଜାଣିନିଅନ୍ତି । ଉଭୟଙ୍କ ଭିତରେ ବିକାଶ ଲାଭ କରେ ବୁଝାମଣା । ଦୁହେଁ ମିଳିମିଶି ନିଷ୍ପତ୍ତି ନେବାର ସୁଯୋଗ ମିଳେ । ଫଳରେ, ବିବାହର ବର୍ଷେ ଦୁଇବର୍ଷ ପରେ ସନ୍ତାନ ଜନ୍ମ ନେଲେ ସନ୍ତାନ ପାଇଁ ମିଳିଯାଏ ଏକ ସୁରକ୍ଷିତ ପାରିବାରିକ ପରିବେଶ । କିନ୍ତୁ, ବିବାହର ଠିକ୍ ପରେ ପରେ ସ୍ତ୍ରୀ ଗର୍ଭଧାରଣ କଲେ ଓ ଗର୍ଭଧାରଣଜନିତ ଆଦ୍ୟ

ଲକ୍ଷଣଗୁଡ଼ିକ ଅଧିକ ଅସ୍ୱସ୍ତିକର ହୋଇପଡ଼ିଲେ, ସ୍ୱାମୀ-ସ୍ତ୍ରୀ ଉଭୟଙ୍କର ଉତ୍କଣ୍ଠା ବଢ଼ିଯାଏ । ସେମାନେ ଭୟଭୀତ ହୋଇପଡ଼ନ୍ତି । ଏହି ଉତ୍କଣ୍ଠା ଓ ଭୟ ଭିତରେ ହଜିଯାଏ ସନ୍ତାନକ୍ଷମ ହେବାର ଖୁସି ଓ ସନ୍ତାନ ଧାରଣ କରିବାର ବିସ୍ମୟ ଏବଂ ରହସ୍ୟ । ହେଲେ, ବର୍ଷେ ଦୁଇବର୍ଷ ପରେ ଗର୍ଭବତୀ ହେଲେ, ଗର୍ଭଧାରଣ କରିବାର ସଫଳତା ପତିପତ୍ନୀଙ୍କ ପାଇଁ ବେଶ୍ ଉପଭୋଗ୍ୟ ହୋଇଥାଏ । ପରବର୍ତ୍ତୀ ଦିନଗୁଡ଼ିକରେ ଭାବୀ ସନ୍ତାନଟିର ଚିନ୍ତା, ଶୁଭକାମନା ଇତ୍ୟାଦି ସେମାନଙ୍କୁ କବଳିତ କରି ରଖେ । ସନ୍ତାନଟିକୁ ସାଦର ସ୍ୱାଗତ ଜଣେଇବା ନିମନ୍ତେ ପିତାମାତା ମାନସିକ ସ୍ତରରେ ପ୍ରସ୍ତୁତ ହୋଇରହନ୍ତି ଓ ଆନୁଷଙ୍ଗିକ କାର୍ଯ୍ୟାନୁଷ୍ଠାନମାନ ଗ୍ରହଣ କରନ୍ତି ।

ପିତାମାତା ଉଭୟ ମନେ ରଖିବା ଦରକାର ଯେ ସନ୍ତାନଟି ସେମାନଙ୍କୁ ଅନେଇ ଚାହିଁବାର ସମୟଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ତେଣୁ, ସେହି ସମୟକୁ ଆଦୌ ଉପେକ୍ଷା କରିବା ଉଚିତ ନୁହେଁ । ଆପଣଙ୍କର ମନ ଭଲ ନଥିଲେ, ଆପଣ ସନ୍ତାନର ଦୃଷ୍ଟି ସହ ଦୃଷ୍ଟି ମିଳେଇ ଅନୁକୂଳ ପ୍ରତିକ୍ରିୟା ପ୍ରକାଶ କରିପାରିବା ସମ୍ଭବ ନହୋଇପାରେ । ଏଭଳି ଆଚରଣ ସନ୍ତାନ ପାଇଁ ଶୁଭଙ୍କର ହୁଏନାହିଁ । ତେଣୁ, ସନ୍ତାନ ଜନ୍ମର ପରବର୍ତ୍ତୀ କେଇ ସପ୍ତାହ ମା' ଏ' ସମ୍ପର୍କରେ ସର୍ବଦା ସଚେତନ ରହିବା ଆବଶ୍ୟକ । ନିଜେ ଶାରୀରିକ ଓ ମାନସିକ ସୁସ୍ଥତା ବଜାୟ ରଖି ଅଧିକାଂଶ ସମୟ ସନ୍ତାନର ଉପସ୍ଥିତିକୁ ଉପଭୋଗ କରିବା ସଙ୍ଗେ ସଙ୍ଗେ ଉଭୟଙ୍କ ମଧ୍ୟରେ ନିର୍ବାକ୍ ଭାବ ଆଦାନପ୍ରଦାନରେ ମସଗୁଲ୍ ରହିବା ଦରକାର । ଶବ୍ଦରେ ପ୍ରକାଶ କରିପାରୁନଥିଲେ ମଧ୍ୟ ଏହି ସମୟରେ ବାର୍ତ୍ତା ପ୍ରେରଣ କରିବାରେ ଶିଶୁଟି ତତ୍ପର ଥାଏ ଓ ସେହି ବାର୍ତ୍ତାକୁ ଗ୍ରହଣ କରିବା ନିମନ୍ତେ ମା' ମଧ୍ୟ ପ୍ରସ୍ତୁତ ରହିଥିବା ବାଞ୍ଛନୀୟ ।

ଏହା ଅବଶ୍ୟ ସତ ଯେ ଦ୍ୱିତୀୟ କି ତୃତୀୟ ସନ୍ତାନ ସଂସାରକୁ ଆସିଲେ ବଢ଼ିଯାଏ ସମସ୍ୟା । ଏ' କ୍ଷେତ୍ରରେ ସ୍ୱାମୀଙ୍କର ସାହାଯ୍ୟ ଅପରିହାର୍ଯ୍ୟ ହୋଇପଡ଼େ । ଦ୍ୱିତୀୟ ପିଲାଟି ପ୍ରଥମ ପିଲା ଅପେକ୍ଷା ଦାବି କରେ ଅଧିକ ସମୟ । କାରଣ, ପ୍ରଥମ ସନ୍ତାନଟି ଦ୍ୱିତୀୟ ସନ୍ତାନ ପାଇଁ ଉଭା ହୋଇପଡ଼େ ଜଣେ ପ୍ରତିଦ୍ୱନ୍ଦ୍ୱୀ ରୂପେ । ଏହା ମଧ୍ୟ ଧରି ନିଅନ୍ତୁ ନାହିଁ ଯେ ଦୁଇଟିଯାକ ପିଲାଙ୍କ ନାଡ଼ି-ନକ୍ଷତ୍ର ସମାନ ହେବ ଓ ସେମାନେ ସମାନ ଭାବରେ ବ୍ୟବହାର ଦେଖାଇବେ । ପ୍ରତ୍ୟେକ ପିଲା ତା' ନିଜସ୍ୱ ଗୁଣରେ ସ୍ୱତନ୍ତ୍ର । ପ୍ରତ୍ୟେକ ସନ୍ତାନଠାରେ ସ୍ୱତନ୍ତ୍ରତା ନଥିଲେ ପରିବାରଟା ବଡ଼ କ୍ଲାନ୍ତିକର ଆଉ ନୀରସ ହୋଇଯାଉ ନଥାନ୍ତା ? ପ୍ରତ୍ୟେକେ ଅଲଗା ଅଲଗା ପ୍ରକାରର ହେଉଥିବାରୁ ତ ବେଶୀ ମଜା !

ବେଳେବେଳେ କେହି କେହି ମାଆ' ସନ୍ତାନର ସମସ୍ୟାକୁ ନେଇ ଅତିଷ୍ଠ ହୋଇପଡୁଥିବାର ଦେଖାଯାଏ । ପ୍ରଭୁତ୍ୱ ଜାହିର କରୁଥିବା ଶାଶୁ କିମ୍ବା ନିଃସ୍ପୃହ ସ୍ୱାମୀ ମିଳିଗଲେ ସନ୍ତାନର ଲାଳନପାଳନରେ ମା' ସମସ୍ୟାର ସମ୍ମୁଖୀନ ହେବା ସ୍ୱାଭାବିକ । ସେମାନେ ନିଜକୁ ଅସହାୟ ମଣିବାରେ ମଧ ଅସ୍ୱାଭାବିକତା ନାହିଁ । ତେବେ ପ୍ରତ୍ୟେକ ମା' ଜାଣିରଖିବା ଦରକାର ଯେ ସେ ଆଦୌ ନିଃସହାୟ ନୁହେଁ । ତାହାଠାରେ ରହିଛି ଅମାପ ଶକ୍ତି ଓ ଅପରିସୀମ ଧୈର୍ଯ୍ୟ । ସନ୍ତାନର ଯତ୍ନ ନେବାକୁ ଏକ ଆହ୍ୱାନ ବୋଲି ଗ୍ରହଣ କଲାପରେ ଉକ୍ତ ଶକ୍ତି ଓ ଧୈର୍ଯ୍ୟ ଆପେ ଆପେ ଆବିଷ୍କୃତ ହେବାରେ ଲାଗିଯିବ । ତାହାଛଡ଼ା, ସନ୍ତାନକୁ ମଧ ସମ୍ପୂର୍ଣ୍ଣ ନିଃସହାୟ ବୋଲି ଧରିନେବା ଠିକ୍ ନୁହେଁ । ତାହାଠାରେ ମଧ ଅନେକ ଶକ୍ତି ରହିଛି ଓ ସେ ବି ପରିସ୍ଥିତିରୁ ଶିକ୍ଷାଲାଭ କରୁଥାଏ ।

ଏଠାରେ ମା'ମାନଙ୍କୁ ଚେତେଇ ଦେବା ଦରକାର ଯେ ଛୋଟ ଛୁଆଟିଏ ଅଛି ବୋଲି ସେମାନେ ଦିନମାନ ଚବିଶ ଘଣ୍ଟା ଗୃହବନ୍ଦିନୀ ହୋଇ ରହିବାକୁ ବାଧ ନୁହନ୍ତି । ଏପରି ହେଲେ ତ ମା'ଟି ସନ୍ତାନର କ୍ରୀତଦାସୀ ପାଲଟିଯିବ । ସ୍ୱାମୀ ମଧ ଜାଣିରଖିବା ଉଚିତ ଯେ ମା' ହେବାପରେ ବି ସ୍ତ୍ରୀ ପାଇଁ ମଧ ସମୟରେ କିଛି ସ୍ୱାଧୀନତା ଲୋଡ଼ା । ସପ୍ତାହର ସାତଦିନ ଓ ଦିନର ଚବିଶ ଘଣ୍ଟା ସେ କେବଳ ପିଲାକୁ ନେଇ ବ୍ୟସ୍ତ ରହିବା ଆଦୌ ସ୍ପୃହଣୀୟ ନୁହେଁ । ମା' ନିଜେ ସମୟ ବାହାର କରି ନିଜର ବ୍ୟକ୍ତିଗତ ରୁଚି ପ୍ରତି ଧାନ ଦେବା ନିରାପଦ । ବନ୍ଧୁବାନ୍ଧବଙ୍କ ଘରକୁ ବୁଲିଯିବା କି ସାଙ୍ଗସାଥୀ ଓ ବନ୍ଧୁବାନ୍ଧବଙ୍କୁ ନିଜ ଘରକୁ ନିମନ୍ତ୍ରଣ କରି ସେମାନଙ୍କ ଗହଣରେ କିଛି ସମୟ ବିତେଇବା ଦ୍ୱାରା ମାନସିକ କ୍ଲାନ୍ତି, ବିରକ୍ତି ଓ ଗତାନୁଗତିକତା ଦୂର ହୋଇଯାଏ । ଅନ୍ୟମାନଙ୍କ ଘରକୁ ବୁଲିଗଲାବେଳେ ପିଲାକୁ ସାଙ୍ଗରେ ନେଇହେବ କିମ୍ବା ଅନ୍ୟ କୌଣସି ବିଶ୍ୱସ୍ତ ଆତ୍ମୀୟଙ୍କ ହେପାଜତରେ ରଖିହେବ । ବାହାରକୁ ବୁଲିଯିବା ସନ୍ତାନ ପ୍ରତି ଅବହେଳା ପ୍ରଦର୍ଶନ ବୋଲି ଭାବିବା ଅନୁଚିତ । ଜଣେ ଭଲ ମାଆ ହେବାର ସାମର୍ଥ୍ୟକୁ ବଜାୟ ରଖିବା ପାଇଁ ଓ ନିଜ ସନ୍ତାନର ସ୍ୱାର୍ଥ ପାଇଁ ମା'ର ମନୋରଞ୍ଜନ ଅପରିହାର୍ଯ୍ୟ । ତାହାଛଡ଼ା, ପିଲାକୁ ସାଙ୍ଗରେ ନେଇ ବାହାରକୁ ବୁଲିଯିବା ଦ୍ୱାରା ଶିଶୁ ସନ୍ତାନଟି ନୂତନ ପରିବେଶ ପ୍ରତି ଉନ୍ମୁକ୍ତ ରହିବାର ସୁଯୋଗ ପାଏ ଓ ଏହା ତା'ର ମାନସିକ ତଥା ଆବେଗିକ ବିକାଶରେ ଯଥେଷ୍ଟ ସାହାଯ୍ୟ କରେ ।

ସମସ୍ତେ ତ ନିଜର ଗତାନୁଗତିକ, କ୍ଲାନ୍ତିକର ପରିବେଶରୁ କିଛି ସମୟ ପାଇଁ ମୁକୁଳିଯିବାକୁ ଚାହିଁଥାନ୍ତି । ମାଆମାନଙ୍କ ପାଇଁ ମଧ ସମାନ କଥା । ବେଳେବେଳେ ଘରେ ରହିବାରେ ଅତିଷ୍ଠ ଲାଗିଯାଏ । ଏ' ପ୍ରକାରର ଅନୁଭବ ଜାଗିଲେ, ଶିଶୁ ସନ୍ତାନକୁ ମା'

ବୁଲେଇ ନେଇପାରେ । ତାକୁ ସାଙ୍ଗରେ ଧରି ପରିବା ପତ୍ର ଓ ଦୋକାନ ସଉଦା କରିବା ପାଇଁ ଘରୁ ବାହାରିଯାଇପାରେ । ପିଲା ଟିକିଏ ବଡ଼ ହୋଇଗଲେ ସେ' ତ ବଜାରକୁ ଯିବା ନିମନ୍ତେ ଆଗଭର ହୋଇ ବାହାରିପଡ଼େ । ଏପରିକି ତା'ର ତିନିଚକିଆ କି ଛୋଟ ଦୁଇଚକିଆ ସାଇକଲ୍ ଚଳେଇ ସେ ମା' ପାଖେ ପାଖେ ଯିବାରେ ଆନନ୍ଦ ପାଏ । ମା' ପାଇଁ ତ ଏହା ଅତ୍ୟନ୍ତ ତୃପ୍ତିଦାୟକ । ପିଲା ଆଉ ଟିକିଏ ବଢ଼ିଗଲେ ସାଇକଲ୍ ଚଳେଇ ଘର ଚାରିପଟେ ଦୁଇତିନି ଘେରା ଚକ୍କର କାଟି ଆସିବାପାଇଁ କି ବାହାରେ ଯାଇ ବଲ୍ ଖେଳିବାପାଇଁ ତାକୁ କୁହାଯାଇପାରେ । ଏହା ଫଳରେ ମାଆକୁ କିଛି ବିଶ୍ରାମ ମିଳେ, ସନ୍ତାନକୁ ମିଳିଯାଏ କସରତ କରିବାର ସୁଯୋଗ ।

ପ୍ର : **ବେଳେବେଳେ ଖୁବ୍ ଚିଡ଼ିଚିଡ଼ି ଲାଗେ । ମନଟା କେମିତି ଉଦାସିଆ ରହେ । ସନ୍ତାନ ପ୍ରତି ଧ୍ୟାନ ଦେବା ପାଇଁ ଦେହ ଆଉ ମନରେ ଶକ୍ତି ଅନୁଭୂତ ହୁଏନାହିଁ । ଏ'ପ୍ରକାର ଅବସ୍ଥାରେ କି ପ୍ରତିକାର କରାଯାଇପାରିବ ?**

ଉ: ଆପଣ ଯାହା ଯାହା କହିଲେ, ତା' କ'ଣ ଅସ୍ୱାଭାବିକ କଥା ? କେବଳ ଆପଣ କାହିଁକି, ସମସ୍ତଙ୍କ କ୍ଷେତ୍ରରେ ଏଭଳି ଅନୁଭବ ଆସିଥାଏ । ଏହା ବୋଲି ଏଥିପାଇଁ ସନ୍ତାନ ଉପରେ ରାଗ ଶୁଝେଇବା ଉଚିତ ନୁହେଁ । ଆପଣଙ୍କୁ ଯେ ଭଲ ଲାଗୁନି, ଆପଣଙ୍କୁ ଯେ ବ୍ୟସ୍ତ ଲାଗୁଛି, କିମ୍ବା ଆପଣ କ୍ଳାନ୍ତ କିମ୍ବା ଅସୁସ୍ଥ କିମ୍ବା ଆପଣଙ୍କର ମୁଣ୍ଡ ବ୍ୟଥା ହେଉଛି – ଏ' ବିଷୟ ପିଲାକୁ ଜଣେଇଦେଲେ ସେ ବୁଝିଯିବ । ଆପଣଙ୍କ ଅସ୍ୱସ୍ତି ଲାଘବ କରିବା ନିମନ୍ତେ ଆପଣ ଥଣ୍ଡା ଜଳ କି ଥଣ୍ଡା ସରବତ ପିଇପାରନ୍ତି । ଆପଣଙ୍କ ରୁଚିକୁ ଚାହିଁ ଚା' କି କଫି କପେ ପିଇପାରନ୍ତି । ବେଳେବେଳେ ପିଲାଏ ମା'ଙ୍କ ଅସୁବିଧା ବୁଝିନିଅନ୍ତି ଓ ମା'ଙ୍କ ସାଙ୍ଗରେ ସହଯୋଗ କରନ୍ତି । ମା'ଙ୍କ ଅସୁବିଧା ଦୂର କରିବା ପାଇଁ ଯଥାସମ୍ଭବ ଚେଷ୍ଟା କରନ୍ତି । ଅଝଟ ନହୋଇ ଶାନ୍ତ ପାଲଟିଯାଆନ୍ତି ।

ତେବେ, ମନେ ରଖିଥିବେ ଯେ 'ସନ୍ତାନ ଯୋଗୁ ଆପଣଙ୍କର ଏ ଦଶା' – ଏପରି କଥା ତୁଣ୍ଡରେ ଧରିବେନି । ଏପରିକି ଅଜାଣତରେ କି ଆକସ୍ମିକ ଭାବରେ ବି ଏହା ଆପଣଙ୍କ ତୁଣ୍ଡରୁ ଖସିଯିବା ଉଚିତ ନୁହେଁ । ବରଂ କହିପାରନ୍ତି – "ବାବୁରେ, ତୁ' ମୋ ଅସୁସ୍ଥତାର କାରଣ ନୋହୁଁ । ଜାଣିଚୁ ତ, ମୋ' ମୁଣ୍ଡରେ କେତେ ଦାୟିତ୍ୱ । ଦାୟିତ୍ୱ ବଢ଼ିଗଲେ ବେଳେବେଳେ ଦେହ ଭଲ ଲାଗେନି । ମୁଣ୍ଡ ବଥାଏ ।" ଏଇ ବାକ୍ୟ କେତୋଟି ସନ୍ତାନର ଚିନ୍ତାକୁ ହାଲୁକା କରିଦିଏ । ସେ ଯେ ଆପଣଙ୍କ ଅସୁସ୍ଥତା ପାଇଁ ଦାୟୀ ନୁହେଁ, ଏହା ଜାଣି ଆଶ୍ୱସ୍ତ ହୁଏ । ମନକୁ ଶାନ୍ତ ରଖିବା ପାଇଁ ଆପଣ ହୁଏତ ବହି ଧରି କିମ୍ବା ପତ୍ରିକାଟିଏ

ନେଇ ପଢ଼ାପଢ଼ି କରିପାରନ୍ତି କିମ୍ବା ବାହାରେ କିଛି ସମୟ ବୁଲାବୁଲି କରିସାରି ଘରକୁ ଫେରିପାରନ୍ତି । ଏହା କରିପାରିଲେ ଆପଣ ଆରାମ ଅନୁଭବ କରିପାରିବେ ।

ମନରେ ବେଳେବେଳେ ଭାବନା ଆସିଥାଏ ଯେ :'ମୁଁ ମୋ' ପିଲାପିଲିଙ୍କ ଉପରେ ଜମା ରାଗନ୍ତିନି କି', 'ମୁଁ କିଛି ଭୁଲ କରନ୍ତିନି କି', 'ମୁଁ ସବୁବେଳେ ମୋ' ପିଲାପିଲିଙ୍କ ପାଖରେ ରହିପାରନ୍ତି କି' ଇତ୍ୟାଦି । ଏଭଳି ଭାବିବାରେ ଅସ୍ୱାଭାବିକତା କିଛି ନାହିଁ । କିନ୍ତୁ, ଏହାକୁ ସମ୍ଭବ କରାଇବା ଅସ୍ୱାଭାବିକ, ଅସମ୍ଭବ । ବରଂ ପ୍ରତିକୂଳ ପରିସ୍ଥିତିର ଉଦ୍ଭବ ହେଲେ ସାଙ୍ଗେ ସାଙ୍ଗେ ପ୍ରତିକ୍ରିୟା ପ୍ରକାଶ ନକରି ମୌନ ରହିଯିବା ହିଁ ବିଜ୍ଞତାର କାର୍ଯ୍ୟ । କାରଣ, ମୌନ ରହିଗଲେ ଚିନ୍ତା କରିବା ପାଇଁ ମନକୁ ଅବସର ମିଳିଯାଏ । ଚିନ୍ତା କରିବାର ଅବସର ମିଳିଗଲେ ମନ ସଙ୍ଗତ କଅଣ ଓ ଅସଙ୍ଗତ କଅଣ ତାହା ଧରିପାରି ଯଥାର୍ଥ ପଦକ୍ଷେପ ନିଏ । ପିତାମାତା ଓ ସନ୍ତାନସନ୍ତତିମାନଙ୍କ ସମ୍ପର୍କ କ୍ଷେତ୍ରରେ ଏହା ଯେପରି ପ୍ରଯୁଜ୍ୟ, ସେହିପରି ପ୍ରଯୁଜ୍ୟ ସ୍ୱାମୀ-ସ୍ତ୍ରୀଙ୍କ ସମ୍ପର୍କ କ୍ଷେତ୍ରରେ । ଚିନ୍ତା କରିବା ପାଇଁ ସମୟ ଚାହିଁବା ଭଳି ପଦକ୍ଷେପ ଅନେକ ଅସ୍ୱସ୍ତିକର ଅବସ୍ଥାରୁ ବ୍ୟକ୍ତିକୁ ସୁରକ୍ଷିତ ରଖିଥାଏ ଓ ପତିପତ୍ନୀଙ୍କ ସମ୍ପର୍କରେ କ୍ଷତ ସୃଷ୍ଟି କରିପାରେ ନାହିଁ । କିଛି ସମୟର ବ୍ୟବଧାନ ପରେ ପ୍ରସଙ୍ଗଟିକୁ ଆଲୋଚନା କଲେ ପରିବେଶଟି ବେଶ୍ ହାଲୁକା ହୋଇଯାଏ ଓ ପରସ୍ପର ଭିତରେ ଉଚ୍ଚବାଚର ସମ୍ଭାବନା ରହେନାହିଁ ।

**ପ୍ର : ସନ୍ତାନ ବଦମାସି କଲେ କି ଅଶୋଭନୀୟ ଆଚରଣ ଦେଖେଇଲେ ମନରେ ତ ରାଗ ଆସେ । ମୁଣ୍ଡରେ ପିତ୍ତ ଚଢ଼ିଯାଏ । ସେ କ୍ଷେତ୍ରରେ ପୁଣି କ'ଣ କରାଯିବ ?**

ଉ : ହଁ, ମନ ରାଗରେ ଜଳିଉଠେ । ମୁଣ୍ଡରେ ପିତ୍ତ ଚଢ଼ିଯାଏ । ଏହା କେତେବେଳେ ଅଜାଣତରେ ଘଟିଯାଏ ତ ଅନ୍ୟ କେତେବେଳେ ଜାଣିଶୁଣି ଆପଣ ରାଗିଉଠନ୍ତି । କିଛି ନ ବୁଝି, ନ ବିଚାରି ରାଗ ଶୁଝେଇବା ପାଇଁ ତିଆର ହୋଇଯାଆନ୍ତି । କିନ୍ତୁ, ଏହାର ପରିଣତି ମଧ୍ୟ ମଙ୍ଗଳକର ହୋଇନଥାଏ । ନିଜର କ୍ରୋଧ ଓ 'ପିତ୍ତ'କୁ ଉତାରି ଆଣିବା ପାଇଁ 'ସମୟ' ଉପରେ ଭରସା ରଖନ୍ତୁ । କ୍ରୋଧ ଚାପି ରଖି ସ୍ୱାଭାବିକ ବ୍ୟବହାର ଦେଖାନ୍ତୁ । କିଛି ସଉଦାପତ୍ର କିଣି ଆଣିବା ପାଇଁ କିମ୍ବା ଖେଳିବା ପାଇଁ ସନ୍ତାନକୁ ବାହାରକୁ ପଠେଇ ଦିଅନ୍ତୁ । ଗାଧୋଇବା ସମୟ ହୋଇଥିଲେ ଗାଧୁଆ ଘର ଭିତରେ ପଶିଯାଇ ସ୍ନାନ କରନ୍ତୁ । ଏହି ସମୟ ବ୍ୟବଧାନ ଭିତରେ ଆପଣଙ୍କ ରାଗ ବେଶ୍ ଉପଶମ ହୋଇଯାଇଥିବ । ତେଣୁ, ପ୍ରସଙ୍ଗଟିକୁ ସନ୍ତାନ ଆଗରେ ଉପସ୍ଥାପନ କଲେ ଅଶୋଭନୀୟ ପରିସ୍ଥିତି ଉପୁଜିବାର ସମ୍ଭାବନା ରହିବନି ।

ମନେରଖନ୍ତୁ – ପିଲା ଉପରେ କଷ୍ମିନ୍‌କାଳେ ରାଗିବେନି କି ନିଜର କ୍ରୋଧକୁ ମନ ଭିତରେ ବନ୍ଧେଇ ରଖିବେନି । ଆପଣ ଓ ଆପଣଙ୍କ ସନ୍ତାନ ଉଭୟେ ଏହି ଅଭାବନୀୟ ପରିସ୍ଥିତିର ଊର୍ଦ୍ଧ୍ୱକୁ ଚାଲିଗଲେ ଉଭୟଙ୍କ ପାଇଁ ହିତକର ।

ଯେଉଁ ମହିଳାମାନେ ସନ୍ତାନସନ୍ତତିମାନଙ୍କୁ ଧରି ନିଜ ସ୍ୱାମୀ ଓ ଆତ୍ମୀୟମାନଙ୍କ ଠାରୁ ଦୂର ଜାଗାରେ ରହୁଥାନ୍ତି, ସେମାନେ ବେଳେବେଳେ କେତେକ ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ତେଣୁ, ସେଠାରେ ସେମାନେ ବିଶ୍ୱାସୀ ବନ୍ଧୁ ଓ ଉତ୍ତମ ସ୍ୱଭାବର ପ୍ରତିବେଶୀଙ୍କ ସହାୟତା ଉପରେ ନିର୍ଭର କରିବା ଉଚିତ । ସନ୍ତାନର ତଥା ନିଜର ସୁବିଧା ଅସୁବିଧା, ଚିନ୍ତା ଭାବନା ଆଦି ବୟସ୍କ ବ୍ୟକ୍ତିଙ୍କ ଆଗରେ ବ୍ୟକ୍ତ କଲେ ମନ ହାଲୁକା ହୋଇଯାଏ ଓ ସମସ୍ୟା ସମାଧାନ ପାଇଁ ସହାୟତା ମିଳିଯାଏ । ସ୍ୱାମୀ ପାଖରେ ନଥିବା ବେଳେ ସନ୍ତାନ ଅସୁସ୍ଥ ହୋଇପଡ଼ିଲେ କି ଏକୁଟିଆ ରହି ଆପଣଙ୍କ ମନ ଖରାପ ଲାଗିଲେ, ଆପଣ ତ ଅନ୍ୟମାନଙ୍କ ସାହାଯ୍ୟ ଲୋଡ଼ିବାକୁ ବାଧ । ପଡ଼ୋଶୀ ସମ୍ପର୍କ ଯେ ସୁରକ୍ଷା କବଚ ଭଳି କାର୍ଯ୍ୟ କରିଥାଏ, ତାହା ଆମେ ହୃଦୟଙ୍ଗମ କରିବା ଆବଶ୍ୟକ ।

ସମୟ ଥିଲେ ଆପଣ ସମାଜସେବା କାର୍ଯ୍ୟରେ ନିଜକୁ ନିୟୋଜିତ ରଖିପାରନ୍ତି । ସମାଜସେବା କାର୍ଯ୍ୟ କଲେ ନିଜକୁ ଭଲ ଲାଗେ ଓ ଅଯାଚିତ ଭାବରେ ଅନ୍ୟମାନଙ୍କର ସାହାଯ୍ୟ ମଧ୍ୟ ମିଳିଯାଏ । ବିଶେଷ କରି ପିଲାମାନେ ବଡ଼ ହୋଇଗଲେ ମାଆମାନେ ବିଭିନ୍ନ ପ୍ରକାର ସମାଜସେବା କାର୍ଯ୍ୟରେ ବ୍ରତୀ ରହିପାରନ୍ତି । କେହି କେହି ପାର୍ଟ୍‌-ଟାଇମ୍ ନିଯୁକ୍ତି ମଧ୍ୟ ଗ୍ରହଣ କରିପାରନ୍ତି ।



# ଗୋଟିଏ ପିଲାଥିବା ମା'ଙ୍କ ପାଇଁ

"ସନ୍ତାନକୁ ମଧ୍ୟ ମର୍ଯ୍ୟାଦା ଦିଅ । ଅତିମାତ୍ରାରେ ପିତାମାତା ବୋଲେଇ ହୁଅନା । ତା'ର ନିର୍ଜନତା ଭିତରକୁ ଅନୁପ୍ରବେଶ କରନା ।"

–ଏମର୍‌ସନ୍

ପ୍ର : ଶିଶୁ ସନ୍ତାନର ଯତ୍ନ ନେବା ପାଇଁ କ'ଣ ମୋତେ ସବୁବେଳେ ଘରେ ବାନ୍ଧି ହୋଇ ରହିବାକୁ ପଡ଼ିବ ?

ଉ : ଏହା ଅବଶ୍ୟ ସତ ଯେ ସନ୍ତାନର ବୟସ ୩ ବର୍ଷରୁ କମ୍ ହୋଇଥିଲେ ତା' ପ୍ରତି ଅଧିକ ଧ୍ୟାନ ଲୋଡ଼ା । ସେ ନିଶ୍ଚିତ ହେବା ଦରକାର ଯେ ତା'ର ମା' ଘରେ ଅଛନ୍ତି ଓ ତା' ପାଇଁ ସବୁବେଳେ ପାଖେ ପାଖେ ରହିଛନ୍ତି । ଘରେ ଆପଣଙ୍କର ଉପସ୍ଥିତିକୁ ସମୟର ଅପଚୟ ବୋଲି ଭାବିବେନି । କାରଣ, ପୁଅ କି ଝିଅସହ ଘନିଷ୍ଠ ବନ୍ଧନ ଗଠନ କରିବା ପାଇଁ ଏହା ଏକ ସୁବର୍ଣ୍ଣ ସୁଯୋଗ । ଆପଣ ଯଦି ଏହି ସୁଯୋଗର ସଦ୍‌ବ୍ୟବହାର କରିବେନି ଓ ଭବିଷ୍ୟତର ଦୃଢ଼ ସମ୍ପର୍କ ସ୍ଥାପନ ପାଇଁ ଏବଠାରୁ ମୂଳଦୁଆ ପକେଇବେନି, ସେ କ୍ଷେତ୍ରରେ ହିଁ ଏହାକୁ ସମୟର ଅପଚୟ ବୋଲି ଧରାଯିବ । ଏହା ବୋଲି ଦିନର ୨୪ ଘଣ୍ଟାଯାକ ସନ୍ତାନ ଉପରେ ଏକାଗ୍ର ରହିବାର କୌଣସି ଆବଶ୍ୟକତା ନାହିଁ । ହଁ, ଏହା ସତ ଯେ ପିଲାମାନେ ଖେଳିବା ନିମନ୍ତେ ଅନ୍ୟମାନଙ୍କର ସାନ୍ନିଧ୍ୟ ଚାହିଁଥାନ୍ତି । ତାଙ୍କୁ ଖେଳ ଶିଖେଇ ଦେବା ନିମନ୍ତେ ଅନ୍ୟ ଲୋକଙ୍କର ଦରକାର ପଡ଼େ । କିନ୍ତୁ, ଏହି କାମ ଆପଣ ହିଁ କେବଳ ତୁଲେଇବେ, ଏଭଳି ଇଚ୍ଛା କରିନଥାନ୍ତି ସେମାନେ । ଏପରିକି ନିଜେ ନିଜେ ଖେଳି ଶିଖିବାରୁ ସେମାନେ ବେଶ୍ ଲାଭବାନ୍ ହୋଇଥା'ନ୍ତି ।

ଏବେ ସହରାଞ୍ଚଳରେ ଶିଶୁମାନଙ୍କୁ ଦିନବେଳା ଜଗାରଖା କରିବାର ନର୍ସରୀମାନ ସ୍ଥାପିତ ହେଲାଣି । ଏହି ନର୍ସରୀଗୁଡ଼ିକୁ କୁହାଯାଉଛି 'କ୍ରେସ୍' । ଶ୍ରମଜୀବୀ ମହିଳାମାନଙ୍କ ଛୋଟ ଶିଶୁକୁ ଜଗାରଖା କରିବା ନିମନ୍ତେ ପରିବାରରେ କୌଣସି ବୟସ୍କ ବ୍ୟକ୍ତି ନଥିଲେ ମା' ଶିଶୁକୁ 'କ୍ରେସ୍'ରେ ଛାଡ଼ି କର୍ମସ୍ଥଳୀକୁ ଯାଉଛନ୍ତି ଓ ସେଠାରୁ ଫେରି ଶିଶୁକୁ ଧରି

ଘର ଫେରୁଛନ୍ତି । 'କ୍ରେସ୍'ରେ ରହୁଥିବା ଶିଶୁ ପ୍ରଥମେ ପ୍ରଥମେ ବେଶ୍ ପ୍ରତିକ୍ରିୟାଶୀଳ ହୋଇପଡ଼େ । ଚିଡ଼ଚିଡ଼ା ରହେ । କନ୍ଦାକଟା କରେ । ଭଲ ଭାବରେ ଖିଆପିଆ କରେନାହିଁ । ମା' ଘରକୁ ଫେରିବା ମାତ୍ରେ ମା'କୁ ଜାବୁଡ଼ି ଧରେ । ଜମା ପାଖଛଡ଼ା କରେନି । କାଳେ ମା' ପୁଣି ବାହାରକୁ ଚାଲିଯିବେ, ଏଇ ଡରରେ ମା'କୁ ଏକୁଟିଆ ଯିବାକୁ ଦିଏନି । ମା' ପାଖରେ ନଥିଲେ ଶିଶୁ ମାନସିକ ସ୍ତରରେ ଖୁବ୍ ଆଘାତ ପାଇଥାଏ । ମା' କାଳେ ଆଉ ଫେରିବେନି – ଏହି ଡର ତାକୁ କବଳିତ କରି ରଖେ । ତେଣୁ ସନ୍ତାନକୁ 'କ୍ରେସ୍'ରେ ଛାଡ଼ିବା ପୂର୍ବରୁ ଭାବିଚିନ୍ତି ଛାଡ଼ିବେ । ପିଲାର ବୟସ ୩ ବର୍ଷରୁ କମ୍ ହୋଇଥିଲେ, ଏଥିପ୍ରତି ଅଧିକ ଗୁରୁତର ସହ ବିଚାର କରିବେ । ହୁଏତ ଘଣ୍ଟାଏ ଦୁଇଘଣ୍ଟା ପାଇଁ ଆପଣଙ୍କର ଅନୁପସ୍ଥିତି ଚଳିଯିବ । କିଛି ଘଣ୍ଟା ପାଇଁ କେବଳ ଖେଳିବା ପାଇଁ ଉଦ୍ଦିଷ୍ଟ ସ୍କୁଲ୍ ବା ପ୍ଲେ' ସ୍କୁଲ୍‌ରେ ପିଲାକୁ ଛାଡ଼ିପାରନ୍ତି.। ହେଲେ, ଶିଶୁପାଇଁ ମା'ର ବିକଳ୍ପ ନାହିଁ । ବିଶେଷ କରି ତାକୁ ପାଞ୍ଚ ଛଅ ବର୍ଷ ହେବା ପର୍ଯ୍ୟନ୍ତ ସେ ମା'-ଛଡ଼ା ହେବାକୁ ପସନ୍ଦ କରିନଥାଏ ।

ସେ ଯାହାହେଉ, ଶୈଶବରେ ମା' ଓ ଶିଶୁ ଭିତରେ ସମ୍ପର୍କର ସନ୍ତୁଳନ ରକ୍ଷା ଜରୁରୀ । ଜଣେ ଜଣେ ପିଲା ମା'ଙ୍କର ସାମୟିକ ଅନୁପସ୍ଥିତି ସତ୍ତ୍ୱେ ଉତ୍ତମ ଭାବରେ ବିକାଶ ଲାଭ କରିଥାନ୍ତି । କାରଣ, ଏପରି କେତେକ ମା' ଅଛନ୍ତି, ଯେଉଁମାନେ ସନ୍ତାନକୁ ଖୁସୀ କରାଇବା ପାଇଁ ସବୁବେଳେ ତତ୍ପର । ସନ୍ତାନର ଇଚ୍ଛା ପୂରଣ କରିବା ନିମନ୍ତେ ତିଆର ହୋଇ ରହିଥାନ୍ତି, ସେମାନେ ଛାଇ ଭଳି ଲାଗି ରହିଥାନ୍ତି ପିଲା ପଛରେ । ସନ୍ତାନର ସବୁ ଇଚ୍ଛା ପୂରଣ କରିବା ପାଇଁ ପ୍ରୟାସୀ ହେବା ସନ୍ତାନର ପରବର୍ତ୍ତୀ ଜୀବନ ନିମନ୍ତେ ଆଦୌ ମଙ୍ଗଳକର ନୁହେଁ । ଏପରି ଢଙ୍ଗରେ ପ୍ରତିପାଳିତ ପିଲା ପ୍ରାୟତଃ ସ୍ୱାର୍ଥପର ଓ ଏକଜିଦିଆ ହୋଇଥାଏ । ନିଜର ଦାବି ପୂରଣ ପାଇଁ ଅଡ଼ିବସେ । ବାପମା'ଙ୍କ ପରାମର୍ଶ ପ୍ରତି ଜମା ଗୁରୁତ୍ୱ ଦିଏନି । କିନ୍ତୁ, ସେହି ପିଲାକୁ ମା' ନିଜ ଶାଶୁଶ୍ୱଶୁରଙ୍କ ହେପାଜତରେ କିଛି ଘଣ୍ଟା ପାଇଁ ଛାଡ଼ି ଦେଇ ବାହାରକୁ ଚାଲିଗଲେ, ମା'ର ଅନୁପସ୍ଥିତିକୁ ପିଲାଟି ବେଶ୍ ଉପଭୋଗ କରେ ।'ମା'ର କଡ଼ା ନଜରରୁ ମୁକ୍ତି ମିଳିଗଲେ ତା'ର୍ ବିକାଶ ପାଇଁ ଅନୁକୂଳ ପରିବେଶ ମିଳିଯାଏ ।

**ପ୍ର : ସନ୍ତାନ ପ୍ରତି ଯଥେଷ୍ଟ ଧ୍ୟାନ ଦିଆଯାଉନାହିଁ କି ଯଥେଷ୍ଟ ଅଧିକ ଧ୍ୟାନ ଦିଆଯାଉଛି – ଏହାର ପାର୍ଥକ୍ୟ ଜାଣିବା ଅବା କିପରି ?**

ଉ : ସନ୍ତାନକୁ ଆଦୌ ଅବହେଳା ନକରିବା ହିଁ ପ୍ରତ୍ୟେକ ମା'ର ଧ୍ୟେୟ ହେବା ଉଚିତ । ସନ୍ତାନର ଯତ୍ନ ନେବା ଓ ତାକୁ ଲାଳନପାଳନ କରି ଭଲ ମଣିଷ କରିବା ତ

ମା'ର କର୍ତ୍ତବ୍ୟ । କିନ୍ତୁ, ଯତ୍ନନେବା, ଲାଳନପାଳନ କରିବା ଓ ଅବହେଳା ନକରିବା ନାଆଁରେ ପିଲାର ସମସ୍ତ ଅଳି ଅର୍ଦଳି ପୂରଣ କରିବାରେ ଚେଷ୍ଟିତ ହେବା ଆଦୌ ସ୍ପୃହଣୀୟ ନୁହେଁ । ସନ୍ତାନର ସ୍ୱାର୍ଥ ପାଇଁ ନିଜକୁ ଅସ୍ୱାଭାବିକ ଭାବରେ ଅଭିନିବିଷ୍ଟ କରିବା ହିଁ ଖରାପ । ସନ୍ତାନକୁ ସବୁବେଳେ ସନ୍ତୁଷ୍ଟ ରଖିବା ପାଇଁ ତତ୍ପର ରହିବା ଓ କସ୍ମିନ୍‌କାଳେ ତାକୁ ଅସନ୍ତୁଷ୍ଟ ନକରିବାର ପ୍ରଚେଷ୍ଟା ଆଦୌ ହିତକର ହୁଏନାହିଁ ।

ମନେ ରଖିଥିବେ ଯେ ସନ୍ତାନର ମଙ୍ଗଳ ପାଇଁ ଆପଣ ଯୋଜନା କରିବେ ସତ, ତାହା ସାଙ୍ଗକୁ ନିଜର ଭଲମନ୍ଦ ଓ ବିକାଶ ପାଇଁ ମଧ୍ୟ କିଛି ସମୟ ବଳେଇବାର ଯୋଜନା କରିବେ । ପରିବାରର ଅନ୍ୟ ସଦସ୍ୟମାନଙ୍କ ଭଲମନ୍ଦ ବୁଝିବାର ଦାୟିତ୍ୱ ନେବେ । ନିଜର ଆବଶ୍ୟକତା ପ୍ରତି ଧ୍ୟାନ ଦେଲେ ଓ ପରିବାରର ଅନ୍ୟମାନଙ୍କ ପ୍ରତି କର୍ତ୍ତବ୍ୟ କଲେ ଓ ନିଜେ ଖୁସି ରହିଲେ ସନ୍ତାନ ପ୍ରତି ସମୁଚିତ ଧ୍ୟାନ ଦେବା ସୁଗମ ହୋଇଯାଏ ।

**ପ୍ର : ଯେଉଁ ପିତାମାତାଙ୍କର ଗୋଟିଏ ମାତ୍ର ସନ୍ତାନ, ସେହି ସନ୍ତାନଟି ପ୍ରତି କ'ଣ କିଛି ସ୍ୱତନ୍ତ୍ର ଯତ୍ନର ଆବଶ୍ୟକତା ରହିଛି ?**

**ଉ:** ଏ' ପ୍ରକାରର ଭାବନା ମନକୁ ଆସିବାରେ ଅସ୍ୱାଭାବିକତା କିଛି ନାହିଁ । ଗୋଟିଏ ମାତ୍ର ସନ୍ତାନ ଥିବା କେତେକ ପିତାମାତା ପ୍ରଶ୍ନ କରନ୍ତି ଯେ ନିଜର କୌଣସି ଭାଇଭଉଣୀ ନଥିଲେ ଭାଇଭଉଣୀଙ୍କ ଅଭାବ ପୂରଣ କରିବା ପାଇଁ ପଡ଼ାପଡ଼ୋଶୀଙ୍କ ପିଲାଙ୍କୁ ପିତାମାତାମାନେ ନିମନ୍ତ୍ରଣ କରି ଆଣିବା ଉଚିତ କି ? ସନ୍ତାନଟି ପ୍ରତି ସପ୍ତାହରେ ଦୁଇ ତିନିଥର ଅନ୍ୟ ପିଲାଙ୍କ ଗହଣରେ କଟାଇଲେ କ'ଣ ଉପକାର ମିଳେ ? ହଁ, ଏହାଦ୍ୱାରା ଅଶେଷ ଉପକାର ମିଳିଥାଏ । ବିଶେଷ କରି ଦୁଇ ତିନିବର୍ଷ ବୟସର ପିଲା ଅନ୍ୟ ପୁଅଝିଅଙ୍କ ସଂସ୍ପର୍ଶରେ ଆସିଲେ ବାହାର ଦୁନିଆ ସହ ତା'ର ପରିଚୟ ବୃଦ୍ଧିପାଏ । ଏବେ ତ ସହରାଞ୍ଚଳରେ ପିଲାମାନେ ତିନି ବର୍ଷ ବୟସ ହେବାମାତ୍ରେ ଖେଳ ସ୍କୁଲ୍ ବା ପ୍ଲେ' ସ୍କୁଲରେ ଭର୍ତ୍ତି ହେଉଛନ୍ତି । ସେଠାରେ ସେମାନେ ଅନ୍ୟ ପିଲାମାନଙ୍କ ସହ ମିଶିବାର ସୁଯୋଗ ପାଆନ୍ତି । ଏପରିକି ପାର୍କ୍‌ରେ ଅନ୍ୟ ପରିବାରର ସଂସ୍ପର୍ଶରେ ଆସନ୍ତି । ଏହି ଅବସରରେ ସେମାନେ ଦେବା, ନେବା ଓ ନିଜ ଜିନିଷରେ ଅନ୍ୟମାନଙ୍କୁ ଭାଗୀଦାର କରିବାର ଗୁଣ ଶିକ୍ଷା କରିଥାନ୍ତି । ଅନ୍ୟ ପିଲାମାନଙ୍କ ସହ ଖେଳିଲେ କି ମିଶିଲେ ଶିଶୁର ସାମାଜିକ ସମ୍ପର୍କ ପ୍ରସାର ଲାଭକରେ । ନିଜର ଭାଇଭଉଣୀ ନଥିଲେ ବି ପରିବାରକୁ ନିମନ୍ତ୍ରିତ ହୋଇ ଆସିଥିବା ପିଲା କି ପଡ଼ାପଡ଼ୋଶୀଙ୍କ ପିଲାଙ୍କ ସାନ୍ନିଧ ଶିଶୁ ଉପରେ ଅନୁକୂଳ ପ୍ରଭାବ

ପକାଇଥାଏ । ସନ୍ତାନ ପାଇଁ ଖେଳସାଥୀ ମିଳିଯିବା ମା' ପାଇଁ ବଡ଼ ଆଶ୍ୱାସନାର କଥା । କାରଣ ସନ୍ତାନକୁ ଖେଳସାଥୀ ମିଳିଗଲେ ମା' ଉପରୁ ଚାପ ଲାଘବ ହୋଇଯାଏ । ଖେଳସାଥୀ ଥିବା ପିଲା ନିଜକୁ ବେଶ୍ ସୁରକ୍ଷିତ ମନେ କରୁଥିବାରୁ ମା' ଉପରେ ତା'ର ନିର୍ଭରଶୀଳତା କମିଯାଏ ।

ଏକମାତ୍ର ସନ୍ତାନ ଥିଲେ ଓ ତା'ର ବୟସ ପାଞ୍ଚରୁ ଆଠବର୍ଷ ହୋଇଥିଲେ ପିତାମାତା ତା' ପାଇଁ ସ୍ୱତନ୍ତ୍ର ଭାବରେ ସମୟ ଦେବା ଅତି ଗୁରୁତ୍ୱପୂର୍ଣ୍ଣ । ସନ୍ତାନକୁ ଚାରିବର୍ଷ ବୟସ ହୋଇଥିବା ବେଳେ ପିତାମାତା ତାକୁ ଗପ କି ଗୀତ ପଢ଼ି ଶୁଣାଇଥାଆନ୍ତି ଓ ତାକୁ ସାତ ଆଠବର୍ଷ ବୟସ ହୋଇ ସେ ନିଜେ ପଢ଼ାପଢ଼ି କରିପାରିଲେ ତାକୁ ପଢ଼ି ଶୁଣେଇବା ପାଇଁ କେତେକ ପିତାମାତା ଆଉ ଆଗ୍ରହୀ ହୁଅନ୍ତିନି । କିନ୍ତୁ, ପିତାମାତାମାନେ ଏପରି କରିବା ଠିକ୍ ନୁହେଁ କି ସନ୍ତାନକୁ ପଢ଼ି ଶୁଣେଇବାର ଅଭ୍ୟାସରୁ ବିରତ ରହିବା ଉଚିତ ନୁହେଁ । ଏହି ଅଭ୍ୟାସ ଅବ୍ୟାହତ ରଖିବା ଅତି ଗୁରୁତ୍ୱପୂର୍ଣ୍ଣ । ସନ୍ତାନକୁ ପଢ଼ି ଶୁଣେଇବାର ସମୟରେ ପିତାମାତା ଓ ସନ୍ତାନ ପରସ୍ପରର ଦୁନିଆ ଭିତରକୁ ପ୍ରବେଶ କରିବାର ସୁଯୋଗ ପାଇଥାନ୍ତି । ସନ୍ତାନର ଭାବନାକୁ ଜାଣିବାର ଏହା ଏକ ମୂଲ୍ୟବାନ ସୁଯୋଗ । କାରଣ, ପିତାମାତା ଓ ସନ୍ତାନ ପରସ୍ପରର ଅଧିକ ନିକଟବର୍ତ୍ତୀ ହେବାରୁ ସନ୍ତାନଟି ନିଜର ମନକଥା ପ୍ରକାଶ କରିବାର ସୁବିଧା ପାଇଯାଏ । ସନ୍ତାନକୁ ଭଲମଣିଷ କରି ଗଢ଼ିବାରେ ପିତାମାତାଙ୍କର ସୁପରାମର୍ଶ ଯେପରି ଅପରିହାର୍ଯ୍ୟ, ସନ୍ତାନର ମନକଥା ଓ ମତାମତ ଶୁଣି ତଦନୁଯାୟୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ମଧ୍ୟ ସେହିପରି ଗୁରୁତ୍ୱପୂର୍ଣ୍ଣ ।

ଦମ୍ପତିଙ୍କର ଗୋଟିଏ ମାତ୍ର ସନ୍ତାନ ଥିଲେ ସେ ହିଁ ପାଲଟିଯାଏ ପରିବାରର କେନ୍ଦ୍ରବିନ୍ଦୁ । ପିତାମାତା ଓ ଅଜାଆଈଙ୍କ ପାଇଁ ସେ ହୋଇଉଠେ ଏକୋଇର ବଳା ବିଶିକେଶନ । ତା' ଉପରେ ସମସ୍ତେ ଧ୍ୟାନ ଦେଉଥିବାରୁ ସେ ଅନ୍ୟମାନଙ୍କ ସହ ମିଳିମିଶି ଚଳିବା କି ଅନ୍ୟମାନଙ୍କ ସାଙ୍ଗରେ ଖାପଖୁଆଇ ଚଳିବାର କଳା ଶିଖିପାରେନି । ଏ' କ୍ଷେତ୍ରରେ ବାପମା'ଙ୍କର ଦାୟିତ୍ୱ ବଢ଼ିଯାଏ । ସେମାନେ ତାକୁ ମିଳିମିଶି ଚଳିବାର କଳା ଶିଖେଇବା ଦରକାର । ଅନ୍ୟମାନଙ୍କ ଦୁଃଖଦୁର୍ଦ୍ଦଶା ପ୍ରତି ଅନୁକମ୍ପାଶୀଳ ହେବା ସମ୍ପର୍କରେ ଅବଗତ କରାଇବା ଦରକାର । ସନ୍ତାନଟି ଅନ୍ୟ ପିଲାଙ୍କ ସହ ଯେତେ ବେଶୀ ମିଶିବ ଓ ଭାବର ଆଦାନପ୍ରଦାନ କରିପାରିବ, ତାହାଠାରେ ସେତେ ବେଶୀ ସାମାଜିକତାର ବିକାଶ ଘଟିପାରିବ ।

ପରିବାରକୁ ଦ୍ୱିତୀୟ ସନ୍ତାନ ଆସିଲେ କେତେକ କ୍ଷେତ୍ରରେ ପ୍ରଥମ ସନ୍ତାନଟି ତା' ପ୍ରତି ଈର୍ଷାଳୁ ହୋଇପଡୁଥିବାର ପରିଲକ୍ଷିତ ହୋଇଥାଏ । ଏହା ଯେ ସମସ୍ତଙ୍କ କ୍ଷେତ୍ରରେ ଘଟିବ, ଏଭଳି ଧରିନେବା ଠିକ୍ ନୁହେଁ । ବରଂ, ବହୁ କ୍ଷେତ୍ରରେ ପ୍ରଥମ ସନ୍ତାନଟି ନିଜର ନବାଗତ ଭାଇ/ଭଉଣୀର ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ବେଶୀ ଧ୍ୟାନ ଦେଉଥିବାର ଦେଖାଯାଏ । ସେ କାନ୍ଦିଲେ ତା' ପାଖରେ ଯାଇ ପହଞ୍ଚିଯାଏ । ସେ ଖାଉଥିବା ବେଳେ ତାକୁ ଏକାଗ୍ରତାର ସହ ଲକ୍ଷ୍ୟ କରେ । ମା' ଚାହିଁଲେ ତାକୁ ଗିନା ଚାମଚ, ତଉଲିଆ ଆଦି ବଢ଼େଇଦେଇ ମା'କୁ ସାହାଯ୍ୟ ଯୋଗାଇଦିଏ । ନିଜକୁ ସେ ମନେକରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସେ ମଧ୍ୟ ଭାବିନିଏ ଯେ କୁନି ଭାଇ/ଭଉଣୀଟି ହେଉଚି ତା'ର ଭାଇ/ଭଉଣୀ । ତେଣୁ, ଭାଇ/ଭଉଣୀଟି ଉପରେ ତା'ର ମଧ୍ୟ ସମ୍ପୂର୍ଣ୍ଣ ଅଧିକାର ରହିଛି । ପାରସ୍ପରିକ ସମ୍ପର୍କକୁ ଘନିଷ୍ଠ କରିବାରେ ଏହା ଯଥେଷ୍ଟ ସହାୟକ ହୋଇଥାଏ ।



# ସନ୍ତାନ ପ୍ରତି ବିଶ୍ୱସ୍ତତା

**"ସନ୍ତାନମାନେ ନିଜକୁ ବିଶ୍ୱାସ କରି ଶିଖନ୍ତୁ ଓ ସାହସୀ ହୁଅନ୍ତୁ ବୋଲି ଯଦି ଚାହୁଁଛ, ତେବେ ତୁମେ ସେମାନଙ୍କୁ ବିଶ୍ୱାସ କରୁଛ ବୋଲି ଆଗେ ପ୍ରମାଣ ଦେଖାଅ ।"**

**–ବିଭରଲି ନିଓ୍ୱେର୍ ଫିଲ୍‌ଡମ୍ୟାନ୍**

**ପ୍ର : ନବଜାତ ସନ୍ତାନ ପ୍ରତି ସମ୍ପର୍କ ଯୋଡ଼ି ହେବ କିପରି ?**

ଉ : ଶିଶୁମାନଙ୍କ ସହ ସମ୍ପର୍କ ଯୋଡ଼ିବା କିଛି ସହଜ ବ୍ୟାପାର ନୁହେଁ । ଏହା ଶୁଣିବାକୁ ସହଜ, ହେଲେ କରିବାକୁ କଷ୍ଟ । ବିଶେଷ କରି ବାପମା' ଓ ପରିବାରର ଅନ୍ୟମାନେ ଏଥିପାଇଁ ସମୟ ବ୍ୟୟ କରିବା ନିମନ୍ତେ ପ୍ରସ୍ତୁତ ନହେଲେ ସମ୍ପର୍କ ସ୍ଥାପନ କରିବାରେ ସମସ୍ୟା ଉପୁଜେ । କିଛି ଟିକିଏ ନିକିଏ ସମୟ ନୁହେଁ, ବେଶ୍ କିଛି ସମୟ ଦେବାକୁ ପଡ଼ିବ ଏଥିପାଇଁ । ପିଲାଟିଏ ଭୂମିଷ୍ଠ ହେଲାପରେ ତା' ପାଇଁ ପରିବାରର ସମସ୍ତେ ଅଜଣା, ସମସ୍ତେ ଅଚିହ୍ନା । ତେଣୁ କାହାକୁ ସେ ଅବା ନିଜର ଭାବି ତା' ଉପରେ ସମ୍ପୂର୍ଣ୍ଣ ବିଶ୍ୱାସ ସ୍ଥାପନ କରିବ ? ଏହି ବିଶ୍ୱାସ ହେଉଛି ସବୁଠାରୁ ବଳି ଗୁରୁତ୍ୱପୂର୍ଣ୍ଣ । ସନ୍ତାନଟି ଜନ୍ମ ନେବାର ପ୍ରଥମ କେଇମାସ ଭିତରେ ତା'ର ଦେଖାଶୁଣା କରିବା ପାଇଁ ଦଶ ପନ୍ଦରଜଣ ଲୋକ ନିୟୋଜିତ ରହିଥିଲେ ସେ କାହା ସହ ଲାଖିରହିବ ଓ କାହାକୁ ବିଶ୍ୱାସ କରିବ, ତାହା ସେ ଜାଣିପାରେନି । ତେଣୁ, ତା' ପାଇଁ ସବୁ କିଛି ଗୋଳମାଳିଆ ହୋଇଯାଏ । ଫଳରେ ସେ ବାଉଳା ତଥା ଅସ୍ଥିର ହୋଇପଡ଼ିବା ସ୍ୱାଭାବିକ । ତା'ର ଦେଖାଶୁଣା କରିବାରେ କେବଳ ଜଣେ ଦୁଇଜଣ ନିୟୋଜିତ ରହିଲେ ସମ୍ପର୍କ ଯୋଡ଼ିବା କି ବିଶ୍ୱାସ କରିବାରେ ତା' ପାଇଁ ବିଶେଷ ସମସ୍ୟା ଜାତ ହୁଏନାହିଁ । ଅନେକ ପରିବାରରେ ପିଲାକୁ ଦୁଇ ତିନିମାସ ହୋଇଗଲେ ବାପମା' ତାକୁ ଘରର ଚାକର କିମ୍ୱା ଚାକରାଣୀଙ୍କ ଦାୟିତ୍ୱରେ ଛାଡ଼ିଦେଇ ନିଜ ନିଜର କର୍ମକ୍ଷେତ୍ରକୁ ବାହାରିଯାଆନ୍ତି । କିନ୍ତୁ ଏହି ସମୟଟି

ସନ୍ତାନର ସାମାଜିକ, ମାନସିକ ଓ ଆବେଗିକ ବିକାଶ ପାଇଁ ଅତି ମହାର୍ଘ । ଏହି ସମୟରେ ସେ ନିଜ ବାପମା'ଙ୍କର ଘନିଷ୍ଠ ସାନ୍ନିଧ୍ୟ ଆଶା କରିଥାଏ । ହେଲେ, ଏହି ସମୟକୁ ଉପଯୋଗ କରିବାରେ ହେଳା କରିଦେଲେ, ପରେ ଯେତେ ଅଧିକ ସମୟ ଦେଲେ ମଧ୍ୟ ଏହି କ୍ଷତି ଭରଣା ହୋଇପାରେନି । 'ଏ ମୋ ମାଆ, ଏ ମୋ ବାପା' – ତାକୁ ମୂଳରୁ ଏ' ପ୍ରକାରର ଅନୁକୂଳ ପରିବେଶ ଯୋଗାଇ ନଦେଲେ ତା'ଠାରେ ମୌଳିକ ସମ୍ପର୍କ ଓ ଆସ୍ଥାର ବିକାଶ ଆଶାନୁରୂପ ହୋଇପାରେ ନାହିଁ ।

ଆସ୍ଥା ସ୍ଥାପନ କରିପାରିଲେ ଶିଶୁ ନିଜକୁ ସୁରକ୍ଷିତ ମନେକରେ । ପିତାମାତାଙ୍କ ଉପରେ ବିଶ୍ୱାସ ଜନ୍ମିଥିଲେ ସେ ଲୋଡ଼ିଲାବେଳେ ପିତାମାତା ତାକୁ ତୁରନ୍ତ ଉପଲବ୍ଧ ହୋଇପାରିବେ ବୋଲି ସେ ନିଃସନ୍ଦେହ ରହେ । ଯେଉଁ ଶିଶୁ ପ୍ରଥମରୁ ନିଜକୁ ସୁରକ୍ଷିତ ମନେକରିଥାଏ, ସେ ପୂର୍ଣ୍ଣ ସାହସ ଓ ଦୃଢ଼ ବିଶ୍ୱାସର ସହ ବିକାଶ ପଥରେ ଓ ଜୀବନ ପଥରେ ଅଗ୍ରସର ହୋଇଥାଏ ।

ଏପରି କେତେକ ପିଲା ଥାଆନ୍ତି, ଯେଉଁମାନେ ଅପରିଚିତ ବ୍ୟକ୍ତିଙ୍କୁ ଦେଖିବା ମାତ୍ରେ ବାପା କିମ୍ବା ମାଆ କିମ୍ବା ଚିହ୍ନା ଆତ୍ମୀୟଙ୍କୁ ଜାବୁଡ଼ି ଧରନ୍ତି । ଅନ୍ୟମାନଙ୍କ ଗହଣରେ ରହିଲେ ସେମାନେ ନିଜକୁ ଅସୁରକ୍ଷିତ ମନେକରୁଥିବାର ଏହା ପ୍ରମାଣ । ବେଳେବେଳେ ପିଲାମାନେ ଖରାପ ସ୍ୱପ୍ନ ବା ଦୁଃସ୍ୱପ୍ନ ଦେଖି ବିଳିବିଳେଇ ଉଠନ୍ତି । ହଠାତ୍ ଚିହାର କରି ବିଛଣାରୁ ଉଠିପଡ଼ନ୍ତି । ସ୍ୱପ୍ନ ଦେଖିଲାବେଳେ ପରିଚିତ ମୁହଁ ଦେଖି ନପାରିବା ଫଳରେ ଏଭଳି କୁପରିଣତି ଉପୁଜିଥାଏ ।

ସନ୍ତାନଟି ଅସ୍ୱାଭାବିକ ବ୍ୟବହାର ଦେଖେଇଲେ କି ତା'ର ସୁନିଦ୍ରା ହେଉନଥିଲେ, ପିତାମାତାମାନେ ଏହାକୁ ହେୟଜ୍ଞାନ କରିବା ଉଚିତ ନୁହେଁ । ମନେ ରଖିବା ଉଚିତ ଯେ ସନ୍ତାନକୁ ମୂଳରୁ ନିଜର ଘନିଷ୍ଠ ସାନ୍ନିଧ୍ୟରେ ରଖିଲେ ଏ' ଧରଣର ପରିଣତି ଜାତ ହୁଏ ନାହିଁ । ସେ ଶୋଇବାକୁ ଯିବା ପୂର୍ବରୁ, ତାକୁ ଶୁଆଇବାର କାମ ପିତାମାତାଙ୍କୁ ତୁଲେଇବାକୁ ପଡ଼ିବ । ତାକୁ ବିଛଣାରେ ଛାଡ଼ିଦେଇ ସେଇ ଏକା କୋଠରିରେ ଟେଲିଭିଜନ୍ ଖୋଲି ବସିଲେ ଚଳିବନି । ତାକୁ ଅତି ଆଦରରେ ଥାପୁଡେଇବା, ତା' ଆଖିରେ ନିଜର ଆଖି ମିଳେଇ ମାନସିକ ସ୍ତରରେ ତା' ସହ ସମ୍ପର୍କ ଯୋଡ଼ିବାର ପ୍ରଭାବ ସୁଦୂରପ୍ରସାରୀ । ବରଂ ସନ୍ତାନଟି ଶୋଇବାକୁ ଯିବାବେଳେ ତାକୁ ସ୍ନେହଶ୍ରଦ୍ଧା ଓ ପ୍ରେମରେ ବୁଡେଇ ରଖିବା ଉଚିତ । ତାକୁ କୋଳରେ ଜାକି ଶୋଇବା, ଗେଲ କରିବା, ତାକୁ ନିଜ ପେଟ ଉପରେ କି ଗୋଡ଼ରେ

ଶୁଆଇ ଗପ କହିବା ଇତ୍ୟାଦି ସନ୍ତାନ ପାଇଁ ଅମୂଲ୍ୟ ଉପହାର । ସନ୍ତାନ ଜନ୍ମ ନେବାର ପ୍ରଥମ କେତୋଟି ସପ୍ତାହ ପରେ ବାପମା'ମାନେ ଏହି ପ୍ରକାରେ ସନ୍ତାନର ଲାଳନପାଳନ କରିବା ଉଚିତ ।

ସନ୍ତାନକୁ ମୌଳିକ ସୁରକ୍ଷା ଯୋଗାଇଦେଲେ ସେ ସମ୍ପୂର୍ଣ୍ଣ ବିଶ୍ୱାସର ସହ ସଂସାରର ମୁକାବିଲା କରିପାରେ । ମଣିଷର ବିକାଶ ପାଇଁ ଏହି ବିଶ୍ୱାସ ମୌଳିକ ବିଭାବ ରୂପେ ବିବେଚିତ ହୋଇଥାଏ । ଯେଉଁ ପିଲା ଆସ୍ଥା ସ୍ଥାପନ କରିବାରେ ଅକ୍ଷମ, ଆବେଗିକ ଦୃଷ୍ଟିକୋଣରୁ ସେ ବଡ଼ ଅପାରଗ ।

ନବଜାତ ସନ୍ତାନର ମନସ୍ତତ୍ତ୍ୱ ବୁଝିବା ଆଦୌ ସହଜ ନୁହେଁ । ଉଦାହରଣ ସ୍ୱରୂପ ଦେଖାଯାଇଥାଏ ଯେ ସନ୍ତାନକୁ ଜନ୍ମ ଦେଇସାରିବା ପରେ ପରେ କେତେକ ମା' ହଠାତ୍ ଅସୁସ୍ଥ ହୋଇପଡ଼ିଥାନ୍ତି । ପିଲାଟି ଖାଇବା ପାଇଁ କାନ୍ଦିଲେ ମା' ତାକୁ ଖୁଆଇବା ପାଇଁ ଉଦ୍ୟମ କରିଥାଏ । କିନ୍ତୁ ନିଜର ଅସୁସ୍ଥତା ତଥା ଆନୁଷଙ୍ଗିକ ଆବେଗିକ ଅସ୍ଥିରତା ଯୋଗୁ ତାକୁ ଖୁଆଇପାରେ ନାହିଁ । ଫଳରେ ଶିଶୁକୁ ଖୁଆଇବାର ଦାୟିତ୍ୱ ପଡ଼େ ଅନ୍ୟମାନଙ୍କ ଉପରେ । ହେଲେ, ମାଆ ନ ଖୁଆଇ ଅନ୍ୟ କେହି ତା'ର ଖାଇବା ଭାର ନେଇଥିବା କଥା ଅନେକ ପିଲା ବାରି ପାରନ୍ତି । ଫଳରେ ସେମାନଙ୍କ ହାତରେ ଖାଇବା ସତ୍ତ୍ୱେ ମା' ନ ଖୁଆଉଥିବାରୁ ସେମାନେ ସନ୍ତୁଷ୍ଟ ହୋଇପାରନ୍ତି ନାହିଁ । ତେଣୁ, ସେମାନେ ଅହରହ କାନ୍ଦିବାରେ ଲାଗିଥା'ନ୍ତି ।

ଏହି ସମସ୍ୟାର ସମାଧାନ ଆଦୌ ସହଜ ନୁହେଁ । ଏ' କ୍ଷେତ୍ରରେ ମାଆ ଓ ବାପା ଉଭୟେ ଏହାକୁ ଏକ ଆହ୍ୱାନ ରୂପେ ଗ୍ରହଣ କରିବା ଉଚିତ । ସନ୍ତାନକୁ ଖୁଆଇବାରେ ମାଆ ତା'ର ଯଥାସମ୍ଭବ ଉଦ୍ୟମ କରିବା ଦରକାର । ବାପା ମଧ୍ୟ ସନ୍ତାନ ପ୍ରତି ଅଧିକ ଧ୍ୟାନ ଦେବା ଆବଶ୍ୟକ । ବାପା କିମ୍ବା ମାଆଙ୍କ ପାଇଁ ଏହା ସମ୍ଭବ ନହୋଇପାରିଲେ, ସେମାନେ ନିଜର କେହି ଘନିଷ୍ଠ ଆତ୍ମୀୟଙ୍କର ସାହାଯ୍ୟ ଲୋଡ଼ିପାରନ୍ତି । ସାହାଯ୍ୟକାରିଣୀଙ୍କର ମଧ୍ୟ ହୃଦ୍‌ବୋଧ ହେବା ଉଚିତ ଯେ ପିଲାଟି ପାଇଁ ଖାଦ୍ୟ ଓ ପାନୀୟ ତ ଆବଶ୍ୟକ, ତାହାଠାରୁ ବେଶୀ ଆବଶ୍ୟକ ସ୍ନେହଶ୍ରଦ୍ଧା ଓ ପ୍ରେମ । ପିଲାଟିକୁ ଆନ୍ତରିକ ସ୍ନେହଶ୍ରଦ୍ଧା ପ୍ରଦର୍ଶନ କଲେ ସେ ଆତ୍ମୀୟଜଣଙ୍କ ଉପରେ କ୍ରମେ ବିଶ୍ୱାସ ସ୍ଥାପନ କରି ତାଙ୍କ ସାଙ୍ଗରେ ସହଯୋଗ କରିଥାଏ । ସ୍ନେହଶ୍ରଦ୍ଧା, ଆସ୍ଥା, ବିଶ୍ୱାସ ଇତ୍ୟାଦି ଭଳି ପୁଞ୍ଜି ଖଟେଇଲେ ସନ୍ତାନର ଭବିଷ୍ୟତଟା ଯେ ସମସ୍ୟାବିହୀନ ହୋଇଥାଏ, ଏହା ନିଃସନ୍ଦେହ ।

ବାପମା' ଓ ଆତ୍ମୀୟମାନଙ୍କଠାରୁ ଆଦର ଯତ୍ନ ପାଇଥିବା ଶିଶୁ ପରବର୍ତ୍ତୀ କାଳରେ ଅସାମାଜିକ ବ୍ୟବହାର ପ୍ରଦର୍ଶନ କରିବାର ସମ୍ଭାବନା ବିରଳ ।

**ପ୍ର : ସନ୍ତାନ ଓ ପିତାମାତାଙ୍କ ମଧ୍ୟରେ ବିଶ୍ୱାସ ସ୍ଥାପନ କରିବା ପାଇଁ ପିତାମାତାମାନେ କେଉଁ ପ୍ରକାରେ ନିଜକୁ ପ୍ରସ୍ତୁତ କରିପାରିବେ ?**

ଉ: ଏଥିପାଇଁ କୌଣସି ଧରାବନ୍ଧା ନିୟମ ନାହିଁ । ଧରାବନ୍ଧା ନିୟମ ନଥିଲେ ମଧ୍ୟ ପ୍ରତ୍ୟେକ ପିତାମାତା ଏପରି କେତେକ କାମ କରିଥାନ୍ତି, ଯାହା ସନ୍ତାନଠାରେ ଦୃଢ଼ବିଶ୍ୱାସ ଜାଗ୍ରତ କରିଥାଏ । ଏଇ ଦେଖନ୍ତୁ ପିଲାଟି ଚାଲି ଶିଖିବା ବେଳର କଥା । ପିଲାଟି ଟଳଟଳ ହୋଇ ଚାଲିଲା ବେଳେ ପ୍ରଥମେ ପାହୁଣ୍ଡେ କି ଦି' ପାହୁଣ୍ଡ ପକେଇଥାଏ । କିନ୍ତୁ, ସେତେବେଳେ ବାପା କି ମାଆ ତାକୁ ଏକୁଟିଆ ଏହି କସରତ କରିବା ପାଇଁ ଛାଡ଼ି ଦେଇନଥାନ୍ତି । ସେମାନଙ୍କ ଭିତରୁ କେହି ସନ୍ତାନଠାରୁ ଦୁଇ ତିନି ଫୁଟ ଦୂରରେ ଠିଆ ହୋଇ କି ବସି ରହି ନିଜର ହାତ ଦୁଇଟିକୁ ସନ୍ତାନଟି ଆଡ଼େ ପ୍ରସାରିତ କରି ରଖିଥାଆନ୍ତି ! ବାପା କିମ୍ବା ମାଆଙ୍କର ପ୍ରସାରିତ ହାତକୁ ଦେଖି ପିଲାଟି ନିଜକୁ ସୁରକ୍ଷିତ ମନେକରେ । 'ପଡ଼ିଗଲେ ସେମାନେ ତାକୁ ରୋକିଦେବେ' – ଏହିଭଳି ଏକ ବିଶ୍ୱାସ ତା' ମନରେ ଜାତ ହେବାରୁ ସେ ଆଗକୁ ଆଗକୁ ପାହୁଣ୍ଡ ପକେଇବା ନିମନ୍ତେ ଉତ୍ସାହିତ ହୋଇଥାଏ । ବାପା ମା' କିନ୍ତୁ ତାକୁ ସୁରକ୍ଷା ଦେବାରେ ନିରାଶ କଲେ ଓ ସେ ପଡ଼ିଗଲେ ତା'ର ବିଶ୍ୱାସ ତୁଟିଯାଏ ।

ଅନ୍ୟ ଏକ ଉଦାହରଣକୁ ବିଚାର କରନ୍ତୁ । ମା' ଯଦି କହେ – "ତୁ ଏବେ ଶୋଇପଡ଼ । ମୁଁ କାଲି ତୋ' ପାଇଁ ଖେଳନାଟିଏ କିଣିଆଣିବି ।" ମା'ଟି ଏହି ପ୍ରତିଶ୍ରୁତି ପାଳନ କରି ଖେଳନାଟିଏ କିଣି ଆଣିଲେ ପିଲାଟିର ବିଶ୍ୱାସ ବଢ଼ିଯାଏ । ସେହିପରି 'ମୁଁ କାଲି ସଞ୍ଜରେ ତୋତେ ଗପଟିଏ କହିଦେବି' ବୋଲି କହି ପ୍ରକୃତରେ ଗପଟିଏ କହିଲେ ସେ ମାଆକୁ ବିଶ୍ୱାସ କରି ଶିଖେ । ଗପଟି ନକହି ଟାଳଟୁଳ କଲେ ତା'ର ବିଶ୍ୱାସ ତୁଟିଯାଏ । ପିଲା ଟିକିଏ ବଡ଼ ହୋଇଗଲେ ସ୍କୁଲ୍‌କୁ ଯାଏ । 'ତୁ ଏବେ ସ୍କୁଲ୍‌କୁ ଯାଆ । ସ୍କୁଲଛୁଟି ହେଲା ବେଳକୁ ମୁଁ ନିଜେ ଯାଇ ତୋତେ ନେଇ ଆସିବି' ବୋଲି ସନ୍ତାନକୁ କଥା ଦେଇଥିଲେ, ତାକୁ ନିଶ୍ଚିତ ଭାବରେ ପାଳନ କରିବା ମାଆର କର୍ତ୍ତବ୍ୟ । ମାଆ କିମ୍ବା ବାପା ନିଜର କଥା ରଖୁଥିବାର ଜାଣିନେଲେ ବାପମା'ଙ୍କ ଉପରେ ସନ୍ତାନର ବିଶ୍ୱାସ ଦୃଢ଼ୀଭୂତ ହୋଇଚାଲେ ।

ତାହାଛଡ଼ା, ପରିବାରରେ ଅଜା ଆଈ, ମାମୁ ମାଇଁ, ଦାଦାଖୁଡ଼ୀ, ଭାଇଭଉଣୀଙ୍କ ମେଳରେ ରହି ସେମାନଙ୍କଠାରୁ ସ୍ନେହଶ୍ରଦ୍ଧା ପାଇଲେ ଓ ସେ ଯେ ସେମାନଙ୍କ ପାଇଁ ବେଶ୍ ଗୁରୁତ୍ୱପୂର୍ଣ୍ଣ – ଏହା ଜାଣିନେଲେ ସେ ସମାଜ ଉପରେ ମଧ୍ୟ ଆସ୍ଥା ସ୍ଥାପନ କରିବାରେ ଉତ୍ସାହିତ ହୋଇଥାଏ ।

ଲକ୍ଷ୍ୟ କରନ୍ତୁ ତ ! ଅଳ୍ପ କେଇ ମାସର ସନ୍ତାନଟିଏ ଭୋକ କଲେ ରାହାଧରି କାନ୍ଦେ । ବାପା ଯେତେ ବୁଝେଇଲେ ତା'ର କାନ୍ଦ ବନ୍ଦ ହୁଏନି । କିନ୍ତୁ ମାଆ ତାକୁ କୋଳେଇ ନେଲେ ସେ ଶାନ୍ତ ପଡ଼ିଯାଏ । କେବଳ ଖାଇବା ଓ ଶୋଇବାରେ ଦିନମାନ କଟେଇ ଦେଉଥିବା ତିନିମାସିଆ ଶିଶୁଟି ତା' ମାଆ ସହ ଏତେ ନିବିଡ଼ ଭାବରେ ପରିଚୟ ଯୋଡ଼ିଦିଏ କିପରି ? ମାଆ କୋଳରେ ଆରାମ ଅନୁଭବ କରେ, ମାଆକୁ ଚାହିଁ ମୁରୁକିହସା ଦିଏ, ଖାଇବା ବେଳେ ମାଆ ଦେହରେ ହାତ ଘଷୁଥାଏ ଓ ମାଆ ସାଙ୍ଗରେ ଏକ ହୋଇଯିବା ଭଳି ବ୍ୟବହାର ଦେଖାଏ । ମାଆ ବି ତା' ଅନ୍ତର ଭିତରେ ଅନୁଭବ କରୁଥାଏ ଶିଶୁର ଅନ୍ତରଙ୍ଗ ଉପସ୍ଥିତି । ମାଆ ଆଉ ସନ୍ତାନ ମଧ୍ୟରେ ଏହି ସମ୍ପର୍କର ସେତୁ ହେଉଛି ଦୃଢ଼ ବିଶ୍ୱାସ । ଏହି ସମ୍ପର୍କ ସ୍ୱର୍ଗୀୟ !



# ସନ୍ତାନ ସହ ସମ୍ପର୍କ ବୃଦ୍ଧି

"ଆମ ସନ୍ତାନମାନେ କେବଳ ଆମ ପାଇଁ ପ୍ରିୟ ନୁହନ୍ତି, ସେମାନେ ହେଉଛନ୍ତି ଆମର ଜାତୀୟ ସମ୍ପଦ । ସେହି ସମ୍ପଦର ରକ୍ଷଣାବେକ୍ଷଣ ଆମର ଦାୟିତ୍ୱ ।"

–ଜବାହରଲାଲ ନେହେରୁ

**ପ୍ର : ପିତାମାତାଙ୍କ ସହ ଶିଶୁ ସନ୍ତାନର ସମ୍ପର୍କ ଓ ପିତାମାତାଙ୍କ ପ୍ରତି ତା'ର ଘନିଷ୍ଠତା ସ୍ଥାପିତ ହୁଏ କିପରି ?**

ଉ : ଜନ୍ମ ହେବାର ମାତ୍ର ତିନି ସପ୍ତାହ ଭିତରେ ସନ୍ତାନଟି ନିଜକୁ ମା'ର ନିକଟତର ବୋଲି ଅନୁଭବ କରିଥାଏ । କିନ୍ତୁ, ବାପାଙ୍କ ସହ ନିକଟତର ଅନୁଭବ କରିବା ନିମନ୍ତେ ତାକୁ ଲାଗିଥାଏ ଛଅରୁ ବାର ସପ୍ତାହ । ହେଲେ, ପ୍ରଶ୍ନ ଉଠେ ଯେ ପିତାଙ୍କ ଅପେକ୍ଷା ମାତାଙ୍କ ସାଙ୍ଗରେ ତା'ର ତୁରନ୍ତ ସମ୍ପର୍କ ସ୍ଥାପିତ ହୋଇପଡ଼ିବାର କାରଣ କଅଣ ? ମାଆ ତା' ପାଖରେ ଅହରହ ରହିଥିବାରୁ କ'ଣ ଏପରି ଘଟିଥାଏ ? ନା, ତାହା ନୁହେଁ । ଦିନମାନ ଭିତରେ ଛଅ କି ଆଠଥର କୋଡ଼ିଏରୁ ତିରିଶ ମିନିଟ୍ ଲେଖାଏଁ ମା' ତାକୁ କୋଳରେ ଧରିଥାଏ ସତ, ହେଲେ ଅବଶିଷ୍ଟ ସମୟତକ ତ ସେ ଶେଯରେ ଶୋଇ ଶୋଇ ବିତେଇଥାଏ । ଏପରିକି ତାକୁ ଧରାଧରି କରିବାରେ ଆୟା କି ଆଈ ଅଂଶଗ୍ରହଣ କରୁଥିଲେ ମଧ୍ୟ ତିନି ସପ୍ତାହ ବୟସରେ ପହଞ୍ଚିଗଲା ପରେ ସେ କେବଳ ମା'କୁ ପସନ୍ଦ କରି ମା'ର ସାନ୍ନିଧ୍ୟ ଲୋଡ଼ିଥାଏ । କାହାକୁ ବିଶ୍ୱାସକୁ ନେବା ଉଚିତ ତଥା କାହା ଉପରେ ଅଧିକ ନିର୍ଭର କରିବା ନିରାପଦ, ତାହା ହୁଏତ ସେ ଅନୁଭବ କରିପାରେ ଓ ଜାଣିପାରେ । ପ୍ରକୃତି ସନ୍ତାନଟିଏ ସୃଷ୍ଟି କଲାବେଳେ ତା'ଠାରେ ଭରି ଦେଇଥାଏ ଯଥେଷ୍ଟ ଅନ୍ତର୍ନିହିତ ଶକ୍ତି । ଏହି ଅନ୍ତର୍ନିହିତ ଶକ୍ତି ବଳରେ ହିଁ ସେ ବଞ୍ଚି ରହିବା, ଆବିଷ୍କାର କରିବା ଓ ସୃଜନଶୀଳ ହେବା ନିମନ୍ତେ ସମର୍ଥ ହୋଇଥାଏ । ଏହି ଅନ୍ତର୍ନିହିତ ଶକ୍ତିର ସାମର୍ଥ୍ୟ ଏତେ ବେଶୀ ଯେ ମଣିଷ ତାହା କଳନା କରିବା ପାଇଁ ଅକ୍ଷମ । ନବଜାତକଟି ଯେତେ ଛୋଟ ହୋଇଥାଉନା କାହିଁକି, ଏପରିକି ମାତ୍ର ଏକ କିଲୋଗ୍ରାମ୍ ଓଜନର ହୋଇଥିଲେ ମଧ୍ୟ ସେ ମା' ସ୍ତନକୁ ଚୁଚୁମି କ୍ଷୀର ଖାଇବା ପାଇଁ ଓ ମା' ସ୍ତନରେ ଆଉଜି ବିଶ୍ରାମ ନେବାପାଇଁ ସମର୍ଥ । ଏପରିକି ନିଜର ସେହି ଅପରିଣତ ବୁଦ୍ଧି ଓ ଇନ୍ଦ୍ରିୟ ଦ୍ୱାରା ସେ ନିଜ ମାଆକୁ ଚିହ୍ନି ପାରିଥାଏ ମଧ୍ୟ ।

ଏ ସମ୍ପର୍କରେ ଆହୁରି ଏକ କୌତୂହଳୋଦ୍ଦୀପକ ଘଟଣା ପରିଲକ୍ଷିତ ହେବା ସମସ୍ତେ ଲକ୍ଷ୍ୟ କରିଥିବେ । ଶିଶୁଟି ସଂସାରକୁ ନୂଆ ହୋଇ ଆସିଥାଏ । ଏହି ନୂତନ ଆଗନ୍ତୁକଟି ପାଇଁ ସଂସାର ନୂଆ, ସଂସାରର ପରିବେଶ ନୂଆ ଓ ପ୍ରତିବେଶୀମାନେ ମଧ୍ୟ ନୂଆ । କିନ୍ତୁ, ଶିଶୁଟିଏ ଜନ୍ମ ନେଇଛି ବୋଲି ଜାଣିନେବା ମାତ୍ରେ ଶିଶୁର ପରିବାରକୁ ପ୍ରତିବେଶୀମାନଙ୍କର ଆଗମନ ଆରମ୍ଭ ହୋଇଯାଏ । କିଏ ତାକୁ କୋଳେଇ ନିଏ ତ ଆଉ କିଏ ତାକୁ ଗେଲ କରିପକାଏ । କିଏ ତା' ସାଙ୍ଗରେ ଖେଳରେ ମାତିଯାଏ ତ ଅନ୍ୟ କିଏ ତା'ପାଇଁ ଉପହାର ଆଣି ପହଞ୍ଚିଯାଏ । ଶିଶୁଟିକୁ କେହି କିଛି ନ ଶିଖେଇଲେ ମଧ୍ୟ ସେ ଅନ୍ୟମାନଙ୍କର ଶୁଭେଚ୍ଛାକୁ ବାରି ଅନୁକୂଳ ପ୍ରତିକ୍ରିୟା ପ୍ରକାଶ କରିପାରେ । ତାକୁ ନଅମାସ ବୟସ ହୋଇଗଲେ, ତାକୁ ହାତ ବଢ଼େଇ 'ଆ' ବୋଲି କହିବା ମାତ୍ରେ ସେ ତୁରନ୍ତ ପ୍ରତିବେଶୀଙ୍କ କୋଳକୁ ଡେଇଁପଡ଼େ । ଅନ୍ୟ ଚିହ୍ନାଲୋକଙ୍କ କୋଳକୁ ଡେଇଁ ପଡ଼ିବା ହେଉଛି ତାଙ୍କ ପ୍ରତି ଶିଶୁଟିର ବିଶ୍ୱାସର ପ୍ରତିଫଳନ । ଏହି ରହସ୍ୟାତ୍ମକ ଆଚରଣର ପଶ୍ଚାତ୍‌ରେ ରହିଛି ଶିଶୁର ବିଶ୍ୱାସ । ଯେଉଁ ପିତାମାତା, ପରିବାରର ସଦସ୍ୟ ଓ ପ୍ରତିବେଶୀ ଶିଶୁ ପ୍ରତି ଅନୁକୂଳ ଓ ସୁଖଦ ଆଚରଣ ପ୍ରଦର୍ଶନ କରିଥାନ୍ତି, ଶିଶୁଟି ସେମାନଙ୍କ ଉପରେ ଆସ୍ଥା ସ୍ଥାପନ କରିବାରେ କୁଣ୍ଠା ପ୍ରକାଶ କରିନଥାଏ ।

ଏହା ଅବଶ୍ୟ ସତ ଯେ ଆମେ କେହି ଏହି ବିଶ୍ୱାସ ବା ଆସ୍ଥା ପ୍ରତି ସଚେତନ ନଥାଉ । ଆମ୍ଭେମାନେ ଶିଶୁର ଉପସ୍ଥିତିକୁ ଉପଭୋଗ କରୁ ଓ ତାହା ପାଇଁ ଯାହା ସର୍ବୋତ୍ତମ, ତାହା କରିଚାଲୁ । କିନ୍ତୁ, ଏହି ପ୍ରକାରରେ ହିଁ ଦୃଢ଼ୀଭୂତ ହୋଇ ଚାଲୁଥାଏ ତା'ର ଆସ୍ଥା, ବିଶ୍ୱାସ ଓ ନିର୍ଭରଶୀଳତା । ତଥାପି, ଶିଶୁଟି ଜନ୍ମ ନେବା ପରେ ପରେ ତାହା ସହ ବନ୍ଧନକୁ ଦୃଢ଼ତର କରିବା ନିମନ୍ତେ ପ୍ରତ୍ୟେକ ପିତାମାତା ପ୍ରୟାସୀ ହେବା ଉଚିତ ।

**ପ୍ର : ମାଆମାନେ କର୍ମଜୀବୀ ହୋଇଥିଲେ କଅଁଳା ପିଲାଟିକୁ ଘରେ ଛାଡ଼ି କାମ କରିବା ନିମନ୍ତେ ବାହାରିଯିବା ତ ଏକ ସମସ୍ୟା । ଏହି ସମସ୍ୟା ସମାଧାନ କରିବାର ବାଟ କଅଣ ?**

ଉ : କେତେକ ସଂସ୍ଥାରେ କର୍ମଜୀବୀ ଗର୍ଭବତୀ ଓ ସ୍ତନ୍ୟଦାତ୍ରୀଙ୍କ ପାଇଁ ତିନିମାସର ମାତୃତ୍ୱ ଅବକାଶ ମଞ୍ଜୁର କରାଯାଇଥାଏ । କିନ୍ତୁ, ଏଥିପାଇଁ ତିନିମାସର ଛୁଟି ଆଦୌ ଯଥେଷ୍ଟ ନୁହେଁ । ପିଲାଟି ପାଖରେ ରହିବାକୁ ଯେତେ ଚାହିଁଲେ ବି ଅନେକ କ୍ଷେତ୍ରରେ କାର୍ଯ୍ୟରେ ଯୋଗଦେବା ନିମନ୍ତେ ମାଆମାନେ ବାଧ୍ୟ ହୋଇଥାନ୍ତି । ହେଲେ, ମାଆର ଅନୁପସ୍ଥିତିରେ ପିଲାଟିର ଦାୟିତ୍ୱ କିଏ ନେବ, ତାହା ସମସ୍ୟା ରୂପେ ଉଭା ହୋଇପଡ଼େ ।

ଯିଏ ଅବା ଦାୟିତ୍ୱ ନେବ, ପିଲା ପାଳିବାର ଅନୁଭୂତି ତା'ର ଅଛି କି ନା, ତାହା ମଧ୍ୟ ଏକ ସମସ୍ୟା । ତା'ର ସେ ଅନୁଭୂତି ନଥିଲେ ତା' ପାଇଁ କିଛି ତାଲିମ୍ ଦରକାର । ଏ' କାମରେ ପିଲାର ଆଈଙ୍କୁ ଦାୟିତ୍ୱ ଦେଇହେବ କି ? ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ଆତ୍ମୀୟ ହିଁ ଶିଶୁର ଯତ୍ନ ନେବା ପାଇଁ ଆୟା ବା ଚାକରାଣୀଙ୍କ ତୁଳନାରେ ଅଧିକ ନିରାପଦ । ତେବେ ସେ ଆତ୍ମୀୟ ହୋଇଥାନ୍ତୁ କି ଆୟା କିମ୍ବା ଚାକରାଣୀ ହୋଇଥାନ୍ତୁ ଶିଶୁକୁ ଖାଲି କାଖେଇ ବୁଲେଇଲେ କିଛି ଫାଇଦା ନାହିଁ । ପିଲାଟି ସହ ଭାବର ଆଦାନପ୍ରଦାନ କରିବା ନିମନ୍ତେ ତାଙ୍କର ବୁଦ୍ଧି ଥିବା ଦରକାର ; ତାଙ୍କଠାରେ କିଛି ସୃଜନଶୀଳତା ମଧ୍ୟ ରହିଥିବା ଆବଶ୍ୟକ । ଶିଶୁଟିର ବିବିଧ ବିକାଶ ପାଇଁ ପାଳନକର୍ତ୍ତାଙ୍କ ବୁଦ୍ଧି, ସୃଜନଶୀଳତା ଓ ଭାବ ଆଦାନପ୍ରଦାନ କରିବାରେ ସାମର୍ଥ୍ୟ ଏବଂ ଆନ୍ତରିକତା ଅଧିକ ଗୁରୁତ୍ୱପୂର୍ଣ୍ଣ ।

ତେବେ, ଅନ୍ୟମାନଙ୍କ ଦାୟିତ୍ୱରେ ପିଲାଙ୍କୁ ଛାଡ଼ିଦେଲେ ପିତାମାତାଙ୍କ ସହ ବନ୍ଧନଗତ ସମ୍ପର୍କରେ କିଛି ଅଭାବ ରହିଯିବା ସ୍ୱାଭାବିକ । ତେଣୁ, ସେଥିପ୍ରତି ପିତାମାତା ସତର୍କ ରହିବା ସର୍ବାଦୌ ଆବଶ୍ୟକ । ପିତା କିମ୍ବା ମାତା ନିଜ କର୍ମକ୍ଷେତ୍ରରୁ ଘରୁ ଫେରି ଆସିବା ପରେ ସନ୍ତାନ ସହ ଅନ୍ତରଙ୍ଗ ସମୟ ବିତେଇବାର ପ୍ରଭାବ ସୁଦୂରପ୍ରସାରୀ । ଘରେ ପହଞ୍ଚିଯାଇ ପିଲାଟି ଉପରେ ଧ୍ୟାନ ନଦେଇ ମାଆ ରୋଷେଇ ଘରେ ବ୍ୟସ୍ତ ରହିଲେ କି ବାପା ଟେଲିଭିଜନ ଦେଖାରେ କି କାଗଜପତ୍ର କାମରେ ମାତିଗଲେ, ଘରେ ସେମାନଙ୍କର ଉପସ୍ଥିତି ସତ୍ତ୍ୱେ ସନ୍ତାନଟିର କୌଣସି ଉପକାର ହୁଏନାହିଁ । ତାହାଛଡ଼ା, ଘର କାମର ଚାପରେ ପିଲାଟି ଉପରେ ରାଗିଉଠିଲେ, ତାହା ଆହୁରି କ୍ଷତି କରିଥାଏ । ପିତାମାତା ଉଭୟେ କର୍ମଜୀବୀ ହୋଇଥିଲେ ଘରେ ସ୍ଥାୟୀ ଭାବରେ ଚାକର କି ଚାକରାଣୀଟିଏ ରଖିବା ଦରକାର । ଏହା ଫଳରେ ଘର କାମରେ ବ୍ୟସ୍ତ ନରହି ସେମାନେ ସନ୍ତାନ ପ୍ରତି ଅଧିକ ଧ୍ୟାନ ଦେବା ସୁଗମ ହୋଇଯାଏ ।

କିନ୍ତୁ, ପ୍ରଶ୍ନ ଉଠେ ଯେ ପିତାମାତା ସନ୍ତାନ ସହ କିପରି ଭାବରେ ଭାବର ଆଦାନ ପ୍ରଦାନ କରିପାରିବେ ? ସବୁଠାରୁ ସରଳ ଉପାୟଟି ହେଲା, ସନ୍ତାନ ସହ ଗପସପ କରିବାରେ ମଜିଯିବା । ଛୋଟ ପିଲାଟି ସହ କଥାବାର୍ତ୍ତା କରିବା ପାଇଁ କୌଣସି ନିର୍ଦ୍ଦିଷ୍ଟ ବିଷୟରେ ପ୍ରସ୍ତୁତିର ଆବଶ୍ୟକତା ନାହିଁ । ସେହି ଘର ଭିତରର ଯେକୌଣସି ବିଷୟ, ବାଡ଼ିବଗିଚାର ଗଛଲତା, ପ୍ରଜାପତି, ପକ୍ଷୀ, ଆକାଶର ଜହ୍ନମାମୁ ଓ ତାରା, ପରିବାରର ଅନ୍ୟ ସଦସ୍ୟ କିମ୍ବା ନିଜେ କରୁଥିବା କାମ ବିଷୟରେ କଥୋପକଥନ କରାଯାଇପାରିବ । ତାକୁ ବି ଛୋଟ ଛୋଟ ଗପ କହିବା ଦରକାର । ନିଜେ ପଢ଼ିଥିବା ଗପ କି ମନଗଢ଼ା ଗପ କହିଲେ ଚଳିବ । ତା' ସହ ଛୋଟକାଟିଆ ଖେଳ ମଧ୍ୟ ଖେଳିହେବ । ଏପରିକି ନିଜେ କରୁଥିବା କାମରେ ତା'ର ସାହାଯ୍ୟ ନେଇ ତା' ସହ ଭାବର ଆଦାନପ୍ରଦାନ କରିହେବ ।

ଗପସପ, ଗପସପ – ଗପଛନ୍ଦ କରିବା ହିଁ ଶିଶୁର ବିକାଶ ଦିଗରେ ଯଥେଷ୍ଟ ଅବଦାନ ଦେଇଥାଏ । ତା' ସହ ମିଶି ଗୀତ ଗାଇବାର ପ୍ରଭାବ ମଧ୍ୟ ସୁଦୂରପ୍ରସାରୀ ।

ପିଲାଟି ଆଉ ଟିକିଏ ବଡ଼ ହୋଇଗଲେ ତାକୁ ଗପ ପଢ଼ି ଶୁଣେଇବା, ଛୋଟ ଛୋଟ ଏକାଙ୍କିକା ପଢ଼ି ଶୁଣେଇବାରେ ମଧ୍ୟ ଫାଇଦା ମିଳେ । ଏହା ଫଳରେ ସେ ଚରିତ୍ରଗୁଡ଼ିକ ସଂଳାପରେ ପ୍ରତିଫଳିତ ହୋଇଥିବା ବିସ୍ମୟ, ଉତ୍ତେଜନା, ଭୟ, ଶଙ୍କା, କୌତୂହଳ ଇତ୍ୟାଦି ବିଭାବ ସହ ପରିଚିତ ହେବାର ସୁଯୋଗ ପାଏ । ଚାରି ପାଞ୍ଚବର୍ଷର ପିଲା ଗପ କି ନାଟିକା ଶୁଣି ପ୍ରଶ୍ନ ପଚାରିବାରେ ଉତ୍ସାହିତ ହୋଇଥାଏ । ଏପରିକି ଗପ କି ନାଟିକାକୁ ଅଧାରଖି, ତା' ପରଦିନ ଆରମ୍ଭ କଲାବେଳେ ପୃଷ୍ଠା ଭୁଲିଗଲେ, ସେ ପ୍ରସଙ୍ଗଟିକୁ ମନେ ପକେଇ ଦେଇପାରେ ମଧ୍ୟ ।

ସନ୍ତାନମାନଙ୍କୁ ଗପ ଶୁଣେଇବାର ପ୍ରଭାବ ସୁଦୂରପ୍ରସାରୀ । କାରଣ, ଏହା ଫଳରେ ସେମାନେ ଜୀବନ ବିଷୟରେ ଶିକ୍ଷାଲାଭ କରିବାର ସୁଯୋଗ ପାଇଥା'ନ୍ତି । ସେମାନଙ୍କ ଅଜାଣତରେ ଏହା ସେମାନଙ୍କ ଭବିଷ୍ୟତ ପାଇଁ ବେଶ୍ ଦରକାରରେ ଆସିଥାଏ । ଗଳ୍ପ ମାଧ୍ୟମରେ ହିଁ ସାରା ଦୁନିଆଟା ଆମ ପରିବାରକୁ ଆସିଯାଇଥାଏ ଓ ପିଲାମାନେ ପରିବାରର ପରିସର ଭିତରେ ଦୁନିଆର ପରିଚୟ ପାଇଯାଆନ୍ତି, କହିବାକୁ ଗଲେ ଗଳ୍ପର ଦୃଶ୍ୟପଟରେ ଯାତ୍ରା କଲାବେଳେ ପିଲାମାନେ ପିତାମାତାଙ୍କ ସାନ୍ନିଧ୍ୟରେ ରହିଥିବାରୁ, ଏହା ସେମାନଙ୍କ ପାଇଁ ଖୁବ୍ ଉପଭୋଗ୍ୟ ହୋଇଥାଏ ।

ଏହା ଯେ ଖୁବ୍ ଗୁରୁତ୍ୱପୂର୍ଣ୍ଣ, ତାହା ପ୍ରତ୍ୟେକ ପିତାମାତା ହୃଦୟଙ୍ଗମ କରିବା ଦରକାର । ଜୀବନର ସମ୍ମୁଖୀନ ହୋଇ ତା'ର ମୁକାବିଲା କରିବା ନିମନ୍ତେ ଶିଶୁଟି ଶିକ୍ଷାଲାଭ କରିବ କିପରି ? ପରିବାରରୁ ଓ ଗଳ୍ପରୁ ଶିକ୍ଷାଲାଭ କରିନପାରିଲେ, କେଉଁଠୁ ସେ ଅର୍ଜନ କରିପାରିବ ଏ ସମ୍ପର୍କିତ ଅନୁଭୂତି ? ତେଣୁ, ତା'ର ଭବିଷ୍ୟତ ଜୀବନ ଯାତ୍ରା ପାଇଁ ଏହା ପାଥେୟ ରୂପେ କାମ କରିଥାଏ ଓ ପରବର୍ତ୍ତୀ କାଳରେ ପ୍ରତ୍ୟେକ ପରିସ୍ଥିତି ଓ ପ୍ରତ୍ୟେକ ବ୍ୟକ୍ତିଙ୍କ ସହ ତାଳ ମିଳେଇ ଚଳିବାରେ ତା'ର କୌଣସି ଅସୁବିଧା ହୁଏନାହିଁ । ପିତାମାତା ସନ୍ତାନମାନଙ୍କୁ କହିଥିବା ଗଳ୍ପ ବେଶ୍ ମନଛୁଆଁ ହୋଇଥିଲେ, ସନ୍ତାନମାନେ ବୟସ୍କ ହୋଇଗଲା ପରେ ମଧ୍ୟ ଉକ୍ତ ଗଳ୍ପଗୁଡ଼ିକୁ ମନେ ପକେଇ ତା'ର ଉପାଦେୟତା ସମ୍ବନ୍ଧରେ ନିଜ ସନ୍ତାନମାନଙ୍କୁ ବି ଅବଗତ କରେଇଥାଆନ୍ତି । ପିଲାବେଳେ ଶୁଣିଥିବା ଗପକୁ ଖୁବ୍ ସରଳ ଭାବରେ କୁହାଯାଇଥାଏ ସିନା, କିନ୍ତୁ ପରବର୍ତ୍ତୀ କାଳରେ ଅନୁଭୂତ ହୋଇଥାଏ ସେଥିରେ ରହିଥିବା ଅନ୍ତର୍ନିହିତ ଅର୍ଥ ଓ ନୀତିବାଣୀ । ଗପ କହିବା ମାଧ୍ୟମରେ ହିଁ ସନ୍ତାନଠାରେ ଜାଗ୍ରତ କରାଯାଇଥାଏ ମୂଲ୍ୟବୋଧ ।

ପିଲାଟି ପାଞ୍ଚ ଛଅ ବର୍ଷର ହୋଇଗଲା ପରେ ପିଲାଟିକୁ ଗଢ଼ିବାରେ ନାନା ଦିଗରୁ ସାହାଯ୍ୟ ମିଳିଯାଏ । ପିତାମାତା, ପ୍ରତିବେଶୀ, ପରିବେଶ – ପ୍ରତ୍ୟେକ ଭିନ୍ନ ଭିନ୍ନ ଧାରାରେ ଶିଶୁର ବ୍ୟକ୍ତିତ୍ୱକୁ ରୂପ ଦେବାରେ ଅବଦାନ ଦେଇଥାଆନ୍ତି । ତଥାପି ଏପରି କେତେକ ବିଭାବ ଅଛି, ଯାହା ଅନ୍ୟ କାହାର ଅବଦାନ ନୁହେଁ । ଶିଶୁଟି ମନକୁ ମନ ହୁଏତ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଓ ଏହା ପ୍ରତ୍ୟେକ ଶିଶୁଙ୍କ କ୍ଷେତ୍ରରେ ଅଜଣା । ଶିଶୁର ଜୀବନରେ ଏହା ଈଶ୍ୱରଙ୍କର ଉପସ୍ଥିତି ବୋଲି ହୁଏତ ଆପଣ କହିପାରନ୍ତି !

ମନେ ରଖିବାର କଥା ଯେ ସନ୍ତାନମାନଙ୍କୁ ଖାଇବା ପିଇବା, ପିନ୍ଧିବା, ଆଶ୍ରୟ ଓ ଶିକ୍ଷାଲାଭ ପାଇଁ ଅର୍ଥ ଇତ୍ୟାଦି ଯୋଗାଇ ଦେବାରେ ପିତାମାତାଙ୍କର ଦାୟିତ୍ୱ ସରିଯାଏ ନାହିଁ । ସନ୍ତାନମାନଙ୍କୁ ପିତାମାତାମାନେ ଉପଲବ୍ଧ ହେବା ହିଁ ସନ୍ତାନମାନଙ୍କ ଜୀବନରେ ସାର୍ଥକତା ଆଣିଦିଏ । ସେଥିପାଇଁ ଅଳ୍ପ ବୟସରୁ ସନ୍ତାନମାନଙ୍କୁ ଆବାସିକ ବିଦ୍ୟାଳୟରେ ଛାଡ଼ିବା ସବୁ ସନ୍ତାନଙ୍କ ପାଇଁ ଶୁଭଙ୍କର ହୋଇନଥାଏ ।

ପିତାମାତାମାନେ ସନ୍ତାନମାନଙ୍କ ସହ ମିଳିମିଶି ଖେଳିବା ଦ୍ୱାରା ପିଲାମାନଙ୍କ ଉପରେ ଅନୁକୂଳ ପ୍ରଭାବ ପଡ଼ିଥାଏ । ଘର ଭିତରେ ହେଉ କି ଖେଳ ପଡ଼ିଆରେ ହେଉ, ସେମାନଙ୍କ ସହ ଖେଳାଖେଳି କରିବାର ମଜା ଭିନ୍ନ । ବଲ୍ ଫୋପଡ଼ା ଫୋପଡ଼ି, ଫୁଟବଲ୍, କ୍ରିକେଟ୍, ବ୍ୟାଡ୍‌ମିଣ୍ଟନ୍ ଇତ୍ୟାଦି ଖେଳରେ ସନ୍ତାନଙ୍କୁ ଅଂଶୀଦାର କରିବାର ସୁଫଳ ବେଶୀ । ଏପରିକି ସେମାନଙ୍କ ସହ ଏକତ୍ର ସାଇକଲ୍ ଚଳେଇବା ଓ ପିକ୍‌ନିକ୍‌ରେ ବାହାରିଯିବାରେ ମଧ୍ୟ ଯଥେଷ୍ଟ ଲାଭ ମିଳେ । ଶାରୀରିକ ବ୍ୟାୟାମ ସହ ମାନସିକ ବିକାଶ ପାଇଁ ମଧ୍ୟ ଏହା ଅଶେଷ ଅବଦାନ ଦେଇଥାଏ । ପିଲାର ବୟସ ବଢ଼ିଗଲେ ସେ ବନ୍ଧୁମାନଙ୍କ ସହ ଖେଳାଖେଳି କରେ ; ଟେଲିଭିଜନ ଦେଖି ସମୟ ବିତାଏ । ତଥାପି ଖେଳାଖେଳି କରିବାରେ ପିତାମାତାଙ୍କ ସାହଚର୍ଯ୍ୟ ଲାଭ କରିଥିଲେ, ଏ' ସବୁଥିରେ ସେ ପିତାମାତାଙ୍କର ସଙ୍ଗ ଲୋଡ଼ିବା ଅସ୍ୱାଭାବିକ ନୁହେଁ । ଏଭଳି ସଙ୍ଗ ଲୋଡ଼ିବାର ପ୍ରଭାବ ଖୁବ୍ ଅନୁକୂଳ । ପିତାମାତାଙ୍କ ଉପରେ ତା'ର ବିଶ୍ୱାସର ଏହା ଏକ ପ୍ରମାଣ । ଏହି ବିଶ୍ୱାସର ପାତ୍ର ହେବାପାଇଁ ପ୍ରତ୍ୟେକ ପିତାମାତା ଯତ୍ନଶୀଳ ହେବା ସ୍ପୃହଣୀୟ । ପିତାମାତା ସନ୍ତାନର ବିଶ୍ୱାସର ପାତ୍ର ହୋଇପାରିଲେ ସନ୍ତାନ ତା'ର ସବୁକାମରେ ପିତାମାତାଙ୍କୁ ଜଡ଼ିତ କରାଇବାରେ ଆଗ୍ରହୀ ହୋଇଥାଏ । ଫଳରେ ପିତାମାତା ଓ ସନ୍ତାନମଧ୍ୟରେ ପାରସ୍ପରିକ ସମ୍ପର୍କର ସେତୁ ଅଧିକ ଦୃଢ଼ୀଭୂତ ହୋଇପାରେ ।



# ସନ୍ତାନର ମାନସିକ ବିକାଶ

"ପିଲାମାନଙ୍କୁ ସେମାନଙ୍କ ଶୈଶବରେ ଖୁସି ରଖିପାରିଲେ କୋଡ଼ିଏ ବର୍ଷ ପରେ ମଧ୍ୟ ସେମାନେ ଖୁସି ରହିଥିବେ ।"

–କେଟ୍ ଡଗ୍‌ଲାସ୍ ଉଇଗିନ୍

ପ୍ର : ଶିଶୁର ମାନସିକ ସାମର୍ଥ୍ୟକୁ ଉଦ୍ଦୀପିତ କରାଯାଇପାରିବ କିପରି ?

ଉ: ଠିକ୍ ଭାବରେ ଖାଇବା, ଠିକ୍ ଭାବରେ ଖେଳାଖେଳି କରିବା, ଅଳସୁଆ ହୋଇ ପଡ଼ି ନରହି ଫୂର୍ତ୍ତି ରହିବା, ହସିବା, ସାଙ୍ଗସାଥୀ ଓ ଖେଳନାପ୍ରତି ଆଗ୍ରହ ଦେଖେଇବା, ନିଜ ବୟସକୁ ଚାହିଁ କଥା କହିବା, ଠିକ୍ ଭାବରେ ଶୋଇବା ଓ ସ୍ୱାଭାବିକ ଭାବରେ ନିଦରୁ ଉଠିବା ଇତ୍ୟାଦି ଶିଶୁର ଉତ୍ତମ ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟର ଲକ୍ଷଣ । ବେଳେବେଳେ ଏପରି କେତେକ ଶିଶୁଙ୍କୁ ଦେଖିବାକୁ ମିଳେ ଯେଉଁମାନେ ପ୍ରାୟତଃ ନିଃସ୍ପୃହ ହୋଇ ବସି ରହିଥାନ୍ତି । ସେମାନଙ୍କ ନିକଟରେ ବଲ୍‌ଟିଏ କି ଖେଳନାଟିଏ କି ଛବି ବହିଟିଏ ଦେଖେଇଲେ, ତାକୁ ହାତ ବଢ଼େଇ ନେବା ତ ଦୂରର କଥା, ତାକୁ ଆଡ଼ଆଖିରେ ଚାହାଁନ୍ତିନି ବି ଟିକିଏ । କିନ୍ତୁ ସେହି ପିଲାଙ୍କ ସହ ଧୈର୍ଯ୍ୟ ଧରି ଖେଳିଲେ, ସେମାନଙ୍କ ପାଖରେ ବସି ଖେଳ ଶିଖେଇଦେଲେ, ସେମାନଙ୍କ ସାଙ୍ଗରେ କଅଁଳ ଭାଷାରେ କଥାବାର୍ତ୍ତା କଲେ, ନିଜେ ହସି ସେମାନଙ୍କୁ ହସେଇଲେ ତଥା ସେମାନଙ୍କ ସାଙ୍ଗରେ ମିଳାମିଶା କରି ଗପସପରେ ରତ ରହିଲେ ସେମାନଙ୍କର ଏହି ନିଃସ୍ପୃହତା ଧୀରେଧୀରେ ଦୂର ହୋଇଯାଏ । ତେବେ ପ୍ରଶ୍ନ ଉଠେ ଯେ କୌଣସିଥିରେ ଆଗ୍ରହ ଦେଖାଉ ନଥିବା ପିଲା ପୁଣି ସବୁଥିରେ ଆଗ୍ରହ ଦେଖାଇବା ଆରମ୍ଭ କରିଦିଏ କିପରି ? କଅଣ ଏହି ପରିବର୍ତ୍ତନର କାରଣ ?

ଏ ବିଷୟରେ ପିତାମାତାଙ୍କୁ ପଚାରି ଅନୁସନ୍ଧାନ କଲେ ହୁଏତ ଜଣାପଡ଼ିବ ଯେ ଶିଶୁସନ୍ତାନଙ୍କୁ ଶକ୍ତିହୀନ ତଥା ଉତ୍ସାହହୀନ କରିବାରେ ପିତାମାତାଙ୍କର ଭୂମିକା ହିଁ ମୁଖ୍ୟ । ଯେଉଁ ବାପମା' ପ୍ରତିଦିନ ପିଲାମାନଙ୍କ ସହ ବେଶୀ ଗପସପ କରନ୍ତି ନାହିଁ, ସେପରି

ପିଲା କଥା କହି ଶିଖେନି କି ଗପସପ କରି ଶିଖେନି । ତା' ସହ ନ ଖେଳିଲେ ସେ ଖେଳି ଶିଖିବ କାହାଠାରୁ ? ତା' ପାଇଁ ଖେଳନା କିଣି ଖେଳନାରେ ଖେଳିବାର ଉପାୟ ଶିଖେଇ ନଦେଲେ ସେ ଖେଳନା ପ୍ରତି ଆଗ୍ରହ ନ ଦେଖେଇବାରେ ତା'ର ଅବା ଦୋଷ କଅଣ ? ତାକୁ ବାହାରକୁ ବୁଲେଇ ନନେଲେ କି ବନ୍ଧୁବାନ୍ଧବଙ୍କ ଘରକୁ ସାଥିରେ ନେଇ ନଗଲେ ସେ ବାହାର ପରିବେଶ ସହ ପରିଚିତ ହୋଇପାରିବନି କି ବାହାର ଲୋକଙ୍କ ସହ ମିଶି ପାରିବନି । ତା'ର ଜନ୍ମଦିନ ପାଳନ ଅବସରରେ ଆଖପାଖର ପିଲାମାନଙ୍କୁ ସାମିଲ୍ ନକଲେ ଅନ୍ୟ ପିଲାଙ୍କ ସହ ମିଶିବା ଓ ସେମାନଙ୍କ ସହ ଭାବର ଆଦାନପ୍ରଦାନ କରିବାର ସୁଯୋଗ ସେ ପାଇବ କିପରି ? ଏଗୁଡ଼ିକ ଯେ ଦୁଇ ତିନି ବର୍ଷର ପିଲାଙ୍କ ମାନସିକ ବିକାଶ ପାଇଁ ଅପରିହାର୍ଯ୍ୟ, ତାହା ବହୁ ପିତାମାତା ଜାଣନ୍ତି ନାହିଁ । ଶିଶୁପାଇଁ ଶିଶୁ-ଅନୁକୂଳ ପରିବାର ଓ ଶିଶୁ-ଅନୁକୂଳ ପରିବେଶ ଯୋଗାଇ ନ ଦେଲେ ତା'ର ମାନସିକ ବିକାଶ ଆଦୌ ଆଶାନୁରୂପ ହୋଇପାରିବନି ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ଅନେକ ପିତାମାତାଙ୍କର ଶୈଶବ କଟିଥାଏ ବେଶ୍ ପ୍ରତିକୂଳ ପରିବେଶରେ । ଶୈଶବରେ ସେମାନେ ବହୁ ବିଭାବରୁ ବଞ୍ଚିତ ହେବାକୁ ବାଧ ହୋଇଥାନ୍ତି । ବିଶ୍ୱାସ ନହେଲେ ବି ଏହା ସତ୍ୟ ଯେ କେତେକ ବାପମା' ନିଜେ ଛୋଟ ପିଲାମାନଙ୍କ ସହ ଖେଳି ଜାଣନ୍ତି ନାହିଁ କି ଛୋଟ ପିଲାମାନଙ୍କ ସହ କଥାବାର୍ତ୍ତା କରିବାର ଧାରା ଜାଣନ୍ତି ନାହିଁ । ବିଶେଷ କରି ଯେଉଁ ପିତାମାତାଙ୍କର ଶୈଶବ ଉତ୍କଟ ଦାରିଦ୍ର୍ୟ ଭିତରେ ଅତିବାହିତ ହୋଇଥାଏ, ସେହି ପିତାମାତାଙ୍କଠାରେ ଏ' ପ୍ରକାରର ଅଭାବ ବେଶୀ ପରିଲକ୍ଷିତ ହୁଏ ।

ବହୁ ପିତାମାତାଙ୍କର ଧାରଣା ଯେ ସେମାନଙ୍କର ଶୈଶବ ଯେଉଁ ପ୍ରକାରେ ଅତିବାହିତ ହୋଇଥିଲା, ତାଙ୍କ ସନ୍ତାନମାନଙ୍କର ଶୈଶବ ସେହି ପ୍ରକାରେ ଅତିବାହିତ ହେବା ହିଁ କାମ୍ୟ । 'ମୋ ପିଲାବେଳେ ତ ମୁଁ ବଲ୍‌ଟିଏ ଖେଳିବାକୁ ପାଇ ନଥିଲି', 'ପନ୍ଦର ବର୍ଷ ବୟସ ପୂର୍ବରୁ ମୁଁ ସମୁଦ୍ର ଦେଖି ନଥିଲି', 'ଚାକିରି କଲାପରେ ଦେଖିଥିଲି ପ୍ରଥମ ପ୍ରଦର୍ଶନୀ' – ଏହିପରି କହି ଅନେକ ପିତାମାତା ସେମାନଙ୍କ ସନ୍ତାନସନ୍ତତିଙ୍କୁ ବିଭିନ୍ନ ଦିଗରୁ ବଞ୍ଚିତ କରିଥାନ୍ତି । ଏଭଳି ବଞ୍ଚିତ ହେଲେ ଯେ ସନ୍ତାନର ମାନସିକ ବିକାଶ ବ୍ୟାହତ ହୋଇପଡ଼ିବ ଓ ସନ୍ତାନଠାରେ ସୃଜନଶୀଳତାର ଉନ୍ମେଷ ଘଟିପାରିବ ନାହିଁ, ଏହା ସେମାନେ ବୁଝିପାରିବାକୁ ଅକ୍ଷମ ।

କିନ୍ତୁ ପ୍ରତ୍ୟେକ ପିତାମାତା ନିଜର ଶୈଶବକାଳୀନ ଅନୁଭୂତିକୁ ମନେ ପକେଇ ଅନୁକୂଳ ଅନୁଭୂତିକୁ ନିଜ ସନ୍ତାନଠାରେ ପ୍ରୟୋଗ କରିବା ଓ ପ୍ରତିକୂଳ ଅନୁଭୂତିରୁ ନିଜ ସନ୍ତାନଙ୍କୁ ସୁରକ୍ଷିତ ରଖିବାରେ ପ୍ରୟାସୀ ହେବା ଉଚିତ । ତାହାଛଡ଼ା, ପିତାମାତା ନିଜେ ସକାରାତ୍ମକ ମନୋବୃତ୍ତି ନେଇ ଜୀବନକୁ ଉପଭୋଗ କରିପାରିଲେ ହିଁ ସନ୍ତାନଙ୍କୁ ଅନୁକୂଳ ପରିବେଶ ଯୋଗାଇଦେବା ନିମନ୍ତେ ଉତ୍ସାହିତ ହୋଇପାରିବେ । ବିଷାଦ ଭିତରେ ଦିନ କାଟୁଥିବା ପିତାମାତା ସନ୍ତାନ ପାଇଁ ହସଖୁସିଆ ପରିବେଶ ଯୋଗାଇଦେବାରେ ଯେ ଅକ୍ଷମ ହେବେ, ଏଥିରେ କୌଣସି ସନ୍ଦେହ ନାହିଁ । ତେଣୁ, ସନ୍ତାନର ମାନସିକ ସାମର୍ଥ୍ୟକୁ ଉଦ୍ଦୀପିତ କରାଇବାକୁ ହେଲେ, ପିତାମାତା ନିଜ ନିଜର ମାନସିକ ସାମର୍ଥ୍ୟରେ ଉନ୍ନତି ସାଧନ କରିବା ଅପରିହାର୍ଯ୍ୟ । ପ୍ରତ୍ୟେକଙ୍କ ପ୍ରତି ବନ୍ଧୁତାପୂର୍ଣ୍ଣ ଆଚରଣ ପ୍ରଦର୍ଶନ କରିବା, ବନ୍ଧୁ ଓ ଆତ୍ମୀୟମାନଙ୍କ ସହ ସୁସମ୍ପର୍କ ରକ୍ଷା କରିବା, ପଢ଼ିବା, ଲେଖିବା, ଚିତ୍ର ଆଙ୍କିବା, ବଗିଚାରେ ଫୁଲଫଳ ଗଛ ଲଗେଇ ସେଗୁଡ଼ିକର ଯତ୍ନ ନେବା ଇତ୍ୟାଦି କାର୍ଯ୍ୟରେ ଲିପ୍ତ ରହିଥିବା ପିତାମାତାଙ୍କ ସନ୍ତାନ ସେମାନଙ୍କଠାରୁ ଶିଖି ସୃଜନାତ୍ମକ କ୍ରିୟାରେ ରୁଚି ଦେଖେଇଥାଏ । କହିବାକୁ ଗଲେ ପିତାମାତାଙ୍କ କାର୍ଯ୍ୟଧାରାର ପୂର୍ଣ୍ଣ ପ୍ରତିଫଳନ ଘଟିଥାଏ ସନ୍ତାନମାନଙ୍କଠାରେ ।

ପ୍ରତ୍ୟେକ ପିତାମାତା ମନେ ରଖିବା ଦରକାର ଯେ ପିତାମାତା-ସନ୍ତାନ ସମ୍ପର୍କ ହେଉଛି ପାରସ୍ପରିକ । ଆମେ ବାପମା'ମାନେ ଆମ ସନ୍ତାନମାନଙ୍କୁ ବହୁତ କିଛି ଦେଉ, କିନ୍ତୁ ସନ୍ତାନମାନେ ମଧ୍ୟ ଆମ ବିଷୟରେ ଅନେକ କଥା ଆମକୁ ଜଣେଇ ଦେଇଥାନ୍ତି । ସେମାନେ ମଧ୍ୟ ଆମ ଶୈଶବ ଓ ଆମର ହାନିଲାଭ ସମ୍ପର୍କରେ ସ୍ମରଣ କରେଇଦିଅନ୍ତି ଆମ୍ଭମାନଙ୍କୁ । ତେଣୁ, ବାପମା' ହେଲାପରେ ସନ୍ତାନ ଯେପରି ଅନୁଭୂତି ଅର୍ଜନ ଦିଗରେ ଅଗ୍ରସର ହୋଇଚାଲେ, ବାପମା' ମଧ୍ୟ ସେହିପରି ନୂତନ ଅନୁଭୂତିମାନ ଅର୍ଜନ କରି ଅଗ୍ରସର ହୋଇଥାଆନ୍ତି ।

ପିତାମାତାମାନେ ନିଜକୁ ପିଲାଙ୍କ ସ୍ତରକୁ ଖସେଇ ଆଣିପାରିଲେ ହିଁ ପିତାମାତା ଓ ଶିଶୁସନ୍ତାନଙ୍କ ମଧ୍ୟରେ ରହିଥିବା ବ୍ୟବଧାନ କ୍ରମେ ସଙ୍କୁଚିତ ହୋଇଆସିବ । ଏହା ଫଳରେ ପିଲାକୁ ଅନୁକୂଳ ଦିଗରେ ବିକାଶ କରେଇବାରେ ସମସ୍ୟା ଉପୁଜିବ ନାହିଁ ।

ଛୋଟ ପିଲାଟି ଅଙ୍କାବଙ୍କା କରି ଯେଉଁ ଛବି ଆଙ୍କିଥାଏ, ସେହି ଛବିକୁ ଘର କାନ୍ଥରେ ଟାଙ୍ଗି ରଖିଲେ, ତାହା ପିଲାକୁ ଯଥେଷ୍ଟ ଉତ୍ସାହିତ କରିଥାଏ । ତା'ର କଥାବାର୍ତ୍ତାକୁ ଟେପ୍‌ରେ ରେକର୍ଡ୍ କରି ତାକୁ ଶୁଣାଇଲେ ସେ ଆନନ୍ଦ ଅନୁଭବ କରେ ।

ଘରେ କୁକୁର, ବିରାଡ଼ି କି ଶୁଆଶାରୀ ପୋଷିଲେ ପୋଷାପ୍ରାଣୀଙ୍କ ଦେଖାଶୁଣା କରିବା ଅବସରରେ ସନ୍ତାନଠାରେ ଜାତ ହୁଏ ଅନେକ କୌତୂହଳ । ଏହି କୌତୂହଳ ଜାତ ହେବାମାତ୍ରେ ସେ ପ୍ରଶ୍ନ ପଚାରିବା ନିମନ୍ତେ ଉତ୍ସାହିତ ହୁଏ । ତା’ ପ୍ରଶ୍ନଗୁଡ଼ିକର ସଠିକ ଉତ୍ତର ଦେଇଦେଲେ ସେ ବେଶୀ ବେଶୀ ପ୍ରଶ୍ନ ପଚାରିଚାଲେ । ଏହି ପ୍ରକାରେ ମଧ୍ୟ ବଢ଼ିଚାଲେ ତା’ର ମାନସିକ ସାମର୍ଥ୍ୟ । ସନ୍ତାନକୁ ପିକ୍‌ନିକ୍‌ରେ ନେବା, ବିଭିନ୍ନ ସ୍ଥାନକୁ ବୁଲେଇ ନେବା, ପ୍ରଦର୍ଶନୀ ଦେଖେଇବା, ସର୍କସ ଦେଖେଇଦେବା ଇତ୍ୟାଦି ମଧ୍ୟ ତା’ର କୌତୂହଳୀ ମନ ପାଇଁ ଖୋରାକି ଯୋଗାଇଥାଏ ।

ସନ୍ତାନକୁ ଭଲ ମଣିଷ କରି ଗଢ଼ିବା କିଛି ସହଜ ବ୍ୟାପାର ନୁହେଁ । ଏବେ ସମାଜରେ ଅଭୂତପୂର୍ବ ପରିବର୍ତ୍ତନ ଘଟିଛି । ଗାଁ ଗହଳିରେ ବିକାଶ ଲାଭ କରୁଥିବା ପିଲାଙ୍କ ପାଇଁ ଆର୍ଥିକ ଅଭାବ ଏକ ସମସ୍ୟା ସିନା, ହେଲେ ସେଠାରେ ରହିଛି ଯୌଥ ପରିବାର, ଖେଳିବା ପାଇଁ ପ୍ରଶସ୍ତ ପଡ଼ିଆ, ପହଁରିବା ପାଇଁ ନଈ ଓ ପୋଖରୀ, ଚଢ଼ିବା ପାଇଁ କେତେ ନା କେତେ ଗଛ । ହେଲେ ସହରର ପିଲାମାନେ ଏପ୍ରକାର ସୁଯୋଗ ଲାଭରୁ ବଞ୍ଚିତ ।

ତାହାଛଡ଼ା, ଏବେ ଜୀବନ ହୋଇଉଠିଲାଣି ପ୍ରତିଯୋଗିତାମୂଳକ । ବଢ଼ିଚାଲିଛି ବେକାରୀ । ତେଣୁ, ଭବିଷ୍ୟତର ପ୍ରତିଯୋଗିତାମୂଳକ ପରିସ୍ଥିତିର ସମ୍ମୁଖୀନ ହେବା ନିମନ୍ତେ ସନ୍ତାନମାନଙ୍କୁ ଉପଯୋଗୀ କରି ଗଢ଼ିବା ଆମର କର୍ତ୍ତବ୍ୟ । ସେମାନଙ୍କୁ ବିଭିନ୍ନ କାର୍ଯ୍ୟରେ ନିପୁଣ କରି ନପାରିଲେ ସେମାନେ ଉଧେଇ ପାରିବେ ନାହିଁ । ୩୦ କି ୩୫ ବର୍ଷ ବୟସରେ ପହଞ୍ଚିଗଲେ ତ ଆଉ ସୃଜନଶୀଳ ହେବା ସମ୍ଭବ ହେବନାହିଁ । ଏଥିପାଇଁ ପ୍ରୟାସ ଜାରି ରଖିବାକୁ ପଡ଼ିବ ବାଲ୍ୟାବସ୍ଥାରୁ । ସୃଜନଶୀଳତା ହେଉଛି ଶୈଶବକାଳୀନ କଳା ଓ ଏହି କଳାରେ ତାଲିମ ଦେବା ନିମନ୍ତେ ପିତାମାତାମାନେ ହେଉଛନ୍ତି ଶିଶୁର ସର୍ବପ୍ରଥମ ଶିକ୍ଷକଶିକ୍ଷିକା ।

ବର୍ତ୍ତମାନର ଦୁନିଆରେ କେବଳ ଏକ ନିର୍ଦ୍ଦିଷ୍ଟ ଦିଗରେ ବ୍ୟୁତ୍ପତ୍ତି ପ୍ରଦର୍ଶନ କଲେ ଚଳିବନି । ବହୁମୁଖୀ ବ୍ୟୁତ୍ପତ୍ତି ହିଁ ଆଜିକାର ଆବଶ୍ୟକତା । ଶିଶୁଠାରେ, ବହୁବିଧ ମେଧାର ବିକାଶ ସାଧନ କରାଇବାରେ ପିତାମାତାଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।



# ପିଲା ଭଲ ଭାବରେ ଖିଆପିଆ ନ କରୁଥିଲେ (୧)

"ପେଟ ପୂରେଇ ନ ଖାଇଥିଲେ ଭଲ ଭାବରେ ଚିନ୍ତାକରି ହୁଏନି, ଭଲ ପାଇ ହୁଏନି କି ଗାଢ଼ ନିଦରେ ଶୋଇହୁଏନି ।"

–ଭର୍ଜିନିଆ ଉଲ୍‌ଫ୍

ପ୍ର : କଅଣ କରିବି କହନ୍ତୁ ତ ! ମୋ' ଝିଅକୁ ଚାରିବର୍ଷ । ତା' ଖାଇବାକୁ ନେଇ ମୁଁ ନାକେଦମ୍ ହୋଇସାରିଲିଣି । 'ମାଗି ନୁଡ଼୍‌ଲ'କୁ ଛାଡ଼ିଦେଲେ ସେ ଆଉ କିଛି ଖାଦ୍ୟ ପାଟିକୁ ନେଉନି । ତେଣୁ, ଆମେ ସମସ୍ତେ ଏବେ 'ମାଗି ନୁଡ଼ଲ୍' ଖାଇବାକୁ ବାଧ ହେଲୁଣି । ଆମେ ଖାଇବା ବେଳେ ତା' ପାଟିରେ ଟିକିଏ ଗୁଞ୍ଜି ଦେଉଛୁ ଓ ସେଇଥିରୁ ସେ ଟିକିଏ ଟିକିଏ ଖାଉଛି । ଆମେ ବଜାର ଯାଇ ତା' ପାଇଁ କେତେ ନା କେତେ ପ୍ରକାରର ଖାଦ୍ୟ କିଣି ଆଣୁଛୁ ସିନା, କିନ୍ତୁ ସବୁ ବୃଥା । ନଖାଇ ସେ କଣ୍ଟା ଭଳିଆ ହୋଇଗଲାଣି । ସମସ୍ତେ କହୁଛନ୍ତି ଯେ ତାକୁ ସବୁ ପ୍ରକାରର ଖାଦ୍ୟ ଖାଇବାକୁ ଦେବା ଉଚିତ । ଆମେ ସିନା ସବୁ ପ୍ରକାରର ଖାଦ୍ୟ ଘରେ ତିଆରି କରୁଛୁ ହେଲେ ତାକୁ ଖାଇବାରେ ତା'ର ଅନିଚ୍ଛା । ତା' ଖାଇବା ବିଷୟରେ ଆମେ ସମସ୍ତେ ଗୋଟିଏ ପଟେ ତ, ସେ ଆଉ ଗୋଟିଏ ପଟେ । କହିବାକୁ ଗଲେ ଆମ ଘରେ ତା'ର ଓ ମୋର ଚାଲିଛି ଦଉଡ଼ାଦଉଡ଼ି ଖେଳ । ସେ ତା' ବାଟରେ ଥିବ; ମୁଁ ତା' ପଛରେ ଖାଇବା ଥାଳିଆ ଧରି ଚାଲୁଥିବି ଓ ସେ ଅନ୍ୟମନସ୍କ ଥିବା ବେଳେ ତା' ପାଟିରେ ଟିକିଏ ଖାଦ୍ୟ ଗୁଞ୍ଜି ଦେଉଥିବି । ଖିଆପିଆ ନ କରିବାରୁ ସବୁବେଳେ ତା'ର ଦେହ ଖରାପ ଲାଗି ରହିଛି । କ୍ଷୀର, ମାଛ, ମାଂସ, ଅଣ୍ଡା, ଡାଲି, ଫଳ, ଶାଗ, ପନିପରିବା – ସବୁପ୍ରକାରର ଖାଦ୍ୟ ଖୁଆଇବାକୁ ଚେଷ୍ଟା କରି ମୁଁ ତା' ପାଖରେ ହାର ମାନିଲିଣି ।

ଉ : ଏଥିରେ କିଛି ଅସ୍ୱାଭାବିକତା ନାହିଁ । ଅନେକ ପିଲାଙ୍କ କ୍ଷେତ୍ରରେ ଏମିତି ହୋଇଥାଏ । ତା' ପାଇଁ ଗୋଟିଏ ଛୋଟ ପ୍ଲାଷ୍ଟିକ୍ ଚେୟାର ଓ ଛୋଟ ପ୍ଲାଷ୍ଟିକ୍ ଟେବୁଲ୍ କିଣି ଆଣନ୍ତୁ । ତାକୁ ଟେବୁଲ୍ ପାଖରେ ଚେୟାର୍‌ରେ ବସେଇ ତା' ସାମ୍‌ନାରେ ଖାଦ୍ୟ ରଖିଦିଅନ୍ତୁ । ପ୍ରଥମେ ଥରେ ଦୁଇଥର ତାକୁ ନିଜେ ଖୁଆଇ ତା'ପରେ ତା' ହାତରେ ଧରେଇ ଦିଅନ୍ତୁ ଚାମଚଟିଏ । ତାକୁ ତ ଚାରିବର୍ଷ ହେଲାଣି । ତେଣୁ ସେ ନିଜେ ନିଜେ ଖାଇପାରିବ ; ଖାଇବା ଧରି ତା' ପଛରେ ଆପଣଙ୍କୁ ଆଉ ଧାଇଁବାକୁ ପଡ଼ିବନି । ଦେଖିବେ, ପ୍ରଥମେ ପ୍ରଥମେ ତା' ଖାଦ୍ୟ ଥାଳିରୁ ଟେବୁଲ୍ ଉପରେ ଖସି ପଡ଼ି ଖାଦ୍ୟ ନଷ୍ଟ ହେବ । ସେଥିପାଇଁ ବ୍ୟସ୍ତ ହେବେନି ଆଦୌ । ହୁଏତ, ଏଥିରୁ କିଛି ଫାଇଦା ମିଳିପାରେ ।

**ପ୍ର : ଏଥିରୁ କିଛି ଫାଇଦା ମିଳିବନି । ମୁଁ ତାକୁ ଭଲ ଭାବରେ ଚିହ୍ନିଛି । ସେ ଜମା ଖାଦ୍ୟ ଛୁଇଁବନି କି ପାଟିକୁ ନବନି ।**

ଉ : ତଥାପି ଆପଣ ଏ' ପରୀକ୍ଷା କରନ୍ତୁ । ମନେ ରଖନ୍ତୁ ଯେ ସେ ରାତିରେ କିଛି ନ ଖାଇ ଶୋଇପଡ଼ିଲେ, ସକାଳେ ତାକୁ ବଳେ ଭୋକ କରିବ ଓ ସକାଳେ ଆପଣ ଯାହା ଖାଇବାକୁ ଦେବେ ତାକୁ ଖାଇବାରେ ସେ ଆପତ୍ତି କରିବନି । ସେ ଯଦି ରଡ଼ି ଛାଡ଼ି କାନ୍ଦିବ ତ ତାକୁ କାନ୍ଦିବାକୁ ଛାଡ଼ିଦେବେ । ନ ଖାଇବ ତ ତାକୁ ଅଖିଆ ରଖିଦେବେ । ଭୋକ ବଢ଼ିଲେ ସେ ବାଧ ହୋଇ ଅଳ୍ପ ଅଳ୍ପ ଖାଇବା ଆରମ୍ଭ କରିଦେବ । ହେଲେ, ତା' ଜିଦ୍‌କୁ ସବୁବେଳେ ଉପେକ୍ଷା କରି ଚାଲିବେ । ସବୁ ପ୍ରକାରର ଖାଦ୍ୟ ନ ଖାଉପଛେ, ପୂର୍ବ ଅପେକ୍ଷା ସେ କ୍ରମେ ବେଶୀ ବେଶୀ ଖାଇବ । ଏପରିକି ଥରେଅଧେ ନ ଖାଇଲେ ଯେ ତା'ର କିଛି କ୍ଷତି ହେବନି, ଏ ବିଷୟରେ ଆପଣ ଆଗେ ଜାଣିରଖିବା ଉଚିତ ।

ଘରେ ମାତ୍ର ଗୋଟିଏ ପିଲା ଥିଲେ ପିଲାର ଖାଇବାରେ ଟିକିଏ ବେଶୀ ସମସ୍ୟା ଦେଖାଦିଏ । ହେଲେ, ଏଥିରେ ଧୈର୍ଯ୍ୟହରା ହୋଇପଡ଼ନ୍ତୁନି । ଗୋଟିକିଆ ସନ୍ତାନ ବେଳେବେଳେ ଅତି ଜିଦ୍ କରିଥାଏ । ବାପମା' ବି ତା' ମର୍ଜିକୁ ଜଗି ତାକୁ ବିଭିନ୍ନ ଖେଳନା ସାମଗ୍ରୀ କିଣି ଆଣି ଦିଅନ୍ତି । ତାକୁ ବହୁତ ଗେହ୍ଲା କରନ୍ତି । କିନ୍ତୁ, ତା' ସହିତ କଥାବାର୍ତ୍ତା କରି ତାକୁ ହସଖୁସିରେ ରଖନ୍ତୁ ସିନା, ତା'ର ଖାଇବା ବେଳେ ତା' ପ୍ରତି ବେଶୀ ନଜର ଦିଅନ୍ତୁନି । ଏହା ଫଳରେ ସେ ଅନ୍ୟ ସମୟରେ ଆପଣଙ୍କ ସାହଚର୍ଯ୍ୟ ପାଉଥିବାରୁ ଖୁସି ରହିବ । ତା' ଜିଦ୍‌କୁ ଚାହିଁ ସବୁବେଳେ ଜିନିଷପତ୍ର କିଣି ଆଣି ଦିଅନ୍ତୁନି । ଏପରି କଲେ ତା'ର ସବୁ ଜିଦ୍ ଯେ ଆପଣ ରଖୁନାହାନ୍ତି, ତାହା ସେ ଜାଣିପାରିବ ଓ କ୍ରମେ ନିଜକୁ ଖାପଖୁଆଇ ନେବାକୁ ବାଧ ହେବ ।

ମନେ ରଖିବାର କଥା ଯେ ବହୁ ପରିବାରରେ ପିଲାର ଖାଇବାବେଳେ ସତେ ଯେପରି ଆରମ୍ଭ ହୋଇଯାଏ ଏକ ମହାସମର ! ମା' ତାକୁ ଖୁଆଇବାରେ ଜିଦ୍ ଧରିଥିବା ବେଳେ ପିଲା ନଖାଇବା ପାଇଁ ଜିଦ୍ ଧରିଥାଏ । କିନ୍ତୁ ପିଲାର ଖାଦ୍ୟ ନିର୍ବାଚନ ଅଧିକାଂଶ କ୍ଷେତ୍ରରେ ପିତାମାତାଙ୍କ ଖାଦ୍ୟରୁଚି ଦ୍ୱାରା ପ୍ରଭାବିତ ହୋଇଥାଏ । ଅନୁଧ୍ୟାନରୁ ଜଣାପଡ଼ିଛି ଯେ ବାପା କିମ୍ୱା ମା' ଯେଉଁ ପ୍ରକାରର ଖାଦ୍ୟ ଖାଇବାକୁ ଭଲ ପାଆନ୍ତିନି, ସେମାନଙ୍କ ପିଲା ମଧ ପ୍ରାୟତଃ ସେହି ସେହି ଖାଦ୍ୟ ଖାଇବାକୁ ଭଲ ପାଏନି । ବାପା କିମ୍ୱା ମାଆ ଯେଉଁ ପ୍ରକାରର ଖାଦ୍ୟକୁ ପସନ୍ଦ କରିଥାନ୍ତି, ପିଲା ବି ସାଧାରଣତଃ ସେହି ପ୍ରକାରର ଖାଦ୍ୟ ଖାଇବା ନିମନ୍ତେ ପସନ୍ଦ କରିଥାଏ । ତେଣୁ ନିରବରେ ହେଉ କି ପରୋକ୍ଷରେ ହେଉ, ଆମର ପସନ୍ଦ ଅପସନ୍ଦକୁ ଆମେ ସନ୍ତାନମାନଙ୍କୁ ସଞ୍ଚରିତ କରି ଦେଇଥାଉ । ଉଦାହରଣ ସ୍ୱରୂପ, ବାପା କଦଳୀ ଖାଇବା ନିମନ୍ତେ ଅନିଚ୍ଛା ପ୍ରକାଶ କରୁଥିଲେ, ସନ୍ତାନ ହୁଏତ କ୍ଷୀର ପ୍ରତି ବିଶେଷ ଆଗ୍ରହ ଦେଖେଇ ନଥାଏ । ମା' ରୁଟି ଭଲ ପାଉନଥିଲେ ପିଲା ହୁଏତ ଭାତ ଖାଇବାକୁ ଭଲ ନ ପାଇପାରେ ।

ତେବେ ବହୁପିଲା ବିସ୍କୁଟ୍ ଓ ମିଠା ଖାଦ୍ୟ ଖାଇବାରେ ରୁଚି ରଖିଥାନ୍ତି । ସେ ଯାହାହେଉ, ବୟସ୍କ ବ୍ୟକ୍ତି ହେଉ କି ପିଲା ହେଉ, ପ୍ରତ୍ୟେକେ ପ୍ରାତଃଭୋଜନ କରିବା ସ୍ୱାସ୍ଥ୍ୟ ଦୃଷ୍ଟିରୁ ଅପରିହାର୍ଯ୍ୟ । କିନ୍ତୁ ବୟସ୍କ ବ୍ୟକ୍ତିମାନଙ୍କ ପାଇଁ ପରିବାରରେ ଯେଉଁ ପ୍ରାତଃ ଭୋଜନ ପ୍ରସ୍ତୁତ କରାଯାଇଥାଏ (ରୁଟି, ପୁରି, ଚୂଡ଼ା, ଉପମା, ହାଲୁଆ, ଦୋସା, ଇଡ୍‌ଲି, ପାଉଁରୁଟି, ଅଣ୍ଡା ଇତ୍ୟାଦି), ବହୁପିଲା ଏ' ପ୍ରକାରର ଖାଦ୍ୟର ଧାର ଧରନ୍ତିନି । ସେମାନେ ବିସ୍କୁଟ୍ ଖଣ୍ଡେ ଦି ଖଣ୍ଡ କି କେକ୍ ଖଣ୍ଡେ ପାଟିରେ ପକେଇଦେଲେ ଯଥେଷ୍ଟ ହୋଇଗଲା ବୋଲି ମନେକରନ୍ତି । ତେଣୁ, ସ୍କୁଲ୍‌କୁ ଗଲାବେଳେ ବି ପେଟ ପୂରେଇ ପ୍ରାତଃ ଭୋଜନ କରିନଥାନ୍ତି । ମା'ମାନେ ମନେ ରଖିବା କଥା ଯେ ସନ୍ତାନକୁ ଛଅମାସ ବୟସ ହୋଇଗଲେ, ତାକୁ ନିୟମିତ ଭାବରେ ଅନ୍ୟ ପ୍ରକାରର ଖାଦ୍ୟମାନ ଖୁଆଇବାର ଅଭ୍ୟାସ କରିବା ଜରୁରୀ । ଏପରି ଅଭ୍ୟାସ ଜାରି ରଖିଲେ ଶାଗ, ପନିପରିବା, ଫଳ ଆଦି ନାନାପ୍ରକାରର ଖାଦ୍ୟ ଖାଇବାରେ ସେ ପିଲାବେଳୁ ଅଭ୍ୟସ୍ତ ହୋଇଯାଏ । ପିଲାମାନଙ୍କୁ ବେଶୀ ମିଠା ଜିନିଷ କି ତେଲିଆ ଜିନିଷ ଖାଇବାକୁ ଦେଲେ ସେମାନଙ୍କ ଭୋକ ମରିଯିବାରୁ ସେମାନେ ଅନ୍ୟ କିଛି ଜିନିଷ ଖାଇବା ପାଇଁ ଆଗ୍ରହ ଦେଖେଇ ନଥାନ୍ତି ।

ଅନେକ ପରିବାରରେ ଖାଦ୍ୟ ବିଷୟରେ ନାନାପ୍ରକାରର ଅବୈଜ୍ଞାନିକ ଧାରଣା ପ୍ରଚଳିତ ଥାଏ । ବାପ ମା', ଅଜା ଆଈ ଏଥିରେ ବିଶ୍ୱାସ କରୁଥିବାରୁ ପରିବାରର ଛୋଟ ପିଲାମାନେ ସେମାନଙ୍କଠାରୁ ଏହା ଶୁଣି ତା'କୁ 'ଠିକ୍' ବୋଲି ଧରି ନେଇଥାନ୍ତି ଓ ଜୀବନସାରା ତାକୁ ବିଶ୍ୱାସ କରି ଚାଲନ୍ତି । ଏପରିକି ନିଜର ପିଲା ଓ ନାତିନାତୁଣୀଙ୍କୁ ମଧ୍ୟ ଏହି 'ମନ୍ତ୍ର'ରେ ଦୀକ୍ଷିତ କରେଇ ଥାଆନ୍ତି । ବୈଜ୍ଞାନିକମାନଙ୍କ ମତରେ 'ଥଣ୍ଡା ଖାଦ୍ୟ' କି 'ଗରମ ଖାଦ୍ୟ' ବୋଲି କିଛି ନାହିଁ । 'ପାଚିଲା କଦଳୀ ଖାଇଲେ ପିଲାକୁ ଥଣ୍ଡା ଧରିବ', 'ଦହି ଖାଇଲେ ଥଣ୍ଡା ଧରି ପକେଇବ' ଆଦି ଧାରଣା ସମ୍ପୂର୍ଣ୍ଣ ଭୁଲ୍ । ବରଂ ପାଚିଲା କଦଳୀ ଓ ଦହିରୁ ମିଳିପାରିବ ଅନେକ ଜୀବସାର ବା ଭିଟାମିନ୍ ଓ କେତେକ ଧାତୁସାର । ତେଣୁ ଖାଦ୍ୟ ବିଷୟରେ ରହିଥିବା ଭ୍ରାନ୍ତ ଧାରଣାଗୁଡ଼ିକୁ ବାପମା'ମାନେ ନିଜେ ପରିହାର କରିବା ସଙ୍ଗେ ସଙ୍ଗେ ପିଲାମାନଙ୍କ କାନକୁ ଏ' କଥା ନ ଆଣିବା ନିରାପଦ ।

ପିଲା ଜନ୍ମ ହେବା ପରେ ଛଅମାସ ପର୍ଯ୍ୟନ୍ତ ସେ କେବଳ ମା' କ୍ଷୀର ଖାଇବା ଉଚିତ । ତା'ପରେ ତାକୁ ଫଳରସ, ସିଝା ପରିବା ଚକଟା, ଆଳୁ ଚକଟା ଇତ୍ୟାଦି ଦିଆଯିବା ଦରକାର । ଭାତକୁ ହାତରେ ଦଳି ଡାଲି ଗୋଳେଇ ଖାଇବାକୁ ଦିଆଯିବା ଆବଶ୍ୟକ । ଏପରି ଅଭ୍ୟାସ କରେଇ ଚାଲିଲେ ତାକୁ ବର୍ଷେ ପୂରିବା ବେଳକୁ ସେ ପ୍ରାୟ ସବୁ ପ୍ରକାରର ଖାଦ୍ୟ ଖାଇବାରେ ରୁଚି ଜାଗ୍ରତ କରିଥାଏ ।

ପିଲାଟି ମା' କ୍ଷୀର ଖାଉଥିଲେ ଛଅମାସ ବୟସ ହେବା ପର୍ଯ୍ୟନ୍ତ, ତାକୁ ଅନ୍ୟ କିଛି ଖାଦ୍ୟ ଖୁଆଇବା ଉଚିତ ନୁହେଁ । ତା'ପରେ ତାକୁ ବୋତଲରେ କ୍ଷୀର ପିଇବାକୁ ନ ଦେଇ କପ୍‌ରେ କ୍ଷୀର ପିଇବାକୁ ଦେବା ଆବଶ୍ୟକ । ବର୍ଷିକିଆ ପିଲା ମଧ୍ୟ କପ୍‌ରେ କ୍ଷୀର ପିଆ ଶିଖି ତାକୁ ଅଭ୍ୟାସ କରିପାରିବ । ପିଲାମାନେ ଯେ ବୟସ୍କ ବ୍ୟକ୍ତିମାନଙ୍କ ଭଳି ଯାବତୀୟ ପ୍ରକାରର ଖାଦ୍ୟ ଖାଇପାରିବେ, ପିତାମାତା ଏ' ବିଷୟରେ ଦୃଢ଼ ନିଶ୍ଚିତ ରହିବା ଉଚିତ ।

ନଅମାସ ବୟସର ପିଲା ବୟସ୍କଙ୍କ ଭଳି ଭାତ, ଡାଲି, ତରକାରି ଆଦି ଖାଇପାରିବ ଓ ପ୍ରତି ତିନି ଘଣ୍ଟା ଅନ୍ତରରେ ଖାଇବ । ବର୍ଷେ ପୂରିବା ବେଳକୁ ସେ ଭାତ, ରୁଟି, ଆଳୁ, ଶାଗ, ପରିବା ତରକାରି, ଫଳ, ମାଛ, ମାଂସ ଆଦି ସବୁକିଛି ଖାଇପାରିବ । ଏହାଦ୍ୱାରା ତା'ର ତରଳ ଝାଡ଼ା ହେବ ଓ ସେ ଅସୁସ୍ଥ ହୋଇପଡ଼ିବ ବୋଲି ଭାବିବା ଭୁଲ୍ ।

ଆମ ଭାରତୀୟମାନଙ୍କ ପରିବାରରେ ନାନା ପ୍ରକାରର ଖାଦ୍ୟ ରାନ୍ଧି ଅତିଥିମାନଙ୍କୁ ପରଷିବା ଉପରେ ଖୁବ୍ ଗୁରୁତ୍ୱ ଦିଆଯାଇଥାଏ । ଅନେକ ପରିବାରରେ ତ ମହିଳାମାନେ ସକାଳୁ ଉଠି ରାତିରେ ଶୋଇବାକୁ ଯିବା ପର୍ଯ୍ୟନ୍ତ ରୋଷେଇ ଘରେ ହିଁ ବ୍ୟସ୍ତ ରହିଥାନ୍ତି । ସକାଳୁ ସଞ୍ଜଯାଏ ରୋଷେଇ ଘରେ ବିତେଇଲେ ନିଜ ପିଲାପିଲିଙ୍କର ବିଶେଷ ମଙ୍ଗଳ ହୋଇନଥାଏ । ବରଂ ସମୟ ବଞ୍ଚେଇ ସେମାନଙ୍କ ସାଙ୍ଗରେ ସମୟ ବିତେଇବାର ଅନୁକୂଳ ପ୍ରଭାବ ସୁଦୂରପ୍ରସାରୀ । ବୈଠକଖାନାରେ ବସି ଅତିଥିମାନଙ୍କ ସହ ଘଣ୍ଟା ଘଣ୍ଟା ଧରି ଗପ କରିବା ଅପେକ୍ଷା ନିଜ ପିଲାପିଲିଙ୍କ ସହ ନିୟମିତ ଭାବରେ ଗପସପ କରିବା ପିଲାପିଲିଙ୍କ ମାନସିକ ଓ ସାମାଜିକ ବିକାଶ ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ । ଏପରିକି ପିଲାପିଲିଙ୍କ ସହ ଏକାଠି ବସି ଖିଆପିଆ କରିବା ଓ ନିଜ ଜୀବନ କାହାଣୀର ମଉଜିଆ ଘଟଣା ତାଙ୍କ ଆଗରେ ବର୍ଣ୍ଣନା କରିବାରେ ବହୁତ ଉପକାର ମିଳିଥାଏ । ଖାଇବା ବେଳେ କେବଳ ଖାଇବା ଉପରେ ମନୋନିବେଶ ନକରି ନିଜ ନିଜ ଭିତରେ ଭାବର ଆଦାନପ୍ରଦାନ କରିବାର ସୁଫଳ ବେଶୀ ।



# ପିଲା ଭଲ ଭାବରେ ଖିଆପିଆ ନ କରୁଥିଲେ (୨)

ପ୍ର : ଅନେକ ପିଲା ଭଲ ଭାବରେ ଖିଆପିଆ କରନ୍ତିନି କାହିଁକି ?

ଉ : ଏହି ପ୍ରଶ୍ନଟିରେ କିଛି ନୂତନତା ନାହିଁ । ଅଧିକାଂଶ ବାପମା'ଙ୍କ ପାଇଁ ଏହା ଏକ ଅତି ସାଧାରଣ ସମସ୍ୟା । ଏଥିପାଇଁ ସେମାନେ ଏତେ ଚିନ୍ତିତ ରହିଥାନ୍ତି ଯେ ସନ୍ତାନକୁ ଟିକିଏ ଖୁଆଇବା ପାଇଁ କୌଣସି ପନ୍ଥାକୁ ହାତଛଡ଼ା କରନ୍ତିନି । କିଏ ଧମକଚମକ ଦେଇ ଖାଇବା ନିମନ୍ତେ ପିଲାକୁ ବାଧ କରିଥାଏ ତ କିଏ 'ବାପଲୋ, ଧନଲୋ' କହି ଖୁଆଇବା ପାଇଁ ଚେଷ୍ଟା କରିଥାଏ । କେହି କେହି 'ଲାଞ୍ଚ' ମଧ ଦେଇଥାନ୍ତି ଖାଉ ନଥିବା ପିଲାକୁ । ଖାଇବା ସାରିଦେଲେ କିଏ ଗପ କହିବାର ପ୍ରତିଶ୍ରୁତି ଦେଇଥାଏ ତ ଅନ୍ୟ କିଏ ବାହାରକୁ ବୁଲେଇ ନେବାର ଲୋଭ ଦେଖାଇଥାଏ । ପ୍ରାଣୀ ଜଗତରେ ମଣିଷ ହେଉଛି ଏକମାତ୍ର ପ୍ରାଣୀ ଯିଏ ଖାଇବା ପିଇବାରେ ଯାବତୀୟ ସମସ୍ୟା ସୃଷ୍ଟି କରିଥାଏ । ଅନ୍ୟ କୌଣସି ପଶୁପକ୍ଷୀଙ୍କ କ୍ଷେତ୍ରରେ ଏଭଳି ଆଚରଣ ଦେଖାଯାଏ ନାହିଁ । ସେମାନଙ୍କ ଶାବକମାନେ ଭୋକକୁ ଚାହିଁ ଖିଆପିଆ କରିଥାନ୍ତି । ଏଥିପାଇଁ, ବାପମା'ଙ୍କୁ ହଇରାଣ ହରକତ କରନ୍ତି ନାହିଁ । ଏପରିକି ମଣିଷ ଗୋଷ୍ଠୀରେ ଆଦିବାସୀ ସମ୍ପ୍ରଦାୟ ଓ ଗାଁ ଗହଳିରେ ଅଶିକ୍ଷିତ ପିତାମାତାମାନେ ଏ' ପ୍ରକାର ସମସ୍ୟାର ସମ୍ମୁଖୀନ ହେବା କ୍ୱଚିତ୍ ଦେଖାଯାଇଥାଏ । କାରଣ ଏମାନେ ସନ୍ତାନମାନଙ୍କୁ ବେଶୀ ବେଶୀ ଖାଇବା ପାଇଁ ବାଧ କରନ୍ତି ନାହିଁ କି ଖାଦ୍ୟର ପରିମାଣକୁ ନେଇ ବିଶେଷ ଚିନ୍ତା କରନ୍ତି ନାହିଁ । ଫଳରେ ସେମାନଙ୍କ ସନ୍ତାନମାନେ ସ୍ୱାଭାବିକ ଭାବେ ଖିଆପିଆ କରୁଥିବାର ପରିଲକ୍ଷିତ ହୋଇଥାଏ ।

ଆପଣମାନେ ତ ଭଲଭାବରେ ଜାଣନ୍ତି ଯେ କୌଣସି ପ୍ରକାରର ଚାପ କେବେ ଉପଭୋଗ୍ୟ ହୋଇନଥାଏ । ପିଲାଙ୍କ ଖାଇବା ବିଷୟରେ ମଧ ଏହି ଯୁକ୍ତି ପ୍ରଯୁଜ୍ୟ । ଖାଇବା ନିମନ୍ତେ ସନ୍ତାନକୁ ବାଧ କଲେ, ତାହାଠାରେ ଖାଇବାର ଆନନ୍ଦ ହଜିଯାଏ । ତେଣୁ, ଖାଇବା କ୍ରିୟାକୁ ସେ ଏକ 'ସମସ୍ୟା' ରୂପେ ବିଚାରି ତା' ବିରୋଧରେ ପ୍ରତିକ୍ରିୟା ପ୍ରକାଶ କରେ । ଏ' ବିଷୟରେ ଆପଣ ନିଜ କଥା ଟିକେ ଭାବନ୍ତୁ ତ ! ଆପଣ ଖାଇ

ବସିଥିବା ବେଳେ ପ୍ରତ୍ୟେକ ଥର 'ଆଉ ଟିକିଏ ଖାଅ', 'ଆଉ ଟିକିଏ ଖାଅ' ବୋଲି ଆପଣଙ୍କୁ ବାଧ କଲେ ଆପଣ ଏହି ଅନୁରୋଧକୁ ସାଦରେ ଗ୍ରହଣ କରିନେବେ ନା କ୍ରମେ ଅଧିକରୁ ଅଧିକ ବିରକ୍ତ ହୋଇଉଠିବେ ? ଆପଣଙ୍କ ଇଚ୍ଛା ବିରୋଧରେ ଆପଣଙ୍କ ଖାଇବା ଥାଳିରେ ବେଶୀ ବେଶୀ ଖାଦ୍ୟ ପରଷି ଚାଲିଲେ ଆପଣ ରୁଷ୍ଟ ହୋଇ ଥାଳିରେ ଖାଦ୍ୟ ଛାଡ଼ିଦେଇ ହୁଏତ ଉଠିଯାଇପାରନ୍ତି । ଏପରିକି ବାଧ କରି ଖାଦ୍ୟ ପରଷୁଥିବା ବ୍ୟକ୍ତିଙ୍କ ପ୍ରତି ଆପଣଙ୍କ ମନରେ ବିଦ୍ରୋହ ଭାବ ଜାଗ୍ରତ ହେବା କିଛି ଅସମ୍ଭବ ନୁହେଁ ।

ତେଣୁ, ଗୋଟିଏ କଥା ମନେ ରଖନ୍ତୁ ଯେ ପିଲାଟି ଯେତିକି ଖାଉଛି ତାକୁ ସେତିକି ଖାଇବାକୁ ଦିଅନ୍ତୁ । ତାକୁ 'ଜଗିବାର' ପନ୍ଥା ପରିହାର କରନ୍ତୁ । ଏହା ଅବଶ୍ୟ ଆପଣଙ୍କ ପାଇଁ ଯନ୍ତ୍ରଣାଦାୟକ । କାରଣ ପ୍ରତ୍ୟେକ ପିତାମାତାଙ୍କ ପାଇଁ ସନ୍ତାନଟି ହେଉଛି ଏକ ବିଶିଷ୍ଟ ଅତିଥି ! ସୁତରାଂ, ତାକୁ ପେଟ ଭରି ଖୁଆଇବା ଓ ସେ ଖାଇବା ବେଳେ ତା' ପାଖେ ପାଖେ ରହି 'ଆଉ ଟିକିଏ ଖାଆ', 'ଆଉ ଟିକିଏ ଖାଆ' ବୋଲି ବାଧ କରିବାରେ ଅସ୍ୱାଭାବିକତା ନାହିଁ । ତା' ଉପରେ ସ୍ନେହଶ୍ରଦ୍ଧା ଅଜାଡ଼ି ଦେବାରେ କାର୍ପଣ୍ୟ କରନ୍ତୁ ନାହିଁ ସିନା, ହେଲେ ତା' ଥାଳିରେ ଖାଦ୍ୟ ଅଜାଡ଼ି ତାକୁ ଖାଇବା ନିମନ୍ତେ ବାଧ କରିବା ଆଦୌ ଉଚିତ ନୁହେଁ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ସନ୍ତାନଟି ଭଲ ଭାବରେ ଖିଆପିଆ ନକଲେ ପିତାମାତାଙ୍କୁ ଶାନ୍ତି ମିଳେନାହିଁ । ସେମାନେ ଚିନ୍ତାରେ ଘାରି ହେଉଥାନ୍ତି ।

ଏ' କ୍ଷେତ୍ରରେ ସେମାନଙ୍କର ପ୍ରଥମ ଅନୁଭୂତି ଉତ୍କଣ୍ଠା ରୂପେ ପ୍ରକାଶ ପାଏ । ଭଲଭାବରେ ଖିଆପିଆ ନ କଲେ ପିଲାଟି ଦୁର୍ବଳ ହୋଇପଡ଼ି ନାନା ରୋଗର ଶିକାର ହୋଇପଡ଼ିବ ବୋଲି ସେମାନେ ଧରିନିଅନ୍ତି ଓ ଯେକୌଣସି ପ୍ରକାରେ ତାକୁ ଖୁଆଇବା ନିମନ୍ତେ ଚେଷ୍ଟା ଚଳେଇଥାଆନ୍ତି । ସେମାନଙ୍କର ଏହି 'ମହତ୍ ଉଦ୍ୟମ' କିନ୍ତୁ ପିଲାଟିର ଭୋକ ମାରିଦେବାରେ ବେଶୀ ଭୂମିକା ଗ୍ରହଣ କରିଥାଏ ।

ଦ୍ୱିତୀୟରେ, ସେମାନଙ୍କୁ କବଳିତ କରିପକାଏ ଏକ ଅପରାଧବୋଧ । ସେମାନେ ଯେ ପିଲାଟିକୁ ପେଟ ପୂରେଇ ଖୁଆଇ ପାରିଲେନି, ଏହା ସେମାନଙ୍କର ଏକ ବିଫଳତା ବୋଲି ଧରିନିଅନ୍ତି ସେମାନେ । ସେମାନଙ୍କର ଏହି ବିଫଳତାକୁ ଆତ୍ମୀୟ ଓ ବନ୍ଧୁମାନେ ଭଲ ଦୃଷ୍ଟିରେ ନେବେ ନାହିଁ ବୋଲି ସେମାନଙ୍କ ମନରେ ଆଶଙ୍କା ଜାଗେ । ହେଲେ, ଏପରି ଆଶଙ୍କା ସମ୍ପୂର୍ଣ୍ଣ ଅମୂଳକ । କାରଣ, ପ୍ରତ୍ୟେକ ପିତାମାତାଙ୍କ ପାଇଁ ସନ୍ତାନ ଭଲ ଭାବରେ ଖିଆପିଆ ନକରିବା ଏକ ସାଧାରଣ ଘଟଣା । ତେଣୁ, ସେମାନଙ୍କ ପିଲାମାନଙ୍କ

କ୍ଷେତ୍ରରେ ମଧ୍ୟ ଏହା ଘଟିଥିବାରୁ ସେମାନେ ଆପଣଙ୍କ ତଥାକଥିତ ବିଫଳତାକୁ ବିଫଳତା ରୂପେ ଆଦୌ ଗ୍ରହଣ କରନ୍ତି ନାହିଁ । ବରଂ, ଏହା ଏକ ସ୍ୱାଭାବିକ ଘଟଣା ବୋଲି ଧରିନେଇ ପିତାମାତାମାନେ ନିଶ୍ଚିନ୍ତ ରହିବା ଉଚିତ ।

ତୃତୀୟରେ, ଭଲ ଖିଆପିଆ କରୁନଥିବା କେତେକ ପିଲା ପ୍ରାୟତଃ ପତଳା । ଅନ୍ୟ ପିଲାମାନଙ୍କ ତୁଳନାରେ ନିଜ ପିଲାଟି ପତଳା ହୋଇଥିବାରୁ ମାଆମାନେ ଏଥିପାଇଁ ଲଜ୍ଜା ଅନୁଭବ କରିଥାଆନ୍ତି ଓ ପିଲାକୁ ମୋଟା କରେଇବା ଲକ୍ଷ୍ୟରେ ବେଶୀ ବେଶୀ ଖୁଆଇବା ନିମନ୍ତେ ଉଦ୍ୟମୀ ହୋଇଥାଆନ୍ତି ।

ଚତୁର୍ଥରେ, ପିଲାଟି ଭଲ ଖିଆପିଆ ନକଲେ ପିତାମାତାଙ୍କଠାରେ ପ୍ରକାଶ ପାଏ ଏକ ନୈରାଶ୍ୟଭାବ ଓ ଅସ୍ୱସ୍ତି । ସେମାନେ ଯେତେ ପ୍ରକାରର ଚେଷ୍ଟା କଲେ ସୁଦ୍ଧା ସନ୍ତାନର ଖିଆପିଆରେ ବିଶେଷ ଉନ୍ନତି ପରିଲକ୍ଷିତ ହେଉ ନଥିବାରୁ ସେମାନେ ନିଜକୁ ବଡ଼ ଅସହାୟ ମନେ କରିଥାନ୍ତି । ସେମାନଙ୍କର ସମସ୍ତ ଚେଷ୍ଟାକୁ ବ୍ୟର୍ଥ କରିଦେବା ନିମନ୍ତେ ସନ୍ତାନଟି ସତେ ଯେପରି ପ୍ରତିଶ୍ରୁତିବଦ୍ଧ, ଏହି ପ୍ରକାରର ଆଚରଣ ଦେଖାଦେଇଥାଏ କେତେକଙ୍କଠାରେ ।

ବିଶେଷ କୌଣସି ସମସ୍ୟା ସୃଷ୍ଟି ନକରି ସନ୍ତାନଟି ଭଲ ଭାବରେ ଖିଆପିଆ କଲେ ଆଶ୍ୱସ୍ତ ହୋଇଉଠନ୍ତି ପିତାମାତା । ସେ ଯାହାହେଉନା କାହିଁକି, ଖାଇବା ପିଇବାରେ ସମସ୍ୟା ସୃଷ୍ଟି କରୁଥିବା ପିଲାଙ୍କୁ ବାଟକୁ ଆଣିବା ନିମନ୍ତେ ଆଗେ ପିତାମାତାଙ୍କର 'ଚିକିତ୍ସା' ଲୋଡ଼ା ! ସନ୍ତାନର ଖିଆପିଆ ବିଷୟରେ ପିତାମାତା ନିଜର ମନୋଭାବରେ ପରିବର୍ତ୍ତନ ଆଣିବା ହିଁ ପ୍ରଥମ ତଥା ପ୍ରଧାନ ଆବଶ୍ୟକତା । କାରଣ, ଏହି ସମସ୍ୟାର ବୀଜ ନିହିତ ଥାଏ ପିତାମାତାଙ୍କ ମନ ଭିତରେ । ଏଥିପାଇଁ ପିଲାଙ୍କୁ ଦାୟୀ କରିବା ଠିକ୍ ନୁହେଁ । ତେଣୁ, ପିତାମାତାମାନେ ନିମ୍ନଲିଖିତ କେତୋଟି ବିଷୟ ପ୍ରତି ଯତ୍ନଶୀଳ ହେବା ଉଚିତ–

୧. ସେମାନେ ନିଶ୍ଚିତ ରହିବା ଦରକାର ଯେ ଏହା କେବଳ କାଁଭାଁ ପିତାମାତାଙ୍କ ସମସ୍ୟା ନୁହେଁ, ଏହା ଏତେ ସାଧାରଣ ଯେ ପ୍ରାୟତଃ ପ୍ରତ୍ୟେକ ପରିବାରରେ ପିଲାମାନେ ଖିଆପିଆ ବିଷୟରେ କୌଣସି ନା କୌଣସି ସମସ୍ୟା ସୃଷ୍ଟି କରିଥାନ୍ତି । ସୁତରାଂ, ଏହା କୌଣସି ଏକ ନିର୍ଦ୍ଦିଷ୍ଟ ପିତାମାତାଙ୍କ ମୁଣ୍ଡବ୍ୟଥା ନୁହେଁ; ସେମାନଙ୍କ ସାଙ୍ଗରେ ସାମିଲ୍ ହୋଇରହିଛନ୍ତି ଆହୁରି ଅନେକ ପିତାମାତା ।

୨. ଏହା ମଧ୍ୟ ଲକ୍ଷ୍ୟ କରିବାର କଥା ଯେ ପିତାମାତାମାନେ ବାଧା ନଦେଲେ, ପିଲାଟି ନିଜ ଘରେ ଭଲଭାବରେ ଖିଆପିଆ ନକରୁଥିଲେ ମଧ୍ୟ ଅନ୍ୟମାନଙ୍କ ଘରେ

ଆଗ୍ରହରେ ଖିଆପିଆ କରିଥାଏ । ତେବେ, କଅଣ ଏହାର କାରଣ ? ଏହାର କାରଣ ହେଲା, ଅନ୍ୟମାନଙ୍କ ଘରେ ପିଲାର ଖିଆପିଆ ପ୍ରତି କେହି କଡ଼ା ନଜର ରଖିନଥାଏ । ତା'ର ଖିଆପିଆ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିବା ଯେ ତା'ର ସହ୍ୟ ହୁଏନାହିଁ, ଏହି ଉଦାହରଣଟିରୁ କ'ଣ ପ୍ରମାଣ ମିଳୁନାହିଁ ? ତାହାଛଡ଼ା, ଏ' ତ ମନଗଢ଼ା କାହାଣୀ ନୁହେଁ, ପ୍ରତ୍ୟେକ ପିତାମାତାଙ୍କର ନିଜ ସନ୍ତାନର ଖିଆପିଆ ସମ୍ପର୍କରେ ଏ' ପ୍ରକାରର ଅନୁଭୂତି ନିଶ୍ଚୟ ରହିଥିବ । ଏପରିକି, କେହି କେହି ଏଥିପାଇଁ ଅସ୍ୱସ୍ତି ଅନୁଭବ କରିଥିବେ ମଧ୍ୟ ।

୩. ପିତାମାତାମାନେ ମନେ ରଖିବା ଉଚିତ ଯେ ସବୁ ପିଲାଙ୍କଠାରେ ଥାଏ ଏକ ବିଶେଷ ଧରଣର ସହଜାତ ପ୍ରବୃତ୍ତି । ସେମାନଙ୍କ ବୃଦ୍ଧି ଓ ବିକାଶ ପାଇଁ କେତେ ଖାଇଲେ ଚଳିବ ତାହା ସେମାନଙ୍କ ଶରୀର ନିଜ ଆଡୁ ସ୍ଥିର କରି ନେଇଥାଏ । ତେଣୁ, ପିତାମାତାମାନେ ଏହି ପ୍ରାକୃତିକ ଶାରୀରିକ ପ୍ରକ୍ରିୟାରେ ହସ୍ତକ୍ଷେପ କରିବା ସ୍ପୃହଣୀୟ ନୁହେଁ । ପିତାମାତାମାନେ ଜାଣି ରଖିବା ଦରକାର ଏବଂ ଭଲଭାବରେ ଜାଣିରଖିବା ଦରକାର ଯେ ସନ୍ତାନ ପାଇଁ ଖାଦ୍ୟର ଅଭାବ ପଡୁନଥିଲେ କୌଣସି ପିଲା କେବେ ବି ନିଜକୁ କ୍ଷୁଧାର୍ତ୍ତ ରଖି ନଥାଏ ।

୪. ଖାଇବା ପିଇବା ସମ୍ପର୍କରେ ପିଲାକୁ ବାଧ୍ୟ କଲେ କି ଜୋର୍ ଜବରଦସ୍ତ କଲେ ସେ ନିଜକୁ ହତାଶ ଅନୁଭବ କରିବା ଏକ ସ୍ୱାଭାବିକ ପ୍ରକୃତି । ତାହାଛଡ଼ା କୌଣସି ଖାଦ୍ୟ ଖୁଆଇବା ପାଇଁ ପିତାମାତାମାନେ ଜିଦ୍ କଲେ, ସେହି ନିର୍ଦ୍ଦିଷ୍ଟ ଖାଦ୍ୟଟି ପ୍ରତି ପିଲା ମନରେ ବିରକ୍ତିଜାତ ହେବା ଏକ ସ୍ୱାଭାବିକ ପ୍ରବୃତ୍ତି । ଏ' କ୍ଷେତ୍ରରେ ନିର୍ଦ୍ଦିଷ୍ଟ ଖାଦ୍ୟଟିକୁ ଦାୟୀ ନକରି ପିତାମାତାଙ୍କ ଜିଦ୍‌କୁ ଦାୟୀ କରିବା ହିଁ ଠିକ୍ ।

୫. କିନ୍ତୁ ପ୍ରଶ୍ନ ଉଠିବା ସ୍ୱାଭାବିକ ଯେ ସନ୍ତାନକୁ ଖୁଆଇବାରେ ପିତାମାତା ଜିଦ୍ ଧରିଥାନ୍ତି କାହିଁକି ? ନିଜ ଆଡୁ ଏଭଳି ଏକ ବିରକ୍ତିକର ପରିସ୍ଥିତି କାହିଁକି ସୃଷ୍ଟି କରିଥାନ୍ତି ? ପୁଣି ପ୍ରାୟ ପ୍ରତ୍ୟେକ ପିତାମାତାଙ୍କ କ୍ଷେତ୍ରରେ କାହିଁକି ଅବା ଏ' ପ୍ରକାରର ସମାନ ଆଚରଣ ପ୍ରକାଶ ପାଇଥାଏ ଓ ତାହା ସାଧାରଣତଃ ରୁଟିନ୍ ପାଲଟିଯାଏ ? ଏହାର କାରଣ ହେଲା, ବାଧ୍ୟ କରି ଖୁଆଇବା ଦ୍ୱାରା ସେମାନଙ୍କୁ ସାମୟିକ ଲାଭ ମିଳିଥାଏ । ବାଧ୍ୟ କରିବା, ତୋଷାମଦ୍ କରିବା କି ଲାଞ୍ଚ ଯାଚିବା କିମ୍ବା ଧମକଚମକ ଦେବା ଇତ୍ୟାଦି ଫଳରେ କେତେକ ପିଲା ସାମାନ୍ୟ ଅଧିକ ପରିମାଣର ଖାଦ୍ୟ ଖାଉଥିବାର ପରିଲକ୍ଷିତ ହୋଇଥାଏ । ତେଣୁ, ପିତାମାତାମାନେ ଧରି ନିଅନ୍ତି ଯେ ସନ୍ତାନଟିକୁ ଉପରୋକ୍ତ କୌଣସି ପ୍ରକାରର ଆଚରଣ ଦେଖେଇଲେ ଏହାର ପ୍ରଭାବ ବେଶ୍ ଅନୁକୂଳ । ଫଳରେ ସେମାନେ ପିଲାର ଖାଇବା

ସମୟରେ ଏହି ପ୍ରକାର ଆଚରଣ ଅବଲମ୍ବନ କରିବା ନିମନ୍ତେ ଉତ୍ସାହିତ ହୋଇ ତାକୁ ଦୋହରେଇ ଚାଲନ୍ତି । ଏହି ଆଚରଣକୁ ପରିବର୍ତ୍ତନ କରିବା ପାଇଁ ପିତାମାତାଙ୍କୁ ଯେତେ ବୁଝେଇଲେ ଓ ଖାଇବା ବିଷୟରେ ପିଲା ଉପରେ କୌଣସି 'ଚାପ' ନ ପକେଇବା ପାଇଁ ଯେତେ ସତର୍କ କଲେ ମଧ ସେମାନେ ନିଜର ସେହି ଚିରାଚରିତ ଅଭ୍ୟାସକୁ ଜମା ଛାଡ଼ିପାରନ୍ତି ନାହିଁ । ହୁଏତ ସେମାନେ ଭାବନ୍ତି ଯେ 'ପିଲାଟି ତ ସହଜେ କମ୍ ପରିମାଣର ଖାଦ୍ୟ ଖାଉଛି ତାକୁ ଖୁଆଇବାରେ ଉପରୋକ୍ତ ପ୍ରକାରେ ପଦକ୍ଷେପ ନ ନେଲେ ତା'ର ଖାଇବା ପରିମାଣ ଆହୁରି କମିଯାଇ ସେ ପ୍ରାୟତଃ ଉପାସିଆ ରହିଯିବ । ବରଂ, ବାଧ କରି ଧମକାଧମକି କଲେ ସେ ହୁଏତ ଟିକିଏ ଅଧିକ ଖାଇପାରେ ।'

ପିତାମାତାଙ୍କର ଉଦ୍ବେଗ ସହଜେ ଅନୁମେୟ । ଏହା ସେମାନଙ୍କ ପକ୍ଷେ ସ୍ୱାଭାବିକ ମଧ । କିନ୍ତୁ ସେମାନେ ବୁଝିବା ଦରକାର ଯେ ବାଧବାଧକତା ଦ୍ୱାରା ଚାମଚେ ଦୁଇ ଚାମଚ ଅଧିକା ଖାଇଦେଲେ ସନ୍ତାନର ସ୍ୱାସ୍ଥ୍ୟକୁ ଯେ ତାହା ଆଖିଦୃଶିଆ ଭାବରେ ସମୃଦ୍ଧ କରିବ, ଏହା ସମ୍ଭବ ନୁହେଁ । ବରଂ, ଏହି ବାଧ କରି ଖୁଆଇବା ଅଳ୍ପ କେଇଟି ଦିନ ପାଇଁ ମାତ୍ର କାମ କରିଥାଏ ସିନା, ଏହାର କୌଣସି ସ୍ଥାୟୀ ପ୍ରଭାବ ନାହିଁ । କାରଣ, ପିଲାଟି କ୍ରମେ ବିଦ୍ରୋହୀ ହୋଇଉଠେ ଓ ମା'ର ଧମକଚମକକୁ ଆଦୌ ଖାତିର କରେନାହିଁ । ସେ ହୁଏତ ଜଣେଇଦିଏ ଯେ ଯେତେ ଯାହା କଲେ ମଧ ସେ ଅଧିକ ଖାଇବାର ପ୍ରଶ୍ନ ଉଠୁନାହିଁ ।

ତେଣୁ, ପିଲାକୁ ଖୁଆଇବା ପାଇଁ ଯେକୌଣସି ପ୍ରକାରର ଚାପ ବିଫଳତାରେ ପର୍ଯ୍ୟବେସିତ ହେବାର ସମ୍ଭାବନା ବେଶୀ । ବରଂ, ଏପରି କରିବା ଦ୍ୱାରା ସମସ୍ୟା ହ୍ରାସ ପାଇବା ପରିବର୍ତ୍ତେ ବୃଦ୍ଧି ପାଇଥାଏ । ଏହା କ୍ରମେ ଦୀର୍ଘକାଳିକ ସମସ୍ୟାରେ ପରିଣତ ହୋଇଯାଏ । ଫଳରେ ପିଲାର ଭୋକ ସ୍ଥାୟୀ ଭାବରେ ହ୍ରାସ ଘଟି ସେ ଖାଇବାର ମଜା ଅନୁଭବ କରିପାରେ ନାହିଁ । ବାପମା' ମଧ ମାନସିକ ଯନ୍ତ୍ରଣାରେ ଘାରି ହୋଇ ନିଜକୁ ଅସହାୟ ମନେ କରିଥାନ୍ତି ଓ ନୈରାଶ୍ୟ ଜର୍ଜରିତ ହୋଇ ଦିନ କଟେଇବା ନିମନ୍ତେ ବାଧ ହୋଇଥାନ୍ତି ।

**ପ୍ର : ତେଣୁ, କଅଣ ଏହାର ସମାଧାନ ପନ୍ଥା ?**

**ଉ :** ପ୍ରଥମ କଥା ହେଲା ଯେ ପିତାମାତାଙ୍କୁ ନିଜ ଆଚରଣର ପରିବର୍ତ୍ତନ କରିବାକୁ ପଡ଼ିବ । ପିଲାଠାରେ ଖାଇବା ପିଇବାରେ ସମସ୍ୟା ଉପୁଜିଲେ ତାକୁ ବାଟକୁ ଆଣିବା ପାଇଁ ସମୟ ଦରକାର ଓ ଦରକାର ଅସୀମ ଧୈର୍ଯ୍ୟ । ତାହାଛଡ଼ା, ମାନସିକ ଦୃଢ଼ତାର ମଧ ଆବଶ୍ୟକତା ରହିଛି । ପିଲାର ଖାଇବା ପିଇବା ଦିଗରେ ଅସ୍ୱାଭାବିକ ଚାପ ପ୍ରୟୋଗ

ନକରି କ୍ରମେ ଏଥିପ୍ରତି ଗୁରୁତ୍ୱ ନ ଦେବାକୁ ଶିଖିବା ଦରକାର । ତା'ର ଖାଇବା ପିଇବା ପ୍ରତି ଅସ୍ୱାଭାବିକ ଧ୍ୟାନ ନଦେଲେ ସେ କ୍ରମେ ନିଜେ ନିଜେ ଖାଇବା ଆରମ୍ଭ କରିବା ସଙ୍ଗେ ସଙ୍ଗେ ଖାଇବାରେ ତୃପ୍ତି ଅନୁଭବ କରିବ ।

ପିଲାର ଖାଦ୍ୟଗ୍ରହଣ ସ୍ୱାଭାବିକ ଅବସ୍ଥାକୁ ଆସିବା ନିମନ୍ତେ କେଇ ସପ୍ତାହ ଲାଗି ଯାଇପାରେ । ଏହି ସମୟ ଭିତରେ ତା'ର ଖାଇବାକୁ ନେଇ ଅଯଥା ଉତ୍କଣ୍ଠିତ ରହିବା ଉଚିତ ନୁହେଁ କି ଧୈର୍ଯ୍ୟହରା ହୋଇପଡ଼ିବା ବାଞ୍ଛନୀୟ ନୁହେଁ । କହିବାକୁ ଗଲେ ଧୈର୍ଯ୍ୟ ଓ ଅଧ୍ୟବସାୟ ହିଁ ସବୁ ସମସ୍ୟାର ସମାଧାନ ଆଣିଦେବ । ଧୈର୍ଯ୍ୟହରା ହୋଇ ପୁଣି ସେହି ପୁରୁଣା ପଦ୍ଧତି ଅବଲମ୍ବନ କରିବାରୁ କ୍ଷାନ୍ତ ରହିବା ହିଁ ନିରାପଦ ।

ପିଲା ସାମନାରେ ଖାଦ୍ୟ ରଖିଦେଇ ସେ ବିଷୟରେ ତାକୁ କିଛି କହନ୍ତୁନି କି ତା'ର ଖାଇବା ବିଷୟରେ ଆଦୌ ଚିନ୍ତା ବି କରନ୍ତୁନି । ସେ ଅଧିକ ଖାଦ୍ୟ ମାଗିଲେ ଦେବେ, ନୋହିଲେ ନାହିଁ । ସେ କେତେ ଖାଇଲା ନ ଖାଇଲା ସେଥିପ୍ରତି ଧ୍ୟାନ ନ ଦେଇ ଅଧଘଣ୍ଟାକ ପରେ ତା' ସାମ୍ନାରୁ ଖାଦ୍ୟ ବଢ଼ା ହୋଇଥିବା ଥାଳିକୁ ଉଠେଇ ନେବେ । ତା'ର ଖାଇବା ନଖାଇବା ପ୍ରତି କୌଣସି ପ୍ରତିକ୍ରିୟା ପ୍ରକାଶ କରିବେନି ।

ତେବେ, ପିଲାଟି ଯେଉଁ ଖାଦ୍ୟ ଖାଇବାକୁ ବେଶୀ ଭଲ ପାଇଥାଏ, ସେହି ପ୍ରକାର ଖାଦ୍ୟ ଖୁଆଇବା ପ୍ରତି ଅଗ୍ରାଧିକାର ଦେବେ । ଧୈର୍ଯ୍ୟ ଧରି ନିୟମିତ ଭାବରେ ଏହିପରି କରି ଚାଲିଲେ ସୁଫଳ ମିଳିବା ନିଶ୍ଚିତ । ପିଲାଠାରୁ ଚାପ ଅପସାରିତ ହୋଇଗଲେ ସେ ନିଜକୁ ଆଶ୍ୱସ୍ତ ମନେ କରିବ, ତା'ର ଭୋକ ଫେରି ଆସିବ ଓ ସେ ସ୍ୱାଭାବିକ ଭାବରେ ଖାଇବା ପିଇବା ଆରମ୍ଭ କରିଦେବ ।

ମନେ ରଖିଥାନ୍ତୁ – 'ପିଲାକୁ ବେଶୀ ଖୁଆଇବା ପାଇଁ ଚେଷ୍ଟା କଲେ, ସେ ବେଶୀ ଖାଇ ନଥାଏ । ତାକୁ ବେଶୀ ଖୁଆଇବା ନିମନ୍ତେ ଚେଷ୍ଟା ନକଲେ ସେ ବେଶୀ ଖାଇଥାଏ ।'



# ପିଲାମାନଙ୍କର ଖାଇବା ପିଇବା ସମସ୍ୟା

ପ୍ର : ମୋ' ଝିଅ କ୍ଷୀର ପିଉନି କି କୌଣସି ପରିବାପତ୍ର ଖାଉନି । ଏଥିପାଇଁ ମୁଁ କି' ପ୍ରତିକାର ବ୍ୟବସ୍ଥା କରିବି ?

ଉ : ଏଥିରେ ଅସ୍ୱାଭାବିକତା ଅବା କଅଣ ଅଛି ? ଆପଣଙ୍କୁ କ'ଣ ସବୁ ପ୍ରକାରର ଖାଦ୍ୟ ଭଲ ଲାଗେ ? ବୟସ୍କ ବ୍ୟକ୍ତିମାନଙ୍କ ପାଇଁ ଯଦି ଖାଦ୍ୟ ବିଷୟରେ ରୁଚି ଅରୁଚି ଅଛି, ସେହି ପ୍ରକାରର ରୁଚି ପିଲାମାନଙ୍କଠାରେ ଅବା ପରିଲକ୍ଷିତ ହେବନାହିଁ କାହିଁକି ? ତେଣୁ, କେଉଁ ପିଲା କେଉଁ କେଉଁ ଖାଦ୍ୟ ଖାଇବାରେ ଆଗ୍ରହ ନ ଦେଖେଇଲେ ସେଥିରେ ବ୍ୟସ୍ତତା ପ୍ରକାଶ କରିବାର କୌଣସି କାରଣ ନାହିଁ । ପିଲାର ବୟସ ବଢ଼ିବା ସଙ୍ଗେ ସଙ୍ଗେ କ୍ରମେ ସେ ସୁଷମ ଖାଦ୍ୟ ଖାଇବା ଅଭ୍ୟାସରେ ପଡ଼ିଯାଏ । କୌଣସି ଗୋଟିଏ ଅଧେ ପ୍ରକାରର ଖାଦ୍ୟ ନ ଖାଇଲେ ଯେ ତା'ର ଖାଦ୍ୟ ସୁଷମ ଖାଦ୍ୟ ରୂପେ ଗଣା ହେବ ନାହିଁ, ଏପରି ଭାବିନେବା ଭୁଲ୍ । ବରଂ, ସମସ୍ୟାଟି ରହିଛି ଅନ୍ୟ ସ୍ଥାନରେ । ବହୁପିଲା ଚକୋଲେଟ୍, ଟଫି, ଆଇସ୍‌କ୍ରିମ୍, ମିଠେଇ ଆଦି ଖାଇ ପେଟ ପୂରେଇ ଦିଅନ୍ତି । ତେଣୁ, ଘରେ ନିୟମିତ ରନ୍ଧା ହେଉଥିବା ଖାଦ୍ୟ ଖାଇବା ପ୍ରତି ସେମାନଙ୍କର ଆଗ୍ରହ ମରିଯାଏ । ଏ' କ୍ଷେତ୍ରରେ ଆପଣଙ୍କୁ ଦୃଢ଼ମନା ହୋଇ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ପଡ଼ିବ । ଧୀରେ ଧୀରେ ଓ ଅତି ଚତୁରତାର ସହ ସନ୍ତାନକୁ ଉପରୋକ୍ତ ପ୍ରକାରର ଖାଦ୍ୟଗୁଡ଼ିକଠାରୁ ଦୂରେଇ ରଖି ତା'ର ମନପସନ୍ଦିଆ ଗୋଟିଏ ଦୁଇଟି ପ୍ରକାରର ଖାଦ୍ୟ ଖାଇବାକୁ ଦେବେ । ସେ ତାକୁ ଗ୍ରହଣ କରିନେବା ଆରମ୍ଭ କରିଦେଲେ କ୍ରମେ ଅନ୍ୟ ପ୍ରକାରର ଖାଦ୍ୟ ଗୋଟିକ ପରେ ଗୋଟିଏ ଭାବରେ ଖୁଆଇ ଚାଲିବେ । ଏଥିରେ ଜୋର୍‌ଜବରଦସ୍ତି ନକରି ଯେତେଦୂର ସମ୍ଭବ ସ୍ୱାଭାବିକତା ଅବଲମ୍ବନ କରିବେ । ପିଲାର ଖାଦ୍ୟ ନିର୍ବାଚନରେ ରୁଟିନ୍‌ବନ୍ଧା ନିୟମ ଅବଲମ୍ବନ କରିବେ ନାହିଁ ।

ପ୍ର : ମୋ ଝିଅକୁ ଆସି ତିନି ବର୍ଷ ବୟସ ହେଲାଣି । କିନ୍ତୁ, ଏ' ପର୍ଯ୍ୟନ୍ତ ସେ ନିଜ ହାତରେ ଖାଇ ଶିଖିଲା ନାହିଁ । ମୁଁ ଖୁଆଇ ନଦେଲେ ସେ ନିଜେ ନିଜେ ଖାଇବାର ନାଁ ବି ଧରୁନି । ମୁଁ ଏବେ କି ଉପାୟ କରିବି ?

ଉ : ହଁ, ଏହା ଏକ ଅତି ସାଧାରଣ ସମସ୍ୟା । ଏଥିପାଇଁ ପିଲାକୁ ଦୋଷ ଦିଅନ୍ତୁନି, ବରଂ ଦୋଷକୁ ନିଜ ମୁଣ୍ଡକୁ ନିଅନ୍ତୁ । କାରଣ, ସାଧାରଣତଃ ମାଆମାନେ ନିଜ ସନ୍ତାନକୁ ଖୁଆଇବାର ଦାୟିତ୍ୱ ନିଜେ ନେଇ ଏହା ସେମାନଙ୍କର ପରମ କର୍ତ୍ତବ୍ୟ ବୋଲି ମନେ କରିଥାନ୍ତି । ଏଥିରୁ ସେମାନେ ବେଶ୍ ଆନନ୍ଦ ପାଇଥାନ୍ତି ମଧ୍ୟ । ତେବେ, କାରଣଟା ଯାହା ହେଉନା କାହିଁକି, ମାଆଟି ବିଚରା ଖାଦ୍ୟ ଗିନା ଓ ଚାମଚ ଧରି ପିଲା ପଛେ ପଛେ ଧାଇଁଥାଏ ଓ କେତେବେଳେ କଅଁଳ କଥା କହି, କେତେବେଳେ ବୁଝେଇ ସୁଝେଇ କି ଧମକ ଚମକ ଦେଇ ତା' ପାଟିରେ ଖାଦ୍ୟ ଗୁଞ୍ଜିଦିଏ ।

ତେବେ, ପିଲାକୁ ଏକ ବର୍ଷ ବୟସ ହେବା ପର୍ଯ୍ୟନ୍ତ ତାକୁ ଖୁଆଇ ଦେବାରେ ଯଥାର୍ଥତା ରହିଛି ସିନା, କିନ୍ତୁ ତାକୁ ବର୍ଷେ ପୂରିଗଲେ ସେ ଯେପରି ନିଜ ହାତରେ ଖାଇ ପାରିବ, ଏହା ଶିଖେଇବା ମାଆଙ୍କର କର୍ତ୍ତବ୍ୟ । ପରିବାରର ବୟସ୍କ ବ୍ୟକ୍ତିମାନେ ଖାଇ ବସିଲାବେଳେ ପିଲାପାଇଁ ମଧ୍ୟ ଖାଦ୍ୟ ବାଢ଼ିବା ଉଚିତ ଓ ନିଜ ହାତରେ ଖାଇବା ନିମନ୍ତେ ତାକୁ ଉତ୍ସାହିତ କରିବା ଉଚିତ । ପ୍ରଥମେ ପ୍ରଥମେ ସେ ଠିକ୍ ଭାବରେ ଖାଇପାରିବ ନାହିଁ । ଖାଇବା ବେଳେ ଖାଦ୍ୟପଦାର୍ଥ ତା'ର ପାଟିକୁ ନଯାଇ ତଳେ ପଡ଼ିଯିବାରେ ଅସ୍ୱାଭାବିକତା ନାହିଁ । ତା'ର ମୁହଁସାରା ଖାଦ୍ୟଦ୍ରବ୍ୟ ସାଲୁବାଲୁ ହୋଇ ବୋଳି ହୋଇଯିବା ମଧ୍ୟ ସ୍ୱାଭାବିକ । ଏହାସତ୍ତ୍ୱେ ସେ ନିଜେ ନିଜେ ଖାଇବାର କଳାକୁ ଉପଭୋଗ କରିବା ପାଇଁ ତାକୁ ଛାଡିଦିଅନ୍ତୁ । ଖାଦ୍ୟକୁ ପାଟି ଭିତରକୁ ନେବାର ପଦ୍ଧତିକୁ ସେ ନିଜେ ନିଜେ ଅଭ୍ୟାସ କରି ଶିଖୁ । ଆପଣ ତାକୁ ଖୁଆଇ ଚାଲିଲେ, ଏହା କ୍ରମେ ତା'ର ଅଭ୍ୟାସରେ ପଡ଼ିଯାଏ ଓ ଖୁଆଇ ଦେବା ନିମନ୍ତେ ସେ ଆପଣଙ୍କ ଉପରେ ନିର୍ଭର କରିବାକୁ ବାଧ ହୋଇଥାଏ । ଏପରିକି ତାକୁ ଖୁଆଇଦେବା ତା'ର ଅଧିକାର ବୋଲି ଧରିନେଇ ସେ ନିଜ ହାତରେ ଖାଇବାର ନାଁ ଧରେନାହିଁ । ଆପଣ ମଧ୍ୟ ଅଭ୍ୟାସବଶତଃ ତାକୁ ଖୁଆଇ ଚାଲିବାରେ ହେଳା କରନ୍ତିନି । ଫଳରେ ଖାଦ୍ୟ ଥାଳି ଧରି ତା' ପଛେ ପଛେ ଗୋଡ଼େଇବା ବ୍ୟତୀତ ଆପଣଙ୍କର ଅନ୍ୟ କୌଣସି ଚାରା ନଥାଏ ।

ପିଲାକୁ ଖୁଆଇଦେବା ପିଲା ପ୍ରତି ବାପମା'ଙ୍କ ସ୍ନେହଶ୍ରଦ୍ଧାର ନିଦର୍ଶନ ଓ ଏହା ଖୁବ୍ ଗୁରୁତ୍ୱପୂର୍ଣ୍ଣ ମଧ୍ୟ । ତେଣୁ, ତାକୁ ଖୁଆଇବାର ଅଭ୍ୟାସକୁ ହଠାତ୍ ବନ୍ଦ କରି ଦେବେନି । ଏପରି କଲେ ମାନସିକ ସ୍ତରରେ ସନ୍ତାନଟି ଖୁବ୍ ଆଘାତ ପାଇଥାଏ । ଏହି କାରଣରୁ ତାକୁ ନିଜେ ନିଜେ ଖାଇ ଶିଖିବା ପ୍ରତି ଆପଣ ବେଶ୍ ସାବଧାନତା ଅବଲମ୍ବନ କରିବେ । ତାକୁ ନିଜ ହାତରେ ଖୁଆଇବେନି ବୋଲି ଆପଣ ଦୃଢ ରହିବା ସଙ୍ଗେ ସଙ୍ଗେ ସେ ଯେପରି ନିଜେ ନିଜେ ଖାଇ ଶିଖିବାର ଅଭ୍ୟାସ କରେ, ସେ ଦିଗରେ ମଧ୍ୟ ଦୃଢ ରହିବେ । କୌଣସି ପିଲା ଜାଣିଶୁଣି ଉପବାସ ରହିବା ନିମନ୍ତେ ଚାହିଁ ନଥାଏ । ହୁଏତ ଦିନେ ଦୁଇଦିନ ଯାଏ

ସେ ନଖାଇ ଅସନ୍ତୁଷ୍ଟ ରହିପାରେ, ରୁଷିପାରେ । ଏହା ବୋଲି ଆପଣ ତା' ଉପରେ ନିଜର ସ୍ନେହଶ୍ରଦ୍ଧା ପ୍ରଦର୍ଶନ କମ୍ କରିବେନି କି ରାଗିବା କାରଣରୁ ତାକୁ ଖୁଆଇ ଦେଉନାହାନ୍ତି ବୋଲି ତା' ମନରେ ଧାରଣା ସୃଷ୍ଟି ହେବାକୁ ଦେବେନି ।

ତା' ସାମ୍‌ନାରେ ଖାଦ୍ୟ ବାଢ଼ି ଦେଇ ତାକୁ ଖାଇବା ପାଇଁ ଜୋର୍ ଦେଇ କହିବେ ସିନା, ଏଥିପାଇଁ କୌଣସି ଧମକଚମକ ଦେବେନି କି ଲାଞ୍ଚର ଲୋଭ ଦେଖେଇବେନି । ସେ ନିଜେ ନିଜେ ଖାଇପାରୁଛି କି ନା ତାହା ଦେଖିବା ଆପଣଙ୍କର ଏକମାତ୍ର ଉଦ୍ଦେଶ୍ୟ ବୋଲି ତାକୁ ଜଣେଇଦେବେ । ତାକୁ କହିବେ, "ତୁ' ତ ଏବେ ବଡ଼ ପିଲା ହୋଇଗଲୁଣି । ତେଣୁ ତୁ' ତ ନିଜେ ନିଜେ ଖାଇପାରିବୁ ଓ ତୋର ଅନ୍ୟ କାମ ସବୁ କରିପାରିବୁ ।" ଏହା ତା' ପାଇଁ ଏକ ଆହ୍ୱାନ ବୋଲି ଧାରଣା ଦେଇ ସେ ଯେ ଏହା ସଫଳ କରିପାରିବ, ଏହିପରି ଏକ ମନୋଭାବ ଜାଗ୍ରତ କରେଇବେ ତାହାଠାରେ ।

କିନ୍ତୁ, ଅନ୍ୟ ପିଲାଙ୍କ ସହ ତାକୁ ତୁଳନା କରି କୌଣସି ବାକ୍ୟ ଉଚ୍ଚାରଣ କରିବେନି । "ତୁ' ବଡ଼ ପିଲା ହେଲୁଣି କି ନା ଦେଖିବା ତ !" ଏପରି ବାକ୍ୟ କହିଲେ ସେ ଏହାକୁ ଏକ ଆହ୍ୱାନ ରୂପେ ନେଇ ବଡ଼ ପିଲା ହେବାର ପ୍ରମାଣ ଦେବାକୁ ଉତ୍ସାହିତ ହେବ ଓ ନିଜ ହାତରେ ଖାଇବାରେ ପ୍ରୟାସୀ ହେବ । ସେ ନିଜେ ନିଜେ ଖାଇବା ଆରମ୍ଭ କଲେ ତାକୁ ଏଥିପାଇଁ ଉତ୍ସାହିତ କରିବା ସହ ପ୍ରଶଂସା କରିବେ ମଧ୍ୟ । ଏହା ଫଳରେ ସେ ନିଜ ହାତରେ ଖାଇ ଶିଖିବା ସଙ୍ଗେ ସଙ୍ଗେ ଭୋଜନକୁ ଉପଭୋଗ କରିବା ପାଇଁ ଶିଖିପାରିବ । ବେଳେବେଳେ ଆପଣ ଖୁଆଇ ଦିଅନ୍ତୁ ବୋଲି ସେ ଚାହିଁପାରେ । ହେଲେ, ଏଥିପାଇଁ ତାକୁ ନିରାଶ କରିବେନି । କିନ୍ତୁ, ଖୁଆଇଦେବାରେ ବିଶେଷ ଆନ୍ତରିକତା ଦେଖେଇବେନି କି ବ୍ୟାକୁଳତା ପ୍ରକାଶ କରିବେନି । ବରଂ, ଆପଣ ତାକୁ ଅଧାଖାଦ୍ୟ ଖୁଆଇ ଅନ୍ୟ ଅଧକ ସେ ନିଜ ହାତରେ ଖାଇବା ନିମନ୍ତେ ତା' ଆଗରେ ସର୍ତ୍ତ ବାଢ଼ିବେ ଓ ସେହି ସର୍ତ୍ତକୁ ପାଳନ କରିବେ ।

ପିଲାଟି ଯଦି ବାପମା'ଙ୍କ ହାତରେ ଖାଇବ ବୋଲି ଜିଦ୍ କରେ, ତେବେ ତାକୁ ଉପେକ୍ଷା କରିବା ବାପମା'ଙ୍କ ପକ୍ଷେ ସମ୍ଭବ ହୁଏନା । ତାକୁ ନ ଖୁଆଇବାରେ ଆପଣଙ୍କର ଜିଦ୍ ବି ଆପଣଙ୍କ ପାଇଁ ବେଶ୍ ଯନ୍ତ୍ରଣାଦାୟକ । ଆପଣ ତାକୁ ନଖୁଆଇବା ଫଳରେ ସେ ଉପାସ ରହିଲେ ସେଥିପାଇଁ ଆପଣଙ୍କ ମନରେ ଅପରାଧବୋଧ ଜାଗ୍ରତ ହୋଇପାରେ ।

କିନ୍ତୁ ପ୍ରଥମ କଥା ହେଲା ଯେ ପିଲାଟି ନିଜ ହାତରେ ଖାଇବ ବୋଲି ଆପଣ ନିଜ ନିଷ୍ପତ୍ତିରେ ଅଟଳ ରହିବା ଦରକାର । ମନେ ରଖିବେ ଯେ ଆପଣଙ୍କ ସନ୍ତାନକୁ ଆତ୍ମବିଶ୍ୱାସ

ଓ ସ୍ୱାଧୀନତା ପ୍ରଦାନ କରିବା ହେଉଛି ତା' ପାଇଁ ସର୍ବୋତ୍ତମ ପୁରସ୍କାର । ସେ ଯେତେ ଚଞ୍ଚଳ ଆତ୍ମନିର୍ଭରଶୀଳ ହୋଇପାରେ, ଭବିଷ୍ୟତ ପାଇଁ ତାହା ସେତେ ବେଶୀ ମଙ୍ଗଳକର ।

ଦ୍ୱିତୀୟରେ ସେ କହିବା ସତ୍ତ୍ୱେ ଆପଣ ତାକୁ ଖୁଆଇ ନଦେବା ଦ୍ୱାରା ଯେ ଆପଣ ଏଥିପାଇଁ ଅନିଚ୍ଛୁକ ବା ତାକୁ ଦଣ୍ଡିତ କରିବା କି ତା'ପ୍ରତି ସ୍ନେହଶ୍ରଦ୍ଧା ଊଣା କରିବା ଆପଣଙ୍କର ଉଦ୍ଦେଶ୍ୟ, ଏହା ଆଦୌ ମନରେ ଆଣିବେନି । କାରଣ, ବାସ୍ତବରେ ଏହା ଆଦୌ ଆପଣଙ୍କର ଉଦ୍ଦେଶ୍ୟ ନୁହେଁ । ବରଂ, ତାହା ପ୍ରତି ଅନାବିଳ ମମତା ରହିଥିବାରୁ ତା'ର ଭଲ ପାଇଁ ଆପଣଙ୍କୁ ଏହା କରିବାକୁ ପଡ଼ିଥାଏ । ସନ୍ତାନକୁ ଅନ୍ଧ ଭାବରେ ଭଲ ପାଇବାରେ କୌଣସି ମଙ୍ଗଳ ସାଧିତ ହୁଏନାହିଁ । ବରଂ, ତାକୁ ଭଲ ମଣିଷ କରି ଗଢ଼ିବାରେ ହିଁ ପିତାମାତାଙ୍କ କର୍ତ୍ତବ୍ୟର ସାର୍ଥକତା । ତେଣୁ, ତାକୁ ନିଜ ହାତରେ ଖୁଆଇ ଦେବାର ଇଚ୍ଛାକୁ ଯଥାସମ୍ଭବ ମନ ଭିତରେ ଚାପି ରଖିବା ବାଞ୍ଛନୀୟ ।

ଶେଷରେ, ପିଲାଟି ନିଜ ହାତରେ ଖାଇ ଶିଖିବା ପରେ ଏହି ଦାୟିତ୍ୱ ଯେପରି ପୁନର୍ବାର ଆପଣଙ୍କ ହାତକୁ ଫେରି ନଆସେ, ସେଥିପ୍ରତି ସଚେତନ ରହିଥିବେ । ତା'ର ଭୋକ କମିଆସିଲେ କି ସେ ସାମାନ୍ୟ ଅସୁସ୍ଥ ହୋଇପଡ଼ିଲେ, ତାକୁ ଖୁଆଇଦେବା ପାଇଁ ଆପଣଙ୍କର ଇଚ୍ଛା ବଳବତ୍ତର ହୋଇଥାଏ । ତଥାପି, ଆପଣ ଏହି ଇଚ୍ଛାକୁ ସାକାର କରିବାକୁ ଦେବେ ନାହିଁ । ଏହା କଲେ ସେ ପୁନର୍ବାର ଆପଣଙ୍କ ଉପରେ ନିର୍ଭରଶୀଳ ହୋଇଉଠିବ ଓ ଆପଣଙ୍କ ସବୁ ତାଲିମ ଅସାର ହୋଇଯିବ । ଫଳରେ ତାକୁ ନିଜ ହାତରେ ଖାଇ ଶିଖିବାର ଆପଣଙ୍କ ଉଦ୍ୟମକୁ ଆପଣ ପୁଣି ଥରେ ମୂଳରୁ ଆରମ୍ଭ କରିବା ବ୍ୟତୀତ ଅନ୍ୟ ପନ୍ଥା ରହିବ ନାହିଁ ।

ତେବେ, ଏ ସଂକ୍ରାନ୍ତରେ ଅନ୍ୟ ଏକ ଦିଗ ପ୍ରତି ମଧ୍ୟ ଧ୍ୟାନ ଦେବେ । କେତେକ ପିଲା ଖାଇବା ସମୟରେ ବେଳେବେଳେ ଭିନ୍ନ ଭିନ୍ନ ପ୍ରକାରର ଆଚରଣ ଦେଖେଇଥାନ୍ତି । ଖାଇବା ସ୍ଥାନରୁ ବାରମ୍ବାର ଠିଆ ହୋଇପଡ଼ି ପୁଣି ବସିପଡ଼ିବା, ଏପଟ ସେପଟ ହୋଇ ପଳେଇବା, ବଢ଼ା ହୋଇଥିବା ଖାଦ୍ୟକୁ ନେଇ ଖେଳି ବସିବା, କିମ୍ବା ଭାଇଭଉଣୀଙ୍କ ସହ ଠେଲାପେଲାରେ ମାତିବା ଭଳି ବ୍ୟବହାର ପ୍ରଦର୍ଶନ କରିଥାନ୍ତି ସେମାନେ । ଖାଇବାରେ ସେମାନଙ୍କର ଅସହଯୋଗ ମାତ୍ରାତିରିକ୍ତ ହୋଇପଡ଼ିଲେ ପିଲାଟି ସାମାନ୍ୟ ମାତ୍ର ଖାଦ୍ୟ ଖାଇଥିଲେ ମଧ୍ୟ ତା' ପାଖରୁ ଖାଦ୍ୟ ଥାଳିଟି ନେଇଯିବେ । ଅନ୍ତତଃ ଘଣ୍ଟାଏ ପରେ ତା'ର ଆଚରଣ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲେ ଓ ତା'ର ଭୋକ ବଢ଼ିଗଲେ ତାକୁ ଖାଇବାକୁ ଦେବାର ବ୍ୟବସ୍ଥା କରିବେ ।



# ପତଳା ପିଲା, ମୋଟା ପିଲା

ପ୍ର : ମୋ' ପିଲାଟି ଅତି ପତଳା ହୋଇଛି । ଯେତେ ଯାହା କଲେ ବି ତା' ଦେହରେ ଲାଗୁନାହିଁ । ଦେଖିବାକୁ କାଠି ଭଳି ହୋଇଛି ସେ । କଅଣ କଲେ ତା' ଦେହରେ ଲାଗିବ ?

ଉ : ଅଧିକାଂଶ ମାଆଙ୍କୁ ସେମାନଙ୍କ ପିଲା ପତଳା ମାଲୁମ ପଡ଼ିଥାଏ । ତେଣୁ, ବୟସକୁ ଚାହିଁ ତା'ର ଓଜନ ପ୍ରକୃତରେ କମ୍ ବୋଲି ଆଗେ ପରୀକ୍ଷା କରେଇନେବା ଦରକାର । ଉଦାହରଣ ସ୍ୱରୂପ ବର୍ଷକିଆ ପିଲାର ଓଜନ ମାତ୍ର ୬ କିଲୋଗ୍ରାମ୍ ହୋଇଥିଲେ, ଆମେ ତାକୁ କମ୍ ଓଜନର ପିଲା ବୋଲି ନିରାପଦରେ କହିପାରିବା । ଏ' କ୍ଷେତ୍ରରେ, ଆପଣ ନିଜର କଳ୍ପନା କି ଭାବନାକୁ ଆଧାର କରି ନିଜ ସନ୍ତାନଟି ପତଳା ବୋଲି କହିବା କିମ୍ବା ଅନ୍ୟମାନେ ତାକୁ ପତଳା ବୋଲି କହୁଥିଲେ, ସେମାନଙ୍କ ମତକୁ ଗ୍ରହଣ କରିନେବା ଠିକ୍ ହେବନାହିଁ । ତାହାଛଡ଼ା, ଅନ୍ୟମାନଙ୍କ ପିଲାଙ୍କ ଓଜନ ଓ ଶରୀର ଗଠନକୁ ନିଜ ସନ୍ତାନର ଶରୀର ଗଠନ ଓ ଓଜନ ସହ ତୁଳନା କରି ନିଷ୍ପତ୍ତି ଗ୍ରହଣ ନକଲେ ଭଲ । ଯେଉଁ ବାପମା' ନିଜ ସନ୍ତାନର କ୍ଷୀଣକାୟତାକୁ ଲକ୍ଷ୍ୟ କରି ଉତ୍କଣ୍ଠା ପ୍ରକାଶ କରିଥାନ୍ତି, ସେମାନେ ପ୍ରାୟତଃ ନିଜ ଆତ୍ମୀୟ କିମ୍ବା ପଡ଼ୋଶୀଙ୍କ ମୋଟାସୋଟା ପିଲାଙ୍କୁ ଦେଖି ଏ' ପ୍ରକାରର ଧାରଣା ପୋଷଣ କରିଥାନ୍ତି ।

ମନେରଖନ୍ତୁ ଯେ ପ୍ରତ୍ୟେକ ପିଲା ତା' ନିଜ ଗୁଣରେ ଅସାଧାରଣ । ତେଣୁ ଆପଣଙ୍କ ପିଲାର ମଧ୍ୟ ନିଜସ୍ୱ ସ୍ୱତନ୍ତ୍ରତା ରହିଛି । ଏହି ପରିପ୍ରେକ୍ଷୀରେ ଦେଖିଲେ ପିଲା-ପିଲାଙ୍କ ମଧ୍ୟରେ ତୁଳନା କରିବା ଆଦୌ ଯୁକ୍ତିସଙ୍ଗତ ନୁହେଁ । ତା'ର ବୟସକୁ ଚାହିଁ ଓଜନ ଅନୁମୋଦିତ ସ୍ତରରେ ରହିଥିଲେ, ଆପଣ ସମ୍ପୂର୍ଣ୍ଣ ଆଶ୍ୱସ୍ତ ରହନ୍ତୁ । ଗୋଟିଏ ସୁସ୍ଥ ପିଲାର ଭଲ ଭୋକ ହେଉଥିଲେ ଓ ସେ ଠିକ୍ ଭାବରେ ଖିଆପିଆ କରୁଥିଲେ, ତା'ର ଶରୀର ପତଳା ହେଲେ ମଧ୍ୟ ସେଥିପାଇଁ ଚିନ୍ତିତ ହେବାର କୌଣସି କାରଣ ନାହିଁ ।

କାରଣ, କେତେକ ପିଲାଙ୍କୁ ପ୍ରକୃତି ବୋଧହୁଏ ପତଳା କରି ରଖେ ଓ ଜୀବନ ସାରା ସେମାନେ ପ୍ରାୟତଃ ପତଳା ରହିଯାଆନ୍ତି । ଏହି ଗୋଷ୍ଠୀର ପିଲାମାନେ ସାଧାରଣତଃ ବେଶୀ ମିଠା କି ବେଶୀ ତେଲିଆ ଖାଦ୍ୟକୁ ପସନ୍ଦ ନକରି ଫଳ ଓ ପନିପରିବା ଖାଇବା ପ୍ରତି ଅଧିକ ଆଗ୍ରହ ପ୍ରକାଶ କରୁଥିବାର ଦେଖାଯାଇଥାଏ । ତେଣୁ, ଆପଣଙ୍କ ପିଲାର ଚମ ତଳେ ବହଳିଆ ଚର୍ବି ଜମି ନଥିଲେ, ସେଥିପାଇଁ ଚିନ୍ତା ପ୍ରକଟ କରନ୍ତୁ ନାହିଁ । ଚମ ତଳେ ବେଶୀ ଚର୍ବି ଜମିବା ସ୍ୱାସ୍ଥ୍ୟ ପାଇଁ ଆଦୌ ହିତକର ନୁହେଁ । ବରଂ, ଏବକାର ଚିକିତ୍ସା ବିଜ୍ଞାନ ଦୃଷ୍ଟିକୋଣରୁ ମୋଟାସୋଟା ହେବା ଅପେକ୍ଷା ପତଳା ରହିବା ଭଲ । କିନ୍ତୁ ବୟସକୁ ଚାହିଁ ତା'ର ଓଜନ କମ୍ ରହୁଥିଲେ କିମ୍ବା ତା'ର ଓଜନ ଆଶାଜନକ ହାରରେ ବୃଦ୍ଧି ପାଉନଥିଲେ (ବୟସ ଏକ ବର୍ଷ ପୂରିଗଲା ପରେ ପିଲାର ଓଜନ ବର୍ଷକୁ ଦେଢ଼ରୁ ଦୁଇ କିଲୋଗ୍ରାମ୍ ହାରରେ ବଢ଼ିବା ଦରକାର), ଏ' ସମ୍ପର୍କରେ ଶିଶୁ ବିଶେଷଜ୍ଞଙ୍କ ସହ ପରାମର୍ଶ କରିବା ଉଚିତ ।

ତେବେ, ଆପଣଙ୍କର କ୍ଷୀଣକାୟ ସନ୍ତାନଟି ପାଇଁ ଆପଣ ସର୍ବଦା ଉତ୍କଣ୍ଠିତ ରହୁଥିଲେ, ଆପଣ ତାକୁ ଅଧିକ ଶକ୍ତି ଯୋଗାଉଥିବା ଖାଦ୍ୟ ଖାଇବାକୁ ଦିଅନ୍ତୁ । ବୟସ୍କ ବ୍ୟକ୍ତିମାନେ ଚାହିଁଲେ ସେମାନେ ସିନା ଅଧିକ ପରିମାଣର ଖାଦ୍ୟ ଖାଇପାରିବେ, କିନ୍ତୁ ପିଲାମାନଙ୍କ ପକ୍ଷେ ଖାଦ୍ୟର ପରିମାଣ ବୃଦ୍ଧି କରିବା ତ ସମ୍ଭବ ନୁହେଁ । ତେଣୁ, ତା'ର ଖାଦ୍ୟକୁ ଶକ୍ତିପୁଷ୍ଟ କରିବା ନିମନ୍ତେ ଆପଣଙ୍କୁ ହିଁ ପଦକ୍ଷେପ ନେବାକୁ ପଡ଼ିବ । ସେ ଖାଉଥିବା ଭାତରେ ଘିଅ ପକେଇ, ତା' ପାଇଁ ରନ୍ଧା ଯାଇଥିବା ଡାଲି ତରକାରିକୁ ଅଧିକ ଟିକିଏ ତେଲରେ ଛୁଙ୍କ କରି ଖାଇବାକୁ ଦେଲେ, ଏହି ଅତିରିକ୍ତ ଘିଅ ଓ ତେଲ ତା'ର ଓଜନ ବୃଦ୍ଧିରେ ସହାୟକ ହୋଇଥାଏ । ନଡ଼ିଆ ଓ ଘିଅ ପକେଇ ଖେଚେଡ଼ି କରି ଖାଇବାକୁ ଦେଲେ ମଧ୍ୟ ଉପକାର ମିଳିଥାଏ । ଆଇସ୍‌କ୍ରିମ୍, ଚକୋଲେଟ୍, କେକ୍, ହାଲୁଆ, ରସଗୋଲା, ଗୋଲାପଜାମୁ ଓ ବରା, ପକୁଡ଼ି, ଗୁଲୁଗୁଲା ଆଦି ଖାଇବା ମଧ୍ୟ ତା' ପାଇଁ ମନା ନାହିଁ ।

ଏହାଛଡ଼ା, ଆପଣଙ୍କ ସନ୍ତାନଟି କମ୍ ପରିମାଣରେ ଖିଆପିଆ କରୁଛି କି ନା, ତାହା ଲକ୍ଷ୍ୟ କରନ୍ତୁ । ସେ ଯଦି ବାସ୍ତବରେ କମ୍ ପରିମାଣର ଖାଦ୍ୟ ଖାଉଥାଏ, ତେବେ ସେ କାହିଁକି କମ୍ ଖାଉଛି ବା ତା'କୁ କାହିଁକି ବିଶେଷ ଭୋକ କରୁନି, ତାହାର କାରଣ ଖୋଜନ୍ତୁ । (ଏ ସମ୍ପର୍କରେ ଅନ୍ୟ ଲେଖାରେ ସୂଚନା ଦିଆଯାଇଛି)

**ପ୍ର : ପିଲା ଦେହରେ ବେଶୀ ଚର୍ବି ଜମି ସେ ବେଶ୍ ମୋଟା ହୋଇଯାଇଥିଲେ ଏହାର ପୁଣି ପ୍ରତିକାର କଅଣ ?**

ଉ : ଆପଣ ଭଲ ପ୍ରଶ୍ନଟିଏ ପଚାରିଛନ୍ତି । ପତଳା ହେବା ଅପେକ୍ଷା ମୋଟା ହେବା ଅଧିକ ଚିନ୍ତାର କାରଣ । ପୂର୍ବରୁ ତ କୁହାଯାଇଛି ଯେ ଶରୀରର ଓଜନ ବୟସ ଅନୁପାତରେ ଠିକ୍ ରହିଥିଲେ, ସେଥିନେଇ ମୁଣ୍ଡ ଖେଳେଇବାର ଆବଶ୍ୟକତା ନାହିଁ କି ଡାକ୍ତରଙ୍କ ସହ ପରାମର୍ଶ କରିବାର ଆବଶ୍ୟକତା ନାହିଁ । କିନ୍ତୁ ଏକ ବର୍ଷ ବୟସର ପିଲାର ଓଜନ ପନ୍ଦର କିଲୋଗ୍ରାମ୍ ପାଖାପାଖି ହୋଇଥିଲେ, ତାହା ନିଶ୍ଚିତ ଭାବରେ ଚିନ୍ତାର କାରଣ ହୋଇଥାଏ । ହେଲେ, ବଡ଼ ବିଡ଼ମ୍ବନାର ବିଷୟ ଯେ ମୋଟାସୋଟା ପିଲାଙ୍କ ପିତାମାତା ଏଥିପାଇଁ ପ୍ରାୟତଃ ଡାକ୍ତରୀ ପରାମର୍ଶ ଲୋଡ଼ି ନଥାନ୍ତି । ବରଂ, ସେମାନଙ୍କ ସନ୍ତାନଟି ବେଶ୍ ସୁସ୍ଥ ବୋଲି ଭାବି ମନେ ମନେ ଗର୍ବ ଅନୁଭବ କରିଥାନ୍ତି । କିନ୍ତୁ କଅଣ ଏହାର କାରଣ ?

ପ୍ରଚଳିତ ସାମାଜିକ ଦୃଷ୍ଟିକୋଣ ବ୍ୟକ୍ତିର ମାନସିକତାକୁ ପ୍ରଭାବିତ କରିଥାଏ ବୋଲି ଆମେ ସମସ୍ତେ ଜାଣୁ । ସମ୍ପ୍ରତି, ପିତାମାତାମାନେ ମୋଟାସୋଟା ପିଲାଙ୍କୁ ଅଧିକ ପସନ୍ଦ କରୁଛନ୍ତି । ସେମାନଙ୍କୁ ଅଧିକ ସୁସ୍ଥ, ସୁନ୍ଦର ଓ ଆକର୍ଷଣୀୟ ବୋଲି ଧରି ନେଉଛନ୍ତି । ବରଂ, ଏପରି ପିଲାକୁ ଆଦର୍ଶ ସ୍ଥାନୀୟ ବୋଲି ଧାରଣା ପୋଷଣ କରିଚାଲିଛନ୍ତି ସେମାନେ । ଏପରିକି, ମୋଟାସୋଟା ପିଲାଙ୍କ ପିତାମାତାଙ୍କୁ ସେମାନଙ୍କ ଆତ୍ମୀୟ ଓ ବନ୍ଧୁମାନେ 'ସନ୍ତାନର ଯଥାର୍ଥ ଯତ୍ନ ନେଉଛି' କହି ବଧେଇ ଜଣାଉଛନ୍ତି ଓ ପ୍ରଶଂସା କରୁଛନ୍ତି ।

ବଡ଼ ଦୁଃଖର କଥା ଯେ ପିଲାମାନଙ୍କ ବିଷୟରେ ସମାଜର ଏହି ଅନୁଚିତ ଆଚରଣ ନିକଟ ଭବିଷ୍ୟତରେ ପରିବର୍ତ୍ତିତ ହେବାର କୌଣସି ସମ୍ଭାବନା ନାହିଁ । କାରଣ ଗୋଲଗାଲ୍ ଫୁଲୁକାଗାଲିଆ ପିଲାଙ୍କୁ ଦେଖିଲେ କିଏ ଅବା ଖୁସୀ ନହୁଏ ? ଅନ୍ତତଃ ଏଭଳି ପିଲାଙ୍କୁ ଦୁଇ ତିନି ବର୍ଷ ହେବା ପର୍ଯ୍ୟନ୍ତ ସେମାନେ ଆକର୍ଷଣର କେନ୍ଦ୍ରବିନ୍ଦୁ ପାଲଟିଥାଆନ୍ତି ।

କିନ୍ତୁ, ସ୍ୱାସ୍ଥ୍ୟ ଦୃଷ୍ଟିକୋଣରୁ ଦେଖିଲେ ସେହି ପିଲାଟିର ଭବିଷ୍ୟତ ବଡ଼ ନୈରାଶ୍ୟଜନକ । ବୈଜ୍ଞାନିକମାନେ ମତ ଦିଅନ୍ତି ଯେ ପ୍ରଥମ ଦୁଇବର୍ଷ ବୟସ ଭିତରେ ଯେଉଁ ପିଲା ବେଶୀ ମୋଟା ହୋଇଯାଇଥାଏ, ତା' ଶରୀରରେ ଜାତ ହୋଇ ପଡ଼ିଥାଏ ଅଧିକ ସଂଖ୍ୟକ ଚର୍ବିକୋଷ ବା ମେଦ କୋଷିକା । ଏହି ସଂଖ୍ୟାରେ କୌଣସି ହ୍ରାସ ନଘଟି ସେହି ସଂଖ୍ୟା ଜୀବନସାରା ସ୍ଥାୟୀ ହୋଇ ରହିଯାଏ । ଶୈଶବ କିମ୍ବା ପରବର୍ତ୍ତୀ ଅବସ୍ଥାରେ

ତା'ର ଖାଦ୍ୟରେ କୌଣସି ନିୟନ୍ତ୍ରଣ ନ ରହିଲେ ଓ ବିଶେଷ କରି ବେଶୀ ପରିମାଣର ମିଠା, ତେଲ ଓ ଘିଅ ଖାଇ ଚାଲିଲେ, ଉକ୍ତ ଚର୍ବି କୋଷଗୁଡ଼ିକରେ ଚର୍ବି ଖୁନ୍ଦି ହୋଇ ଜମିଚାଲେ । ତାହାଛଡ଼ା, ଯେଉଁମାନଙ୍କ ଶରୀରରେ ଚର୍ବି କୋଷଗୁଡ଼ିକର ସଂଖ୍ୟା ଅଧିକ, ଖାଦ୍ୟପ୍ରତି ସେମାନଙ୍କର ଆସକ୍ତି ମଧ୍ୟ ବେଶୀ । ଏହାର ପରିଣାମରେ ମୋଟାସୋଟା ହୋଇ ବଢ଼ିଥିବା ଶିଶୁ ବୟସ୍କ ଅବସ୍ଥା ପ୍ରାପ୍ତ ହେବା ବେଳକୁ 'ଓବେସିଟି' (Obesity) ବା ମେଦବହୁଳତା ରୋଗର ଶିକାର ହୋଇ ପୃଥୁଳକାୟ ହୋଇଯାଏ ।

ମନେରଖନ୍ତୁ ଯେ ମୋଟା ପିଲା ନିଜ ପାଇଁ ଏକ ସମସ୍ୟା ଓ ପିତାମାତାଙ୍କ ପାଇଁ ମଧ୍ୟ ଏକ ସମସ୍ୟା । ପିତାମାତାମାନେ ଅନ୍ୟମାନଙ୍କ ପ୍ରଶଂସାରେ ଭାସି ନଯାଇ ନିଜ ପିଲାର ଓଜନ କମେଇବା ନିମନ୍ତେ ବରଂ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଉଚିତ । ଏହି କାର୍ଯ୍ୟାନୁଷ୍ଠାନ ଯେତେ ଚଞ୍ଚଳ ଆରମ୍ଭ କରାଯାଏ, ସେତେ ମଙ୍ଗଳ । ଆପଣ ଜାଣି ରଖିବା ଦରକାର ଯେ ଖାଦ୍ୟରେ ନିୟନ୍ତ୍ରଣ ଆଣି ଓ ନିୟମିତ ବ୍ୟାୟାମ କରି ଶରୀରର ଚର୍ବି ପରିମାଣ ତଥା ଓଜନ ହ୍ରାସ କରାଯାଇପାରେ । କିନ୍ତୁ, ବଡ଼ ଦୁର୍ଭାଗ୍ୟର କଥା ଯେ ମେଦବହୁଳ ପୃଥୁଳକାୟ ପିଲାମାନେ ବ୍ୟାୟାମ କରିବା କି ନିୟମିତ ଭାବରେ ଖେଳାଖେଳି କରିବାରେ ବିଶେଷ ଆଗ୍ରହ ଦେଖାନ୍ତି ନାହିଁ । ଶାରୀରିକ କ୍ରିୟାର ଅଭାବରୁ ପୃଥୁଳତା ବଢ଼ି ବଢ଼ି ଯାଏ ଓ ପୃଥୁଳତା ବଢ଼ିଯିବା କାରଣରୁ ଉକ୍ତ ପିଲା ଆହୁରି ଅଳସୁଆ ହୋଇପଡ଼େ । ତାହାଛଡ଼ା, ଏଭଳି ପିଲାମାନେ ସାଧାରଣତଃ ବିଷାଦଗ୍ରସ୍ତ ରହନ୍ତି ଓ ନିଜକୁ ବଡ଼ ଏକୁଟିଆ ଅନୁଭବ କରନ୍ତି । ଖାଦ୍ୟ ହିଁ ସେମାନଙ୍କ ପାଇଁ ସାନ୍ତ୍ୱନାପ୍ରଦାୟୀକାରକ ଓ ସାଥୀର ଭୂମିକା ନିର୍ବାହ କରିଥାଏ । ଏହି ପରିପ୍ରେକ୍ଷୀରେ ବିଚାର କଲେ ପୃଥୁଳକାୟ ପିଲାଙ୍କ ସାମାଜିକ ଓ ପାରିବାରିକ ଜୀବନ ଅନୁକୂଳ ରହିପାରିଲେ, ଏହାର ସୁପ୍ରଭାବ ସୁଦୂରପ୍ରସାରୀ ।

ଏବେ ପ୍ରଶ୍ନ ଉଠେ ଯେ ପୃଥୁଳକାୟ ଶିଶୁମାନଙ୍କ ଶରୀରରୁ ଚର୍ବିକୁ କମେଇ ସେମାନଙ୍କ ଓଜନକୁ ହ୍ରାସ କରାଯାଇପାରିବ କିପରି ? ଗୋଟିଏ ଦୁଇବର୍ଷିଆ ପିଲାକୁ ତ ଆମେ ନିୟମିତ ବ୍ୟାୟାମ କରିବା କି ଶାରୀରିକ ପରିଶ୍ରମ କରିବା ପାଇଁ ପରାମର୍ଶ ଦେଇପାରିବାନି । କାରଣ, ଏହା କରିବା ତା' ପକ୍ଷେ ଆଦୌ ସମ୍ଭବ ନୁହେଁ । ତେଣୁ, ତା'ର ଓଜନ କମେଇବା ନିମନ୍ତେ କେବଳ ଖାଦ୍ୟ ନିୟନ୍ତ୍ରଣ ଉପରେ ଭରସା କରିବା ହିଁ ଏକମାତ୍ର ପନ୍ଥା । ଖାଦ୍ୟ ନିୟନ୍ତ୍ରଣ ମଧ୍ୟ ସମସ୍ୟାମୁକ୍ତ ନୁହେଁ ।

ସେ ପିଲାହେଉ କି ବୟସ୍କ ବ୍ୟକ୍ତି ହେଉ, ଖାଦ୍ୟ ପ୍ରତି ରହିଥିବା ପ୍ରବଳ ଆସକ୍ତିକୁ ପରିହାର କରିବା ଆଦୌ ସହଜସାଧ୍ୟ ନୁହେଁ । ପିଲାଟି ଯେଉଁ ପ୍ରକାରର ଖାଦ୍ୟ ଖାଇବାରେ

ଅଭ୍ୟସ୍ତ, ତାକୁ ସେଥିରୁ ହଠାତ୍ ବଞ୍ଚିତ କରିବା ମଧ୍ୟ ସମ୍ଭବ ହୁଏନାହିଁ । ତେଣୁ, ଏଥିପାଇଁ ପିତାମାତାଙ୍କୁ ଅଧିକ ଚତୁରତା ଅବଲମ୍ବନ କରିବାକୁ ପଡ଼ିବ । ସେମାନଙ୍କର ଚତୁରତା ଯେପରି ସନ୍ତାନଟି ଦ୍ୱାରା ଧରା ପଡ଼ିନଯାଏ, ସେଥିପ୍ରତି ମଧ୍ୟ ସଚେତନ ରହିବାକୁ ପଡ଼ିବ ସେମାନଙ୍କୁ । ପିଲାଟି ପିତାମାତାଙ୍କର ଉଦ୍ଦେଶ୍ୟକୁ ସନ୍ଦେହ କଲେ ଉଦ୍ଦେଶ୍ୟ ବ୍ୟର୍ଥ ହୋଇଯିବ । ତାକୁ ବେଶୀ ପରିମାଣର ଫଳ, ପନିପରିବା, ସାଲାଡ଼ ଓ ସୁପ୍ ଖାଇବାକୁ ଦେବା ଦରକାର । ତେଲ, ଘିଅ, ସର, କ୍ରିମ୍ ଓ ମିଠାକୁ ଯେତେଦୂର ସମ୍ଭବ ଦୂରେଇ ରଖିବା ଉଚିତ । ତେବେ ଫଳ, ପନିପରିବା, ସାଲାଡ଼୍ ଓ ସୁପ୍‌ରେ ପେଟ ଅଧା ଭରିଗଲେ ତା'ର ଭୋକ ମରିଯିବ । ଫଳରେ ସେ ତେଲ, ଘିଅ, ସର, କ୍ରିମ୍ ଓ ମିଠାଜାତୀୟ ଖାଦ୍ୟ ଖାଇବା ପ୍ରତି ବିଶେଷ ଆଗ୍ରହ ଦେଖେଇବନି । ଏହି ଅବସରରେ ଆପଣ ଧୀରେ ଧୀରେ ଏ'ପ୍ରକାରର ଖାଦ୍ୟ ଦେବା କମେଇ କମେଇ ଯିବେ ।

ମନେ ରଖିବେ ଯେ ପତଳା ପିଲାଙ୍କୁ ମୋଟା ସୋଟା କରିବା ପାଇଁ ଯେଉଁ ଯେଉଁ ଖାଦ୍ୟଦ୍ରବ୍ୟ ଖାଇବାକୁ ଦେବା ନିମନ୍ତେ ଉତ୍ସାହିତ କରାଯାଇଥାଏ, ମୋଟାସୋଟା ପିଲାଙ୍କ ପାଇଁ ସେହି ସେହି ଖାଦ୍ୟଦ୍ରବ୍ୟ ମନା ।

ସେ ଯାହାହେଉ, ପିଲା ଦେହରେ ବେଶୀ ଚର୍ବି ଜମୁଥିବାର ଲକ୍ଷ୍ୟ କଲେ ସାଙ୍ଗେ ସାଙ୍ଗେ ଶିଶୁ ବିଶେଷଜ୍ଞଙ୍କ ସହ ପରାମର୍ଶ କରିବେ । ତାଙ୍କ ସହ ପରାମର୍ଶ କଲେ ପିଲାଟି କଅଣ କଅଣ ଖାଇବା ଉଚିତ ଓ କଅଣ କଅଣ ଖାଇବା ଉଚିତ ନୁହେଁ, ତାହା ସେ ବତେଇ ଦେବେ । ପିଲାମାନେ ପିତାମାତାଙ୍କ ପରାମର୍ଶକୁ ଏ କାନରେ ପୂରେଇ ସେ କାନରେ ବାହାର କରି ଦେଇଥାନ୍ତି ସିନା, ହେଲେ ଡାକ୍ତରଙ୍କ ପରାମର୍ଶକୁ ମାନିନେବାରେ ବିଶେଷ କୁଣ୍ଠା ପ୍ରକାଶ କରନ୍ତି ନାହିଁ ।



# ଶିଶୁ ମନଲାଖି ପରିବାର (୧)

**''ପିଲାମାନେ ଅସୁଖୀ ରହିଥିବା ପର୍ଯ୍ୟନ୍ତ ପୃଥିବୀରେ ପ୍ରଗତି ସମ୍ଭବ ହୋଇ ପାରିବନି ।''**

**—ଆଲ୍‌ବର୍ଟ୍ ଆଇନ୍‌ଷ୍ଟାଇନ୍**

**ପ୍ର : ଘରେ କିପରି ପରିବେଶ ସୃଷ୍ଟିକଲେ ପିଲାମାନଙ୍କୁ ଅତି ଖୁସି ଲାଗିବ ?**

ଉ : ଆମ ପାରିବାରିକ ପରଂପରାରେ ପରିବାରର ବୟସ୍କ ପୁରୁଷ ବ୍ୟକ୍ତିମାନେ ହିଁ ପରିବାର ସଂପର୍କିତ ସମସ୍ତ ବିଷୟରେ ନିଷ୍ପତ୍ତି ନେଇଥାନ୍ତି । କହିବାକୁ ଗଲେ ସେମାନଙ୍କ କଥାରେ ଘର ଚାଲେ । ବୟସ୍କ ମହିଳାମାନେ ଘରର ଯାବତୀୟ କାମଧନ୍ଦାରେ କନିଷ୍ଠ ମହିଳାମାନଙ୍କୁ ନିର୍ଦ୍ଦେଶ ତଥା ପରାମର୍ଶ ଦେଇଥାଆନ୍ତି ସିନା, ସାଧାରଣ ଭାବେ ଦେଖିଲେ ସେମାନଙ୍କର ଭୂମିକା ପୁରୁଷମାନଙ୍କ ଭୂମିକା ତୁଳନାରେ ଗୌଣ । ତେବେ, ବୟସ୍କ ବ୍ୟକ୍ତିମାନେ ଯେଉଁ କଥାକୁ ଠିକ୍ ବୋଲି ଭାବିନେଇଥାନ୍ତି, ସେଥିରେ ସହଜରେ ପରିବର୍ତ୍ତନ ଆଣନ୍ତି ନାହିଁ । ଏହି ପରିପ୍ରେକ୍ଷୀରେ ଦେଖିଲେ, ଶିଶୁମାନଙ୍କ ଲାଳନପାଳନ ଓ ଯତ୍ନ ନେବାରେ ସେମାନଙ୍କ ନିର୍ଦ୍ଦେଶ ହିଁ ବଳବତ୍ତର ରହିଥାଏ । ଶିଶୁମାନଙ୍କର ଦୁନିଆ ଯେ ଏକ ସ୍ୱତନ୍ତ୍ର ଦୁନିଆ, ସେ ବିଷୟରେ ଆମେ ବଡ଼ମାନେ ଏପର୍ଯ୍ୟନ୍ତ ବି ସଚେତନ ହୋଇ ପାରିଲୁନି । ଶିଶୁମାନେ ପରିବାରରେ ଯେ ଜଣେ ଜଣେ 'ଅତି ବିଶିଷ୍ଟ ବ୍ୟକ୍ତି' ବା 'ଭି.ଭି.ଆଇ.ପି.' ତାହା ଗ୍ରହଣ କରିବାରେ ଆମେ କୁଣ୍ଠିତ । ଏହାଫଳରେ ଶୈଶବ ଉପଭୋଗ୍ୟ ନ ହୋଇ ହୋଇପଡୁଛି ବେଦନଦାୟକ ।

ଏଇ ଚାହାଁନ୍ତୁ ସେଆଡ଼କୁ । ଛୋଟ ଶିଶୁଟି ହାତରେ ବଲ୍‌ଟିଏ । ବଲ୍‌ଟି କାଳେ ତା' ହାତରୁ ଖସିପଡ଼ିବ, ସେଥିପାଇଁ ନଜର ରଖିଛି ସେ । ହାତ ଓ ଆଖିର ସମନ୍ୱୟ ରକ୍ଷାକରି ବଲ୍‌ଟିକୁ ଯେ ହାତରେ ରଖିବାକୁ ପଡ଼େ, ଏହି ବୟସରେ ସେ ତାହା ଶିଖିଲାଣି । ବଲ୍‌ର ଆକାର ଗୋଲ୍ । ଗୋଲ୍ ବୋଇଲେ କଅଣ ଓ ଗୋଲ୍‌ବସ୍ତୁର ଚରିତ୍ର କଅଣ ସେ ସଂପର୍କରେ ମନକୁ ମନ ତା' ମନରେ କିଛି କିଛି ଧାରଣା ଆସିଲାଣି । ଧାରଣା ଆସିଲାଣି

କଠିନ ଓ ନରମ ଜିନିଷର ପାର୍ଥକ୍ୟ ସମ୍ବନ୍ଧରେ । କେଉଁ ପ୍ରକାର ଖେଳନା ସହ କାରବାର କଲେ ଦେହରେ ଆଘାତ ଲାଗେନାହିଁ ଓ ଅନ୍ୟ କେଉଁ ଖେଳନାରେ ଖେଳିଲାବେଳେ ଟିକିଏ ଭୁଲ୍‌ଭଟକା ହୋଇଗଲେ ଦେହରେ ଆଘାତ ଲାଗିପାରେ, ତାହା ଜାଣିନେଲାଣି ସେ । ଏ'ତ ବାହାରିଆ ବ୍ୟବହାର ।

ତା' ପାଖକୁ ଚାଲନ୍ତୁ । ତା'ଠାରୁ ବଲ୍‌ଟିକୁ ମାଗିନେଇ ଆପଣ ଓ ସେ ଉଭୟ ଖେଳରେ ମାତିଯାଆନ୍ତୁ । ସେ ବି ଆପଣଙ୍କ ପ୍ରତିଦ୍ୱନ୍ଦ୍ୱୀ ହେବାରେ ଆଗ୍ରହୀ ହୋଇପଡ଼ିବ । ଖେଳରେ ତା'ର ଜିତାପଟ ହେଲେ ତା' ମୁହଁରେ ଫୁଟି ଉଠିବ ହସ, ହାରିଗଲେ ମନ ହୋଇଯିବ ବିରସ । ଖେଳିଲାବେଳେ ସେ ଆପଣଙ୍କ ସହ କଥାବାର୍ତ୍ତା କରୁଥିବ, କେତେବେଳେ ହାତ ହଲେଇ ଇସାରା ଦେଉଥିବ ତ ଅନ୍ୟ କେତେବେଳେ ଘୁମୁରି କରି ଦୀର୍ଘଶ୍ୱାସ ପକେଇ ପ୍ରକାଶ କରୁଥିବ ତା'ର ଅସନ୍ତୋଷ ।

ତା' ସାଥିରେ ଯାଆନ୍ତୁ ତାଙ୍କ ଘରକୁ । ଆପଣ ତା' ସହ ଅନ୍ତରଂଗ ଭାବରେ ମିଳାମିଶା କରୁଥିବାର ଜାଣିନେଲେ ଆପଣଙ୍କୁ ତା'ର ବନ୍ଧୁ ଓ ଶୁଭାକାଂକ୍ଷୀ ବୋଲି ଧରିନେବ ସେ । ଆପଣଙ୍କୁ ସେ ଦେଖେଇବସିବ ତା'ର ଚିତ୍ର ଅଙ୍କା ଖାତା । ଏଇ ଛବିଟିକୁ ଦେଖନ୍ତୁ, ଛବିଟି ହେଉଛି ତା' ମାଆଙ୍କର । ସେ ନିଜେ ଆଙ୍କିଛି ତାକୁ । ମା'ଙ୍କ ଦେହଟି ଛୋଟ ଓ ସରୁ; କିନ୍ତୁ ମୁଣ୍ଡଟି ଅସ୍ୱାଭାବିକ ଭାବରେ ବଡ଼ । ତାକୁ ଦେଖି ଆପଣଙ୍କୁ ହସ ଲାଗୁଥିବ । ପର ଚିତ୍ରଟି ତା' ବାପାଙ୍କ ଚିତ୍ର । ତା'ରି ହାତରେ ଅଙ୍କା । ଚିତ୍ରଟିରେ ଲକ୍ଷ୍ୟ କରନ୍ତୁ ବାପାଙ୍କ ମୁଣ୍ଡକୁ । କଅଁଳା ହାତ ଓ ଆଙ୍ଗୁଠିରେ ମୁଣ୍ଡକୁ ଗୋଲକରି ଆଙ୍କିପାରିନି ସେ । ତେଣୁ ମୁଣ୍ଡଟି ବଙ୍କାଟଙ୍କା । କିନ୍ତୁ ସେହି ଗୋଲାକାର ମୁଣ୍ଡର ସବା ଉପର ଆଡ଼କୁ ସେ ଆଙ୍କି ଦେଇଛି ଆଖି ଯୋଡ଼ିକ । କେହି ଜଣେ ଛବି ଦୁଇଟିକୁ ଦେଖି 'ଠିକ୍' ଚିହ୍ନ ଦେଇ ଦେଇଛନ୍ତି । ତା' ବୟସ ପାଇଁ ଏ' ଛବି ଦୁଇଟି 'ଭଲ ହୋଇଛି' କି 'ମନ୍ଦ ହୋଇଛି', ଏଠାରେ ସେ ପ୍ରଶ୍ନ ଉଠୁନାହିଁ । କିନ୍ତୁ ଯିଏ ସେଥିରେ ଠିକ୍ ଚିହ୍ନ ଦେଇଛନ୍ତି, ସେହି ଠିକ୍ ଚିହ୍ନଟି ପିଲାଟି ମନରେ ଖୁନ୍ଦି ଦେଇଛି କେତେ ନା କେତେ ଆଗ୍ରହ, କେତେ ନା କେତେ ଉତ୍ସାହ । ତା' ଅଙ୍କା ଛବିକୁ ଯେ ଅନ୍ୟମାନେ ପସନ୍ଦ କରିଛନ୍ତି ବା ତା'ର ପିତାମାତା ଓ ଶିକ୍ଷକ ତାକୁ ଏଥିପାଇଁ ପ୍ରଶଂସା କରିଛନ୍ତି, ଏଥିପାଇଁ ନିଜକୁ ସେ ଗର୍ବିତ ମନେ କରୁଛି ।

କେବଳ ସେତିକିରେ ସେ ସନ୍ତୁଷ୍ଟ ରହିପାରୁନି । ସେ ଆପଣଙ୍କୁ ଟାଣି ନେଉଛି ଦେଖେଇବାକୁ ତା'ର ଅନ୍ୟାନ୍ୟ କୃତିରାଜିକୁ । କବାଟରେ ଅଠାଳିଆ ପଟି ଦେଇ ଲଗାଯାଇଛି ତା' ଅଙ୍କା ଛବିଟିଏ । ଆଉ ଗୋଟିଏ ଛବି ଆଙ୍କି ସେ ରେଫ୍ରିଜିରେଟର୍‌ରେ ଝୁଲେଇ ଦେଇଛି । ହେଇଟି, ଗୋଟିଏ ପ୍ଲାଷ୍ଟିକ୍ ଥାଳିଆ ଉପରେ ଠିଆ ହୋଇଛି ଟିକି

କୁକୁରଟିଏ । ଅଟା ଜନ୍ତଣିରେ ଗୋଲାପି ରଂଗ ଦେଇ ସେହି ଜନ୍ତଣିରେ କୁକୁରଟିକୁ ତିଆରି କରିଛି ସେ । କୁକୁରଟିର ଟିକି ଟିକି ଚାରୋଟି ଗୋଡ଼ । ତା' ପାଟିରେ ଛୋଟ ହାଡ଼ ଖଣ୍ଡେ । ଥାଳିଆ ପାଖରେ ଅନ୍ୟ ଏକ ଥାଳିଆରେ ପ୍ଲାଷ୍ଟିକ୍ ମାଳି ଓ ନାଇଲନ୍ ସୂତା । ମାଳି ଭିତରେ ସୂତା ଗଳେଇ ସେ ଗୁନ୍ଥିଛି ମାଳାଟିଏ । ଖୁବ୍ ସୁନ୍ଦର ଲାଗୁନି ଆପଣଙ୍କୁ ?

ଏବେ ପଚାରୁଛି ଆପଣଙ୍କୁ – ଶିଶୁଟିର ଘର ପରିବେଶ ସଂପର୍କରେ ଆପଣଙ୍କର ମତ କଅଣ ? କଅଣ ଆପଣଙ୍କ ଧାରଣା ତା' ପିତାମାତାଙ୍କ ସମ୍ବନ୍ଧରେ ? ଘରଟିର ପରିବେଶ ପୂରାପୂରି ଭାବରେ ଶିଶୁ-ମନଲାଖି ନୁହେଁ କି ? ପିଲାଟିର ଚିତ୍ର ଆଙ୍କିବା, ଅଟା ଜନ୍ତଣିରେ କୁକୁର-କଣ୍ଢେଇ ତିଆରି କରିବା ଓ ପ୍ଲାଷ୍ଟିକ୍ ମାଳି ଏବଂ ନାଇଲନ୍ ସୂତାରେ ମାଳା ଗୁନ୍ଥିବା କାମକୁ ତା'ର ବାପମା' ପ୍ରଶଂସା କରି ନ ଥିଲେ କି ତାକୁ ଉତ୍ସାହ ଦେଇ ନ ଥିଲେ, ଏସବୁ କରିବା ତା' ପକ୍ଷେ କ'ଣ ସମ୍ଭବ ହୋଇଥାନ୍ତା ? ବଡ଼ମାନଙ୍କ ଆଖିରେ ତା'ର କୃତି କୌଣସି ଗୁରୁତ୍ୱ ବହନ କରୁନଥିଲେ ମଧ୍ୟ ସେଗୁଡ଼ିକ ଯେ ସେହି ଛୋଟ ପିଲାଟିର ସୃଷ୍ଟି, ତାହାକୁ ତ ଅସ୍ୱୀକାର କରି ହେବନି ? ତାହାହେଲେ ତା'ର ଏହି କୃତିତ୍ୱ ପାଇଁ ଆମେ ତାକୁ ବଧେଇ ଜଣେଇବାନି କାହିଁକି ?

ତାକୁ ଏହି 'ସାମାନ୍ୟ' ସଫଳତାରେ ପହଞ୍ଚେଇବା ପାଇଁ କି 'ଅସାମାନ୍ୟ' ପରିଶ୍ରମ ଓ ଧୈର୍ଯ୍ୟକୁ ପୁଞ୍ଜିରୂପେ ବ୍ୟବହାର କରିନଥିବେ ତା'ର ବାପମା' ? ଛବି ଆଙ୍କିବା, ଅଟା ଦଳିବା, ଅଟାରେ କୁକୁର ତିଆରିକରିବା, ମାଳା ଗୁନ୍ଥିବା ଇତ୍ୟାଦି କାମ କରିବା ପାଇଁ ପିଲାଟିର ହାତ ଓ ଆଖି କେତେ ସଚେତନ ରହି ନ ଥିବେ ! ଏହା ଫଳରେ ତା'ର ଟିକିଟିକି ମାଂସପେଶୀ ଗୁଡ଼ିକ ଏ' ପ୍ରକାରର ସୂକ୍ଷ୍ମ କାମ କରିବାପାଇଁ କେତେ ମେହନତ କରିନଥିବ ! ତା'ର ହାତ ଅଙ୍କା ଛବି କି ହାତଗଢ଼ା କୁକୁର କୌଣସି ବିରାଟ ମହଲର ଶୋଭା ବର୍ଦ୍ଧନ କରିନପାରେ । ହେଲେ, ତା' ନିଜ ଘରପାଇଁ ତ ସେଗୁଡ଼ିକ ଗୋଟିଏ ଗୋଟିଏ ଅମୂଲ୍ୟ ସଂରକ୍ଷଣ !

ପୁଣି ଆଖି ଫେରାନ୍ତୁ ଅନ୍ୟ ଏକ ଦୃଶ୍ୟପଟକୁ । ପିଲାଟିର ମା' ଆପଣଙ୍କ ପାଇଁ ଚା' ତିଆରି କଲାବେଳେ ପିଲାଟି ତା' ଟେବୁଲ୍ ଉପରେ କଇଁଚି ଧରି କାଟିବାରେ ଲାଗିଛି ରଙ୍ଗିନ୍ କାଗଜ । ସେଗୁଡ଼ିକୁ ଛୋଟ ଛୋଟ କରି କାଟି ଗୋଟିଏ ବଡ଼ କାଗଜ ଉପରେ ଅଠାଦେଇ ଲଗେଇଦେବ । ଓଃ, କି' ଝମେଲା ! ଫଙ୍କା ପବନରେ ଟିକିଟିକି କାଗଜ ଖଣ୍ଡମାନ ଉଡ଼ିଯାଇ ଚଟାଣସାରା ଏଣେ ତେଣେ ବିଛେଇ ହୋଇ ପଡ଼ିଗଲା । କାଗଜ ଗୋଟେଇବା ପାଇଁ ଉଠୁ ଉଠୁ ତା' ହାତ ବାଜି ଅଠା ବୋତଲ ଢଳି ପଡ଼ିଲା ଓ ଅଠାତକ ଅଜାଡ଼ି ହୋଇ ପଡ଼ିଲା ଚଟାଣ ଉପରେ । ଅଠାକୁ ପୋଛିବା ପାଇଁ ଚେଷ୍ଟା କଲାବେଳକୁ

ଅଠାରେ ତା' ହାତ ସାଲୁବାଲୁ ହୋଇଗଲା ଓ ସେ ପିନ୍ଧିଥିବା ଜାମା ପ୍ୟାଣ୍ଟ୍‌ରେ ବୋଳି ହୋଇଗଲା ଅଠା ।

ପିଲାଟିର ମା' ଚା' ଧରି ରୋଷେଇ ଘରୁ ବାହାରି ଆସିଲେ । ବୈଠକଖାନାର ଚଟାଣରେ ବିଛେଇ ହୋଇପଡ଼ିଥିବା ଟୁକୁରା କାଗଜ ଖଣ୍ଡଗୁଡ଼ିକୁ ଓ ତଳେ ଢାଳି ହୋଇଯାଇଥିବା ଅଠାକୁ ଦେଖିଲେ । ଦେଖିଲେ ତାଙ୍କ ଗେହ୍ଲା ଝିଅର ଅଠା ସାଲୁବାଲୁ ହାତ ଓ ଅଠାମଖା ପ୍ୟାଣ୍ଟ୍ ଜାମାକୁ । କିନ୍ତୁ ତାଙ୍କଠାରେ କୌଣସି ବିରକ୍ତି ଓ ପ୍ରତିକ୍ରିୟା ପ୍ରକାଶ ପାଇଲାନି । ବିଶୃଙ୍ଖଳିତ ତଥା ଅପରିଷ୍କାର ଅବସ୍ଥା ଓ ପିଲା – ଏମାନେ ତ ଘନିଷ୍ଠ ବନ୍ଧୁ ! ଆପଣଙ୍କ ଭଳି ବାହାରର ଜଣେ ବ୍ୟକ୍ତିଙ୍କ ଉପସ୍ଥିତିରେ ତାଙ୍କ ଝିଅ ଯେଉଁ କାଣ୍ଡକାରଖାନା କରି ବସିଛି, ତାହା ତା' ପକ୍ଷେ (ପ୍ରତ୍ୟେକ ପିଲା ପକ୍ଷେ) ସଂପୂର୍ଣ୍ଣ ସ୍ୱାଭାବିକ ବୋଲି ଭାବିଥିବାରୁ ତାଙ୍କର ମାନସିକ ଶାନ୍ତିରେ ଆଞ୍ଚ ଆସିଲାନି ।

ବରଂ ସେ କହିଲେ, ''କିଛି ଅସୁବିଧା ନାହିଁ । ଆମେ ଦୁଇଜଣଯାକ ମିଶି ଟୁକୁରା ରଙ୍ଗିନକାଗଜ ଗୁଡ଼ିକୁ ଗୋଟେଇ ପକେଇବା । ଅଠାତକ ପୋଛି ବୋତଲରେ ରଖିଦେବା । ତୁ' ଆଉ ମୁଁ ଦୁହେଁ ଟୁକୁରା ଖଣ୍ଡଗୁଡ଼ିକରେ ଅଠା ଦେଇ ବଡ଼ କାଗଜରେ ଲଗେଇଦେବା । କ'ଣ ଠିକ୍ ତ ?''

ପିଲାଟି ହସିହସି ଉତ୍ତର ଦେଲା, ''ହଁ, ଠିକ୍ ।''

''ବାପା ଅଫିସ୍‌ରୁ ଫେରିଲେ ଏହି କାଗଜକୁ ନେଇ ଦେଖେଇଲେ ସେ ଖୁବ୍ ଖୁସି ହେବେ । ସେ ଆସିବା ପୂର୍ବରୁ ଆମର ଏ' କାମ ସାରିଦେବା ଦରକାର ।''

ମା'ଝିଅ ଦୁହେଁ ଆପଣଙ୍କୁ ବଳେଇ ଦେଇ ଫେରିଆସିଲେ ।

ଏବେ ଆପଣ ନିଜ ମନକୁ ପଚାରନ୍ତୁ । ପିଲାଟି ଯେଉଁ ପରିସ୍ଥିତି ଘରେ ସୃଷ୍ଟି କରିଥିଲା, ତାହା ସଂପୂର୍ଣ୍ଣ ସ୍ୱାଭାବିକ ବୋଲି ତା'ର ବାପମା'ଙ୍କ ମନରେ ତ କୌଣସି ସନ୍ଦେହ ନ ଥିଲା । ବରଂ ସେମାନେ ତା'ର ସୃଜନଶୀଳତାକୁ ଉତ୍ସାହିତ କରୁଥିଲେ । ଝିଅଟି ବି ଜାଣିଥିଲା ଯେ ସେ କିଛି ଭୁଲ୍‌ଭଟ୍‌କା କରିଦେଲେ ବି ତାହା କୌଣସି ସମସ୍ୟା ସୃଷ୍ଟି କରିବନି । ସେ ପିଲା, ଖେଳିବା ତା' ପକ୍ଷେ ଅତି ସାଧାରଣ କଥା । ପିଲାଏ ଖେଳି ବସିଲେ ଅସନା ହେବ ହିଁ ହେବ । ହୁଏତ ଘଣ୍ଟାଏ ଦୁଇଘଣ୍ଟା ପାଇଁ ତାଙ୍କର ବୈଠକଖାନା ଅପରିଚ୍ଛନ୍ନ ଦେଖାଯାଇପାରେ । କିନ୍ତୁ ତାହା ମା'ଝିଅଙ୍କ ସଂପର୍କ ଓ ଶାନ୍ତିରେ କୌଣସି ବ୍ୟାଘାତ ସୃଷ୍ଟି କଲାନାହିଁ । ପରେ ଉଭୟମିଶି ସଫାସୁତର କରିଦେବାରେ ଝିଅ ବି କିଛି ଶିଖିବାର ସୁବିଧା ପାଇଲା, କଅଣ, ହଁ ନା ନାହିଁ ?

ତାଙ୍କ ଘରେ ଯଦି ଏହା ସମ୍ଭବ ହୋଇପାରିଲା, ଆପଣଙ୍କ ଘରେ ବା ପ୍ରତ୍ୟେକଙ୍କ ଘରେ ତାହା ସମ୍ଭବ ହୋଇପାରିବନି କାହିଁକି ?

**ପ୍ର : ତାହାହେଲେ ମୋତେ କଅଣ କରିବାକୁ ପଡ଼ିବ ?**

ଉ : ଘରେ ଶିଶୁ ମନଲାଖି ପରିବେଶ ସୃଷ୍ଟି କରିବା ନିମନ୍ତେ ଆପଣ ଘରେ ଏଭଳି ଅବସ୍ଥା ସୃଷ୍ଟି କରିଥିବେ, ଯାହାର ପ୍ରଭାବରେ ପିଲାମାନେ ନିଜକୁ 'ଅତି ବିଶିଷ୍ଟ ବ୍ୟକ୍ତି' ରୂପେ ମନେ କରିବେ । ଆପଣମାନେ ସେମାନଙ୍କୁ ନିମନ୍ତ୍ରଣ ଜଣେଇ ସ୍ୱାଗତ କରିବା ନିମନ୍ତେ ଉତ୍ସୁକ ବୋଲି ସେମାନେ ଯେପରି ଧାରଣା କରିବେ, ସେଥିପ୍ରତି ସଚେତନ ରହିବେ । ପିଲାମାନେ ଛୋଟ ଥିବା ବେଳେ କର୍କଶ ଶବ୍ଦ କି କୋଳାହଳ ସହ୍ୟ କରି ପାରନ୍ତି ନାହିଁ । ମଧୁର ସ୍ୱରରେ କଥାବାର୍ତ୍ତା କଲେ ସେମାନେ ଖୁସି ହୁଅନ୍ତି । ଚକଚକିଆ ରଙ୍ଗିନ ଛବି ଦେଖିବାକୁ ଭଲ ପାଆନ୍ତି ସେମାନେ । ତାହାଛଡ଼ା ସେମାନେ ଅନ୍ୟ ପିଲାମାନଙ୍କର ଓ ପରିବାରର ବୟସ୍କ ସଦସ୍ୟମାନଙ୍କ ସାନ୍ନିଧ ଆଶା କରିଥାନ୍ତି । ଖୋଲା ଜାଗାରେ ଚଲାବୁଲା କରିବା ସେମାନଙ୍କର ପସନ୍ଦ । ଖଟ ଉପରେ ନ ବସି ଚଟାଣରେ ବସିବା ପାଇଁ ଓ ମନ ହେଲେ ଠିଆ ହୋଇପଡ଼ି ଏପଟ ସେପଟ ଚାଲିବାପାଇଁ ସେମାନଙ୍କର ବେଶୀ ଇଚ୍ଛା । ନିଜେ ଏପଟ ସେପଟ ହୋଇ ଘରେ ଥିବା ଯାବତୀୟ ଜିନିଷପତ୍ର ବିଷୟରେ ପଚାରି ବୁଝିବାରେ ସେମାନଙ୍କର ଆଗ୍ରହ ଅଧିକ । କିନ୍ତୁ, ପିତାମାତାମାନେ ସେମାନଙ୍କୁ ଏହି ସୁବିଧା ଦେବା ଦରକାର । ସବୁବେଳେ କାଖେଇ ବୁଲେଇଲେ ସେମାନଙ୍କର ସ୍ୱାଧୀନତା ବ୍ୟାହତ ହୁଏ ଓ ପରିବେଶରୁ ଶିକ୍ଷାଲାଭ କରିବା ପ୍ରକ୍ରିୟାରେ ବାଧାପଡ଼େ ।

ଆମେ କଅଁଳା ପିଲାଙ୍କୁ ଦୋଳାରେ ଶୁଆଇ ଦେଉ । କିନ୍ତୁ ଏହା ସେମାନଙ୍କ ପାଇଁ ଏକ ବନ୍ଦିଶାଳା ସଦୃଶ ! ଦୁଇ ତିନି ମାସ ପର୍ଯ୍ୟନ୍ତ ସେ ଏହି ବନ୍ଦୀ ଅବସ୍ଥାକୁ ସହି ନିଏ । ହେଲେ, ଛଅ ସାତ ମାସ ବେଳକୁ ତା'କୁ ତଳକୁ ନେଇ ଆସିବା ଉଚିତ । ଶିଶୁମାନେ ବଡ଼ ଅନୁସନ୍ଧିତ୍ସୁ । ଚାରିଆଡ଼କୁ ଚାହିଁବା, ଟିକିଏ ବଡ଼ ହୋଇଗଲେ ଚଲାଚଲି କରି ସବୁଥିରେ ହାତ ମାରିବା, କ୍ରମେ କଥା କହି ଶିଖିବା, ଅନ୍ୟ ପିଲାମାନଙ୍କ ଗହଣରେ ସମୟ ବିତେଇବା ପ୍ରତି ଆଗ୍ରହ ଦେଖେଇବା ଇତ୍ୟାଦି ତା'ର ବୃଦ୍ଧି ଓ ବିକାଶର ଲକ୍ଷଣ । ତେଣୁ, ତାକୁ ଏଥିରୁ ନିରୁତ୍ସାହିତ ନ କରି ବରଂ ଅନୁକୂଳ ପରିବେଶ ଯୋଗାଇଦେବା ପିତାମାତାଙ୍କର କର୍ତ୍ତବ୍ୟ ।

ପରିବାରରେ ଶିଶୁ ଏକ ନୂତନ ସଦସ୍ୟ । ଆମେ ବୟସ୍କ ବ୍ୟକ୍ତିମାନେ ପରିବାରରେ ନିଜ ନିଜର ପସନ୍ଦ ଜାହିର କରିବାର ସ୍ୱାଧୀନତା ଉପଭୋଗ କରିଥାଉ । କିନ୍ତୁ ଜୀବନ ଓ

ଦୁନିଆକୁ ଚିହ୍ନି ଆବିଷ୍କାର କରିବା ନିମନ୍ତେ ତାଙ୍କୁ ତ ପୁଣି ସୁଯୋଗ ଦେବା ଉଚିତ । ସ୍ୱାଭାବିକ ଭାବରେ ବିକାଶ ଲାଭ କରିବା ଓ ନିଜେ ନିଜେ ଶିଖିବାପାଇଁ ପର୍ଯ୍ୟାପ୍ତ ସୁଯୋଗ ନ ଦେଲେ ଶିଶୁଟି ସନ୍ତୋଷଜନକ ଭାବରେ ବିକାଶ ଲାଭ କରିପାରେନି । ଆପଣ ଜାଣି ରଖିବା ଦରକାର ଯେ ପିଲାକୁ ଚଲାବୁଲା ନ କରେଇଲେ ସେ କୁଆଡ଼କୁ ଯିବା ପାଇଁ ପସନ୍ଦ କରେନି । ତାକୁ ଖେଳନା ନଦେଲେ ସେ ଖେଳିବା ପାଇଁ ଆଗ୍ରହ ଦେଖାଏ ନାହିଁ । ତା' ସହ କେହି କଥୋପକଥନ ନ କଲେ ସେ ପାଟି ଖୋଲେନି । ବିକାଶ-ଅନୁକୂଳ ପରିବେଶରେ ହିଁ ଶିଶୁଟିର ଆଶାନୁରୂପ ବିକାଶ ସମ୍ଭବ ।

ଯେଉଁ ପରିବାରରେ ପିତାମାତାମାନେ ନିଜ ରୁଚି ଉପରେ ସର୍ବାଧିକ ଗୁରୁତ୍ୱ ଦେଇଥାନ୍ତି, ସେହି ପରିବାରରେ ଶିଶୁଟି ନିଜକୁ 'ଅତିରିକ୍ତ' ବା 'ବାହାରର କେହି' ବୋଲି ମନେ କରିଥାଏ । ଯେଉଁ ଘରର ସାଜସଜ୍ଜା ପଞ୍ଚତାରକା ହୋଟେଲ୍ ଭଳି, ଯେଉଁ ଘରେ ବିଭିନ୍ନ ଦାମିକା ତଥା ଆକର୍ଷଣୀୟ ଉପକରଣ ଭର୍ତ୍ତି, ଯେଉଁ ପରିବାରର ବିଭିନ୍ନ ଜିନିଷପତ୍ରର ପୁରାତନ ମୂଲ୍ୟ ରହିଛି ସେଗୁଡ଼ିକ ବୟସ୍କ ବ୍ୟକ୍ତିଙ୍କ ପଇଁ ଗୁରୁତ୍ୱପୂର୍ଣ୍ଣ ସିନା, ହେଲେ ଶିଶୁମାନଙ୍କ ପାଇଁ ସେହି ପରିବେଶ ବଡ଼ ପ୍ରତିକୂଳ ।

ଅନ୍ୟ କେତେକ ପରିବାରରେ ପିତାମାତାମାନେ ପରିଷ୍କାର ପରିଚ୍ଛନ୍ନତା ପ୍ରତି ଏତେ ସଚେତନ ଯେ ପିଲାଟି ତା'ର ଜାମାପଟା ମଇଳା କରିଦେଲେ ସେ 'ଏକ ବିରାଟ ପାପ' କରି ପକେଇଛି ବୋଲି ସେମାନେ ମନେ କରିଥାନ୍ତି । ପୁଣି ଏପରି କେତେକ ବଙ୍ଗଳା ଅଛି, ଯାହାର କାନ୍ଥରେ ଛବିଟିଏ ବି ନ ଥାଏ, ଚଟାଣରେ ବସିବା ପାଇଁ ନରମ ଗାଲିଚାଟିଏ ନଥାଏ,ନଥାଏ ଆରାମପ୍ରଦ ଚଉକି, ନଥାଏ ରଙ୍ଗବେରଙ୍ଗ ଖେଳନା, ବହି ନଥାଏ କି ନଥାଏ କ୍ରେୟନ୍ ଓ କାଗଜ ।

ତେଣୁ, ଆପଣ ଏହିସବୁ ଦିଗପ୍ରତି ଆନ୍ତରିକ ଦୃଷ୍ଟି ଦିଅନ୍ତୁ । ଘରର ପରିବେଶକୁ ବୟସ୍କ-ଅନୁକୂଳ ନ କରି ଶିଶୁ-ଅନୁକୂଳ କରିବାପାଇଁ ଚେଷ୍ଟିତ ହୁଅନ୍ତୁ ।

ତେବେ ମନେ ରଖିବାର କଥା ଯେ ଶିଶୁ-ଅନୁକୂଳ ଗୃହ ପରିବେଶ ଶିଶୁର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ବଦଳିବା ଦରକାର । ଜଣେ ଦୁଇ ବର୍ଷର ପିଲାର ଛବି ବହି ପସନ୍ଦ; କିନ୍ତୁ ପାଞ୍ଚବର୍ଷ ବୟସରେ ପହଞ୍ଚିଗଲେ ତା'ର ଦରକାର ପଡ଼େ ରଙ୍ଗ ପେନ୍ସିଲ ଓ ଚିତ୍ର ଆଙ୍କିବା ଖାତା । ହେଲେ ବାରବର୍ଷ ବୟସ ବେଳକୁ ତା'ପାଇଁ ଗପବହି ଓ ବିଶ୍ୱଜ୍ଞାନକୋଷ ଲୋଡ଼ା ।



# ଶିଶୁ ମନଲାଖି ପରିବାର (୨)

ପ୍ର : ଶିଶୁମାନଙ୍କର ବିକାଶ ପାଇଁ ଘରର ବାହାର ଓ ଭିତର ପରିବେଶ କ'ଣ ବାସ୍ତବରେ ଗୁରୁତ୍ୱପୂର୍ଣ୍ଣ ?

ଉ : ଏ' ସମ୍ପର୍କରେ ମନରେ ଆଦୌ ସନ୍ଦେହ ପୋଷଣ କରନ୍ତୁନି । ଶିଶୁର ଶାରୀରିକ ବୃଦ୍ଧି ବାହାରୁ ଦେଖି ଜାଣିହୁଏ । କିନ୍ତୁ ତା'ର ମାନସିକ ବିକାଶର ସ୍ତର କି ତା' ମନର ସୂକ୍ଷ୍ମ ପ୍ରତିକ୍ରିୟା ସମ୍ବନ୍ଧରେ କିଛି ଦେଖିହୁଏନି କି କଳନା କରି ହୁଏନି । ଆପଣଙ୍କ ସନ୍ତାନକୁ ଦୁଇବର୍ଷ ବୟସ ହୋଇଥିବାବେଳେ ଘରେ ଯେଉଁ ଫଟୋ ଝୁଲୁଥିଲା, ଯେଉଁ ପରଦା ଲାଗିଥିଲା କବାଟ ଓ ଝରକାରେ କି ଘର ଭିତରର ସାଜସଜ୍ଜା ଯେଉଁପରି ଥିଲା, ତାକୁ ଦଶବର୍ଷ ବୟସ ହେବା ବେଳକୁ ସେଥିରେ ଯଦି କୌଣସି ପରିବର୍ତ୍ତନ ସେ ଦେଖିବାକୁ ନ ପାଇଲା, ତେବେ ଏହା ବଡ଼ ଦୁର୍ଭାଗ୍ୟର କଥା ।

ବୟସ ବଢ଼ିଲେ ପିଲାମାନେ ନୂଆ ନୂଆ ପ୍ରକାରର ବହି ପଢ଼ିବାକୁ ଚାହାଁନ୍ତି । ନୂଆ ନୂଆ କାମରେ ଅଂଶ ଗ୍ରହଣ କରିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି । ପରଦା କଣରେ କି କବାଟ କଣରେ ଲୁଚି ଲୁଚକାଳି ଖେଳ ଖେଳିବା ପାଇଁ ଭଲ ପାଆନ୍ତି ।

ତାହାଛଡ଼ା ସେମାନଙ୍କ ନିରାପତ୍ତା ପ୍ରତି ମଧ୍ୟ ଧ୍ୟାନ ଦେବାର ଆବଶ୍ୟକତା ରହିଛି । ସେମାନେ ଯେପରି ଶିଡ଼ି ପାହାଚରେ ପଡ଼ି ନଯାଆନ୍ତି କି ଆପଣଙ୍କ ଅଜାଣତରେ ଘରୁ ବାହାରକୁ ଯାଇ ନପାରନ୍ତି, ସେଥିପ୍ରତି ସଚେତନ ରହିବେ । ଘର ଚାରିପଟେ ଉଚ୍ଚ ପାଚିରି କରିବା, ବାଲ୍‌କୋନିରେ ବାଡ଼ା ଲଗେଇବା କିମ୍ବା ଲୁହା କି କାଠର ଗ୍ରୀଲ୍ ଲଗେଇବା ଫଳରେ ସେମାନେ ବାହାରକୁ ଚାଲିଯିବାରେ କି ବାଲ୍‌କୋନିରୁ ଖସିପଡ଼ିବାରେ ବାଧା ଉପୁଜେ । ସେମାନେ ଯେପରି ବାଡ଼ା ଉପରେ ନଚଢ଼ନ୍ତି, ସେଥିପ୍ରତି ନିଘା ରଖିଥିବେ । ଟେବୁଲ୍‌କୁ ଲଗେଇ ଚେୟାର୍ ରଖିବେନି । ନୋହିଲେ ସେମାନେ ଚେୟାର ଉପରେ ଚଢ଼ି ଟେବୁଲ ଉପରକୁ ଯିବା ସୁଗମ ହୋଇଯାଏ ଓ ଟେବୁଲ୍ ଉପରୁ ତଳେ ପଡ଼ିଯିବାର ଆଶଙ୍କା ବଢ଼ିଯାଏ । ତେଣୁ ବ୍ୟବହାର କରିବା ସମୟକୁ ଛାଡ଼ିଦେଲେ ଅନ୍ୟ ସମୟରେ ଚେୟାର

ଗୁଡ଼ିକୁ ଟେବୁଲ୍ ପାଖରୁ ନେଇ ଅଲଗା ସ୍ଥାନରେ ରଖିଦେବେ । ଇଲେକ୍ଟ୍ରିକ୍ ସୁଇଚ୍ ଓ ପ୍ଲଗ୍ ପିଲାର ହାତପାହାନ୍ତାରେ ଥିଲେ ପ୍ଲଗର କଣାକୁ ଅଠାଲଗା ଫିତା ଦେଇ ବନ୍ଦ କରିଦେବେ । ନୋହିଲେ ସେ ତାହା ଭିତରେ ଆଙ୍ଗୁଠି ଗେଞ୍ଜିବାର ସମ୍ଭାବନା ଥାଏ ।

ପିଲାକୁ ଦୁଇ ତିନିବର୍ଷ ହୋଇଗଲେ ସେ ଆପଣଙ୍କ ବ୍ୟାଗ୍ କି ବାକ୍ସ ଟଣାଟଣି କରେ । ବାପାଙ୍କ ଟେବୁଲ୍ ଉପରୁ ଫାଇଲ୍ ଟାଣି ଆଣି କାଗଜ ଚିରି ପକାଏ । ବଡ଼ ଭାଇ ଭଉଣୀଙ୍କ ବହିଖାତା ଚିରିଦିଏ କି କଲମ କିମ୍ବା ପେନ୍‌ସିଲ୍ ହାତରେ ପଡ଼ିଗଲେ ସେଥିରେ ଗାରେଇ ଚାଲେ । ଚଉକି ଉପରେ ଚଢ଼ୁଚଢ଼ୁ ତଳକୁ ପଡ଼ିଯାଇ ଖଣ୍ଡିଆଖାବରା ହୁଏ ।

ପିଲାର ଏହି ସବୁ ଅଳି ଅର୍ଦଳିକୁ ସହିନେବା ପାଇଁ ଆପଣ ଅଭ୍ୟସ୍ତ ହେବା ଦରକାର । ତା'ର ଏହି ମାଙ୍କଡ଼ାମି ସବୁଦିନେ ରହିବନି । ସେଇଥିପାଇଁ ତା'ର ହାତ ପାହାନ୍ତାରେ କୌଣସି ଜିନିଷପତ୍ର କି ଔଷଧପତ୍ର ଇତ୍ୟାଦି ରଖନ୍ତୁନି । ଆଲମିରା, କପ୍‌ବୋର୍ଡ଼ ଇତ୍ୟାଦିରେ ତାଲା ଲଗେଇ ଦିଅନ୍ତୁ । ବେଳେବେଳେ ତା'ର କୁକୀର୍ତ୍ତିର ପରିଣାମ ବିଷୟରେ ସେ ଅବଗତ ହେଲେ ଏହା ଭବିଷ୍ୟତ ପାଇଁ ଭଲ କାମ ଦିଏ । ଥରେ ଦୁଇଥର ଚେୟାର୍‌ରୁ ପଡ଼ି ଖଣ୍ଡିଆଖାବରା ହୋଇଥିଲେ ଓ କନ୍ଦାକଟା କରିଥିଲେ, ପରେ ସେ ଚେୟାର୍‌ପ୍ରତି ସାବଧାନ ରହିବାକୁ ଶିଖିଥାଏ । ଚା'କପ୍‌ର ଉଷୁମ ଅନୁଭବ କରିନଥିଲେ ତାତି ସମ୍ବନ୍ଧରେ ତା'ର ଜ୍ଞାନ ଉଦୟ ହୁଏ ନାହିଁ । ପନିକି କି ଛୁରୀର ଧାର ଓ କାଟି ପକେଇବା ଗୁଣ ଦେଖିଲେ ହିଁ ଧାରୁଆ କି ମୁନିଆ ଉପକରଣଗୁଡ଼ିକ ପ୍ରତି ସେ ସତର୍କ ରହେ ।

ଆପଣ କାମ କରୁଥିବାବେଳେ ସମୟେ ସମୟେ ତାକୁ ପାଖରେ ବସାନ୍ତୁ । ଆପଣ ରୋଷେଇ କଲାବେଳେ ତା'କୁ ଦୂରରେ ବସେଇ ଗିନାଚାମଚ ଧରେଇଦେଲେ ସେ ଖଡ଼ଖଡ଼ କରି ସେଥିରୁ ଆନନ୍ଦ ପାଇଥାଏ । ଏପରିକି ସେ ଖାଇବା ଟେବୁଲ୍ ଉପରେ ଟ୍ରେ ଓ ଗିଲାସ ରଖିପାରେ । ଗିଲାସରେ ପାଣି ଭରିପାରେ । ଝାଡୁଧରି ଘରର ଚଟାଣ ଓଳେଇପାରେ । ଏହା ଫଳରେ ଘର କାମରେ ସହଯୋଗ କରିବାର ତୃପ୍ତି ଅନୁଭବ କରିବା ସଙ୍ଗେ ସଙ୍ଗେ ସେ ବିରକ୍ତି ଅନୁଭବ କରିବାର ସୁଯୋଗ ପାଏନା ।

ତାକୁ ପାଞ୍ଚବର୍ଷ ବୟସ ହେବା ପୂର୍ବରୁ ଖେଳ ମାଧ୍ୟମରେ ଆପଣ ତା'ର ମେଧା ବୃଦ୍ଧି କରେଇ ପାରନ୍ତି । କେତେକ ଶାରୀରିକ କୌଶଳ ଶିକ୍ଷା ଦେଇ ପାରନ୍ତି । ତା'ର ଏକାଗ୍ରତା ବୃଦ୍ଧି କରିବାରେ ଏହି ପଦକ୍ଷେପ ଖୁବ୍ ସାହାଯ୍ୟ କରିଥାଏ ଓ ପରେ ଛାତ୍ରଜୀବନରେ ଏହା ଖୁବ୍ ସହାୟକ ହୋଇଥାଏ । ତାକୁ ଖେଳରେ ମସଗୁଲ୍ କରି ରଖିବାରେ ଅନ୍ୟାନ୍ୟ ଫାଇଦା ମଧ୍ୟ ଅଛି । ଚତୁଃପାର୍ଶ୍ୱର ଦୁନିଆ ଯେ ଅତ୍ୟନ୍ତ

କୌତୂହଳ ପୂର୍ଣ୍ଣ ଓ ଏହା ଆବିଷ୍କାର ସାପେକ୍ଷ, ଖେଳ ହିଁ ତାକୁ ଏହି ଶିକ୍ଷା ଦେଇଥାଏ । ଏଥିରେ ଜଡ଼ିତ ରହିବା ବେଶ୍ ଗଠନମୂଳକ ଓ ତା'ର ବିକାଶ ଅନୁକୂଳ । ଖେଳରେ ମଜି ରହିଲେ ସେ ବିଶୃଙ୍ଖଳିତ ହେବା ପାଇଁ ସୁଯୋଗ ପାଏନି । ଯେଉଁ ଶିଶୁ ସୃଜନଶୀଳ କ୍ରିୟାରେ ନିୟୋଜିତ, ଖେଳାଖେଳି କରିବାରେ ରତ, ତଥା ବୟସ୍କମାନଙ୍କ ସାନ୍ନିଧରେ ସମୟ ଅତିବାହିତ କରିବା ନିମନ୍ତେ ଯିଏ ବେଶୀ ସୁଯୋଗ ପାଇଥାଏ, ସେ ଅନ୍ୟମାନଙ୍କ ସହ କଳହରେ ବ୍ୟାପୃତ ହୋଇ ପଡ଼ିବା କି କନ୍ଦାକଟା କରିବାର ସମ୍ଭାବନା ଯଥେଷ୍ଟ କମ୍ । ଯାହାପାଇଁ ସମୟ ବେଶ୍ ଉପଭୋଗ୍ୟ, ତାହାଠାରେ ବିରକ୍ତି, କ୍ରୋଧ, ଅନୈତିକ ଆଚରଣ ଆଦିପ୍ରକାଶ ପାଇବାର ସମ୍ଭାବନା ମଧ୍ୟ ଯଥେଷ୍ଟ ଊଣା ।

ଆପଣ ହୁଏତ ଭାବିପାରନ୍ତି ଯେ ତାକୁ ଖେଳରେ ମଡେଇ ରଖିବାପାଇଁ ଦାମିକା ଖେଳନାମାନ କିଣବାକୁ ପଡ଼ିବ ଓ ଏହି ଆର୍ଥିକ ବୋଝକୁ ଆପଣ ସମ୍ଭାଳି ପାରିବେନି । କିନ୍ତୁ ପିଲାର ଖେଳିବା ପାଇଁ ଦାମିକା ଖେଳନା ନ କିଣି ଶସ୍ତା ହୋଇଥିବା କାଠ କି ପ୍ଲାଷ୍ଟିକ୍ ଖେଳନା କିଣାଯାଇପାରେ । ବ୍ୟାଟେରି ଚାଳିତ ଖେଳନା ମୋଟରଗାଡ଼ି କି ରେଳଗାଡ଼ି ବଦଳରେ କାଠ ତିଆରି ଓ କାଠ ଚକଲଗା ଗାଡ଼ି କିଣିବାରେ ମନା ନାହିଁ । ଚଟାଣ ଉପରେ ଗାଡ଼ିର ଚକ ଗଡ଼ିଲେ ହିଁ ସେଇଥିରେ ତା'ର ଆନନ୍ଦ । ତା'ର ଖେଳନାଗୁଡ଼ିକୁ ସାଇତି ରଖିବା ନିମନ୍ତେ ତାକୁ ଗୋଟିଏ ସ୍ୱତନ୍ତ୍ର ବାସ୍କେଟ୍ କି ବ୍ୟାଗ୍ ଧରେଇଦେଲେ, 'ଏ ମୋ ଖେଳନା ବାକ୍ସ, କହି ସେ ଆନନ୍ଦ ପାଇଥାଏ । ଦାମିକା ଖେଳନା କିଣିବାର ପାଲରେ ପଡ଼ନ୍ତୁନି ।

ଛୋଟ ଛୋଟ ଖେଳନା ଡେକ୍‌ଚି, କଡ଼େଇ, ଖଡ଼ିକା, ଥାଳି, ଥାଳିଆ, ଗିଲାସ, ଗିନା, ଚାମଚ ଇତ୍ୟାଦି ଧରେଇଦେଲେ ସେ ମିଛିମିଛିକା ରାନ୍ଧି ମିଛିମିଛିକି ଖାଦ୍ୟ ପରିବେଷଣ କରିଥାଏ । ସେଥିରୁ ଖାଇବାର ଛଳନା କରି ସେ ପାଏ ଆନନ୍ଦ । ଏପରିକି ସେମାନଙ୍କ ଉପରେ କଡ଼ା ନିଘା ରଖି ଓସାରିଆ କୁଣ୍ଡରେ ସାମାନ୍ୟ ପାଣି ନେଇ ସେମାନଙ୍କୁ ପାଣିରେ ଖେଳିବାର ସୁଯୋଗ ଦିଆଯାଇପାରେ । ପିଲାମାନେ ପାଣିରେ ଖେଳିବା ନିମନ୍ତେ ଖୁବ୍ ଭଲ ପାଆନ୍ତି । ଏହି ସମୟରେ ତା'ର ଜାମାପ୍ୟାଣ୍ଟ ଓଦା ହୋଇଗଲେ ସେଥିରେ ଆପତ୍ତି କରିବେନି କି ବୃଥା ଆତଙ୍କିତ ହୋଇପଡ଼ିବେନି । ତେବେ ସେମାନେ ପାଣିରେ ଖେଳୁଥିଲା ବେଳେ ସେମାନଙ୍କ ଉପରେ କଡ଼ା ନଜର ରଖିବା ବିଷୟ ଆଦୌ ଭୁଲିବେନି ।

**ପ୍ର : ଆପଣ ବାରମ୍ବାର ଦୋହରାଉଛନ୍ତି ଯେ ଶିଶୁ ହେଉଛି ପରିବାରର ଜଣେ ଅତି ବିଶିଷ୍ଟ ବ୍ୟକ୍ତି । ସତରେ କ'ଣ ତା'ପାଇଁ ବିଶିଷ୍ଟ ଚର୍ଚ୍ଚାର ଆବଶ୍ୟକତା ରହିଛି ପରିବାରରେ ?**

ଉ : ହଁ, ଶିଶୁ ହେଉଛି ପରିବାରର ଜଣେ 'ଅତି ବିଶିଷ୍ଟ ବ୍ୟକ୍ତି' । ତେଣୁ ତା ପାଇଁ ଯେ ସ୍ୱତନ୍ତ୍ର ଧ୍ୟାନ ଲୋଡ଼ା, ଏଥିରେ କୌଣସି ସନ୍ଦେହ ନାହିଁ । କାରଣ ତା'ଠାରେ ବିକଶିତ ହୋଇ ଚାଲିଥାଏ ଏକ ପରିଚିତି ବୋଧ । ଏହି ପରିଚିତିର ରହିଛି ସ୍ୱାତନ୍ତ୍ର୍ୟ । ଏହି କାରଣରୁ ସେ ପିତାମାତା ଓ ଭାଇ କିମ୍ବା ଭଉଣୀଙ୍କଠାରୁ ନିଜର ପାର୍ଥକ୍ୟ ବାରିପାରେ । 'ତୁମେ ଓ ମୁଁ' ଏବଂ 'ତୁମର' ଓ 'ମୋର' – ଏ ବିଷୟରେ ମଧ୍ୟ ତା'ଠାରେ ପ୍ରକାଶ ପାଏ ସଚେତନତା । ସୁତରାଂ ନିଜପାଇଁ ପରିବାରରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିବାକୁ ସେ ଚାହେଁ । ତା' ନିମନ୍ତେ ଏହି ସୁଯୋଗ ଦେବା ଓ ତା'ର ଆବେଗ ତଥା ଭାବପ୍ରବଣତାର ସ୍ୱାସ୍ଥ୍ୟକୁ ଅନୁରୂପ ଭାବରେ ଗଢ଼ିବା ହେଉଛି ପିତାମାତାଙ୍କର କର୍ତ୍ତବ୍ୟ । ତା' ନିମନ୍ତେ ଦରକାର ସ୍ୱତନ୍ତ୍ର ଖଟ ଓ ବିଛଣାପତ୍ର । ସେହି ଖଟ ତଳେ ରହିବ ତା'ର ଖେଳନା ବାକ୍ସ ଓ ଅନ୍ୟାନ୍ୟ ସାମଗ୍ରୀ । ସେ ବାପମା'ଙ୍କ ପାଖରେ ସମାନ ଖଟରେ ଶୋଉଥିଲେ, ତା'ପାଇଁ ଯେମିତି ହେଲେ ଅଲଗା ଜାଗାଟିଏ ବାହାର କରିବାକୁ ପଡ଼ିବ କିମ୍ବା ଦରକାର ପଡ଼ିଲେ ତା'ପାଇଁ ତିଆରି କରିବାକୁ ପଡ଼ିବ ଛୋଟ କପ୍‌ବୋର୍ଡ଼ କି ଆଲମିରାଟିଏ । ତା'ର ଯାହା ଇଚ୍ଛା, ସେ ସେହିପ୍ରକାରେ ତାକୁ ବ୍ୟବହାର କରିପାରେ । ଛୋଟ ଛୋଟ ପଥର, ରଙ୍ଗବେରଙ୍ଗ ଶାମୁକା, ବୋତାମ, ରଙ୍ଗିନ୍‌ପିନ୍, ପଇସାପତ୍ର, ତା' ଅଙ୍କା ଚିତ୍ର ଇତ୍ୟାଦି ସବୁକିଛି ସେ ରଖିପାରେ ସେଠି । ସେଥିରେ ଯାହା କିଛି ସେ ରଖିବ ସେହି ସବୁତକ ସମ୍ପୂର୍ଣ୍ଣ ଭାବେ ତା'ର ।

ତାହାଛଡ଼ା ତା' ପାଇଁ ଆମକୁ ଦେବାକୁ ପଡ଼ିବ ଅପର୍ଯ୍ୟାପ୍ତ ସମୟ । ଧନୀଲୋକଙ୍କ ପରିବାରରେ ସନ୍ତାନପାଇଁ ସମୟ ଦେବାରେ ବିଶେଷ ସମସ୍ୟା ନଥାଏ । ତେବେ ସେ ଯାହାହେଉ, ତାପାଇଁ ଯେମିତି ହେଲେ ସମୟ ବାହାର କରିବାକ ପଡ଼ିବ । ଯେଉଁ ପିଲାପାଇଁ ପିତାମାତାମାନେ ସମୟ ଦେବାରେ କାର୍ପଣ୍ୟ କରନ୍ତି ନାହିଁ, ସେହି ପରିବାରର ପରିବେଶ ପିଲାପାଇଁ ଅତ୍ୟନ୍ତ ଅନୁକୂଳ । ଅନେକ ପିତାମାତା ଓ ଅଜାଆଈ ସଚେତନ ନଥାଇ ମଧ୍ୟ ଛୋଟ ପିଲାଙ୍କ ନିମନ୍ତେ ଯଥେଷ୍ଟ ସମୟ ଦେଇଥାନ୍ତି । ସେମାନଙ୍କ ସାଙ୍ଗରେ ଖେଳନ୍ତି, ସେମାନଙ୍କୁ ପୋଷାକପତ୍ର ପିନ୍ଧେଇ ଦେଲାବେଳେ ସେମାନଙ୍କ ସହ ଗପ କରୁଥାନ୍ତି । ନାନାବାୟା ଗୀତ ଗାଇ ଶୁଣାନ୍ତି ସେମାନଙ୍କୁ ଓ ସେମାନଙ୍କୁ ବାହାରକୁ ବୁଲେଇବାକୁ

ନିଅନ୍ତି ଇତ୍ୟାଦି । ସେମାନଙ୍କୁ ଛବିବହିରୁ ଚିତ୍ର ଚିହ୍ନେଇ ଦିଅନ୍ତି । ପରିବାରରେ ସେଦିନ ଘଟିଥିବା ଘଟଣାକୁ ପୁଟଦେଇ ବଖାଣି ବସନ୍ତି ସେମାନଙ୍କ ଆଗରେ । ଏହା ନକଲେ କଥୋପକଥନ କରିବା, କଥା କହି ଶିଖିବା ଓ ପରିବେଶ ସମ୍ବନ୍ଧରେ ଜ୍ଞାନ ଅର୍ଜନ କରିବାରେ ସନ୍ତାନଟି ସମସ୍ୟାର ସମ୍ମୁଖୀନ ହୋଇଥାଏ । ଅନେକ ପରିବାରରେ ବାପମା'ମାନେ ପିଲାଙ୍କୁ ଟେଲିଭିଜନ୍ ପାଖରେ ବସେଇ ଦିଅନ୍ତି । କିନ୍ତୁ ଟେଲିଭିଜନ୍ କ'ଣ ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା କରିପାରିବ ନା ଭାବର ଆଦାନପ୍ରଦାନ କରିପାରିବ ?

ଆପଣ ଯଦି ନିଜ ସନ୍ତାନର ଶିକ୍ଷାଦୀକ୍ଷାକୁ ପ୍ରସାରିତ କରିବାପାଇଁ ଚାହୁଁଛନ୍ତି, ତେବେ ଆପଣ କଅଣ କଅଣ କରିବେ ତା'ର ତାଲିକାଟିଏ ପ୍ରସ୍ତୁତ କରିନିଅନ୍ତୁ, ଯଥା ତାକୁ କେତେବେଳେ ପଢ଼େଇବେ, କେତେବେଳେ ବାହାରକୁ ବୁଲେଇବାକୁ ନେବେ, ସେ ଘରେ ରହିଥିବା ବେଳେ ଅନ୍ୟ କଅଣ କଅଣ ସବୁ କରିବ, ତା'ସହ ବସି କେତେବେଳେ ଗପସପ କରିବେ, ତାକୁ କେତେବେଳେ କାହାଣୀ ଶୁଣାଇବେ ଇତ୍ୟାଦି । କି' କି କାହାଣୀ ଶୁଣାଇବେ, ସେ ସମ୍ପର୍କରେ ମଧ୍ୟ ପ୍ରସ୍ତୁତି ଦରକାର ।

ଗପ ଶୁଣେଇବାପାଇଁ ସମୟ ନିର୍ଦ୍ଦିଷ୍ଟ କରିଦେଲେ ଆହୁରି ଭଲ । ରାତିରେ ଖାଇବାକୁ ଯିବା ପୂର୍ବରୁ କିମ୍ବା ରାତିରେ ବାପାଙ୍କ ପାଖରେ ଶୋଇବାକୁ ଯିବା ପୂର୍ବରୁ ତାକୁ କାହାଣୀ ଶୁଣେଇ ପାରନ୍ତି । ଛବି ଆଙ୍କିବା ବହି ଓ କ୍ରେୟନ୍ ବିଶେଷ ଦାମିକା ନୁହେଁ । ତେଣୁ ତାକୁ ଆଗରୁ ଆଣି ଘରେ ସାଇତି ରଖିବେ । ବୁଲେଇନେବା ପାଇଁ ସକାଳ ଅପେକ୍ଷା ସନ୍ଧ୍ୟା ସମୟ ଅଧିକ ଅନୁକୂଳ । କାରଣ ସକାଳେ କାମର ଚାପ ବେଶୀ । ସନ୍ଧ୍ୟାରେ ରାତି ଖାଇବା ପ୍ରସ୍ତୁତ କରିସାରି ବୁଲେଇ ନେଲେ ଫେରିବା ପାଇଁ ତରତର ହେବାକୁ ପଡ଼େ ନାହିଁ । ସନ୍ତାନ ଟିକିଏ ବଡ଼ ହୋଇଗଲେ ସେ ବଲ୍, ବ୍ୟାଟ୍ ଧରି କ୍ରିକେଟ୍ ଖେଳିବାପାଇଁ ବାହାରିଯାଇପାରେ କିମ୍ବା ବ୍ୟାଡ଼ମିଣ୍ଟନ ଖେଳିବାପାଇଁ ଯାଇପାରେ । ବାପା, ମା ଓ ପିଲାମାନେ ଏକାଠି କ୍ରିକେଟ କି ବ୍ୟାଡ଼୍‌ମିଣ୍ଟନ୍ ଖେଳିବାର ମଜା ଭିନ୍ନ ।

ମଇଦାରେ ପାଣି ଓ ଲୁଣ ଏବଂ କିଛି ଖାଦ୍ୟ ରଙ୍ଗ ମିଶେଇ ଦଳିଦେଲେ ଯେଉଁ ଜନ୍ତଣି ହୋଇଯାଏ, ସେହି ଜନ୍ତଣିରେ ଚଢ଼େଇ, ସାପ, ମଣିଷ, ପରିବାପତ୍ରର ଖେଳନା କରାଯାଇପାରେ । ଏହି ଜନ୍ତଣିକୁ ପ୍ଲାଷ୍ଟିକ୍ ବାକ୍ସ କି ପ୍ଲାଷ୍ଟିକ୍ ଖେଳନା ଖୋଳରେ ରଖିଲେ ତାହା ନରମ ରହିବାରେ ସମସ୍ୟା ନଥାଏ ।



# ଶିଶୁ ମନଲାଖି ପରିବାର (୩)

**ପ୍ର : ପିଲାର ଶିକ୍ଷାକୁ କିପରି ସରସ ଓ ଉପଭୋଗ୍ୟ କରିହେବ ? ଆକର୍ଷଣୀୟ କରି ନ ପାରିଲେ ତ ସେ ଶିକ୍ଷାପ୍ରତି କୌଣସି ଆଗ୍ରହ ଦେଖେଇବନି ?**

ଉ : ପିଲାମାନଙ୍କୁ ଶିକ୍ଷାଦେବା କି ପଢେଇବା ବାପମା'ଙ୍କ ପାଇଁ ସତରେ ଏକ ସମସ୍ୟା । ଏଥିପାଇଁ ମଧ୍ୟ ପୂର୍ବରୁ ଯୋଜନା କରିବାର ଆବଶ୍ୟକତା ରହିଛି ।

ଏଇ ରମା କଥା ଦେଖନ୍ତୁ । ଘର ବାଲକୋନିରେ କେତେ ନା କେତେ ଫୁଲକୁଣ୍ଡ ଓ ନାନା ପ୍ରକାର ଆକର୍ଷଣୀୟ ପତ୍ରଥିବା ଗଛ ଲଗେଇଛି ସେ । ସେଥିରେ ତା'ର ଖୁବ୍ ସଉକ । ସେ କୁଣ୍ଡରେ ଲାଗିଥିବା ଗଛଗୁଡିକୁ ପାଣିଦେବା କି ଯତ୍ନନେବାବେଳେ ନିଜ ପୁଅକୁ ମଧ୍ୟ କାମରେ ଲଗେଇଥାଏ । ମା'କୁ ଦେଖି ପୁଅ ମଧ୍ୟ ମଗ୍‌ରେ ପାଣିନେଇ ଗଛ ମୂଳରେ ପାଣିଦିଏ । ଚାରା ଲଗେଇବାବେଳେ ରମା ମଧ୍ୟ ଚାରା ପୋତିବା ନିମନ୍ତେ କହିଥାଏ ପୁଅକୁ । ଗଛଗୁଡିକର ଯତ୍ନନେବା ବିଷୟ ବତେଇ ଦୁଇ ତିନୋଟି କୁଣ୍ଡରେ ଲାଗିଥିବା ଗଛର ଯତ୍ନନେବାର ଦାୟିତ୍ୱ ପୁଅକୁ ଅର୍ପଣ କରିଥାଏ । ସାର କିଣିବା ଦରକାର ପଡିଲେ ପୁଅକୁ ସାଙ୍ଗରେ ନେଇ ସାର କିଣିବା ନିମନ୍ତେ ବଜାର ଯାଏ ରମା । ଏପରିକି ଗଛମୂଳେ ସାର ଛିଞ୍ଚିବା କାମ ମଧ୍ୟ ପୁଅକୁ ଅର୍ପଣ କରିଥାଏ ସେ । ଏପରି କରିବା ଫଳରେ ମା'ପୁଅଙ୍କ ଭିତରେ ଭାବର ଆଦାନପ୍ରଦାନ ଘଟିବା ସଙ୍ଗେ ସଙ୍ଗେ ଗଛଭଳି ଜୀବନ୍ତ ବସ୍ତୁମାନଙ୍କ ସହ ପରିଚିତ ହେବା ଓ ସେମାନଙ୍କର ଯତ୍ନନେବା ସମ୍ପର୍କରେ ପୁଅ ଜ୍ଞାନ ଅର୍ଜନ କରିଥାଏ । ଘରର ପୋଷା କୁକୁର, ବିରାଡି, ଠେକୁଆ, ଶୁଆ, ଶାରୀ ଇତ୍ୟାଦିଙ୍କୁ ଖୁଆଇବା, ସେମାନଙ୍କୁ ଗାଧୋଇଦେବା, ଦେହ ଖରାପ ହେଲେ ସେମାନଙ୍କୁ ନେଇ ପଶୁଡାକ୍ତରଙ୍କୁ ଦେଖେଇବା ଆଦି କାର୍ଯ୍ୟରେ ମଧ୍ୟ ସନ୍ତାନମାନଙ୍କୁ ସାଥି କରାଯାଇପାରେ ।

ପିଲାମାନେ ସ୍ୱାଭାବିକ ଭାବରେ ଖୁବ୍ କୌତୂହଳୀ । ପଶୁପକ୍ଷୀମାନଙ୍କର ଚିତ୍ରଥିବା ଛବିବହିରୁ ପଶୁପକ୍ଷୀମାନଙ୍କୁ ଚିହ୍ନେଇ ଦିଆଯାଏ ଓ ସେମାନେ ମଧ୍ୟ ଛବିରୁ ସେମାନଙ୍କୁ

ଚିହ୍ନିପାରନ୍ତି । କିନ୍ତୁ ସେମାନଙ୍କୁ ଚିଡିଆଖାନା ବୁଲେଇ ନେଇ ଜୀବନ୍ତ ହାତୀ, ବାଘ, ଭାଲୁ, ହରିଣ, କୁମ୍ଭୀର, ମୟୂର, ଶୁଆ, ସାପ ଇତ୍ୟାଦି ଦେଖେଇ ଦେଲେ ସେମାନେ ଏହି ସ୍ମୃତିକୁ ଆଦୌ ଭୁଲିପାରନ୍ତି ନାହିଁ । ପାର୍କକୁ ବୁଲେଇ ନେଇ ରଙ୍ଗବେରଙ୍ଗ ଫୁଲସବୁ ଦେଖେଇଲେ ସେମାନେ ଖୁବ୍ ଖୁସୀ ହୋଇଥାନ୍ତି ।

ପିଲାମାନେ ଘର କାନ୍ଥରେ ଟଙ୍ଗା ହୋଇଥିବା ଛବିରୁ ହୁଏତ ସମୁଦ୍ର ତୀର ସମ୍ପର୍କରେ ଧାରଣା କରିଥିବେ ସିନା, କିନ୍ତୁ ସେମାନଙ୍କୁ ସମୁଦ୍ରକୂଳକୁ ନେଇଗଲେ ସେମାନଙ୍କର ବିସ୍ମୟର ସୀମା ରହେ ନାହିଁ । ବିଶାଳ ନୀଳ ସମୁଦ୍ର, ସମୁଦ୍ରରେ ଉଠୁଥିବା ବିରାଟ ଢେଉ, ସମୁଦ୍ର ଜଳରେ ଡଙ୍ଗାବାହି ଯାଉଥିବାର ଦୃଶ୍ୟ, ବେଳାଭୂମିର ବାଲି ଓ ସେଥିରେ ବିଛାଡି ହୋଇପଡିଥିବା ରଙ୍ଗବେରଙ୍ଗର ଶାମୁକା ଓ ଗେଣ୍ଡାର ଖୋଳପା, ବାଲି ଉପରେ ଗଡଗଡ ହୋଇ ଚାଲିଯାଉଥିବା ଟିକି ଟିକି କଙ୍କଡା ଇତ୍ୟାଦି ଦେଖି ପିଲାମାନେ ଆତ୍ମହରା ହୋଇପଡନ୍ତି । ନୋଳିଆମାନେ ସମୁଦ୍ରରୁ ଧରିଥିବା ବିଭିନ୍ନ ଜାତିର ମାଛ ଦେଖିବାର ସୁଯୋଗ ପାଆନ୍ତି ସେମାନେ । ଏହି ପ୍ରତ୍ୟକ୍ଷ ଦର୍ଶନ ସେମାନଙ୍କର ଜ୍ଞାନକୁ ପ୍ରସାରିତ କରାଇବାରେ ଯଥେଷ୍ଟ ସହାୟକ ହୋଇଥାଏ । ଯେଉଁ ପିଲା ଘର ବାହାରର ପରିବେଶରେ ଯେତେ ବେଶୀ ତଥା ବିବିଧତା ଥିବା ଯେତେ ବସ୍ତୁ ଦେଖିବାର ସୁଯୋଗ ପାଇଥାଏ, ତା'ର ବୋଧଶକ୍ତି ଓ କଳ୍ପନାଶକ୍ତି ସେତେ ବେଶୀ ସମୃଦ୍ଧ । ଏହି ପିଲାମାନେ ଶ୍ରେଣୀଗୃହରେ ବେଶୀ ମନୋଯୋଗୀ ହେଉଥିବାର ପ୍ରମାଣିତ । କାରଣ ନିଜ ଅତୀତ ଅନୁଭୂତି ସାହାଯ୍ୟରେ ଶିକ୍ଷକମାନେ ପଢାଉଥିବା ବିଷୟଗୁଡିକୁ ଅତି ସହଜରେ ବୁଝିପାରନ୍ତି ସେମାନେ ।

ସାମାଜିକ ମିଳନରୁ ମଧ୍ୟ ପିଲାମାନଙ୍କୁ ଶିକ୍ଷା ମିଳିଥାଏ । ଅଚିହ୍ନା ଲୋକଙ୍କ ସହ ପରିଚୟ ବୃଦ୍ଧି କରିବା ଫଳରେ ସେମାନଙ୍କଠାରେ ସାମାଜିକତା ବୃଦ୍ଧିପ୍ରାପ୍ତ ହୋଇଥାଏ । ଏକାଠି ଖେଳିବା ଏବଂ ପରସ୍ପରର ଖାଦ୍ୟ ଓ ଖେଳ ସାମଗ୍ରୀରେ ଅନ୍ୟମାନଙ୍କୁ ଭାଗୀଦାର କରେଇବାର ଅଭ୍ୟାସ ପରବର୍ତ୍ତୀ କାଳରେ ଅତ୍ୟନ୍ତ ମଙ୍ଗଳକର ହୋଇଥାଏ । ଏକତ୍ର ଖେଳିବା ଫଳରେ ସେମାନଙ୍କଠାରେ ଜାଗ୍ରତ ହୁଏ ପ୍ରତିଯୋଗିତା କରିବାର ମନୋବୃତ୍ତି । ଖେଳ ମାଧ୍ୟମରେ ମାଂସପେଶୀ କାର୍ଯ୍ୟରେ ମଧ୍ୟ ବିକାଶଲାଭ କରେ ପେଶୀକାର୍ଯ୍ୟର ସମନ୍ୱୟ । ସେମାନଙ୍କୁ ବିଭିନ୍ନ ଧନ୍ଦା ସମାଧାନ କରିବାକୁ ଦେବେ । ପ୍ଲାଷ୍ଟିକ ନିର୍ମିତ ଖଣ୍ଡଗୁଡିକୁ ଯଥାର୍ଥ ଭାବରେ ପାଖକୁ ପାଖ ରଖି ପଶୁପକ୍ଷୀ କି ମଣିଷର ପ୍ରତିକୃତି କରିବା ଦ୍ୱାରା ସେମାନେ ସମସ୍ୟା ସମାଧାନ କରିବା ଭଳି ବ୍ୟାୟାମରେ ବ୍ୟାପୃତ ହୋଇପଡନ୍ତି ଓ ଏହା ସେମାନଙ୍କ ମାନସିକ ବିକାଶ ବୃଦ୍ଧି କରିବାରେ ଅଶେଷ ଅବଦାନ ଦେଇଥାଏ ।

ବହୁ ପିତାମାତାଙ୍କର ଅଭିଯୋଗ ଯେ ସେମାନଙ୍କ ସନ୍ତାନମାନେ ପଢାପଢିରେ ବିଶେଷ ମନୋଯୋଗୀ ନୁହନ୍ତି । କିନ୍ତୁ ସେମାନେ ଜାଣିରଖିବା ଉଚିତ ଯେ ଶିକ୍ଷାପ୍ରଦାନର ପରିବେଶକୁ ଚାହିଁ ଶିକ୍ଷା ଗ୍ରହଣର ମାନ ସ୍ଥିରୀକୃତ ହୋଇଥାଏ । ପିଲାମାନଙ୍କୁ ବାହାରକୁ ବୁଲେଇନେଲେ ତାହା ସମୟର ଅପଚୟ ବୋଲି ଭାବିବା ଭୁଲ୍ । ବରଂ ଯେଉଁ ପିଲା ବାହାର ଦୁନିଆ ପ୍ରତି ଯେତେ ବେଶୀ ଉନ୍ମୁକ୍ତ, ସେ ଶିକ୍ଷକମାନେ ଦେଉଥିବା ଧାରଣାକୁ ସହଜରେ ଗ୍ରହଣ କରିନିଏ । ତା'ର ଶବ୍ଦ ଭଣ୍ଡାର ସେତେ ବେଶୀ ସମୃଦ୍ଧ । ଏପରିକି କଳା, ସଂଗୀତ ଇତ୍ୟାଦି ପ୍ରତି ତା'ର ବେଶୀ ରୁଚି ଥିବାର ପରିଲକ୍ଷିତ ହେଉଛି । ଯେଉଁ ପିଲା ବାଲ୍ୟକାଳରୁ ଆତ୍ମବିଶ୍ୱାସ, ସ୍ୱାଧୀନତା, ଭବିଷ୍ୟତର କାର୍ଯ୍ୟକ୍ରମ ଓ ପାରସ୍ପରିକ ସହଯୋଗ ରକ୍ଷା ଆଦି ପ୍ରତି ଉନ୍ମୁକ୍ତ, ପରବର୍ତ୍ତୀ କାଳର ସମସ୍ୟାସହ ମୁକାବିଲା କରିବାରେ ସେ ସେତେବେଶୀ ଧୁରନ୍ଧର ।

ତେବେ ମନେ ରଖନ୍ତୁ ଯେ ଏଠାରେ 'ଶିଶୁ ମନଲାଖି ବା ଶିଶୁ ଅନୁକୂଳ ପରିବେଶ' ବିଷୟ କଥା କୁହାଯାଉଛି । କୁହାଯାଉନି 'ଶିଶୁକୈନ୍ଦ୍ରିକ ପରିବେଶ' ସଂବନ୍ଧରେ । ଆପଣଙ୍କର ଘରେ ତାର ବିକାଶ ଓ ଶିକ୍ଷଣ ପାଇଁ ସମସ୍ତ ଅନୁକୂଳ ପରିବେଶ ଯୋଗାଇ ଦେବେ ସିନା; କିନ୍ତୁ ସବୁକିଛି ତାକୁ କେନ୍ଦ୍ରକରି କାର୍ଯ୍ୟକାରୀ ହେଉଛି ବୋଲି ତା' ମନରେ ଯେପରି ଧାରଣା ନ ଜନ୍ମେ, ସେଥିପ୍ରତି ସତର୍କ ରହିଥିବେ । ତା'ର ମର୍ଜି ଢଗି ଚଳିବା ଓ ତା'ର ଦାବି ପୂରଣ କରି ଚାଲିବା ଭଳି କାର୍ଯ୍ୟ କଲେ, ସେ କିଛି ଭଲ କଥା ଶିଖିପାରିବନି କି ଅନ୍ୟମାନଙ୍କ ସହ ମିଳିମିଶି ଚଳି ପାରିବନି । ସନ୍ତାନମାନେ ଛୋଟ ହୋଇଥିଲେ ମଧ୍ୟ ଘରେ ମା'ଙ୍କ ଅନୁପସ୍ଥିତି ବେଳେ ଶାନ୍ତ ରହିବାକୁ ଶିଖିବା ଓ ବାପମା' ଅତିଥିମାନଙ୍କ ସହ କଥାବାର୍ତ୍ତା ହେଉଥିବା ବେଳେ ପାଟିତୁଣ୍ଡ କି ଗୋଳମାଳ ନ କରିବା ପ୍ରତି ସାବଧାନ ରହିବା ସ୍ପୃହଣୀୟ ।

ପ୍ର : ଆମେ ତ ସହରରେ ରହୁଛୁ । ଆମେ ତ ଏକା ନୁହଁ । ସହରରେ ରହୁଛନ୍ତି ହଜାର୍ ହଜାର ପରିବାର । କେଉଁ ପରିବାରରେ ଦୁଇଟି କୋଠରି ବିଶିଷ୍ଟ ଘର ତ ଅନ୍ୟ କାହାର ତିନୋଟି କି ଚାରୋଟି କୋଠରି ବିଶିଷ୍ଟ ଘର । ଅବଶ୍ୟ ଅଧିକାଂଶ ଘରେ ରୋଷେଇଘର, ଗାଧୁଆ ଘର, ବୈଠକଖାନା ଓ ବାଲ୍‌କୋନି ଇତ୍ୟାଦି ରହିଛି । କହିବାକୁ ଗଲେ ତଥାକଥିତ ଏହି 'କାରାଗାରରେ' ପିଲାମାନେ ବନ୍ଦୀ । ସେମାନଙ୍କୁ ଏହି 'କାରାଗାର'ରୁ ମୁକ୍ତି ଦେଇ ବାହାର ଦୁନିଆର କ୍ରିୟାକଳାପ ସହ ପରିଚୟ କରାଯାଇପାରିବ କିପରି ?

ଉ : ହଁ, ଆପଣ ଭଲ ପ୍ରଶ୍ନଟିଏ ଉଠେଇଛନ୍ତି । ପ୍ରଶ୍ନଟି ଯେତିକି ଗୁରୁତ୍ୱପୂର୍ଣ୍ଣ, ସମସ୍ୟାଟି ସେତିକି କଷ୍ଟକର । କିନ୍ତୁ ଏହାର ସମାଧାନ କରାଯାଇପରିବ । ପିଲାକୁ ଦେଢ଼ବର୍ଷ ବୟସ ହେବାବେଳକୁ ସେ ନିଜ ଘରର ଅନ୍ଦିକନ୍ଦି ବିଷୟରେ ବି ଅବଗତ ହୋଇସାରିଥାଏ । ଏହି ଦୃଶ୍ୟପଟରେ ସେ ପରିବର୍ତ୍ତନ ଚାହେଁ । ନୂଆ ନୂଆ ଜିନିଷ ଦେଖିବାକୁ ଓ ଛୁଇଁବାକୁ ଚାହେଁ । ନୂଆ ନୂଆ ବିଷୟ ଶୁଣିବା ପାଇଁ ଚାହେଁ ମଧ୍ୟ । ତେଣୁ, ନିଜ ସନ୍ତାନକୁ ଘରର ଚାରିକାନ୍ଥ ଭିତରୁ ମୁକୁଳେଇ ବାହାରକୁ ବୁଲେଇନେବାର ଆବଶ୍ୟକତା ରହିଛି ।

ବାହାରକୁ ବୁଲେଇ ନେବାକୁ ହେଲେ ତାକୁ ଜାମାପଟା ପିନ୍ଧେଇବାକୁ ପଡିବ ଓ ନିଜକୁ ମଧ୍ୟ ପିନ୍ଧାପିନ୍ଧି କରି ପ୍ରସ୍ତୁତ ହେବାକୁ ପଡିବ । ପୁଣି ତା' ହାତ ଧରି ଶିଢି ପାହାଚରେ ଓହ୍ଲେଇବା, ଧୂଳିଧୂସରିଆ ରାସ୍ତା କି ଗହଳି ରାସ୍ତାରେ ତା' ହାତ ଧରି ଚାଲିବା ମଧ୍ୟ କିଛି ସହଜ ନୁହେଁ । ଏପରିକି ପିଲାକୁ ଧଳା ପୋଷାକପତ୍ର ଓ ମୋଜା ପିନ୍ଧେଇ ଦେଇଥିଲେ ବୁଲି ଫେରିଲାବେଳକୁ ତା'ର ଅବସ୍ଥା ନ ଥାଏ । ବହୁ ପିତାମାତା ଏହି ଜଞ୍ଜାଳରେ ନ ପଶିବା ପାଇଁ ପିଲାକୁ ନେଇ ବାହାରକୁ ବୁଲିଯିବା ପସନ୍ଦ କରନ୍ତି ନାହିଁ ।

କିନ୍ତୁ ଏପରି କେତେକ ବାପମା' ଅଛନ୍ତି ଯେଉଁମାନେ ପ୍ରତିଦିନ ଅନ୍ତତଃ ଥରଟିଏ ହେଲେ ବି ନିଜ ପିଲାକୁ ବାହାରକୁ ବୁଲେଇ ନିଅନ୍ତି । ପିଲାକୁ ଧୂଳିରେ ଚାଲିବା ପାଇଁ ଛାଡି ଦିଅନ୍ତି । ଏପରିକି ବର୍ଷାଦିନେ କାଦୁଅଭିତରେ ଚଲେଇ ଚଲେଇ ନିଅନ୍ତି । ରାସ୍ତାରେ ବଡ ଗଛଟିଏ ଆଖିରେ ପଡିଲେ ଗଛ ଚାରିପଟେ ଆରମ୍ଭ କରିଦିଅନ୍ତି ଲୁଚକାଳି ଖେଳ ।

ଅନ୍ୟ କେଉଁଦିନ ବୁଲେଇ ନିଅନ୍ତି ପାର୍କକୁ । ସେଠାରେ ଅନ୍ୟ ପିଲାମାନେ ବି ଜୁଟି ଯାଆନ୍ତି । ସମସ୍ତେ ଏକାଠି ଦୌଡାଦୌଡି କରନ୍ତି । ଘାସ ଉପରେ ଗଡନ୍ତି । ଗଛମୂଳେ ବସି ଚନାଚୂର୍ ଚୋବାନ୍ତି, ବିସ୍କୁଟ୍ ଖାଆନ୍ତି, ପାଣିପିଅନ୍ତି । ଦିନେ ଦିନେ ପାର୍କରେ ବଣଭୋଜି ମଧ୍ୟ କରନ୍ତି ।

ବେଳେବେଳେ ବାପମା' ପିଲାଙ୍କୁ ଧରି ବୁଲିଯାଆନ୍ତି ବନ୍ଧୁ କିମ୍ବା ଆତ୍ମୀୟମାନଙ୍କ ଘରକୁ । କେତେବେଳେ କେମିତି ସାଥିହୋଇ ବଜାର ଯାଆନ୍ତି ମଧ୍ୟ । ବଜାରରେ ଦୋକାନରୁ କିଣି ଦିଅନ୍ତି ରବର ବଲ୍, ବେଲୁନ୍, ରିବନ୍ କି ଖେଳନା । ଏଗୁଡିକ ଅତି ମାମୁଲି ଜିନିଷ । ଦାମ୍ ମଧ୍ୟ ଶସ୍ତା । କିନ୍ତୁ ସନ୍ତାନ ପାଇଁ ଏହା ଅମୂଲ୍ୟ । କାରଣ ଏହା ତାକୁ ଖୁବ୍ ଆନନ୍ଦ ଦେଇଥାଏ । ଜିନିଷ ନିର୍ବାଚନ କରିବା ନିମନ୍ତେ ପିଲାମାନଙ୍କୁ ସ୍ୱାଧୀନତା ଦେଲେ ସେମାନେ ସବୁଠାରୁ ବେଶୀ ଖୁସି ହୋଇଥାନ୍ତି । ନିଜେ ନିର୍ବାଚନ କରିବା କ୍ରିୟାରୁ

ନିଷ୍ପତ୍ତି ନେବା ବିଷୟରେ ଶିକ୍ଷା ମିଳିଥାଏ । ତେଣୁ ଏହା ମଧ୍ୟ ଏକଧରଣର ଶିକ୍ଷା । ବିଭିନ୍ନ ପ୍ରକାର ଖେଳନାର ଦାମ୍‌ରେ ରହିଥିବା ତାରତମ୍ୟ ବିଷୟରେ ସନ୍ତାନମାନଙ୍କୁ ଅବଗତ କରାଇଲେ ସେମାନେ ଟଙ୍କା ପଇସାର ମୂଲ୍ୟ ସମ୍ବନ୍ଧରେ ଜାଣିପାରନ୍ତି ।

ଏହି ପରିପ୍ରେକ୍ଷୀରେ ଦେଖିଲେ ପିଲାମାନଙ୍କୁ ବାହାରକୁ ବୁଲେଇନେବା ଏକ ଜଞ୍ଜାଳ ନୁହେଁ । ବରଂ ଶିକ୍ଷା ଦେବାପାଇଁ ଏହା ଅପୂର୍ବ ସୁଯୋଗ ପ୍ରଦାନ କରିଥାଏ । ଏଥିପାଇଁ ଘରର ଦୈନନ୍ଦିନ କାମ ବ୍ୟାହତ ହେଲେ ମଧ୍ୟ ତାହା ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ ।

ସମାନ ଜାଗାକୁ ବାରମ୍ବାର ବୁଲେଇ ନେଲେ ବି ତାହା ପିଲାମାନଙ୍କ ପାଇଁ ଆଦୌ ବିରକ୍ତିକର ନହୋଇ ଉପଭୋଗ୍ୟ ହୋଇଥାଏ । ତାହାଛଡା, ବାପମା'ଙ୍କ କ୍ଳାନ୍ତି ଓ ବିରକ୍ତିର ତୀବ୍ରତା ହ୍ରାସ କରିବା ନିମନ୍ତେ ବାହାରକୁ ବୁଲିଯିବାର ଧାରା ବିଶେଷ ସହାୟକ । କହନ୍ତୁ ତ, ସବୁବେଳେ ଘର ଭିତରେ ରହିଥିଲେ କାହାକୁ ଅବା ଭଲ ଲାଗେ ?

ତେଣୁ ପିଲାର ଶାରୀରିକ ନିରାପତ୍ତା କଥା ଭାବି ତାକୁ ଘର ଭିତରେ ଆବଦ୍ଧ କରି ରଖିବା ଆଦୌ ମଙ୍ଗଳକର ନୁହେଁ । ବରଂ ବାହାରକୁ ବୁଲିଗଲେ ତା'ର ଶାରୀରିକ, ମାନସିକ ଓ ସାମାଜିକ ବିକାଶ ସୁଗମ ହୋଇଥାଏ । ଶିଶୁମାନେ କୌତୂହଳୀ ହୋଇ 'କଅଣ', 'କାହିଁକି', 'କିପରି' ଆଦି ନାନା ପ୍ରଶ୍ନ କରିଥାନ୍ତି । ବାହାରର ପରିବେଶପ୍ରତି ଉନ୍ମୁକ୍ତ ନ ହେଲେ ସେମାନଙ୍କ ମନରେ ଏହିସବୁ ପ୍ରଶ୍ନ ଉଦ୍ରେକ ହେବାର ସୁଯୋଗ ମିଳେ ନାହିଁ । ଫଳରେ ତା'ର ଅନୁସନ୍ଧିତ୍ସାର ହୁଏ ଅକାଳ ମୃତ୍ୟୁ ।

ପିଲାକୁ ଘର ଭିତରେ ରଖି ବାହାରକୁ ବୁଲେଇ ନ ନେଲେ ପିଲାର କ୍ଷତି ଓ ପିତାମାତାଙ୍କର କ୍ଷତି ମଧ୍ୟ ।



# ଅଥୟ-ଅସ୍ଥିର ପିଲା

"ଖେଳିବା ତଥା ମନୋରଞ୍ଜନ କରିବାର ସମ୍ପୂର୍ଣ୍ଣ ସୁଯୋଗ ଉପଭୋଗ କରିବା ଶିଶୁମାନଙ୍କର ନ୍ୟାଯ୍ୟ ଅଧିକାର ।"

–ହେଲ୍‌ଥ୍ ଆକ୍‌ସନ୍

ପ୍ର : ମୋ' ପୁଅକୁ ଏବେ ଚାରିବର୍ଷ । କଥା କହିବାରେ ଟିକିଏ ପଛୁଆ । କିନ୍ତୁ ତା'ର ହାତଗୋଡ଼ ବି କଥା କହୁଛି । ମୁହୂର୍ତ୍ତକ ପାଇଁ ସ୍ଥିର ରହିବା କି ଥୟ ଧରିବା ତା' ଜାତକରେ ନାହିଁ ବୋଧହୁଏ । ତାକୁ ନେଇ କାହା ଘରକୁ ଯିବା ପାଇଁ ମୋତେ ଲାଜ ଲାଗିଲାଣି । କେତେବେଳେ ଯଦି ଖେଳନା ଫିଙ୍ଗା ଫୋପଡ଼ା କଲାଣି ତ ଟିକିଏ ପରେ ଆଲମିରାର ହ୍ୟାଣ୍ଡଲ୍ ଧରି ଟଣା ଘୋଷରା କଲାଣି । ଟେବୁଲ୍ ଉପରେ ତ କିଛି ଜିନିଷ ରଖେଇ ଦେଉନି ସେ । ଟେବୁଲ୍ କ୍ଲଥ୍‌କୁ ଟାଣି ସବୁ ଜିନିଷ ତଳେ ଅଜାଡ଼ି ପକାଉଛି । ରୋଷେଇ ଘରେ ପଶି ବାସନକୁସନ ଓ ମସଲାମସଲି ଡବାଗୁଡ଼ିକୁ ଫିଙ୍ଗି ପକାଉଛି । ଚଉକି ଉପରେ ଠିଆ ହୋଇପଡ଼ି ଥାକ ଉପରୁ ବହି ଓ ଅନ୍ୟାନ୍ୟ ସାମଗ୍ରୀ ଠେଲି ତଳେ ପକେଇ ଦେଉଛି ।

ଗତ ବର୍ଷ ତାକୁ ଅତି ଜ୍ୱର ହୋଇଥିଲା । ଜ୍ୱର ଥିଲାବେଳେ ବାତ ବି ମାରିଥିଲା । ଔଷଧ ପତ୍ର ଖାଇ ଦେହ ଭଲ ହୋଇଗଲା ସିନା, ହେଲେ ବାହାରି ପଡ଼ିଲା ଅଥୟ ହେବା ତଥା ଅସ୍ଥିର ହେବାର ଲକ୍ଷଣମାନ । ଜ୍ୱର ହୋଇ ବାତ ମାରିବା ଲକ୍ଷଣ ପ୍ରକାଶ ପାଇବା ପୂର୍ବରୁ ତା'ଠାରେ ଏହିସବୁ ଆଚରଣର କାଣିଚାଏ ବି ନଥିଲା ।

ତାହାଠାରେ ଏ' ଧରଣର ଅସ୍ୱାଭାବିକତା ପ୍ରକାଶ ପାଉଛି କାହିଁକି ?

ହଁ, ଆଉ ଗୋଟିଏ କଥା । ମୁଁ ଯେଉଁ ସ୍କୁଲ୍‌ରେ ଶିକ୍ଷକତା କରୁଛି, ସେ ସ୍କୁଲ୍‌ରେ ଏପରି ଜଣେ ପିଲା ଅଛି, ଯିଏ ମୁହୂର୍ତ୍ତକ ପାଇଁ ମଧ୍ୟ ସ୍ଥିର ହୋଇ

ବସିରହେ ନାହିଁ । ସବୁବେଳେ ଏପଟ ସେପଟ ହେଉଥାଏ । ଅନ୍ୟ ପିଲାଙ୍କ ପାଖରେ ପହଞ୍ଚି ଗୋଳମାଳ ଆରମ୍ଭ କରିଦିଏ । ସେମାନଙ୍କ ବହି, ଖାତା, କଲମ ଓ ପେନ୍‌ସିଲ୍ ଟାଣିଆଣେ । ଲେଖିବାକୁ କହିଲେ ଲେଖେନି, 'ଗୀତ ଗାଇ ଶୁଣା' ବୋଲି କହିଲେ କଥା ଶୁଣେନି । ତା'ର ହସ୍ତାକ୍ଷର ଆଦୌ ଭଲ ନୁହେଁ । ଖେଳପଡ଼ିଆରେ ଦୌଡ଼ାଦୌଡ଼ି ଓ ଡିଆଁଡେଇଁ କଲେ ବି ତା'ର କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଥିବା ପରି ଜଣାପଡ଼େନି ।

ଘରେ ବି କପ୍‌ପ୍ଲେଟ୍ ଇତ୍ୟାଦି ଭଙ୍ଗାଭଙ୍ଗି କରେ । ଘରର ଛୋଟଛୋଟ ଜିନିଷପତ୍ରକୁ ଫିଙ୍ଗାଫୋପଡ଼ା କରିବା ତା'ର ଅଭ୍ୟାସ । ଏ ପ୍ରକାରର ଲକ୍ଷଣମାନ ପ୍ରକାଶ ପାଇବାର କାରଣ କ'ଣ ? କେହି କେହି ଏହାକୁ ଅତିସକ୍ରିୟତା ବା 'ହାଇପର୍ ଆକ୍‌ଟିଭିଟି' ବୋଲି କହୁଛନ୍ତି । ଆପଣ ଏ' ବିଷୟରେ କିଛି ଆଲୋକପାତ କରିପାରିବେ କି ?

ଉ : ପ୍ରଥମରୁ ଆପଣଙ୍କୁ କହିରଖେ ଯେ ବହୁ ପିତାମାତା ଓ ପିଲାମାନଙ୍କର ସେବା ଯତ୍ନ ସହ ସମ୍ପୃକ୍ତ ସଂସ୍ଥା ଏବଂ ବ୍ୟକ୍ତିମାନେ 'ହାଇପର୍‌ଆକ୍‌ଟିଭିଟି' ଶବ୍ଦଟିକୁ ଅତି ହାଲୁକା ଭାବରେ ବ୍ୟବହାର କରି ଚାଲିଛନ୍ତି । ଏହି ଶବ୍ଦଟିକୁ ଯେତେ ସୀମିତ ଭାବରେ ବ୍ୟବହାର କରାଯିବ ସେତେ ମଙ୍ଗଳ । କାରଣ ଯେଉଁ ପିଲା ସେମାନଙ୍କ କଳନା ଅନୁପାତରେ ଅଧିକ ଖର ଓ ସକ୍ରିୟ, ତାକୁ 'ହାଇପର୍ ଆକ୍‌ଟିଭ' ବା 'ଅତି ସକ୍ରିୟ ପିଲା' ବୋଲି ହଠାତ୍ ଧରିନେବା ଠିକ୍ ନୁହେଁ କି ନିରାପଦ ମଧ୍ୟ ନୁହେଁ ।

ଆଚ୍ଛା ବିଚାର କରନ୍ତୁ ତ ! ପିଲାଟିଏ ସ୍ଥିର ହୋଇ ବସିଲେ ସେ କ'ଣ ବିଭିନ୍ନ ଜିନିଷ ପ୍ରତି ସମ୍ପର୍କ ଯୋଡ଼ିପାରିବ ? ସକ୍ରିୟ ରହିବା ଶିଶୁମାନଙ୍କର ସହଜାତ ପ୍ରବୃତ୍ତି । କହିବାକୁ ଗଲେ ତାହାହିଁ ସେମାନଙ୍କ ଜୀବନର ଅପରିହାର୍ଯ୍ୟ ଧାରା । ଶିଶୁମାନେ ଯାହା ଦେଖନ୍ତି ଓ ଯାହା ଶୁଣନ୍ତି, ସେଗୁଡ଼ିକ ପ୍ରତି ନିଜର ପ୍ରତିକ୍ରିୟା ପ୍ରକାଶ କରିଥାନ୍ତି । ଆମର କେବଳ ଦେଖିବା କଥା ଯେ ତା'ର କ୍ରିୟାକଳାପ ସ୍ୱାଭାବିକ ତ ? ଏପରି କାର୍ଯ୍ୟରୁ ସେ ଆନନ୍ଦ ପାଉଛି ତ ? ସେପରି କ୍ରିୟା ଦ୍ୱାରା ସେ ପରିବାରର ଅନ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରିବାର ଉଦ୍ଦେଶ୍ୟ ପୋଷଣ କରିଛି କି ? ଭଲ ଭାବରେ ଅନୁଧ୍ୟାନ କରି ଓ ପରିବାରରେ ଘର ଭିତରେ ରହିଥିବା ବେଳେ, ଖେଳ ପଡ଼ିଆରେ ଥିବା ସମୟରେ ଏବଂ ବନ୍ଧୁ ତଥା ସାଙ୍ଗସାଥୀମାନଙ୍କ ମେଳରେ ରହିଥିବା ବେଳେ ତା'ର କାର୍ଯ୍ୟକଳାପକୁ ଲକ୍ଷ୍ୟ କରି ତା'ର ଆଚରଣ ସ୍ୱାଭାବିକ କି ଅସ୍ୱାଭାବିକ କଳନା କରାଯାଇପାରେ ।

ତାହାଛଡ଼ା ବିଭିନ୍ନ ପରିସ୍ଥିତିକୁ ମଧ୍ୟ ବିଚାରକୁ ନେବା ଉଚିତ । ଗତ ରାତିରେ ତା'ର ଭଲ ନିଦ ହୋଇନଥିଲେ ଆଚରଣ ଅସ୍ୱାଭାବିକ ହେବା କିଛି ଅସମ୍ଭବ ନୁହେଁ । ବିନା କାରଣରେ ପିତାମାତାଙ୍କଠାରୁ ଦଣ୍ଡ ପାଇଥିଲେ ଆଚରଣରେ ଅସ୍ୱାଭାବିକତା ଦେଖାଦେଇପାରେ । ଖୁବ୍ ଜୋର୍‌ରେ ଭୋକ କରୁଥିଲେ ଓ ଭୋକ କରୁଛି ବୋଲି ଜାଣି ନପାରିଲେ ସେ ଅନୁକୂଳ ଆଚରଣ ଦେଖେଇ ନପାରେ । ଏହିସବୁ କାରଣ ଶିଶୁକୁ ଭ୍ରମିତ କରିଦେବା ଏକ ସ୍ୱାଭାବିକ ପରିଣତି ।

ଦୁଇ ତିନି ବର୍ଷର ଶିଶୁ ସବୁକିଛି ଆବିଷ୍କାର କରିବାକୁ ଚାହେଁ । ସବୁ ବିଷୟରେ ଅନୁଭୂତି ଅର୍ଜନ କରିବା ପାଇଁ ତା'ଠାରେ ଜାତ ହୁଏ ଅଦମ୍ୟ ଆଗ୍ରହ । ତେଣୁ ଏହାକୁ ଅସ୍ୱାଭାବିକ ବିଚାରିବା ଭୁଲ । ଆମର କେବଳ ଦେଖିବା କଥା ଯେ ତା'ର ସମସ୍ତ କ୍ରିୟାକଳାପ ଉଦ୍ଦେଶ୍ୟମୂଳକ ନା ଉଦ୍ଦେଶ୍ୟହୀନ ।

ଆପଣ ନିଜ ମାନଦଣ୍ଡରେ ସନ୍ତାନର କ୍ରିୟାକଳାପକୁ ମାପିବା ଠିକ୍ ନୁହେଁ । ସେ ହୁଏତ ଆଠଘଣ୍ଟା ଧରି ଶୋଇବ ଓ ନିଦରୁ ଉଠି ଡେଉଁଥିବ ବାର ଘଣ୍ଟା ଧରି । କିନ୍ତୁ ଆପଣଙ୍କ ପାଇଁ ତ ଏହା ଆଦୌ ସମ୍ଭବ ହେବ ନାହିଁ । ଦୁଇ ତିନିଘଣ୍ଟା ଧରି ଏପଟ ସେପଟ ହେଲେ ଆପଣ ହୁଏତ ହାଲିଆ ହୋଇପଡ଼ିବେ । କିନ୍ତୁ ଆପଣ ବଡ଼ ମଣିଷ ହୋଇ ହାଲିଆ ହୋଇଗଲେ ବୋଲି ଆପଣଙ୍କ ସନ୍ତାନ ଯେ ଦୁଇ ତିନି ଘଣ୍ଟାରେ ହାଲିଆ ହୋଇପଡ଼ିବ, ଏହା ଭାବିନେବା ଭୁଲ୍ । କାରଣ ସେ ହେଉଛି, ଶକ୍ତିର ଏକ ଭଣ୍ଡାର । ତେଣୁ କିଛି ନବୁଝି, କି କିଛି ନଜାଣି ସେଭଳି ସନ୍ତାନକୁ ଅତିସକ୍ରିୟ ବା 'ହାଇପର୍‌ଆକ୍‌ଟିଭ' ବୋଲି ନିର୍ଣ୍ଣୟ କରି ପକେଇବା ଜମା ଠିକ୍ ନୁହେଁ । ଛୋଟ ପିଲାଙ୍କର ଏ ପ୍ରକାର ଆଚରଣ ଜମା ଅସ୍ୱାଭାବିକ ନୁହେଁ ମଧ୍ୟ । ବରଂ, ଅସୁବିଧାଟା ହେଉଛି ଯେତେବେଳେ ଆପଣଙ୍କ ସନ୍ତାନ କିଛି କରିବା ପାଇଁ ବ୍ୟାକୁଳ, ସେତେବେଳେ ଆପଣ ବିଶ୍ରାମ ଉପଭୋଗ କରିବା ନିମନ୍ତେ ବ୍ୟାକୁଳ । ତେଣୁ ତା'ର ସକ୍ରିୟ କାର୍ଯ୍ୟକଳାପ ଆପଣଙ୍କଠାରେ ଭ୍ରମ ସୃଷ୍ଟି କରୁଛି ଓ ଆପଣ ତାକୁ 'ବଡ଼ ଅଥୟ', 'ଅତି ଅସ୍ଥିର' ବା 'ଅତି ସକ୍ରିୟ' ବୋଲି ଧାରଣା କରି ନେଉଛନ୍ତି ।

ଅନ୍ୟ ଏକ ଦୃଷ୍ଟିକୋଣରୁ ବି ସମସ୍ୟାଟିକୁ ବିଚାର କରନ୍ତୁ । କିଶୋରଟିଏ ବଡ଼ ଏକାଗ୍ରତାର ସହ ରେଡ଼ିଓରୁ ଗୀତ ଶୁଣିପାରୁଥାଏ । କିନ୍ତୁ ଆପଣଙ୍କଠାରୁ ଗପ ଶୁଣିବା ପାଇଁ ସେ ହୁଏତ ଆଗ୍ରହୀ ହୋଇନପାରେ । ଆପଣ ଗପ କହିବା ଆରମ୍ଭ କରିବାର ଏକ କି ଦୁଇ ମିନିଟ୍ ଭିତରେ ସେ ଆପଣଙ୍କଠାରୁ ଉଠି ପଳେଇବା କିଛି ଅସ୍ୱାଭାବିକ ନୁହେଁ ।

ସେ ସାଙ୍ଗସାଥୀ ମେଳରେ ଖେଳିବା ପାଇଁ ଆଗ୍ରହ ପ୍ରକାଶ ନକରିପାରେ, ହେଲେ ଆପଣଙ୍କ ସହ ଖେଳିବାରେ ସେ ଘଣ୍ଟାଏ ଦୁଇଘଣ୍ଟା ଆନନ୍ଦରେ ବିତେଇ ଦେଇପାରେ । ତିନି ଚାରିବର୍ଷର ପିଲାଙ୍କଠାରେ ପ୍ରକାଶ ପାଇଥାଏ ନିଜ ନିଜର ପସନ୍ଦ ଓ ଅପସନ୍ଦ । ପସନ୍ଦ ହେଲେ ସେ ପସନ୍ଦିଆ କାମରେ ଆଗ୍ରହୀ ହୋଇ ଲାଗିଯାଏ । ଅପସନ୍ଦ ହେଲେ ସେଥିରୁ ଦୂରେଇ ରହେ । ଏହି ସବୁକିଛି ପିଲାମାନଙ୍କ ପାଇଁ ସ୍ୱାଭାବିକ ଲକ୍ଷଣ । ଏହାକୁ 'ଏକାଗ୍ରତାର ଅଭାବ' ବୋଲି ହଠାତ୍ ଧରିନେବେନି ।

ଆପଣ ମନେ ରଖିବା ଦରକାର ଯେ ଶିଶୁମାନେ ଅତି କୌତୂହଳୀ । ନୂଆ ଜିନିଷ ଦେଖିଲେ ସେମାନେ ନିଜର କୌତୂହଳକୁ ଦମନ କରିପାରନ୍ତି ନାହିଁ । ତାକୁ ଧରିବା ଓ ଟଣାଟଣି କଲାବେଳେ ତାହା ହୁଏତ ତଳେ ପଡ଼ି ଭାଙ୍ଗିଯାଏ ଓ ଏଥିପାଇଁ ତାକୁ ଆମଠାରୁ ଗାଳି ଶୁଣିବାକୁ ପଡ଼େ ।

ଛୋଟ ପିଲାଙ୍କୁ କୌଣସି ମନୋହରି ଦୋକାନକୁ ନେଲେ ସେଠାରେ ରଙ୍ଗବେରଙ୍ଗ ବିଭିନ୍ନ ଜିନିଷପତ୍ର ଦେଖିବାକୁ ପାଇଥାଏ ସେ । ତା' ହାତପାଆନ୍ତାରେ ଥିବା ସବୁ ଜିନିଷ ସହ ସମ୍ପର୍କ ଯୋଡ଼ିବା ପାଇଁ ସେ କୌତୂହଳୀ ହୋଇଉଠେ । ତାହାଠାରେ ଥିବା କଳ୍ପନା ଶକ୍ତି ଓ ଜିଜ୍ଞାସା ଏଥିପାଇଁ ତାକୁ ବାଧ କରିଥାଏ ହୁଏତ । ତେଣୁ ସବୁ ଜିନିଷରେ ହାତ ମାରିବା ତା' କ୍ଷେତ୍ରରେ ଆଦୌ ଅସ୍ୱାଭାବିକ ନୁହେଁ । ହେଲେ, ଆପଣ ଏଥିରେ ବେଶ୍ ଅସ୍ୱସ୍ତି ଅନୁଭବ କରନ୍ତି ଓ ସନ୍ତାନକୁ ସେଥିରୁ ନିବୃତ୍ତ କରିବାରେ ଚେଷ୍ଟିତ ହୁଅନ୍ତି । କିନ୍ତୁ ସେହି ପରିବେଶକୁ ଏକ ଶିକ୍ଷା ପ୍ରଦାନ ପରିବେଶ ଭାବି ତା'ର ଯଥାର୍ଥ ଉପଯୋଗ କରିପାରିଲେ ସେଥିରେ ଆପଣଙ୍କର ମଙ୍ଗଳ, ସନ୍ତାନର ମଧ୍ୟ ମଙ୍ଗଳ ।

ସନ୍ତାନକୁ ବଜାର ନେବା ପୂର୍ବରୁ କେଉଁ କେଉଁ ଦୋକାନକୁ ଯିବେ ଓ ସେଠାରେ କଅଣ କଅଣ ଦେଖିବାକୁ ମିଳିବ, ତାହା କହିଦେବେ । ଦୋକାନରେ କେଉଁ ଧରଣର ଆଚରଣ ଦେଖେଇବା ଉଚିତ, ସେ ସମ୍ପର୍କରେ ମଧ୍ୟ ବତେଇଦେବେ ତାକୁ ।

ମନେରଖିବେ ଯେ ଅନ୍ୟ କାହା ଘରର ପରିବେଶ ଛୋଟ ପିଲାଟି ପାଇଁ ନୂଆ । ତେଣୁ ସେଠାରେ ପହଞ୍ଚି ସେ ହୁଏତ ଟେପ୍‌ରେକର୍ଡ଼ର୍‌ର ସୁଇଚ୍‌କୁ ଚିପି ପକାଏ, ରଙ୍ଗିନ୍ ଫ୍ରିଜ୍‌କୁ ଖୋଲିଦିଏ, ଏପଟ ସେପଟ ଦୌଡ଼ାଦୌଡ଼ି କରେ, ସୋଫାର କୁସନକୁ ଟାଣିପକାଏ – ଏହା ଆପଣଙ୍କ ଦୃଷ୍ଟିରେ ଅଶୋଭନୀୟ ସତ । ହେଲେ ଛୋଟ ପିଲାମାନେ କ'ଣ ସାମାଜିକ ଚଳଣି ବିଷୟରେ ସଚେତନ ? କଅଣ କରଣୀୟ ଓ କଅଣ ଅକରଣୀୟ, ତାହା ଜାଣିବାର ବୟସରେ ସେମାନେ ପହଞ୍ଚି ନଥାନ୍ତି । ସୁତରାଂ, ଏଥିପାଇଁ ସେମାନଙ୍କ

ମୁଣ୍ଡରେ ଦୋଷ ଲଦିଦେବା ଅନ୍ୟାୟ । ବରଂ କୌଣସି ବନ୍ଧୁଙ୍କ ଘରକୁ ବୁଲିଯିବା ପୂର୍ବରୁ ବନ୍ଧୁଙ୍କ ବୈଠକଖାନାର ପରିବେଶ ଓ ସେଠାରେ କଅଣ ସବୁ ଜିନିଷ ଅଛି, ତାହା ନିଜ ସନ୍ତାନକୁ ଆଗରୁ ଜଣେଇ ଦେଇଥିଲେ, ସେ ବୁଝିବିଚାରି ଆଚରଣ ଦେଖେଇବାର ସମ୍ଭାବନା ବେଶୀ ।

ଆପଣ ଲକ୍ଷ୍ୟ କରିଥିବେ ଯେ ଆପଣଙ୍କ କୌଣସି ବନ୍ଧୁଙ୍କ ଘରକୁ ପିଲାଟି ପ୍ରଥମ ଥର ପାଇଁ ବୁଲି ଯାଇଥିଲେ, ସେଠାକାର ପରିବେଶ ସହ ସମ୍ପର୍କ ଯୋଡ଼ିବା ପାଇଁ ସେ ବେଶୀ ଆଗ୍ରହ ପ୍ରକାଶ କରିଥାଏ । କିନ୍ତୁ ସେହି ଘରକୁ ବାରମ୍ବାର ଗଲେ, ସେଠାରେ ଥିବା ଜିନିଷପତ୍ର ପ୍ରତି ତା'ର ଆଗ୍ରହ କମି କମି ଆସେ । ଏହି କାରଣରୁ ପିଲାକୁ 'ଅସ୍ଥିର', 'ଅଥୟ' ବୋଲି ବଦନାମ କରିବା ପୂର୍ବରୁ ତା'ର ମନସ୍ତତ୍ତ୍ୱକୁ ବିଚାରକୁ ନେବା ହିଁ ନିରାପଦ ।

ସନ୍ତାନକୁ ଖେଳ ପଡ଼ିଆ, ପାର୍କ୍, ନଈକୂଳ କି ସମୁଦ୍ରତଟକୁ ବୁଲେଇ ନେଇଥିଲେ ସେ ମହା ଆନନ୍ଦରେ ଦୌଡ଼ାଦୌଡ଼ି କରେ । ତାକୁ ଏଥିରୁ ନିବୃତ୍ତ କରିବେନି । କିନ୍ତୁ ତା' ଉପରେ ତୀକ୍ଷ୍ଣ ନିଘା ରଖିଥିବେ । ବିପଦପୂର୍ଣ୍ଣ ସ୍ଥାନରୁ ସେ ଯେପରି ଦୂରେଇ ରହେ, ସେଥିପ୍ରତି ଦୃଷ୍ଟି ରଖିବେ । ପ୍ରତ୍ୟେକ ନୂତନ ଅନୁଭୂତି ତାହାଠାରେ ଜାତ କରେ ଉତ୍ତେଜନା, ଉନ୍ମାଦନା । ତେଣୁ ସେ ଏହାର ମଜା ନେବା ଦରକାର, ହେଲେ ତାହା ଆପଣଙ୍କ କଡ଼ା ତତ୍ତ୍ୱାବଧାନରେ ହିଁ ସମ୍ପାଦିତ ହେବା ଉଚିତ । ଆବଶ୍ୟକ ପଡ଼ିଲେ ଆପଣ ତା'ର ହାତ ଧରି ଚଲାବୁଲା କରିପାରନ୍ତି । ତାକୁ ଖୁସି କରାଇବା ପାଇଁ ଆପଣ ମଧ୍ୟ ତା'ସହ ଦୌଡ଼ାଦୌଡ଼ି ଓ ଖେଳାଖେଳି କରିବାର ଆନନ୍ଦ ନେଇପାରନ୍ତି ।

ଆପଣଙ୍କ ସନ୍ତାନଟି ନିଜ ସାଙ୍ଗରେ ଖେଳିବା ନିମନ୍ତେ ପଡ଼ିଶା ଘରର ପିଲାକୁ ନିମନ୍ତ୍ରଣ କରି ଆଣିଲେ, ତାକୁ ବୋଝ ବୋଲି ବିଚାର କରିବେନି । କାରଣ ସନ୍ତାନଟି ଜଣେ ଦୁଇଜଣ ସାଙ୍ଗସାଥୀଙ୍କ ସହ ଖେଳିବାରେ ବେଶୀ ଖୁସି ହୋଇଥାଏ । ତେଣୁ, ଏଥିରେ ଆପଣ ବରଂ ସାହାଯ୍ୟ କରିବା ଉଚିତ । ସେମାନଙ୍କୁ ଖେଳନା ଯୋଗାଇ ଦେଇ ଖେଳିବା ପାଇଁ ଜାଗା କରିଦେବେ । ନିଜେ ବି ସେମାନଙ୍କ ପାଖରେ ବସି ଖେଳ ଶିଖେଇଦେବେ ।

'ଅତି ସକ୍ରିୟ' ବା 'ହାଇପରଆକ୍‌ଟିଭ' ଶିଶୁଙ୍କ ସଂଜ୍ଞା ଭିନ୍ନ । ଏହା ଏକ ଆଚରଣଗତ ସମସ୍ୟା । କେବଳ ଶିଶୁରୋଗ ବିଶେଷଜ୍ଞ ଓ ଶିଶୁ ମନସ୍ତତ୍ତ୍ୱବିତ୍ ଏହି ରୋଗ ନିର୍ଣ୍ଣୟ କରିପାରନ୍ତି । ସେମାନଙ୍କୁ ପରାମର୍ଶ ନକରି ନିଜ ସନ୍ତାନକୁ 'ହାଇପରଆକ୍‌ଟିଭ୍' ବୋଲି ଧରିନେବା ଶ୍ରେୟସ୍କର ନୁହେଁ ।



# ଶିଶୁଠାରେ ଆତ୍ମସମ୍ମାନବୋଧ

**"ଶିଶୁମାନଙ୍କର ହୃଦୟ ବଡ଼ କୋମଳ । ନିଷ୍ଠୁର ଆଚରଣ ପ୍ରଦର୍ଶନ କଲେ ତାହା ଆହତ ତଥା ବିକୃତ ହୋଇଯାଇପାରେ ।"**

**–କାର୍‌ସନ୍ ମାକ୍‌କ୍ୟୁଲ୍ଲରସ୍**

**ପ୍ର : ଶିଶୁମାନଙ୍କଠାରେ କ'ଣ ଆତ୍ମସମ୍ମାନବୋଧ ଥାଏ ?**

ଉ : ଏହା ଏକ ଅତି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ । ଆମ୍ଭମାନଙ୍କର ଧାରଣା ଯେ ଶିଶୁମାନେ ବିଶେଷ କିଛି ବୁଝିପାରନ୍ତି ନାହିଁ, ତେଣୁ ସେମାନେ ଆତ୍ମସମ୍ମାନ ସଚେତନ ହେବାର ପ୍ରଶ୍ନ ଉଠେନାହିଁ । କିନ୍ତୁ ଏପରି ଏକ ଧାରଣା ସମ୍ପୂର୍ଣ୍ଣ ଅମୂଳକ । ବଡ଼ ଦୁଃଖର କଥା ଯେ ବହୁ ପିତାମାତା ଅଧିକାଂଶ ସମୟରେ ଶିଶୁ-ସନ୍ତାନର ଆତ୍ମସମ୍ମାନକୁ ଆହତ କରି ଚାଲିଛନ୍ତି । ସେମାନଙ୍କ ଆଚରଣ ଯେ ସନ୍ତାନର ମାନସିକତାକୁ କ୍ଷତବିକ୍ଷତ କରି ଦେଉଛି, ତାହା ସେମାନେ ଜାଣନ୍ତିନି ।

ଛୋଟ ଉଦାହରଣଟିଏ ଦେଉଛି । ନିଜ ସନ୍ତାନଟି ବିଷୟରେ ମାଆମାନେ ପ୍ରାୟତଃ କହିଥାନ୍ତି, "ପିଲାଟା ବଡ଼ ଦୁଷ୍ଟ । ସେଇଥିପାଇଁ ମୁଁ ତାକୁ ଏକୁଟିଆ ଛାଡ଼ିବା ପାଇଁ ପସନ୍ଦ କରେନି କି ସାଥିରେ ନିଏନି ।" ଏତିକି କଥା ଆପଣ ଟିକିଏ ଟାଣ କରି କହନ୍ତୁ ପିଲା ଆଗରେ । ଦେଖିବେ, ସେ ସାଙ୍ଗେ ସାଙ୍ଗେ ହୁଏତ ଚୁପ୍ ପଡ଼ିଯିବ । ତା' ଓଠରୁ ହସ ଉଭେଇଯିବ । ଖେଳିବା ବନ୍ଦ କରିଦେଇ ନୀରବରେ ବସି ରହିବ ସେ । ମନରେ ଆଘାତ ନ ପାଇଥିଲେ ତାହାଠାରେ ଏ' ପ୍ରକାରର ଲକ୍ଷଣ ପ୍ରକାଶ ପାଇଥାନ୍ତା କାହିଁକି ?

ଏ' ପ୍ରକାରର ମନ୍ତବ୍ୟ ତା'ର ଆତ୍ମସମ୍ମାନ ଓ ବ୍ୟକ୍ତିତ୍ୱକୁ ଆହତ କରିଥାଏ, ଅନ୍ୟମାନଙ୍କ ଉପସ୍ଥିତିରେ ଆପଣଙ୍କୁ ବି ଯଦି କିଏ ଏହି ଧରଣର ଆଚରଣ ଦେଖାଇଥାଆନ୍ତା, ଆପଣ ମଧ୍ୟ କ'ଣ ମନ ମାରି ବସି ନଥାନ୍ତେ ? ସନ୍ତାନମାନେ ସେମାନଙ୍କ ପିତାମାତାଙ୍କୁ ଖୁବ୍ ବିଶ୍ୱାସ କରନ୍ତି । ପିତାମାତାଙ୍କର ଭରସା ପାଇ ନିଜକୁ

ସୁରକ୍ଷିତ ମନେ କରନ୍ତି । ତେଣୁ ପିତାମାତାଙ୍କଠାରୁ ଗାଳି ଶୁଣିଲେ କି ପ୍ରତିକୂଳ ମନ୍ତବ୍ୟ ଶୁଣିଲେ ସାନ୍ତ୍ୱନା ପାଇବା ପାଇଁ ସେମାନେ ଅନ୍ୟ କାହା ପାଖରେ ଯାଇ ପହଞ୍ଚିବେ ? ସେମାନେ ନିଜକୁ ଅରକ୍ଷିତ ବା ନିଃସହାୟ ମନେ କରିବେନି ?

ଆମେ ବୟସ୍କ ବ୍ୟକ୍ତିମାନେ ମନେ ରଖିବା ଯେ ଶିଶୁ ହେଉଛି ଆସନ୍ତାକାଲିର ବ୍ୟକ୍ତି । ସେ ହେଉଛି ଭବିଷ୍ୟତର ପ୍ରତିନିଧି । ଫୁଲର କଢ଼ି ଭଳି ସେ ମୁକୁଳିତ ହେବା ପଥରେ ଅଗ୍ରସର ହେଉଛି । ଆମେ ତାକୁ ଯୋଗାଇ ଦେଉଥିବା ପରିବେଶ, ଆଦର ଯତ୍ନ, ସ୍ନେହଶ୍ରଦ୍ଧା, ଖାଦ୍ୟ, କଥାବାର୍ତ୍ତା ଓ ଅନ୍ୟାନ୍ୟ ତଥ୍ୟ ତଥା ତା' ପାଇଁ ଆମେ ସୃଷ୍ଟି କରୁଥିବା ଆହ୍ୱାନରୁ ସେ ଅନେକ କିଛି ଆହରଣ କରିପାରେ । ଏଗୁଡ଼ିକ ତା'ର ରୁଚି ଅନୁକୂଳ କି ରୁଚି ପ୍ରତିକୂଳ ତାହା ଜାଣିବା ନିମନ୍ତେ ତା'ର ଅପରିଣତ ବୟସ ଆଦୌ ଅନ୍ତରାୟ ହୁଏନାହିଁ ।

ତେବେ ତା'ର ଆତ୍ମ-ମର୍ଯ୍ୟାଦା ସୁରକ୍ଷିତ ରଖିବା ପାଇଁ ପିତାମାତାମାନେ କଅଣ କରିବା ଦରକାର ? ବେଶ୍ ଅନୁକୂଳ ପରିବେଶରେ ତା'ର ବୃଦ୍ଧି ଓ ବିକାଶ ସଙ୍ଘଟିତ ହେଉଛି ବୋଲି ପିଲାଟି ଅନୁଭବ କରିବ କିପରି ? ଅନ୍ତତଃ ତାକୁ ଏକ ବର୍ଷ ବୟସ ହେବା ପୂର୍ବରୁ ତା'ର ଆତ୍ମମର୍ଯ୍ୟାଦା ପ୍ରତି ପିତାମାତା ସଚେତନ ହୋଇଯିବା ଉଚିତ । ଛଅମାସର ପିଲାଟିକୁ ଭୋକ କଲେ ସେ କାନ୍ଦିବା ଆରମ୍ଭ କରିଦିଏ । ତା'ର କାନ୍ଦିବା ପ୍ରତି ଆପଣ ଦୁଇ ପ୍ରକାରରୁ ଯେକୌଣସି ଗୋଟିଏ ପ୍ରକାରେ ପ୍ରତିକ୍ରିୟା ପ୍ରକାଶ କରିପାରନ୍ତି । ରାଗିଯାଇ, ଚଢ଼ାଗଳାରେ ହୁଏତ ଖିଙ୍କାରି ଉଠି କହିପାରନ୍ତି, 'ଟିକିଏ ଥୟ ଧରି ରହିପାରୁନୁ ? ତୋ' ପାଇଁ ଯେ ଖାଇବା ତିଆରି କରୁଛି, ଏତିକି ଦେଖାଯାଉନି ତୋତେ ? କିମ୍ବା ଆପଣ ଭାବି ପାରନ୍ତି, 'ଛଅ ମାସର ପିଲା ତ 'ଭୋକ କରୁଚି' ବୋଲି କହିପାରିବନି । କାନ୍ଦିବା ବ୍ୟତୀତ ଅନ୍ୟ କୌଣସି ଉପାୟରେ ତ ତା' ନିଜ ସମସ୍ୟା ବିଷୟରେ ଜଣେଇବା ପାଇଁ ସେ ସମର୍ଥ ନୁହେଁ । କେବଳ କାନ୍ଦ ମାଧ୍ୟମରେ ହିଁ ସେ ମୋତେ କିଛି ଜଣେଇବା ପାଇଁ ଚାହୁଁଛି । ଠିକ୍ ଅଛି । ତାକୁ କୋଳରେ ଧରି ଖାଦ୍ୟ ତିଆରି କଲେ ସେ ମୋର ସ୍ପର୍ଶ ପାଇପାରିବ ଓ ମୁଁ ଯେ ତା'ର ଖାଦ୍ୟ ପ୍ରସ୍ତୁତ କରୁଛି, ତାହା ଦେଖିପାରିବ ।'

ଶେଷୋକ୍ତ ପ୍ରକାରେ ଚିନ୍ତାକରି ପିଲାକୁ କୋଳେଇ ନେଲେ ସେଇଠି ହିଁ ପୋତା ହୋଇଯାଏ ଆତ୍ମମର୍ଯ୍ୟାଦାର ମଞ୍ଜି । ନିଜର ମନୋଭାବ କାନ୍ଦ ମାଧ୍ୟମରେ ପ୍ରକାଶ କରିବା ପାଇଁ ତାକୁ ସୁଯୋଗ ଦିଅନ୍ତୁ ଓ ତାକୁ କୋଳେଇ ନେଇ ଏବଂ ତା' ସହ କଥାବାର୍ତ୍ତା କରି

ଆପଣଙ୍କ ଉପରେ ତା'ର ଭରସାକୁ ଦୃଢ଼ୀଭୂତ କରାନ୍ତୁ । ପିଲାକୁ କାନ୍ଦିବା ନିମନ୍ତେ ସ୍ୱାଧୀନତା ଦିଅନ୍ତୁ ଓ ତା'ର କାନ୍ଦିବା ସହିଯିବା ନିମନ୍ତେ ନିଜକୁ ପ୍ରସ୍ତୁତ ରଖନ୍ତୁ । ତା'ର ଅନୁଭବ ଆଉ ଆପଣଙ୍କର ଅନୁଭବ ଭିତରେ ଅଗ୍ରାଧିକାର ତଥା ଗୁରୁତ୍ୱ ଦିଅନ୍ତୁ ତା'ର ଅନୁଭବକୁ । ଏପରି କଲେ ତାହାଠାରେ ଜାଗ୍ରତ ହେବ ଆତ୍ମବିଶ୍ୱାସ । ସେ ନିଶ୍ଚିତ ହୋଇଯିବ ଯେ ତା' ମା' ତାକୁ ଭଲ ପାଆନ୍ତି ଓ ଶ୍ରଦ୍ଧା କରନ୍ତି । ସେ ଯାହା, ସେହି ପ୍ରକାରେ ଯେ ସେ ବାପମା'ଙ୍କର ଗେହ୍ଲା ସନ୍ତାନ, ଏତକ ବୁଝିପାରି ସେ ନିଜକୁ ଖୁବ୍ ଆଶ୍ୱସ୍ତ ମନେ କରିଥାଏ ।

'ମୋ ମା' ଏବେ କାମରେ ବ୍ୟସ୍ତ ଅଛନ୍ତି । ତେଣୁ ଏତିକିବେଳେ ମୋର କାନ୍ଦିବା ଆଦୌ ଉଚିତ ହେବନାହିଁ' – କୌଣସି ଶିଶୁ ଏହି ପ୍ରକାରେ ଚିନ୍ତା କରିବା ନିମନ୍ତେ ଅକ୍ଷମ । ବରଂ ସେ କେବଳ ଚିନ୍ତା କରେ କିମ୍ବା ଅନୁଭବ କରିଥାଏ ଯେ ତା'ର କିଛି ନା କିଛି ଲୋଡ଼ା । ତାକୁ ଏବେ ଭଲ ଲାଗୁନି । କେହି ନା କେହି ଆସି ତାକୁ ସାହାଯ୍ୟ କରିବା ନିହାତି ଦରକାର । ତା'ର ଏହି ଅସ୍ୱସ୍ତି କାଳରେ ତା' ପ୍ରତି କେହି ଧ୍ୟାନ ନଦେଲେ ସେ ହୁଏତ କେବଳ ଏଇଆ ଚିନ୍ତା କରେ, 'ମୋତେ କେହି ପଚାରୁନାହାନ୍ତି କି କେହି ମୋ ଉପରେ ଖୁସି ନୁହନ୍ତି ।'

ପିଲାର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତା'ଠାରେ ବିକାଶ ଲାଭ କରେ ପରିଚିତି ବୋଧ । 'ମୁଁ କିଏ', 'ମୁଁ କଅଣ', 'ମୋ ଦ୍ୱାରା କି·କି କାମ ହୋଇପାରିବ' ତଥା 'ମୁଁ କଅଣ କରିବି' – ଏହି ପ୍ରକାର ଅନୁଚ୍ଚାରିତ ପ୍ରଶ୍ନଗୁଡ଼ିକର ଉତ୍ତର ତା' ପାଇଁ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ପିତାମାତା, ଶିକ୍ଷକଶିକ୍ଷିକା, ଖେଳସାଥୀ ଏବଂ ସମବୟସ୍କମାନଙ୍କଠାରୁ ସେ ଏହାର ଉତ୍ତର ଆଶା କରେ । ତେଣୁ ସେମାନେ ଏ' ଦିଗରେ ପିଲାମାନଙ୍କୁ ନିରାଶ କରିବା ନିରାପଦ ନୁହେଁ ।

ପିତାମାତାମାନେ ଦିନମାନ ଭିତରେ ବହୁବାର ସନ୍ତାନମାନଙ୍କଠାରୁ ଏ ଧରଣର ଆହ୍ୱାନର ସମ୍ମୁଖୀନ ହୋଇଥାଆନ୍ତି । ଏହି ଆହ୍ୱାନର ସଫଳ ମୁକାବିଲା କରିପାରିଲେ ସନ୍ତାନର ମାନସିକତାକୁ ପୁଷ୍ଟ କରିବାରେ ତାହା ଯଥେଷ୍ଟ ସହାୟକ ହୋଇଥାଏ । ତା'ର ସ୍ୱାର୍ଥରକ୍ଷା ପାଇଁ ପିତାମାତା ଯେ ସର୍ବଦା ତତ୍ପର ଏ' ସମ୍ପର୍କରେ ସେ ନିଃସନ୍ଦେହ ରହେ । ପରିବାରରେ ସେ ଯେ ଜଣେ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଓ ତାକୁ ଯେ ଯଥୋଚିତ ଗୁରୁତ୍ୱ ଦିଆଯାଉଛି, ତାହା ଜାଣି ନିଜକୁ ଯଥେଷ୍ଟ ସୁରକ୍ଷିତ ବୋଲି ଧାରଣା କରିନିଏ ସେ ।

ତା' କଥାକୁ କାନ ଦେବା ବା ମନ ଦେଇ ଶୁଣିବାର ଅନୁକୂଳ ପ୍ରଭାବ ସୁଦୂରପ୍ରସାରୀ । ଖାଇ ବସିଥିବା ବେଳେ ସେ କଅଣ ପଚାରୁଛି କି କହୁଛି ତାହା ପ୍ରତି ପିତାମାତା ଧ୍ୟାନ ଦେଉଛନ୍ତି ତ ? ସ୍କୁଲ୍‌ରୁ ଫେରି ଘରେ ପହଞ୍ଚିଲେ ତା'ର କଥା ଶୁଣିବା ପାଇଁ ମା' କି ବାପା ସଜାଗ ହୋଇରହିଛନ୍ତି ତ ? ସେ ସମ୍ମୁଖୀନ ହୋଇଥିବା କୌଣସି ସାମାନ୍ୟ ଘଟଣାର ସୁବିସ୍ତାର ବର୍ଣ୍ଣନା ତା ତୁଣ୍ଡରୁ ଶୁଣିବା ପାଇଁ ବାପମା' ଧୈର୍ଯ୍ୟ ଧାରଣ କରିପାରୁଛନ୍ତି ତ ? ସେ ହଠାତ୍ ରାଗିଉଠିଲେ, ତା' ରାଗକୁ ହଜମ କରି ନିଜେ ଶାନ୍ତ ରହିପାରିବାର ସାମର୍ଥ୍ୟ ଅଛି ତ ପିତାମାତାଙ୍କର ? ତା'ର ନୈରାଶ୍ୟକୁ ବୁଝି ସେଥିରେ ସମବ୍ୟଥୀ ହେବାର ମାନସିକତା ରହିଛି ତ ପିତାମାତାଙ୍କଠାରେ ?

'ତୋତେ ଆଜି ଭଲ ଲାଗୁନି ନା ? କଅଣ ହୋଇଛି କହିଲୁ ?' – ଏହିଭଳି ବାକ୍ୟ ଶୁଣିଲେ ଆପଣ ଯେ ତା'ର ଅନୁଭବକୁ ସମ୍ମାନ ଦେଉଛନ୍ତି, ପିଲାଟି ତାହା ଜାଣିପାରେ ଓ ଆପଣଙ୍କ ଉପରେ ତା'ର ନିର୍ଭରତା ବଢ଼ିଯାଏ । କେବଳ ଏତିକି କହିଦେଇ ତୁନି ପଡ଼ିଲେ ଚଳିବନି । ସେ ଯାହା କହିବ, ସେହି ଅନୁସାରେ ତଥା ତା'ର ମନଲାଖି ପଦକ୍ଷେପ ନେବା ହେଉଛି ଅଧିକ ଗୁରୁତ୍ୱପୂର୍ଣ୍ଣ । ପିଲାସହ ଯେତେ ବେଶୀଥର କଥାବାର୍ତ୍ତା ହୋଇପାରିବେ । ପିଲାର ଆତ୍ମମର୍ଯ୍ୟାଦା ବୃଦ୍ଧି କରିବାରେ ତାହା ସେତେ ସହାୟକ ହେବ ।

ତା'ର ଯେ ଏକ ମୂଲ୍ୟ ଅଛି, ଏ'କଥା ଶିଶୁକୁ ବିଭିନ୍ନ ଉପାୟରେ ଅବଗତ କରାଯାଇପାରିବ । ସକାଳୁ ବିଛଣାଛାଡ଼ି ରାତିରେ ଶୋଇବାକୁ ଯିବା ଭିତରେ ଶିଶୁମାନେ ବେଶ୍ ଉହଣ୍ଠିତ ତଥା କୌତୂହଳୀ ରହିଥାଆନ୍ତି । ସେମାନଙ୍କ ମନରେ ଉଠୁଥାଏ ପ୍ରଶ୍ନର ଜୁଆର । କେତେ ଯେ ପ୍ରଶ୍ନ, ତା'ର ଇୟତ୍ତା ନଥାଏ । ଗୁଣ୍ଡୁଚିମୂଷା କଅଣ ଖାଏ ? ଚଢ଼େଇ ଛୁଆକୁ ଡର ମାଡ଼େ କି ନା ? ସ୍ୱର୍ଗ କେଉଁଠି ? ସେଠାରେ କେଉଁମାନେ ଥାଆନ୍ତି ? ଈଶ୍ୱର ପୁଣି ମରନ୍ତି କି ନା ? ଏହିସବୁ ପ୍ରଶ୍ନ ଅବାନ୍ତର ନୁହେଁ । ତେଣୁ ସେ ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଚାହେଁ । ଉତ୍ତର ଦେବାରେ ପିତାମାତା ଆନ୍ତରିକତା ପ୍ରଦର୍ଶନ କଲେ ଶିଶୁର ମାନସିକ ବିକାଶ ପ୍ରୋତ୍ସାହନ ପାଇବା ସଙ୍ଗେ ସଙ୍ଗେ ସେ ପିତାମାତାଙ୍କର ଘନିଷ୍ଠ ସାନ୍ନିଧ୍ୟ ଉପଭୋଗ କରିବାର ସୁଯୋଗ ଲାଭକରେ ।

ରାତିରେ ବିଛଣାକୁ ଶୋଇବାକୁ ଯିବାର ସମୟ ସନ୍ତାନର କଥା ଶୁଣିବା ଓ ତା'ସହ ଗପସପ ହେବା ପାଇଁ ଅତି ଉପଯୋଗୀ । ପିଲାର ସାନ୍ନିଧ୍ୟରେ ରହିଲେ ତା'ର ଆତ୍ମବିଶ୍ୱାସ ବୃଦ୍ଧି ପାଏ ଓ ସେ ପିତାମାତାଙ୍କ ଉପରେ ଭରସା ରଖିବାର ଧାରଣା ଅର୍ଜନ କରେ ।

ତେଣୁ ସନ୍ତାନ ସହ ଭାବର ଆଦାନପ୍ରଦାନ କରିବା ନିମନ୍ତେ ପିତାମାତା ଏହି ସମୟର ସମ୍ପୂର୍ଣ୍ଣ ସଦୁପଯୋଗ କରିବା ଉଚିତ ।

ସେହିପରି ସ୍କୁଲ୍‌ରେ ପଢୁଥିବା ଛୋଟ ପିଲାଟିଏ ଆଙ୍କିଥିବା ଛବିକୁ ନୋଟିସ୍ ବୋର୍ଡ଼ରେ ମାରିବା ଓ ଛବିକୁ ପ୍ରଶଂସା କରି ତାକୁ ପୁରସ୍କାର ଦେବା ଫଳରେ ପରିବାର ବାହାରେ ଯେ ସେ ସ୍ୱୀକୃତି ପାଉଛି, ଏହା ସେ ହୃଦୟଙ୍ଗମ କରେ । ଏଥିପାଇଁ ତା'ଠାରେ ମାନସିକ ଦୃଢ଼ତା ବୃଦ୍ଧିପାଏ । ପିତାମାତା, ଶିକ୍ଷକ ଓ ଅନ୍ୟ ବୟସ୍କ ବ୍ୟକ୍ତିମାନେ ପିଲାମାନଙ୍କ ଠାରେ ମାନସିକ ଦୃଢ଼ତାର ପୃଷ୍ଠପୋଷକତା ନକଲେ ସେମାନେ ନିଜକୁ ଅଲୋଡ଼ା ବୋଲି ମନେ କରିଥାନ୍ତି । ପରୀକ୍ଷାରେ ଭଲ ନମ୍ବର ରଖି ନପାରିଲେ ମଧ ଆତ୍ମବିଶ୍ୱାସ ଲାଭ କରିଥିବା ପିଲା ଜୀବନ ସଂଗ୍ରାମକୁ ସହଜରେ ମୁକାବିଲା କରିପାରେ ।

ଛାତ୍ରଟିଏ ପରୀକ୍ଷାରେ ପାସ୍ କରିଥିଲେ ତାକୁ ଅଭିନନ୍ଦନ ଜଣାଇବା ଉଚିତ । ଏହା ଫଳରେ ସେ ଉଲ୍ଲସିତ ହୁଏ ଓ ଉତ୍ସାହିତ ହୁଏ । ପରୀକ୍ଷାରେ କେତେ ନମ୍ବର ରଖିଛୁ – ଏହା ଏକ ଗୌଣ ପ୍ରଶ୍ନ ଓ ଏ ସମ୍ପର୍କରେ ପରେ ହୁଏତ ତାହା ସହ ଆଲୋଚନା କରାଯାଇପାରେ ।

ଏପରିକି କୌଣସି ବିଷୟରେ ଭଲ କରିନଥିଲେ ମଧ ସେ ଯେଉଁ ସାମାନ୍ୟ କୃତିତ୍ୱ ଅର୍ଜନ କରିଛି, ସେଥିପାଇଁ ମଧ ସେ ପ୍ରଶଂସାର ପାତ୍ର । ପ୍ରତ୍ୟେକ ପିଲାକୁ ପ୍ରଶଂସା କରିବାର ଯଥେଷ୍ଟ ସୁଯୋଗ ରହିଛି । କିନ୍ତୁ ତା'ଠାରେ ପ୍ରଶଂସାଯୋଗ୍ୟ ଗୁଣର ଆବିଷ୍କାର କରିବା ପିତାମାତା, ଶିକ୍ଷକଶିକ୍ଷିକା ଓ ବୟସ୍କ ବ୍ୟକ୍ତିମାନଙ୍କର କର୍ତ୍ତବ୍ୟ । କୌଣସି ଛାତ୍ରଟିଏ ସ୍କୁଲ୍‌ରେ ହୁଏତ ମେଧା ପ୍ରଦର୍ଶନ କରିବାରେ ବିଫଳ, ସେ ହୁଏତ ଅସୁନ୍ଦର, କିନ୍ତୁ ସେ ହୁଏତ ଅନ୍ୟ ପିଲାମାନଙ୍କୁ ଭଲ ପାଉଥିବ, ଘରେ ଛୋଟ ପିଲାଙ୍କୁ ସ୍ନେହଶ୍ରଦ୍ଧା ଦେଖେଇ ସେମାନଙ୍କର ଯତ୍ନ ନେଇପାରୁଥିବ, ହୋଇଥିବ ଅନୁକମ୍ପାଶୀଳ । ପରିସ୍ଥିତି ସହ ଖାପଖୁଆଇ ଚଳି ପାରୁଥିବ ମଧ । ପରୀକ୍ଷାରେ ବ୍ୟୁତ୍ପତ୍ତି ପ୍ରଦର୍ଶନ କରିବା ତୁଳନାରେ ଏହିସବୁ ଗୁଣ କୌଣସି ପ୍ରକାରେ ବି ନ୍ୟୁନ ନୁହେଁ । ତେଣୁ ମେଧା ସାମର୍ଥ୍ୟକୁ ମୁଖ୍ୟ ବିଚାରି ଆବେଗିକ ସାମର୍ଥ୍ୟକୁ ଗୌଣ ବିଚାରିବା ସମ୍ପୂର୍ଣ୍ଣ ଅନୁଚିତ ।



# ଶିଶୁଠାରେ ଆତ୍ମସମ୍ମାନବୋଧର ବିକାଶ

**"ସ୍ନେହଶ୍ରଦ୍ଧା ଲାଭ କରିବାର ପାତ୍ର ହେଉନଥିବା ସମୟରେ ହିଁ ପିଲାମାନେ ବେଶୀ ସ୍ନେହଶ୍ରଦ୍ଧା କାମନା କରିଥାନ୍ତି ।"**

**–ହାରୋଲ୍ଡ୍ ଏସ୍. ହୁଲ୍‌ବର୍ଟ୍**

**ପ୍ର : ସନ୍ତାନଠାରେ ଆତ୍ମସମ୍ମାନବୋଧର ବିକାଶ କରାଯାଇପାରିବ କିପରି ?**

**ଉ :** କେତେକ ପିତାମାତା ଓ ବହୁ ଅଜାଆଇ ଘରର ଛୋଟ ପିଲାମାନଙ୍କ ବୌଦ୍ଧିକ କୃତିତ୍ୱର ବିଫଳତା ବିଷୟରେ ଆଲୋଚନା କରିବାକୁ ଭଲ ପାଆନ୍ତି ଓ ଉଚିତ ମଣନ୍ତି ମଧ୍ୟ । ବିଶେଷ କରି ଅଜାଆଈମାନେ ନାତିନାତୁଣୀଙ୍କ ପାଠପଢ଼ାକୁ ନେଇ ବେଶୀ ଆଲୋଚନା କରିଥାନ୍ତି । ନାତିନାତୁଣୀମାନେ ପରୀକ୍ଷାରେ କେଉଁ ବିଷୟରେ କେତେ ନମ୍ବର ରଖିଛନ୍ତି ତାହା ପଚାରି ବୁଝିବା ସଙ୍ଗେ ସଙ୍ଗେ ପାଖପଡ଼ିଶାର ପିଲାଙ୍କ ନମ୍ବର ସହ ତୁଳନା କରିବା ପାଇଁ ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । କିନ୍ତୁ ସମସ୍ତେ ଜାଣିରଖିବା ଦରକାର ଯେ ପିଲାମାନେ ମଧ୍ୟ ବଡ଼ମାନଙ୍କ ଭଳି ଅନୁଭବ କରିପାରନ୍ତି । ତେଣୁ ସେମାନଙ୍କର ବିଫଳତା ବିଷୟରେ ଖୋଲାଖୋଲି ମତ ପ୍ରକାଶ କଲେ ତାହା ସେମାନଙ୍କ ମନରେ ଖୁବ୍ ଆଘାତ ଦେଇଥାଏ । ପିଲାଟି ହୁଏତ ତା'ର ସାମର୍ଥ୍ୟକୁ ଚାହିଁ ପରୀକ୍ଷାରେ ସବୁଠାରୁ ଭଲ କରିପାରିଥାଏ ; ସୁତରାଂ, ତାକୁ ପ୍ରଶଂସା କରିବା ହିଁ କାମ୍ୟ ।

ତୁଳନା କରିବା ଦ୍ୱାରା ଖୁବ୍ କ୍ଷତିକାରୀ ପ୍ରଭାବ ପଡ଼ିଥାଏ । ତୁଳନାରେ ନିମ୍ନ ବିବେଚିତ ହେବାପାଇଁ ଆମେ କେହି ଚାହୁଁନା । ବଡ଼ମାନେ ଚାହାଁନ୍ତିନି କି ପିଲାମାନେ ଚାହାଁନ୍ତିନି । ଆପଣ ଲକ୍ଷ୍ୟ କରିଥିବେ ଯେ କୌଣସି ପରିବାରରେ ବଡ଼ ଭାଇ ହୁଏତ ପାଠପଢ଼ାରେ ଖୁବ୍ ଧୁରନ୍ଧର, ଖେଳ ଓ ସଙ୍ଗୀତରେ ମଧ୍ୟ କିଛି କିଛି ରୁଚି ରଖେ । ହେଲେ ସାନଭାଇ ସଙ୍ଗୀତରେ, କ୍ରିକେଟ୍ ଓ ଫୁଟ୍‌ବଲ୍ ଖେଳରେ ଅତି ପାରଦର୍ଶୀ । ପାଠପଢ଼ାରେ ସେ ବିଶେଷ କୃତିତ୍ୱ ଦେଖେଇପାରେ ନାହିଁ । କିନ୍ତୁ ଶିକ୍ଷକମାନେ ବଡ଼ଭାଇର ପ୍ରଶଂସାରେ

ମୁଖର । ସାନଭାଇଟିର ସଙ୍ଗୀତ ଓ ଖେଳରେ ପାରଦର୍ଶିତାକୁ ସେମାନେ ଗୌଣ ବିଚାରି ବଡ଼ଭାଇର ଉଦାହରଣ ଦେଇ ସାନଭାଇକୁ ସର୍ବଦା ସମାଲୋଚନା କରିଥାନ୍ତି । ଏହା ଫଳରେ ସାନଭାଇଟି ହୀନମନ୍ୟତାର ଶିକାର ହୋଇ ସେ "କେଉଁ କାମର ନୁହେଁ" ବୋଲି ନିଜକୁ ମନେ କରିଥାଏ । ଏହା ଫଳରେ ବ୍ୟାହତ ହୋଇପଡ଼େ ତା'ର ବୌଦ୍ଧିକ ବିକାଶ ।

ସେହିପରି କେହିକେହି ଦୁଇ ଭଉଣୀଙ୍କ ଦେହର ରଙ୍ଗ ଓ ସୌନ୍ଦର୍ଯ୍ୟକୁ ନେଇ ମଧ୍ୟ ତୁଳନା କରିଥାନ୍ତି । ପରୀକ୍ଷାରେ ଭଲ କରୁନଥିବା ସୁନ୍ଦରୀ ଗୋରା ଭଉଣୀ ଓ ପରୀକ୍ଷାରେ ଭଲ କରୁଥିବା ଅସୁନ୍ଦରୀ କଳା ଭଉଣୀ କ୍ଷେତ୍ରରେ ପ୍ରଥମ ଭଉଣୀର ସୌନ୍ଦର୍ଯ୍ୟକୁ ନେଇ ଓ ଦ୍ୱିତୀୟ ଭଉଣୀର ପାଠପଢ଼ାକୁ ନେଇ ତୁଳନା କରିଚାଲିଲେ ତାହା ଉଭୟ ଭଉଣୀଙ୍କୁ ସମାନ ଭାବରେ ଆହତ କରିଥାଏ । କଳା ହୋଇଥିବା ଝିଅକୁ ଦେଖି ଯଦି କେହି କହେ 'ତୁ ତ କାଳୀଟିଏ, ତୋତେ କିଏ ବାହା ହବ ବା ?' ତାହାହେଲେ ସେ 'ଭଲ ବରଟିଏ ପାଇବନି' ବୋଲି ଭାବି ଭାବି ନିଜର କୈଶୋରଟିକୁ ଅତିବାହିତ କରିଦିଏ । ଏହି ସାମାନ୍ୟ ମନ୍ତବ୍ୟଟି ଯେ ତାକୁ ବର୍ଷ ବର୍ଷ ଧରି ଯନ୍ତ୍ରଣା ଜର୍ଜରିତ କରି ରଖୁଛି, ଏହା ମନ୍ତବ୍ୟକାରୀ ଜାଣି ପାରନ୍ତି ନାହିଁ ।

ଦେହର ରଙ୍ଗରୁ ପିଲାର ଚରିତ୍ର ବିଷୟରେ ଆକଳନ କରାଯାଇପାରେନା କି ତା' ବିଭାଘର ବିଷୟରେ କିଛି କୁହାଯାଇପାରେନା ।

ବିଦ୍ୟାଳୟରେ ଅତି ସାଧାରଣ ତଥା କୁତ୍ସିତ ବିବେଚିତ ବହୁଛାତ୍ର ପରବର୍ତ୍ତୀ କାଳରେ ଅସାଧାରଣ ପ୍ରତିଭା ରୂପେ ଉଭା ହୋଇଥିବାର ଅନେକ ଦୃଷ୍ଟାନ୍ତ ରହିଛି । ତେଣୁ ପିଲାମାନଙ୍କୁ ତୁଳନାତ୍ମକ ଭାବରେ ଆକଳନ କରି ମନ୍ତବ୍ୟ ଦେବାରୁ ବିରତ ହେବା ହିଁ ସ୍ପୃହଣୀୟ ।

ଆଉ ଗୋଟିଏ କଥା ବିଚାର କରନ୍ତୁ । ପିଲାମାନେ କୌଣସି ଭୁଲଭଟକା କରି ପକେଇଲେ କି କୌଣସି ମୂଲ୍ୟବାନ ଜିନିଷଟିଏ ଭାଙ୍ଗିଦେଲେ କିମ୍ୱା ହଜେଇଦେଲେ ଆମେ ବୟସ୍କ ବ୍ୟକ୍ତିମାନେ ରାଗି ନିଆଁବାଣ ହୋଇଯାଉ । କେହି କେହି ନିଜର କ୍ରୋଧ ସମ୍ଭାଳି ନପାରି ପିଲାକୁ ଅଶ୍ରାବ୍ୟ ଭାଷାରେ ଗାଳିଦେବା ସଙ୍ଗେ ସଙ୍ଗେ ମାଡ଼ ମଧ୍ୟ ମାରିଥାଆନ୍ତି ।

ଆଚ୍ଛା, ମନେ ପକାନ୍ତୁ ତ ! ପରିଣତ ବୟସରେ ପହଞ୍ଚି ମଧ୍ୟ ଆପଣଙ୍କର କ'ଣ କିଛି ଭୁଲଭଟକା ହେଉନି ? ଆପଣ କ'ଣ କିଛି ଜିନିଷପତ୍ର ହଜେଇ ନାହାନ୍ତି ନା ଆପଣଙ୍କ ଅସାବଧାନତାରୁ ଘରର କୌଣସି ମୂଲ୍ୟବାନ ଜିନିଷପତ୍ର ଭାଙ୍ଗିଯାଇନି ? ପିଲାର ଏହି

ପ୍ରକାର ତ୍ରୁଟି ପାଇଁ ଆପଣ ତା' ପ୍ରତି ଯେଉଁ ପ୍ରକାରର ଦଣ୍ଡବିଧାନ କରିଛନ୍ତି, ସେହି ପ୍ରକାରର ଦଣ୍ଡଗ୍ରହଣ କରିବା ନିମନ୍ତେ ଆପଣ ପ୍ରସ୍ତୁତ ତ ?

ପିଲାମାନଙ୍କର ଯେଉଁ ତ୍ରୁଟି ଇଚ୍ଛାକୃତ ନୁହେଁ ସେଥିପାଇଁ ଦଣ୍ଡ ଦେବା ଆଦୌ ଉଚିତ ନୁହେଁ । ପିଲାଟିଏ କୌଣସି ଜିନିଷ ଭାଙ୍ଗିଦେଲେ, ହଜେଇଦେଲେ କି କିଛି ଭୁଲିଗଲେ ତାକୁ ବୋକା, ମୂର୍ଖ, ଅନ୍ୟମନସ୍କ, ଖାମଖିଆଲି, ବଦ୍‌ମାସ ଇତ୍ୟାଦି କହି ଗାଳିଦେବା କି କାୟିକ ଦଣ୍ଡ ଦେବା ଦ୍ୱାରା ତା'ର ଅପୂରଣୀୟ କ୍ଷତି ଘଟିଥାଏ । ମାନସିକ ସ୍ତରରେ ସେ ଖୁବ୍ ଭାଙ୍ଗିପଡ଼େ । ସେ ଭାବିନିଏ ଯେ ଭାଙ୍ଗିଯାଇଥିବା କି ହଜିଯାଇଥିବା ଜିନିଷଟି ତୁଳନାରେ ସେ ବାପମା'ଙ୍କ ନିକଟରେ ଅତି ମୂଲ୍ୟହୀନ ଓ ଗୁରୁତ୍ୱହୀନ । କିନ୍ତୁ ଏହା ତ ସତ ନୁହେଁ । କଲମଟିଏ ହଜିଗଲେ ଆକାଶ ଛିଣ୍ଡି ପଡ଼ିବନି । ହେଲେ ସନ୍ତାନର ସ୍ୱାଭାବିକ ମାନସିକତା ବା ଆନନ୍ଦ ହଜିଗଲେ ଏହା ନିଶ୍ଚିତ ଭାବରେ ଅଧିକ କ୍ଷତିକାରକ । ତା'ର ଦୋଷତ୍ରୁଟି ସମ୍ବନ୍ଧରେ ତାକୁ ବୁଝେଇଦେଲେ ସେ ସଚେତନ ହୋଇଉଠେ ଓ ପରେ ସେହି ପ୍ରକାରର ତ୍ରୁଟି ନ କରିବା ପାଇଁ ସାବଧାନ ରହେ । ତାହାଛଡ଼ା ତା'ର ଦୋଷତ୍ରୁଟିକୁ ହସିହସି ସହିନେବା ଓ ତାକୁ ଦଣ୍ଡ ନ ଦେବାର ଦେଖି ବାପମା'ଙ୍କ ପ୍ରତି ତା'ର ସମ୍ମାନ ବୃଦ୍ଧିପାଏ । ଦୟାଶୀଳ ଓ କ୍ଷମାଶୀଳ ପିତାମାତାଙ୍କର ସନ୍ତାନ ବୋଲି ସେ ମନେ ମନେ ଗର୍ବ ଅନୁଭବ କରିଥାଏ ମଧ୍ୟ ।

ସମାନ ଧରଣର ସହିଷ୍ଣୁତା ପିଲାଙ୍କ ପାଠପଢ଼ା ପ୍ରତି ମଧ୍ୟ ପ୍ରଯୁଜ୍ୟ । ସେମାନେ ସ୍କୁଲ୍‌ରେ ଦିଆଯାଇଥିବା ପାଠ ଭୁଲ୍ କରି ପକେଇଲେ ସେମାନଙ୍କୁ ଭୁଲ୍‌ଟିକୁ ଦର୍ଶେଇ ଦେବା ଉଚିତ । ପିଲାମାନେ ରୋଷେଇ ଶିଖିଲାବେଳେ ବି ଅନେକ ଭୁଲ୍‌ଭଟକା କରି ପକାନ୍ତି । କିଏ ତରକାରିରେ ଲୁଣ ପକେଇବା ପାଇଁ ଭୁଲିଯାଏ ତ କିଏ ବେଶୀ ଲୁଣ ପକେଇ ଦିଏ । ଡାଲି ତରକାରି ପୋଡ଼ିଯାଇପାରେ ମଧ୍ୟ । ଅନ୍ୟ କେତେବେଳେ ରୋଷେଇ କରାଯାଇଥିବା ଖାଦ୍ୟଦ୍ରବ୍ୟ ସମସ୍ତଙ୍କ ପାଇଁ ଅଣ୍ଟେ ନାହିଁ । କିନ୍ତୁ ରୋଷେଇ ଶିଖାଳିର ଭୁଲ୍ ଭଟକାକୁ ଚଳେଇ ନେଇପାରିଲେ କ୍ରମେ ତା'ର ଆତ୍ମବିଶ୍ୱାସ ବୃଦ୍ଧିପାଏ ଓ ସେହି ପ୍ରକାରର ତ୍ରୁଟି ସେ ଦୋହରାଏ ନାହିଁ । ଏପରିକି ଘରକୁ ଅତିଥି ଆସିଥିଲେ ତାକୁ ରୋଷେଇବାସର ଆଂଶିକ ଦାୟିତ୍ୱ ଦେଲେ ସେ ଉତ୍ସାହିତ ହୋଇଥାଏ । ଛୋଟିଆ କଥାଗୁଡ଼ିକୁ ନଧରି ପ୍ରଶଂସା କରିବାର ଅଭ୍ୟାସ ରଖିଲେ ଏହାଦ୍ୱାରା ପିଲାମାନଙ୍କର ଅଶେଷ ମଙ୍ଗଳ ହୋଇଥାଏ ବୋଲି ମନୋବିଜ୍ଞାନୀମାନଙ୍କର ମତ ।

ଅନେକ ପିତାମାତା ଓ ଶିକ୍ଷକ ପିଲାମାନଙ୍କଠାରୁ ଅଯୌକ୍ତିକ ସଫଳତା ଆଶା କରିଥାନ୍ତି ଓ ସେମାନଙ୍କ ପ୍ରତ୍ୟାଶା ତୁଳନାରେ ପିଲାର କୃତିତ୍ୱ ନ୍ୟୂନ ହେଲେ ତୀବ୍ର ପ୍ରତିକ୍ରିୟା ଦେଖେଇଥାଆନ୍ତି । ଏ' ପ୍ରକାରର ଆଚରଣ ମଧ୍ୟ ଆଦୌ ଶୋଭନୀୟ ନୁହେଁ । ଏପରିକି କେତେକ ପିତାମାତା ଓ ଶିକ୍ଷକଙ୍କ ପାଖରେ ଶିଖେଇବାର ଧୈର୍ଯ୍ୟ ନଥାଏ । ତେଣୁ ପିଲାର ପ୍ରାଥମିକ ବିଫଳତାକୁ ଦେଖି ସେମାନେ ଅଧୈର୍ଯ୍ୟ ହୋଇପଡ଼ନ୍ତି ଓ 'ତୋ ଦ୍ୱାରା କିଛି ହେବନି' କହି ନିଜ ପ୍ରଚେଷ୍ଟାରୁ ଓହରିଯାଆନ୍ତି । ଓହରି ନଯାଇ ଧୈର୍ଯ୍ୟର ସହ ଶିଖେଇ ଚାଲିଥିଲେ ସେହି ପିଲାଟି ଯେ ଭବିଷ୍ୟତରେ ଯଥେଷ୍ଟ କୃତିତ୍ୱ ପ୍ରଦର୍ଶନ କରିପାରିଥାନ୍ତା, ଏହି ସୁଯୋଗ ସେମାନଙ୍କର ହାତଛଡ଼ା ହୋଇଯାଏ ।

ମନେ ରଖିଥିବେ ଯେ ପିଲାମାନେ ସଚେତନ ନଥାଇ ମଧ୍ୟ ପରିବାରରୁ ଅନେକ କଥା ଆହରଣ କରିଥାଆନ୍ତି । ନିଜର ବଡ଼ ଭାଇ କି ଭଉଣୀ କୌଣସି ବିଷୟରେ କୃତିତ୍ୱ ଅର୍ଜନ କରିଥିଲେ ସେହି ବିଷୟଟିରେ କୃତିତ୍ୱ ଅର୍ଜନ କରିବା ନିମନ୍ତେ ସାନ ଭାଇ ଭଉଣୀମାନେ ମଧ୍ୟ ପ୍ରୟାସ ଜାରି ରଖିବା ଉଚିତ ବୋଲି ପିତାମାତା ଆଶା ପୋଷଣ କରୁଥିବାର ଦେଖାଯାଏ । କିନ୍ତୁ ସେହି ଶାଖାଟି ପ୍ରତି ଯେ ସାନ ଭାଇଭଉଣୀ ନିଶ୍ଚୟ ଆଗ୍ରହୀ ହେବେ, ଏହା ଧାରଣା କରିନେବା ପିତାମାତାଙ୍କ ପକ୍ଷେ ଭୁଲ୍ । ହେଲେ ବଡ଼ ଦୁର୍ଭାଗ୍ୟର କଥା ଯେ କନିଷ୍ଠ ସନ୍ତାନର ବୀତସ୍ପୃହତା ସେମାନଙ୍କୁ ନିରାଶ କରିପକାଏ ।

ପିତାମାତା ଜାଣି ରଖିବା ଉଚିତ ଯେ ସେମାନଙ୍କର ନୈରାଶ୍ୟ ସନ୍ତାନର ଅହିତ କରିଥାଏ । କୌଣସି ପିଲା ଆଗରେ ଅନ୍ୟ କୌଣସି ପିଲାର ପ୍ରଶଂସା ଗାଇଲେ ପ୍ରଥମ ପିଲାଟି ଯେ ଦ୍ୱିତୀୟ ପିଲା ତୁଳନାରେ ନ୍ୟୂନ, ଏହି ଧାରଣା ଗ୍ରହଣ କରିନିଏ ପ୍ରଥମ ପିଲାଟି । ତେଣୁ ପିତାମାତାଙ୍କ ଅକୁହା କଥାକୁ ବି ସେମାନଙ୍କ ଅଲକ୍ଷ୍ୟରେ ସନ୍ତାନମାନେ ଧରିପାରନ୍ତି ।

ଆମ ଦେଶରେ ପିତାମାତାଙ୍କଠାରେ ପରିଲକ୍ଷିତ ହୋଇଥାଏ ଏକ ଅସ୍ୱାଭାବିକ ମାନସିକତା । ସେମାନେ ଜୀବନରେ ଯାହା କରିପାରିଲେନି, ତାହା ସନ୍ତାନମାନଙ୍କଠାରେ ସମ୍ଭବ ହେଉ ବୋଲି ସେମାନେ ତୀବ୍ର କାମନା ପୋଷଣ କରିଥାନ୍ତି । ତେଣୁ ପିତାମାତା ନିଜେ ସନ୍ତାନର ଭବିଷ୍ୟକର୍ତ୍ତା ପାଲଟି ଯାଉଛନ୍ତି । ସନ୍ତାନ ଡାକ୍ତର ହେବ କି ଇଞ୍ଜିନିୟର ହେବ କି ପ୍ରଶାସକ ହେବ, ତାହା ସ୍ଥିର କରୁଛନ୍ତି ପିତାମାତା । ଏହା ଫଳରେ ସନ୍ତାନମାନେ ନିଜସ୍ୱ ସାମର୍ଥ୍ୟକୁ ଆବିଷ୍କାର କରିପାରିବାର ସୁଯୋଗରୁ ବଞ୍ଚିତ ହୋଇପଡୁଛନ୍ତି ।

ସନ୍ତାନର ବ୍ୟକ୍ତିତ୍ୱ ଗଠନରେ ଅନେକ କାରକ ଭୂମିକା ଗ୍ରହଣ କରିଥାନ୍ତି । ପ୍ରତ୍ୟେକ କାରକ ପରସ୍ପର ସହ ସମ୍ପୃକ୍ତ । ସେହି କାରକଗୁଡ଼ିକର ପାରସ୍ପରିକ କ୍ରିୟା ହିଁ ସନ୍ତାନକୁ ନିଜର ମୂଲ୍ୟ ତଥା ଗୁରୁତ୍ୱର ଆକଳନ କରିବାରେ ସାହାଯ୍ୟ କରିଥାଏ । କିନ୍ତୁ ପିତାମାତାଙ୍କର ନିର୍ଦ୍ଦିଷ୍ଟ ଦିଗଦର୍ଶିତା ଫଳରେ ଅନ୍ୟ ଦିଗଗୁଡ଼ିକ ଅବହେଳିତ ହୋଇ ରହିଯାଆନ୍ତି । ଏହାର ପରିଣାମରେ ସନ୍ତାନର ବ୍ୟକ୍ତିତ୍ୱ ବିକୃତ ହୋଇଯାଏ । ସନ୍ତାନର ବ୍ୟକ୍ତିତ୍ୱ ହେଉଛି ମୁଖ୍ୟ, ତା'ର ସଫଳତା ହେଉଛି ଗୌଣ । ତେଣୁ ନିଜ ନିଷ୍ପତ୍ତି ନିଜେ ନେବାପାଇଁ ସନ୍ତାନକୁ ପ୍ରୋତ୍ସାହନ ଯୋଗାଇଦେବା ଉଚିତ । ପିତାମାତାମାନେ ନିଷ୍ପତ୍ତି-ଦାତା ନହୋଇ ମାର୍ଗଦର୍ଶକ ହେବା ଉଚିତ । କିନ୍ତୁ ବଡ଼ କ୍ଷୋଭର ବିଷୟ ଯେ ସନ୍ତାନର ଆଚରଣ, ବୃତ୍ତି, ବିବାହ, ଧର୍ମ ଇତ୍ୟାଦିରେ ପିତାମାତା ହିଁ ନିଷ୍ପତ୍ତି ଗ୍ରହଣ କରି ଚାଲିଛନ୍ତି । ପିତାମାତାଙ୍କ ନିର୍ଦ୍ଦେଶରେ ପରିଚାଳିତ ସନ୍ତାନ ନିଜର ଅନ୍ତର୍ନିହିତ ଶକ୍ତି ସମ୍ପର୍କରେ ସଚେତନ ହୋଇପାରେ ନାହିଁ । ଫଳରେ ତା'ର ଉନ୍ନତି ବହୁଳାଂଶରେ ବ୍ୟାହତ ହୋଇପଡ଼େ । ହେଲେ, ଭବିଷ୍ୟତରେ ସେ ହିଁ ମୁକାବିଲା କରିବ ବିଭିନ୍ନ ସମସ୍ୟାରାଜିର । ତାକୁ ହିଁ ସେହି ସମସ୍ୟାଗୁଡ଼ିକର ସମାଧାନ ଖୋଜିବାକୁ ପଡ଼ିବ । ତେଣୁ ସନ୍ତାନମାନଙ୍କ ଉପରେ ତୀକ୍ଷ୍ଣ ନଜର ରଖି ପିତାମାତା ସେମାନଙ୍କୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଦେବା ଉଚିତ । ସନ୍ତାନ ନିଜେ ନିଷ୍ପତ୍ତି ଗ୍ରହଣ କରୁ ଓ ନିଷ୍ପତ୍ତି ନେବାର ଅଧିକାରକୁ ଉପଭୋଗ କରିବାର ସୁଯୋଗ ପାଉ ।



# ପିଲାମାନଙ୍କୁ ଆମେ କଅଣ ଶିଖେଇଚାଲିଛୁ ?

"ପ୍ରତ୍ୟେକ ବ୍ୟକ୍ତି ଯେ ଭୁଲ୍ କରିପାରେ ଓ ନିଜର ଭୁଲ୍‌କୁ ମାନିଯିବା ଏକ ମହାନ୍ ଗୁଣ – ଏହା ସନ୍ତାନମାନଙ୍କୁ ଶିକ୍ଷା ଦେବାକୁ ହେଲେ ପିତାମାତା ନିଜେ ନିଜ ଭୁଲ୍ ପାଇଁ ପିଲାମାନଙ୍କ ନିକଟରେ କ୍ଷମା ମାଗିବାର ଅଭ୍ୟାସ କରିବା ଉଚିତ ।"

–ନାନ୍‌ସି ସେମାଲ୍ଲିନ୍ ଓ କ୍ୟାଥେରିନ୍ ହୁଇଟ୍‌ନି

**ପ୍ର : ସନ୍ତାନମାନଙ୍କୁ ଭଲ ମଣିଷ କରି ଗଢ଼ିବାକୁ ହେଲେ ପିତାମାତାମାନେ ସେମାନଙ୍କୁ କେଉଁ ପ୍ରକାରର ଶିକ୍ଷା ଦେବା ଦରକାର ?**

ଉ : ସବୁ ବାପମା' ନିଜ ପିଲାମାନଙ୍କୁ 'ଭଲପିଲା' ଭାବରେ ଗଢ଼ିବାକୁ ଚାହିଁଥାନ୍ତି । କୌଣସି ବାପମା' ନିଜ ସନ୍ତାନକୁ କ'ଣ 'ମନ୍ଦ ପିଲା' ଭାବରେ ଗଢ଼ିଥାଏ ? କିନ୍ତୁ ନିଜର ଅଜ୍ଞତା ଯୋଗୁ ସେମାନେ ଏପରି ଆଚରଣ କରିଥାନ୍ତି, ଯାହା ମଙ୍ଗଳ କରିବା ପରିବର୍ତ୍ତେ ପିଲାର କ୍ଷତି ହିଁ କରିଥାଏ । ପିତାମାତାଙ୍କର ଜିଭ ଏପରି ବାଡ଼ିଆ ଦିଏ ଯେ ତା'ର ଯନ୍ତ୍ରଣା ଓ କୁପ୍ରଭାବ ସୁଦୂରପ୍ରସାରୀ ।

ଥରେ ପିତାମାତାଙ୍କର ଏକ ସମାବେଶରେ ସେମାନଙ୍କୁ ପଚରାଗଲା – ଆପଣମାନେ ନିଜ ନିଜର ପିଲାବେଳ କଥା ମନେପକାନ୍ତୁ ଓ ଆପଣଙ୍କ ବାପମା' କିମ୍ବା ଅନ୍ୟମାନଙ୍କଠାରୁ ଶୁଣିଥିବା ଏବଂ ଶୁଣି ମାନସିକ ଆଘାତ ପାଇଥିବା ଶବ୍ଦ କି ବାକ୍ୟଟିକୁ ଏଠାରେ କହନ୍ତୁ । ସେମାନେ ଯାହା କହିଲେ, ତାହା କିଛି ନୂଆ ନଥିଲା । ସେହିସବୁ ଶବ୍ଦ କି ବାକ୍ୟ ଆମ ଭିତରୁ ଅଧିକାଂଶଙ୍କ ଜିଭ ଅଗରେ ଥୁଆ । ସେଗୁଡ଼ିକୁ ବି ଆମେ ନିଃସଙ୍କୋଚରେ ଆମ ପିଲାଙ୍କ ଉପରେ ପ୍ରୟୋଗ କରିଚାଲିଛେ ।

ଅଧିକାଂଶ ସମୟରେ ଆମେ ସେମାନଙ୍କୁ କହିଥାଉ – 'ଅଳସୁଆ–ଅକର୍ମା– ବୋକା – ବଦ୍‌ମାସ୍ – ବଡ଼ ସ୍ୱାର୍ଥପର – ଲୋଭୀଟାଏ – ତୋ ପାଟିରେ କ'ଣ ବିଣ୍ଡା ପଶିଚି ? – ତୋ' ମୁଣ୍ଡରେ ଖାଲି ଗୋବର ପୁଳାଏ ଅଛି – ତୋତେ ମୁଁ ସମ୍ଭାଳି ପାରିବିନି

– ତୋ ଅତ୍ୟାଚାରରେ ମୁଁ ଅତିଷ୍ଠ – ତୋ ବାପମା'କୁ ଟିକିଏ ଶାନ୍ତିରେ ରଖେଇ ଦେବୁନି – ବାପର ସବୁଯାକ ଗୁଣ ନେଇଛୁ – ମୋ ପେଟରୁ ଜନ୍ମ ହୋଇନଥାନ୍ତୁ ଭଲା – ଆମ ଭଳିଆ ବାପମା' ପାଇ ତୁ ଯଦି ମଣିଷ ନହେଲୁ, ତେବେ ଭାଗ୍ୟକୁ ନିନ୍ଦିବା ଛଡ଼ା ଆମର ଗତି କ'ଣ ଅଛି ?' – ଇତ୍ୟାଦି ।

ଏଗୁଡ଼ିକୁ କୌଣସି ବାପମା' ଜାଣିଶୁଣି କହିନଥାନ୍ତି । ଏହା ଯେ ସନ୍ତାନର ଅଶେଷ କ୍ଷତି କରିଥାଏ, ତାହା ବି ଅଧିକାଂଶ ବାପମା'ଙ୍କୁ ଅଜଣା । ତେବେ ଏଗୁଡ଼ିକ ସେମାନଙ୍କ ପାଟି ଭିତରେ ପଶେ କିପରି ? ମନୋବିଜ୍ଞାନୀମାନଙ୍କର ମତ ଯେ ସନ୍ତାନମାନେ ବାପମା'ଙ୍କ ଠାରୁ ଯେଉଁପରି ଆଚରଣ ପାଇଥାନ୍ତି, ତାକୁ ମନେ ରଖି ନିଜ ସନ୍ତାନମାନଙ୍କ ଉପରେ ତାହା ପ୍ରୟୋଗ କରିଥାନ୍ତି । ସେମାନଙ୍କର ଧାରଣା ଯେ ଏଭଳି କହିଲେ ପିଲାଏ ଠିକ୍ ବାଟରେ ଚାଲିବେ ।

ଏହା ପଛରେ ଅନ୍ୟ ଏକ କାରଣ ମଧ୍ୟ ଅଛି । କାରଣଟି ହେଲା – ସାଧାରଣ ଅବସ୍ଥାରେ ଆମ ପାଟିରୁ କୁଶବ୍ଦ କି କୁବାକ୍ୟ ବାହାରି ନଥାଏ ସିନା, କିନ୍ତୁ ମନ ଖରାପ ଥିଲେ, କାମ କରି କରି ବେଶୀ ହାଲିଆ ହୋଇପଡ଼ିଥିଲେ, ପରିବାରରେ ଅଭାବ ଲାଗି ରହିଲେ କି ଏକୁଟିଆ ରହି ରହି ମନରେ ବିରକ୍ତି ଆସିଯାଇଥିଲେ ଉପରୋକ୍ତ ଧରଣର ଅଶାଳୀନ ଶବ୍ଦ ଆମ ପାଟିରୁ ଖସିଯାଏ ।

'ଜୀବନରେ ତୁ କିଛି କରିପାରିବୁନି' ବୋଲି କହିବାଟା ବାପମା'ଙ୍କ ପାଇଁ ଏକ ହାଲୁକା ମନ୍ତବ୍ୟ ସିନା, ହେଲେ ଛୋଟ ପିଲାମାନେ ତାକୁ ସତ ବୋଲି ଗ୍ରହଣ କରିନିଅନ୍ତି ଓ ତା' ଉପରେ ବେଶ୍ ଗୁରୁତ୍ୱ ଦେଇଥାନ୍ତି ମଧ୍ୟ ।

ପିତାମାତାଙ୍କର ଧାରଣା ଯେ ସନ୍ତାନମାନଙ୍କୁ 'ତୁମ୍ଭେମାନେ ବଡ଼ ଖରାପ' ବୋଲି କହିଲେ ପିଲାମାନେ ଭଲ ହେବାପାଇଁ ଚେଷ୍ଟା କରିବେ, ଫଳରେ ଭଲ ମଣିଷ ହୋଇ ବାହାରିବେ ! କିନ୍ତୁ ଏହି ଧାରଣା ପ୍ରାୟତଃ ଅମୂଳକ ।

## ଆମ ପିଲାଏ ଆମକୁ ଖୁବ୍ ବିଶ୍ୱାସ କରନ୍ତି

ଆମ ପିଲାମାନେ ଆମକୁ ଖୁବ୍ ବିଶ୍ୱାସ କରନ୍ତି । ତେଣୁ ଆମେ ସେମାନଙ୍କୁ ଯାହା କହୁ ତାହା ସେମାନଙ୍କ ଅନ୍ତରକୁ ଭେଦିଯାଏ । ଆମେ ଯାହା କହୁ ତାହା ଠିକ୍ ଓ ଯାହା ଯାହା କରୁ, ତା' ମଧ୍ୟ ଠିକ୍ ବୋଲି ଧରିନିଅନ୍ତି ସେମାନେ । ବିଶେଷ କରି ଆମ ପାଟିରୁ ବାହାରୁଥିବା ନକାରାତ୍ମକ ଶବ୍ଦ ଓ ମନ୍ତବ୍ୟମାନ ସେମାନଙ୍କ ମନରେ ପଶି ସେଇଠି ଅଟକିଯାଏ । ପ୍ରକୃତରେ ବି ତାହା ଭବିଷ୍ୟବାଣୀ ଭଳି କେତେକ କ୍ଷେତ୍ରରେ ସତ

ହୋଇଯାଏ । କାରଣ ବାରମ୍ବାର ନକାରାତ୍ମକ ମନ୍ତବ୍ୟ ଦେଇଚାଲିଲେ ସେହି ମନ୍ତବ୍ୟର ପୁଣି ଖରାପ ପ୍ରଭାବ ତ ଅଛି ! ଯେପରିକି 'ତୁ ବଡ଼ ଅବାଗିଆ, ବଡ଼ ବେଢ଼ଙ୍ଗିଆ' ବୋଲି କହି ଚାଲିଲେ ସେ 'ଅବାଗିଆ' ଓ 'ବେଢ଼ଙ୍ଗିଆ' ଭାବରେ କାମ କରିଥାଏ । କାରଣ ଆମଠାରୁ ଏହି ପ୍ରକାରର ମତାମତ ଶୁଣି ସେ ଛାନିଆ ହୋଇପଡ଼ିବାରୁ ତା'ର କାମ ଅବାଗିଆ ଓ ବେଢ଼ଙ୍ଗିଆ ହୋଇଯିବା ସ୍ୱାଭାବିକ । 'ତୁ ଗୋଟିଏ ବୋକା' ବୋଲି କହିଲେ ସେ ହୁଏତ ଆମ କଥାରେ ଏକମତ ନହୋଇପାରେ, କିନ୍ତୁ ବେଳେବେଳେ ତା' ମନରେ ସନ୍ଦେହ ଜାତ ହୋଇପାରେ – "କିଏ ଜାଣେ, ମୁଁ ହୁଏତ ସତରେ ବୋକା ହୋଇଥିବି । ନୋହିଲେ ମୋ ବାପମା' ମୋତେ ବାରମ୍ବାର ବୋକା ବୋଲି କହୁଥାନ୍ତେ କାହିଁକି ?"

ମନେରଖିବା ଦରକାର ଯେ ପରିବାର ହେଉଛି ଏକ ଅତି ଆକର୍ଷଣୀୟ ଆଶ୍ରୟସ୍ଥଳ । ସେଠାରେ ପିଲାମାନେ ହେଉଛନ୍ତି ନୂଆ ଅତିଥି । ତେଣୁ ପରିବାରରେ ସେମାନେ ସବୁଠାରୁ ବେଶୀ ଆଦରଯତ୍ନ ପାଇବା ଉଚିତ । ପିଲା ଯଦି ପରିବାରରୁ ଆଦରଯତ୍ନ ପାଇବନି, ପ୍ରଶଂସା ପାଇବନି, ପାଇବନି ଆଶ୍ୱାସନା ଓ ଭରସା, ତା'ର ଭୁଲ୍‌ଭଟକା ପାଇଁ ତାକୁ ଯଦି କ୍ଷମା ମିଳିବନି, ତେବେ ସଂସାରର ଅନ୍ୟ କେଉଁ ସ୍ଥାନରୁ ତାକୁ ଏଗୁଡ଼ିକ ସୁଲଭରେ ମିଳିପାରିବ ?

ବେଳେବେଳେ ଆମ ଅଲକ୍ଷ୍ୟରେ ଆମ ପାଟିରୁ କିଛି ଖରାପ କଥା ବାହାରିଯାଏ । ରାଗିଗଲେ ବି ଆମେ କଅଣ ନା କଅଣ ବକିଯାଉ । ପରେ ଆମର ହୃଦ୍‌ବୋଧ ହୁଏ ଯେ ସନ୍ତାନ ପ୍ରତି ଆମର ଆଚରଣଟା ଠିକ୍ ହେଲାନାହିଁ । ତେଣୁ ଆମ ମନରେ କଷ୍ଟ ହୁଏ । ଅପରାଧବୋଧ ଜାତ ହୁଏ । କିନ୍ତୁ ସବୁ ପିତାମାତା ନିଜର ଭୁଲ୍ ବିଷୟରେ ସଚେତନ ହୋଇପଡ଼ନ୍ତିନି; ବରଂ ନିଜର 'ଭୁଲ୍' ଆଚରଣକୁ 'ଠିକ୍' ବୋଲି ଦୃଢ଼ମତ ପୋଷଣ କରିଥାନ୍ତି ।

ମନେରଖନ୍ତୁ ଯେ ପିଲାମାନଙ୍କର ମନ ଗୋଟିଏ ସଫା ସିଲଟ ଭଳି । ସେଥିରେ ଆପଣ 'ବଦ୍‌ମାସ', 'ମିଛୁଆ', 'ବୋକା', 'କୁଳାଙ୍ଗାର', 'ନିଷ୍କର୍ମା', 'ମୂର୍ଖ' ଇତ୍ୟାଦି ବାରମ୍ବାର ଲେଖିଚାଲିଲେ ସେଗୁଡ଼ିକ ସେମାନଙ୍କ ମନ-ସିଲଟରେ ସ୍ଥାୟୀ ଭାବରେ ଲେଖିହୋଇଯାଏ । ଫଳରେ ଭବିଷ୍ୟତରେ ତାହା ସ୍ଥାୟୀ ପ୍ରଭାବ ପକାଇଥାଏ ଓ ଏହାର ପରିଣାମ ଆଦୌ ମଙ୍ଗଳକର ହୋଇନଥାଏ । କିନ୍ତୁ ସେହି ସଫା ସିଲଟରେ ଆପଣ ଯଦି ପ୍ରଶଂସାମୂଳକ, ଭରସାସୂଚକ ଓ ସ୍ନେହଶ୍ରଦ୍ଧା ତଥା ଆଦରଯତ୍ନ ସମ୍ବଳିତ ଶବ୍ଦଗୁଡ଼ିଏ ଲେଖି ଚାଲିଥାନ୍ତେ, ତାହା ଆମ ସନ୍ତାନମାନଙ୍କ ପାଇଁ ଓ ଆମ୍ଭମାନଙ୍କ ପାଇଁ କେତେ ହିତକର

ହୁଅନ୍ତାନି ! ଢଣଜଣଙ୍କ କ୍ଷେତ୍ରରେ ପିଲାବେଳେ ବାପମା'ଙ୍କର ନିନ୍ଦାସୂଚକ ମନ୍ତବ୍ୟ ଶୁଣିଥିଲେ ତାହା ଏପରି ସ୍ଥାୟୀ ଭାବରେ ମନରେ ରହିଯାଇଥାଏ ଯେ ବୟସ୍କ ଅବସ୍ଥାରେ ତାହା ମୁଣ୍ଡରେ ଗାଡିମାଡ଼ି ବସିଥାଏ । ବାପମା' କହିଥିବାରୁ ସେ ଯେ 'କେଉଁ କୁଳର ହୋଇପାରିବନି', ଏହି ଧାରଣାକୁ ସେମାନେ ଜୀବନସାରା ଗଣ୍ଠିକରି ରହିଥାନ୍ତି । ତେଣୁ ସେମାନଙ୍କଠାରେ ଆତ୍ମବିଶ୍ୱାସ ଜାଗ୍ରତ ହୋଇପାରେ ନାହିଁ କି ଉନ୍ନତି ଦିଗରେ ଅଗ୍ରସର ହେବା ନିମନ୍ତେ ସେମାନଙ୍କଠାରେ ଉତ୍ସାହର ଉଦ୍ରେକ ହୁଏନାହିଁ ।

**ପ୍ର : ତାହାହେଲେ କଅଣ ସବୁବେଳେ କେବଳ ସକାରାତ୍ମକ ଶବ୍ଦ ବ୍ୟବହାର କରିବା ଓ ମନ୍ତବ୍ୟ ଦେବା ଉଚିତ ?**

ଉ : ହଁ, ତାହାହିଁ ଠିକ୍ । ଏଥିପାଇଁ ଏକ ସରଳ ସମାଧାନ ରହିଛି । ସମାଧାନଟି ହେଲା, 'ଆପଣ 'ତୁ', 'ତୁ' ବ୍ୟବହାର ନକରି 'ତୁ' ବଦଳରେ 'ମୁଁ', 'ମୁଁ' ବୋଲି କହନ୍ତୁ । ଉଦାହରଣ ସ୍ୱରୂପ, 'ତୁ ବୋକା', 'ତୁ ସବୁବେଳେ ଖରାପ ବ୍ୟବହାର କରୁଚୁ', 'ତୁ ସର୍ବଦା ଭୁଲ୍ କରୁଛୁ' – ଏପରି ନ କହି କହନ୍ତୁ, "ମୁଁ ରାଗରେ ତୋତେ ବକି ଦେଇଗଲି । ମୋର ଏପରି ବ୍ୟବହାର ଦେଖେଇବା ଠିକ୍ ହେଲାନାହିଁ," "ଦେଖ, ମୋ ଦେହଟା ଆଜି ବିଶେଷ ଭଲ ନାହିଁ, ଅତି କ୍ଳାନ୍ତ ଆଉ ବିରକ୍ତ ଲାଗୁଛି ମୋତେ । ତେଣୁ ତୁ' ଆଜି ଟିକିଏ ଧୀରସ୍ଥିର ରହିବୁ ।"

"ଅଭିଯୋଗ କରିବା ତୋର ଅଭ୍ୟାସ" ବୋଲି ନକହି କହନ୍ତୁ 'କାହାରି ଅଭିଯୋଗ ଶୁଣିବା ମୋତେ ଭଲ ଲାଗେନାହିଁ । ବରଂ ଧୀରସ୍ଥିର ଓ ନମ୍ର ଭାବରେ ସମସ୍ତେ କଥାବାର୍ତ୍ତା କରିବା ଉଚିତ' । କହନ୍ତୁ, "ଭଦ୍ର ଭାବରେ କହିଲେ ସମସ୍ତେ ଖୁସୀ ହୁଅନ୍ତି" ଇତ୍ୟାଦି ।

ସକାରାତ୍ମକ ଉପସ୍ଥାପନାର ଅନ୍ୟ ଦୃଷ୍ଟାନ୍ତ ମଧ୍ୟ ରହିଛି । ଯେପରିକି – 'ବୁଝି ଖବରଦାର୍, ଗଛ ଉପରେ ଚଢ଼ିନୁ; ପଡ଼ିଗଲେ ମୋତେ କିଛି କହିବୁନି' ବଦଳରେ 'ବୁଝି ଖବରଦାର୍, ଡାଳ ଉପରେ ଗୋଡ଼କୁ ଦୃଢ଼ ଭାବରେ ରଖ ଓ ଜାବୁଡ଼ି କରି ଅନ୍ୟ ଡାଳକୁ ଧରିଥା' କହିବା ଦ୍ୱାରା ପିଲା ଡରିଯାଏନି, ବରଂ ଗଛ ଚଢ଼ିଲେ ସେ କିପରି ସାବଧାନତା ଅବଲମ୍ବନ କରିବାକୁ ହୁଏ, ତାହା ଶିଖିଥାଏ ।

ସକାରାତ୍ମକ ମନୋଭାବ ପୋଷଣ କରିବା ନିମନ୍ତେ ସନ୍ତାନମାନଙ୍କୁ ଶିଖେଇବା ମଧ୍ୟ ଆବଶ୍ୟକ । ସନ୍ତାନର ଆଖିକୁ ସ୍ନେହପୂର୍ଣ୍ଣ ଭାବରେ ଚାହିଁବା, ତାକୁ ଗେଲ କରି 'ମୁଁ ତୋତେ ଖୁବ୍ ଭଲପାଏ', 'ତୁ ଗୋଟିଏ ସୁନାପିଲା' ଭଳି ବାକ୍ୟ କହିବା ଫଳରେ ସେ ଯେ ଆପଣଙ୍କ ପାଇଁ ଖୁବ୍ ମୂଲ୍ୟବାନ ଓ ଆପଣଙ୍କ ସ୍ନେହର ଅଧିକାରୀ – ଏହି ଧାରଣା

ତା' ମନରେ ଜାଗିଥାଏ । ଫଳରେ ଆପଣ ଦୁଇଜଣ ଓ ସନ୍ତାନମାନଙ୍କ ଭିତରେ ଗଢ଼ିଉଠେ ଏକ ଅନ୍ତରଙ୍ଗ ବନ୍ଧନ ।

ତେବେ ମନେ ରଖିଥିବେ ଯେ ସନ୍ତାନର ପ୍ରଚେଷ୍ଟା ଓ ସଫଳତା ପାଇଁ ପ୍ରଶଂସା କରିବା ଉଚିତ ସତ, କିନ୍ତୁ ପ୍ରଶଂସାର ଅପବ୍ୟବହାର ହେବାକୁ ଦେବେନି । ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତା'ର ଡର ଓ ଆଶଙ୍କା ପ୍ରତି ମଧ୍ୟ ଧ୍ୟାନ ଦେବେ ଏବଂ ତାକୁ ଦୂର କରିବା ନିମନ୍ତେ ପଦକ୍ଷେପ ନେବେ । ସେ ଯଦି କହେ, 'ମୋତେ ବସ୍‌ରେ ଏକୁଟିଆ ଯିବାକୁ ଡର ମାଡୁଛି, ତେବେ 'ତୁ ନିଶ୍ଚୟ ଏକୁଟିଆ ଯାଇପାରିବୁ' ବୋଲି ନକହି ଦିନେ ଦୁଇଦିନ ଧରି ତା' ସାଙ୍ଗରେ ବସ୍‌ରେ ଯିବେ । ଏପରି କଲେ ତା'ର ଡର ଛାଡ଼ିଯିବ ।

ଅନ୍ୟ ଗୋଟିଏ ଅତି ସାଧାରଣ କଥା ବିଷୟରେ ମଧ୍ୟ ଧ୍ୟାନ ଦେବେ । ବହୁ ପରିବାରରେ ପୁଅମାନଙ୍କ ଅପେକ୍ଷା ଝିଅମାନଙ୍କ ଆଚରଣ ଉପରେ ବେଶୀ ଦୃଷ୍ଟି ଦିଆଯାଇଥାଏ । ଝିଅମାନେ ସ୍କୁଲ୍‌ରୁ ଫେରିଲେ ସେମାନେ କିଛି କିଛି ଘରକାମ କରନ୍ତି । ଘରେ ଝାଡୁ ଦିଅନ୍ତି, ବାସନ ଧୁଅନ୍ତି, ଲୁଗା କାଚନ୍ତି, ଘରର ଛୋଟ ଛୋଟ ପିଲାଙ୍କର ଯତ୍ନ ନିଅନ୍ତି । କିନ୍ତୁ ପୁଅମାନଙ୍କୁ ଏହି ପ୍ରକାରର କାମ କରିବାକୁ ଦିଆଯାଏ ନାହିଁ । ତାହାହେଲେ କଅଣ ଝିଅମାନେ କାମ କରିବା ପାଇଁ ଓ ପୁଅମାନେ କେବଳ ଆରାମ କରିବା ପାଇଁ ଏବଂ ଅଳସୁଆ ହୋଇ ସମୟ କାଟିବା ପାଇଁ ଜନ୍ମ ହୋଇଛନ୍ତି ?

ବେଳେବେଳେ ଆପଣ ନିଜ ସ୍ୱାମୀ, ସ୍ତ୍ରୀ, ବାପମା', ଅଫିସର୍ ଉପରିସ୍ଥ କର୍ମଚାରୀ କିମ୍ବା ଘର ମାଲିକଙ୍କ ଉପରେ ନରାଗି ରାଗିଥାନ୍ତି ସନ୍ତାନମାନଙ୍କ ଉପରେ । ଅନ୍ୟ କୌଣସି କାରଣରୁ ଆପଣ ରାଗିକରି ରହିଥିଲେ ରାଗକୁ ପିଲାମାନଙ୍କ ଉପରେ ଶୁଝେଇବା କେଉଁ ଦୃଷ୍ଟିରୁ ନ୍ୟାୟ ?

ରାଗ ତ ସମସ୍ତଙ୍କର ହୁଏ । ବାପା କି ମାଆ ବ୍ୟତିକ୍ରମ ନୁହଁନ୍ତି । କିନ୍ତୁ ମନରେ କ୍ରୋଧ ଆସିଲେ ସେ ବିଷୟରେ ସଚେତନ ହୋଇଉଠିବା ଓ କାହା ଉପରେ କ୍ରୋଧ ନକରି ନିଜ କ୍ରୋଧ ପ୍ରଶମନ ପାଇଁ ଚେଷ୍ଟା କରିବା ଉଚିତ । ଏହା ଅବଶ୍ୟ ସତ ଯେ ବହୁ ପିତାମାତା ସନ୍ତାନମାନଙ୍କ ଉପରେ ଆଦୌ ରାଗନ୍ତିନି କି ପିଲାମାନଙ୍କର ମାନସିକତାରେ କୌଣସି କ୍ଷତି ପହଞ୍ଚାନ୍ତି ନାହିଁ । ହେଲେ ଏପରି ବାପମା' କେଇଜଣ ମିଳିବେ ? ତେଣୁ ନିଜର ଅସ୍ୱାଭାବିକ ମାନସିକ ସ୍ଥିତିକୁ ସୁଧାରିବା ହେଉଛି ନିଜର ଦାୟିତ୍ୱ । ଏହି କାରଣରୁ ମନରେ କ୍ରୋଧ ଜାତ ହେଲେ କିଛି ସମୟ ଏକୁଟିଆ ରହନ୍ତୁ । ଏପରି କଲେ ରାଗ ଧୀରେ ଧୀରେ ଥଣ୍ଡା ପଡ଼ିଯାଏ ।

# ଅତି କଟକଣା କ୍ଷତିକାରକ

"କୌଣସି ପିଲା ମନ୍ଦ ପିଲା ହୋଇ ଜନ୍ମ ନେଇନଥାଏ । ପିତାମାତା ହିଁ ତାକୁ ମନ୍ଦ ପିଲାରେ ପରିଣତ କରିଦିଅନ୍ତି ।"

–ଜଜ୍ ଲିଓନ୍ ଆର୍. ୟାଙ୍କ୍ୱାଇଡ୍

ପ୍ର : ଭଲପିଲା କରେଇବା ପାଇଁ ଆମକୁ କେଉଁ କେଉଁ ବିଷୟରେ ଅଧିକ ଧ୍ୟାନ ଦେବାକୁ ପଡ଼ିବ ?

ଉ : ଏ ବିଷୟରେ ପୂର୍ବ ପ୍ରବନ୍ଧରେ ଅନେକ ସୂଚନା ଦିଆଯାଇଛି । ତେବେ ପିଲାମାନଙ୍କୁ ଶିକ୍ଷା ଦେବାବେଳେ ନିର୍ଦ୍ଦିଷ୍ଟ ଭାବରେ ଓ ସ୍ପଷ୍ଟ ଭାବରେ ସେମାନଙ୍କୁ ଶିଖେଇବା ଉଚିତ ।

ଧରାଯାଉ, ଆପଣ ତାକୁ କହିଲେ, "ଭଲ ପିଲା ହେବୁ ।" କହିଲେ ଗୋଟିଏ ଛୋଟ ପିଲା ଏଥିରୁ କ'ଣ କିଛି ବୁଝିପାରିବ ଭଲା ? 'ଭଲ ପିଲା ବୋଇଲେ କଅଣ', 'ଭଲ ପିଲା କାହାକୁ କୁହାଯାଏ' – ଏଇସବୁ କଥା ଭାବି ସେ ଧନ୍ଦି ହେବ । ତେଣୁ ତାକୁ ଭଲ ପିଲାର ଲକ୍ଷଣ ଓ ଆଚରଣ ସମ୍ପର୍କରେ ଅବଗତ କରାଇଦେବା ହିଁ ଆପଣଙ୍କର କର୍ତ୍ତବ୍ୟ ହେବା ଉଚିତ ।

ସେହିପରି, ତା'କୁ ଯଦି କୁହାଯାଏ, 'ତୁ ବଡ଼ ଦୁଷ୍ଟ', ଏହା ଶୁଣି ମଧ୍ୟ ସେ ଧନ୍ଦି ହେବ । ସେ ଭାବିବ, "ମୁଁ ତ ଭଲ, ଏମାନେ ମୋତେ 'ଦୁଷ୍ଟ' ବୋଲି କହୁଛନ୍ତି କାହିଁକି ? ମୁଁ କି ଦୋଷ କଲି କି ? ମୁଁ ତ ବଲ୍‌ଟିକୁ ଆଣିବା ପାଇଁ ରାସ୍ତା ସେପଟକୁ ଚାଲିଯାଇଥିଲି । ବଲ୍‌ଟିକୁ ଆଣି ସାନଭାଇକୁ ଦେଇଥାନ୍ତି । ଏଥିରେ ଭୁଲ୍ କ'ଣ ରହିଲା ?"

ଜଣେ ମା' ତା'ର ଅନୁଭୂତି ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି, "ମୁଁ ମୋ' ପୁଅକୁ କହେ, 'ବାଃ ଚମତ୍କାର । ତୋ ବହିଗୁଡ଼ିକୁ ତ ବେଶ୍ ସଜେଇ କରି ରଖିଛୁ । ଜୋତା, ଜାମାପଟା ଓ ଖେଳନାଗୁଡ଼ିକୁ ତ ରଖିଛୁ ସେଗୁଡ଼ିକର ନିଜ ନିଜ ଜାଗାରେ । ତୋ ରୁମ୍‌ଟିକୁ ଦେଖିଲେ ତ ମୋତେ ଖୁବ୍ ଖୁସି ଲାଗୁଛି' ।" ଏହିପରି ଭାବରେ କହିଲେ ବହି ସଜେଇବା ଓ ପ୍ରତ୍ୟେକ ଜିନିଷକୁ ତା'ର ନିର୍ଦ୍ଦିଷ୍ଟ ଜାଗାରେ ରଖିବା ବିଷୟରେ ପିଲାଟି ସହଜରେ

ଜାଣିନିଏ । ସବୁପିଲା ବାପମା'ଙ୍କୁ ସନ୍ତୁଷ୍ଟ କରିବା ପାଇଁ ଚାହୁଁଥିବାରୁ ଆପଣଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ସେ ଉପରୋକ୍ତ ଅଭ୍ୟାସ ଚାଲୁ ରଖିବା ପାଇଁ ନିଶ୍ଚୟ ଆଗ୍ରହ ପ୍ରକାଶ କରିବ ।

ସେହିପରି ଆପଣଙ୍କ ସନ୍ତାନ ଆପଣଙ୍କୁ ଗପ କହିଲା ବେଳେ କି ରାଇମ୍ ଗାଇଲା ବେଳେ ଗପ କି ରାଇମ୍ ଅନୁସାରେ ତା'ର ଭଙ୍ଗୀ ଓ ଉପସ୍ଥାପନା ଠିକ୍ ହେଉଛି କି ନା ଲକ୍ଷ୍ୟ କରିବେ । ତାକୁ ମନଧ୍ୟାନ ଦେଇ ଶୁଣିବେ । ଗପ କହିଲା ବେଳେ ସେ ଗପକୁ ଚାହିଁ ବିରାଡ଼ି ଭଳି ବୋବେଇଲେ କି ଭୟ ପାଇ ଯାଇଥିବାର ଭଙ୍ଗୀ ଦେଖେଇଲେ ଏଥିପାଇଁ ତାକୁ ନିଶ୍ଚୟ ପ୍ରଶଂସା କରିବେ । ରାଇମ୍ ଗାଇଲା ବେଳେ ତା'ର ଭାବଭଙ୍ଗୀ ଠିକ୍ ହେଉଥିଲେ 'ଠିକ୍' ବୋଲି କହି ଉତ୍ସାହ ଦେବେ । 'ଭୁଲ୍' ହେଉଥିଲେ ଭୁଲ୍ ବୋଲି ନ କହି କିପରି କରିବାକୁ ହେବ, ତାହା ବତେଇ ଦେବେ ।

ଅନ୍ୟ ଜଣେ ମା' କହୁଥିଲେ, 'ମୋ ଝିଅ ପାଖରେ ଥିଲା ପେନ୍‌ସିଲ୍‌ଟିଏ । ସେଇଟା କିନ୍ତୁ ତା'ର ନୁହେଁ ।' ମୁଁ ଝିଅକୁ ପଚାରିଲି, 'ଏ ପେନ୍‌ସିଲ୍ ତ ତୋର ନୁହେଁ । ଏହାକୁ ପାଇଲୁ କେଉଁଠୁ ?' ସେ ଉତ୍ତର ଦେଲା, "ମା', ପେନ୍‌ସିଲ୍‌ଟି ସ୍କୁଲ୍ କୋଠରିରେ ଡେସ୍କ ଉପରେ ଥୁଆ ହୋଇଥିଲା । 'ଏହି ପେନ୍‌ସିଲ୍‌ଟି କାହାର' ବୋଲି ମୁଁ ସମସ୍ତଙ୍କୁ ପଚାରିଲି । କିନ୍ତୁ ତାହା କାହାର ବୋଲି କେହି କହିଲେନି । ସେଇଥିପାଇଁ ମୁଁ ତାକୁ ନେଇ ଆସିଲି ।"

ମୁଁ ତାକୁ କହିଲି, 'ଦେଖ୍ ମା' । ପେନ୍‌ସିଲ୍‌ଟା ତ ତୋ'ର ନୁହେଁ । ତେଣୁ କାଲି ତାକୁ ନେଇ କ୍ଲାସ୍ ଟିଚର୍‌ଙ୍କୁ ଦେଇଦେବୁ ।'

ସେ କିଛି ସମୟ ଚୁପ୍ ରହି ପଚାରିଲା, 'ମାଆ ମ, ଆମ ଲେଖିବା ଓ ଚିତ୍ର ଆଙ୍କିବା ପାଇଁ ବାପା ତାଙ୍କ ଅଫିସ୍‌ରୁ କାହିଁକି ପ୍ୟାକେଟ୍ ପ୍ୟାକେଟ୍ କାଗଜ ନେଇ ଆସୁଛନ୍ତି ?'

ତେଣୁ ବାପମା'ଙ୍କ କଥା ଓ କାର୍ଯ୍ୟ ଉପରେ ସନ୍ତାନମାନେ ବେଶ୍ ନିଘା ରଖିଥାନ୍ତି ଓ ସେମାନଙ୍କୁ ଆଦର୍ଶ ରୂପେ ଗ୍ରହଣ କରିନେଇଥାନ୍ତି । କଥା ଓ କାର୍ଯ୍ୟରେ ମେଳ ନ ଦେଖିଲେ ଛୋଟ ପିଲାମାନେ ଭ୍ରମରେ ପଡ଼ିଯାଉଥିବାବେଳେ ଟିକିଏ ବଡ଼ ପିଲା ତା'ର ବାପମା'ଙ୍କୁ ଏ' ବିଷୟରେ ସିଧାସଳଖ ପଚାରି ଦେଉଥିବାର ଦୃଷ୍ଟାନ୍ତ ଆଦୌ ବିରଳ ନୁହେଁ ।

ବାପମା'ମାନେ ମନେ ରଖିବା ଉଚିତ ଯେ ସନ୍ତାନମାନଙ୍କୁ ସାଧୁତା ଓ ନୈତିକତା ଶିକ୍ଷା ଦେବାକୁ ହେଲେ ନିଜକୁ ସାଧୁସଚ୍ଚୋଟ ଓ ନୀତିବାନ୍ ହେବାକୁ ପଡ଼ିବ । ନିଜେ ଆଦର୍ଶ ନହୋଇ ନୀତିବାଣୀ ଶୁଣେଇବାର କୌଣସି ମୂଲ୍ୟ ରହେନାହିଁ । ପିତାମାତା ନମ୍ର

ଭାବରେ କଥାବାର୍ତ୍ତା କରୁଥିଲେ ସନ୍ତାନମାନେ ନମ୍ର ଭାବରେ କଥାବାର୍ତ୍ତା କରିବା ପାଇଁ ଶିଖନ୍ତି । ସେମାନେ ମିଛ କହୁଥିଲେ ପିଲାଏ ଶିଖନ୍ତି ମିଛ କହିବା ପାଇଁ । ପରିବାରର ସଦସ୍ୟମାନେ ପରସ୍ପର ପ୍ରତି ସ୍ନେହଶ୍ରଦ୍ଧା ଓ ଦୟା ପ୍ରଦର୍ଶନ କରୁଥିଲେ ଅନ୍ୟମାନଙ୍କୁ ସ୍ନେହଶ୍ରଦ୍ଧା ଓ ଦୟା ଦେଖେଇବା ପାଇଁ ଉତ୍ସାହିତ ହୋଇଥାନ୍ତି ପିଲାମାନେ ।

ସନ୍ତାନମାନଙ୍କୁ ଅତ୍ୟଧିକ ସୁରକ୍ଷାବଳୟ ଭିତରେ ଲାଳନ ପାଳନ କରିବା ମଧ୍ୟ ଠିକ୍ ନୁହେଁ । 'ସାଇକଲ୍ ଚଢ଼ିଲେ ପଡ଼ିଯାଇ ଗୋଡ଼ହାତ ଭାଙ୍ଗିଯିବ' କହି ପିଲାବେଳେ ଡରେଇ ଦେବାରୁ ଅନେକ ବୟସ୍କ ବ୍ୟକ୍ତି ବି ଜୀବନରେ ସାଇକଲ୍ ଚଳେଇବା ଶିଖିପାରିଲେ ନାହିଁ । କେହି କେହି ବଡ଼ ହୋଇଗଲା ପରେ ବାପମା'ଙ୍କ କଟକଣାକୁ ବେଖାତିର କରୁଥିବାର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ ।

ପିଲାଏ କ'ଣ ପଡ଼ିବେନି ନା ହାତଗୋଡ଼ ଖଣ୍ଡିଆ କରିବେନି ? ପିଲାଙ୍କୁ କ'ଣ ସମୟେ ସମୟେ ସାମାନ୍ୟ ଜ୍ୱର ହେବନି ନା ସେମାନଙ୍କର ପତଳା ଝାଡ଼ା ହେବନି ? କିନ୍ତୁ ଏଥିପାଇଁ ଅତ୍ୟଧିକ ବ୍ୟସ୍ତ ହୋଇପଡ଼ିବା ଓ ସାଙ୍ଗେ ସାଙ୍ଗେ ଡାକ୍ତରଙ୍କ ପାଖକୁ ଦୌଡ଼ିବାରେ ପିଲାଟି ବିଶେଷ କିଛି ଶିଖିପାରେନି । ପିଲା ଅସୁସ୍ଥ ହୋଇପଡ଼ିଲେ ତା'ର ଚିକିତ୍ସା ବ୍ୟବସ୍ଥା ପ୍ରତି ଧ୍ୟାନ ଦେବା ଉଚିତ ସିନା, ଏଥିପାଇଁ ମାତ୍ରାତିରିକ୍ତ ବ୍ୟସ୍ତତା ପ୍ରକାଶ କରିବା ଉଚିତ ନୁହେଁ । ଅସୁସ୍ଥତା ସମୟରେ ସେ ଆପଣଙ୍କ ଆଦରଯତ୍ନକୁ ଉପଭୋଗ କରେ, କିନ୍ତୁ ଆପଣଙ୍କ ବ୍ୟସ୍ତତାକୁ ନୁହେଁ ।

ସନ୍ତାନମାନଙ୍କ ପ୍ରତି ବାପମା'ଙ୍କର ଅତ୍ୟଧିକ ସୁରକ୍ଷା ବ୍ୟବସ୍ଥା କାରଣରୁ ବହୁପିଲା ପହଁରିବା, ଗଛ ଚଢ଼ିବା, ଖାଲି ପାଦରେ ଦୌଡ଼ିବା, କୌଣସି କୋଠରିରେ ଏକୁଟିଆ ଶୋଇବା ଇତ୍ୟାଦି ଶିଖିପାରୁ ନାହାନ୍ତି । ଝିଅମାନଙ୍କ ଦୁର୍ଦ୍ଦଶା ତ କହିଲେ ନ ସରେ । ସେମାନଙ୍କ ପାଇଁ 'କରିବା ଉଚିତ ନୁହେଁ'ର ତାଲିକା ବେଶ୍ ଲମ୍ବା । ତେଣୁ ସେମାନଙ୍କ ବିବାହ ପୂର୍ବର ସମୟ କେବଳ ଘରର ଚାରିକାନ୍ଥ ଭିତରେ ହିଁ କଟୁଛି । ସ୍କୁଲ୍ କଲେଜ୍‌କୁ ଯିବାଆସିବା କରିବାରେ ମଧ୍ୟ ସେମାନେ କଟକଣାର ଶିକାର ।

ସନ୍ତାନମାନଙ୍କୁ ଏହି ପ୍ରକାରେ ସୁରକ୍ଷିତ କରି ରଖିବାରେ ବିଶେଷ କିଛି ଉପକାର ହୁଏନି । ବରଂ କେତେ ନା କେତେ ଅପକାର ହୋଇଥାଏ । ସେମାନେ ଆବିଷ୍କାର କରିବାର କଳା ଶିଖିପାରନ୍ତିନି । ପ୍ରକୃତିକୁ ଉପଭୋଗ କରି ଶିଖନ୍ତିନି । ଏପରିକି ବଞ୍ଚିବାର କଳା ମଧ୍ୟ ଶିଖିପାରନ୍ତିନି ସେମାନେ । ନିଜେ ନିଜର କିପରି ଯତ୍ନ ନେବାକୁ ପଡ଼େ, ତାହା ସେମାନେ ଜାଣି ନଥାନ୍ତି । ସ୍ୱାଧୀନ ଭାବରେ ଚିନ୍ତା କରିବା କି ନିଷ୍ପତ୍ତି ଗ୍ରହଣ କରିବାରେ

ସେମାନଙ୍କଠାରେ ଅକ୍ଷମତା ପ୍ରକାଶ ପାଏ । ଫଳରେ ପ୍ରତ୍ୟକ୍ଷ ଅନୁଭୂତିର ଅଭାବରୁ ସେମାନେ ବିଭିନ୍ନ ସମସ୍ୟାର ସଫଳ ମୁକାବିଲା କରିପାରନ୍ତିନି ।

ଚିନ୍ତା କରନ୍ତୁ ତ ଟିକିଏ ! ଆଧୁନିକ ସମାଜରେ ପତ୍ନୀର ଦାୟିତ୍ୱ ତ କେବଳ ଘର ଭିତରେ ସୀମାବଦ୍ଧ ନୁହେଁ । ପତ୍ନୀ ଘର ଚଳେଇବେ, ବଜାରର ସଉଦା କରିବେ, ରୋଗିଣା ସନ୍ତାନକୁ ନେଇ ଡାକ୍ତରଖାନା ଯିବେ, ଘର ଖର୍ଚ୍ଚର ହିସାବ ରଖିବେ, ପିଲାକୁ ସ୍କୁଲ୍‌ରେ ଛାଡ଼ିବା ଓ ସ୍କୁଲ୍‌ରୁ ଆଣିବା ଦାୟିତ୍ୱ ନେବେ ଓ ଦରକାର ପଡ଼ିଲେ ଚାକିରି କରିବେ । ବାପଘରେ ଥିବାବେଳେ କମ୍ ବୟସରୁ ସେମାନେ ଯଦି ପଇସାପତ୍ର ଖର୍ଚ୍ଚ କରିବାର ଅନୁଭୂତି ଅର୍ଜନ କରି ନଥିବେ, ଦୋକାନରୁ ଜିନିଷପତ୍ର କିଣି ନଥିବେ, ନିଜ ଦାୟିତ୍ୱରେ ସ୍କୁଲ୍‌କୁ ଯିବାଆସିବା କରିନଥିବେ, ରାସ୍ତାକଡ଼ ଟେଲିଫୋନ୍ ବୁଥ୍‌ରୁ ଫୋନ୍ କରିନଥିବେ, ବସ୍ ଷ୍ଟାଣ୍ଡକୁ ଯାଇ ନିର୍ଦ୍ଦିଷ୍ଟ ବସ୍ ଚିହ୍ନି ସାଙ୍ଗସାଥୀମାନଙ୍କ ସହ ବସ୍‌ରେ ଯିବା ଆସିବା କରି ନଥିବେ, ତେବେ ଶାଶୁଘରେ ସେମାନଙ୍କୁ କି' କି' ଅସୁବିଧାର ସମ୍ମୁଖୀନ ହେବାକୁ ନ ପଡ଼ିବ !

ପୁଅ ହେଉ କି ଝିଅ ହେଉ, ତା'ର ସବୁ ବିଷୟରେ ବାପମା' ଯଦି ନିଷ୍ପତ୍ତି ନେବେ, ତେବେ ସେ ସ୍ୱାଧୀନ ଭାବରେ ନିଷ୍ପତ୍ତି ନେଇ ଭବିଷ୍ୟତ ଜୀବନର ନାନା ସମସ୍ୟାକୁ ସମାଧାନ କରି ଶିଖିବ କେତେବେଳେ ? ଏପରି କଟକଣାରେ ରଖିଲେ ତା'ର ମାନସିକ ବିକାଶ ବ୍ୟାହତ ହୋଇପଡ଼ିବ, କୌଣସି କାର୍ଯ୍ୟରେ ତାହାଠାରେ ପ୍ରେରଣା ଜାଗ୍ରତ ହେବନାହିଁ । ଅନ୍ୟମାନଙ୍କ ସହ ତାଳ ଦେଇ ସେ ସମାଜରେ ଚଳିପାରିବନି, ସାମାଜିକ ସମ୍ପର୍କ ରକ୍ଷା କରିବାରେ ତାହାଠାରେ ଆତ୍ମବିଶ୍ୱାସର ଅଭାବ ଦେଖାଦେବ । ଯେଉଁ ପିଲାମାନେ ଅଧିକ କଟକଣା ଭିତରେ ରହିଥାନ୍ତି, ସେମାନେ କଲେଜ୍ ହଷ୍ଟେଲ୍‌ରେ ରହିଲେ କି ବାହାରେ ରହିବାକୁ ବାଧ ହେଲେ କୁସଙ୍ଗୀମାନଙ୍କ ପାଲରେ ପଡ଼ିବା ଓ ମାଦକ ଦ୍ରବ୍ୟ ସେବନର ଶିକାର ହୋଇପଡ଼ିବା ସେମାନଙ୍କ ପକ୍ଷେ ଅତି ସୁଗମ ହୋଇଯାଏ । କାରଣ ଜୀବନରେ ପ୍ରଥମ କରି ସ୍ୱାଧୀନତାର ସ୍ୱାଦ ଚାଖିବାର ସୁଯୋଗ ପାଇ ସେମାନେ ଲଗାମଛଡ଼ା ହୋଇପଡ଼ିବା ସ୍ୱାଭାବିକ ।

ତେଣୁ ପିଲାମାନଙ୍କୁ ସ୍ୱାଧୀନ ଭାବରେ କିଛି କିଛି ନିଷ୍ପତ୍ତି ନେବାକୁ ଛାଡ଼ି ଦିଆଯିବା ଉଚିତ । ତେବେ ସନ୍ତାନମାନଙ୍କୁ ନିଷ୍ପତ୍ତି ନେବାର ସ୍ୱାଧୀନତା ଦେବା ପାଇଁ ବାପମା'ଙ୍କର ସାହସ ଥିବା ଦରକାର । ପିଲାମାନେ ଯେପରି ନିଜକୁ ନିଜେ ଆବିଷ୍କାର କରିପାରିବେ, ପିତାମାତାମାନେ ସେମାନଙ୍କୁ ସେହିପ୍ରକାରେ ଗଢ଼ିବା ନିମନ୍ତେ ପ୍ରୟାସୀ ହେବା ଶ୍ରେୟସ୍କର ।



# ପରିବାରରେ ପିତାଙ୍କର ଭୂମିକା

**"ଜଣେ ଉତ୍ତମ ପିତା ଭିତରେ ଗୋପ୍ୟ ହୋଇ ରହିଥାଏ କିଛି ମାତ୍ରାର ମାତୃତ୍ୱ ।"**

**ପ୍ର : ବହୁ ପରିବାରରେ ସନ୍ତାନମାନେ ସାଧାରଣତଃ ବାପାମାନଙ୍କୁ ଭୟ କରିଥାନ୍ତି । ତେଣୁ ପିଲାମାନଙ୍କୁ ଆକଟ କରିବା ନିମନ୍ତେ ମା'ମାନେ କହିଥାନ୍ତି, "ବାପା ଘରକୁ ଫେରିଲେ ତୋ' ଦୁଷ୍ଟାମି କଥା ତାଙ୍କୁ କହିଦେବି ।" ତେବେ ବାପାମାନେ କିପରି ହୋଇପାରିଲେ ସେମାନେ ସନ୍ତାନମାନଙ୍କ ପାଇଁ ଓ ପରିବାର ପାଇଁ ଅନୁକୂଳ ବିବେଚିତ ହେବେ ?**

ଉ : ଆପଣଙ୍କ ପ୍ରଶ୍ନ ଆଦୌ ଅବାନ୍ତର ନୁହେଁ । କାରଣ ସନ୍ତାନମାନଙ୍କ କଥା, ବିଶେଷ କରି ଛୋଟ ପିଲାଙ୍କ କଥା ପଡ଼ିଲେ ସମସ୍ତେ ମାଆମାନଙ୍କୁ ଯୋଡ଼ି ଆଲୋଚନା କରନ୍ତି । ବାପାମାନଙ୍କର ଭୂମିକା ପ୍ରାୟତଃ ଗୌଣ ବୋଲି ବିଚାର କରାଯାଏ । ହେଲେ ପରିବାରର ସମସ୍ତ ନିଷ୍ପତ୍ତିରେ ବାପାମାନଙ୍କୁ ଦିଆଯାଇଥାଏ ପ୍ରାଧାନ୍ୟ । କିନ୍ତୁ ଏହା ଆଦୌ ସ୍ପୃହଣୀୟ ନୁହେଁ । ସନ୍ତାନମାନଙ୍କ ହିତ ପାଇଁ ତଥା ସେମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ପିତାମାତା ଉଭୟେ ମିଶି ଗଠନମୂଳକ ପଦକ୍ଷେପ ନେବା ଉଚିତ । ପିତା କିମ୍ବା ମାତା ନିଜର ମତକୁ ଜାହିର କଲେ କି ନିଜର ନିଷ୍ପତ୍ତିରେ ଅଟଳ ରହି ଉକ୍ତ ନିଷ୍ପତ୍ତିକୁ ଲଦି ଦେଲେ ପରିବାରରେ ମତପାର୍ଥକ୍ୟ ଉପୁଜେ । ଏହାର ପରିଣାମ ସନ୍ତାନମାନଙ୍କ ପାଇଁ ଆଦୌ ଶୁଭଙ୍କର ହୁଏ ନାହିଁ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ମାଆମାନେ ସନ୍ତାନମାନଙ୍କର ହିତପାଇଁ ସବୁକିଛି ତ୍ୟାଗ କରିବା ନିମନ୍ତେ ପ୍ରସ୍ତୁତ ଥାଆନ୍ତି । କିନ୍ତୁ ସବୁ ପିତାଙ୍କଠାରେ ଏ' ଧରଣର ପ୍ରବୃତ୍ତି ପ୍ରକାଶ ପାଏ ନାହିଁ ।

ଅନେକ ପରିବାରରେ ସ୍ୱାମୀମାନେ ସ୍ତ୍ରୀଙ୍କୁ ରୋଜଗାର କରିବା ପାଇଁ ବାଧ୍ୟ କରୁଥିବାର ପରିଲକ୍ଷିତ ହୁଏ । ଏପରିକି ଚାକିରି କରିଥିବା ଝିଅକୁ ବାହାହେବା ନିମନ୍ତେ ଅନେକ ପୁଅ ବେଶୀ ପସନ୍ଦ କରନ୍ତି । ସ୍ୱାମୀ-ସ୍ତ୍ରୀ ଉଭୟଙ୍କର ରୋଜଗାରରୁ ବେଶ୍ ମୋଟା ଆୟ ହୁଏ । ଆୟ ବେଶୀ ହେଉଥିବାରୁ ପିଲାମାନଙ୍କର ଦାୟିତ୍ୱ ନେବା ପାଇଁ ସେମାନେ

ଚାକରଚାକରାଣୀ ରଖନ୍ତି । ଚାକରଚାକରାଣୀଙ୍କ ଦରମା ଓ ଖାଇବା ପିନ୍ଧିବା ବାବଦକୁ ବ୍ୟୟ କରିବାକୁ ପଡ଼େ । ପିଲାମାନେ କର୍ମଜୀବୀ ପିତାମାତାଙ୍କ ଘନିଷ୍ଠ ସାନ୍ନିଧ୍ୟରୁ ଅଧିକାଂଶ ସମୟରେ ବଞ୍ଚିତ ହେବାକୁ ବାଧ୍ୟ ହୁଅନ୍ତି । ଚାକର ଚାକରାଣୀମାନଙ୍କ ହାତରେ ସେମାନଙ୍କ ଜୀବନର ମୂଳଦୁଆ ଗଢ଼ା ହୁଏ । ଏହି ଅପୂରଣୀୟ କ୍ଷତିପ୍ରତି ଅନେକ ପିତା ଆଖିବୁଜି ଦିଅନ୍ତି । ସ୍ତ୍ରୀଙ୍କୁ ଚାକିରିରୁ ଛଡ଼େଇ ପିଲାମାନଙ୍କର ଯତ୍ନ ନେବାକୁ ସୁଯୋଗ ଦେବା ପ୍ରତି ସେମାନେ ଆଗ୍ରହୀ ହୁଅନ୍ତି ନାହିଁ ।

ଏହାର ଯେ ବ୍ୟତିକ୍ରମ ନଥାଏ ତାହା ନୁହେଁ । କେତେକ ପିତା ପିଲାମାନଙ୍କ ଭବିଷ୍ୟତକୁ ଅଗ୍ରାଧିକାର ଦେଇ ସ୍ତ୍ରୀଙ୍କୁ ପିଲାମାନଙ୍କର ସମସ୍ତ ଦାୟିତ୍ୱ ନେବାକୁ ପ୍ରବର୍ତ୍ତେଇଥାନ୍ତି । ପିଲାଏ ବଡ଼ ନ ହେବାଯାଏ ସ୍ତ୍ରୀ ଚାକିରି କରିବା କି ଅନ୍ୟ କୌଣସି ଉପାୟରେ ରୋଜଗାର କରିବା ପାଇଁ ସମୟ ଦେବା ସେମାନଙ୍କର ସହ୍ୟ ହୁଏନାହିଁ ।

ଶେଷୋକ୍ତ ଗୋଷ୍ଠୀର ପିତାମାନେ ଅବଶ୍ୟ ସ୍ୱାଗତଯୋଗ୍ୟ । ତଥାପି ଏ' କ୍ଷେତ୍ରରେ ମଧ୍ୟ କେତେକ ସମସ୍ୟା ରହିଥାଏ ।

ପ୍ର : କି' ପ୍ରକାରର ସମସ୍ୟା ?

ଉ: ଅନେକ ପିତାଙ୍କର ଧାରଣା ଯେ ସନ୍ତାନମାନଙ୍କୁ ଭଲ ଖାଇବା ପିଇବାକୁ ଦେବା, ସେମାନଙ୍କୁ ଭଲ ଜାମାପଟା ପିନ୍ଧିବାକୁ ଦେବା, ଭଲ ସ୍କୁଲ୍‌ରେ ସେମାନଙ୍କ ନାଁ ଲେଖେଇବା, ଘରେ ସେମାନଙ୍କ ପାଇଁ ଅନ୍ୟାନ୍ୟ ସୁବିଧାସୁଯୋଗ ଯୋଗାଇଦେବା ଓ ସେମାନଙ୍କ ପଢ଼ାପଢ଼ି ଠିକ୍ ଭାବରେ ଚାଲିଛି କି ନା ଦେଖିବା – ଏସବୁ ବ୍ୟାପାରରେ ନିଜର ମୁଣ୍ଡ ଖେଳେଇବାରେ ହିଁ ସେମାନଙ୍କର ଦାୟିତ୍ୱ ଶେଷ ।

କିନ୍ତୁ ଏହି ଧାରଣା ଆଦୌ ଠିକ୍ ନୁହେଁ । କାରଣ ଏଥିରେ ରହିଥାଏ ଏକ ବିରାଟ ଅଭାବ । ଅଭାବଟି ହେଲା, ସନ୍ତାନମାନଙ୍କର ଆବେଗିକ ବିକାଶ ଅବହେଳିତ ହୋଇ ରହିଯାଏ । ସନ୍ତାନର ଆବେଗ ତଥା ଭାବପ୍ରବଣତା ପ୍ରତି ସଚେତନ ନ ରହିଲେ ତା'ର ମାନସିକ, ସାମାଜିକ ଓ ଆଧ୍ୟାତ୍ମିକ ବିକାଶ ବାଧାପ୍ରାପ୍ତ ହୋଇଥାଏ । ତେଣୁ, ମାଆମାନେ ସନ୍ତାନମାନଙ୍କ ପ୍ରତି ଯେପରି ଆନ୍ତରିକ ଭାବରେ ସଂଶ୍ଳିଷ୍ଟ ହୋଇରହନ୍ତି, ପିତାମାତାଙ୍କୁ ଠିକ୍ ସେହି ପ୍ରକାରେ ସନ୍ତାନପ୍ରେମୀ ହେବା ଉଚିତ । ସନ୍ତାନମାନେ ପିତାମାତାଙ୍କ ଆଚରଣରେ, ସ୍ନେହଶ୍ରଦ୍ଧା ପ୍ରଦାନ କରିବାରେ ଓ ସେମାନଙ୍କ ଆଦର ଯତ୍ନରେ କୌଣସି ପାର୍ଥକ୍ୟ ବାରି ନପାରିଲେ, ତାହା ସେମାନଙ୍କ ବ୍ୟକ୍ତିତ୍ୱ ଗଠନରେ ଯଥେଷ୍ଟ ସହାୟକ ହୋଇଥାଏ ।

ଏବେ ଜୀବନଶୈଳୀରେ ଅଭୂତପୂର୍ବ ପରିବର୍ତ୍ତନ ଘଟିଛି । ପରିବାରମାନ କ୍ରମେ ସହରାଭିମୁଖୀ ହେଉଛନ୍ତି । ଗାଁମାନଙ୍କର ଚିତ୍ର ବଦଳିଯାଇ ସେଠାରେ ଅନୁପ୍ରବେଶ କରି ଚାଲିଛି ସହରୀ ସଭ୍ୟତା । କେଉଁ ପରିବାରରେ ବାପମା' ଉଭୟେ କର୍ମଜୀବୀ ତ ଅନ୍ୟ କେଉଁ ପରିବାରରେ ମା' ଚାକିରିବାକିରି ନ କରୁଥିଲେ ବି ବିଭିନ୍ନ ସାମାଜିକ ସଂସ୍ଥା ସହ ଜଡ଼ିତ ହୋଇ ପରିବାରରୁ ପ୍ରାୟତଃ ଅନୁପସ୍ଥିତ । ଏହିଭଳି ପରିବାରରେ ସନ୍ତାନମାନେ ଦିନବେଳା ଓ କେତେକ କ୍ଷେତ୍ରରେ ସଂଧ୍ୟାବେଳେ ମଧ୍ୟ ପିତାମାତା କାହାରିକୁ ଦେଖିବାକୁ ପାଆନ୍ତି ନାହିଁ । ତେଣୁ ସ୍କୁଲ୍ କଲେଜ୍‌ରେ ପଢ଼ାପଢ଼ି କରିବା ସଙ୍ଗେ ସଙ୍ଗେ ବହୁ ପିଲାଙ୍କୁ ଘରର କେତେକ ଦାୟିତ୍ୱ ମଧ୍ୟ ନିର୍ବାହ କରିବାକୁ ପଡ଼ିଥାଏ ।

ପୁଣି କେତେକ ପିତା ଅଧିକ ଦରମା ପାଇବାର ଲୋଭ ସମ୍ବରଣ କରି ନପାରି ଗୋଟିଏ ଜାଗାରୁ ଚାକିରି ଛାଡ଼ି ଅନ୍ୟ ଏକ ଜାଗାରେ ଚାକିରି କରିଥାନ୍ତି । ବାରମ୍ବାର ସ୍ଥାନ ବଦଳେଇବା ଦ୍ୱାରା ସନ୍ତାନମାନେ ପିତାମାତାଙ୍କ ସହ ନୂତନ ଜାଗାକୁ ଯିବା ନିମନ୍ତେ ବାଧ୍ୟ ହୁଅନ୍ତି । ସେଠାରେ ସେମାନଙ୍କୁ ନୂଆ ସହପାଠୀ, ନୂଆ ପଡ଼ୋଶୀ ଇତ୍ୟାଦିଙ୍କ ସହ ସାଲିସ୍ କରିବାକୁ ପଡ଼େ । ଏହା ସେମାନଙ୍କର ଆବେଗିକ ବିକାଶକୁ ବ୍ୟାହତ କରିଥାଏ । ଏ' କ୍ଷେତ୍ରରେ ପିଲାମାନେ ମୁଖ୍ୟତଃ ମାଆମାନଙ୍କ ଦାୟିତ୍ୱରେ ଲାଳିତପାଳିତ ହୋଇଥାନ୍ତି । ଏହା ସାଙ୍ଗକୁ ପିତା ଜଣେ କଠୋର ଶୃଙ୍ଖଳାପନ୍ନ ବ୍ୟକ୍ତି ହୋଇଥିଲେ ଓ ସାମାନ୍ୟ ତ୍ରୁଟିରେ ବି ସନ୍ତାନମାନଙ୍କୁ ଦଣ୍ଡ ପ୍ରଦାନ କରିବା ନିମନ୍ତେ ଆଗେଇ ଆସିଲେ, ଏହାର ପରିଣତି ଆଦୌ ଶୁଭଙ୍କର ହୁଏନାହିଁ ।

ପୁଣି ଯେଉଁ ପରିବାରରେ ମାଆ କୌଣସି ଦୂର ସ୍ଥାନରେ ଚାକିରି କରୁଥାନ୍ତି, ସେ କ୍ଷେତ୍ରରେ ତାଙ୍କୁ ଦିନ ଦିନ ଧରି ପରିବାରରୁ ଅନୁପସ୍ଥିତ ରହିବାକୁ ପଡ଼େ । ଫଳରେ ପିଲାମାନେ ହୁଏତ ବାପାଙ୍କ ପାଖରେ ରହନ୍ତି କିମ୍ବା ରହନ୍ତି ଅନ୍ୟ କୌଣସି ସମ୍ପର୍କୀୟଙ୍କ ତତ୍ତ୍ୱାବଧାନରେ । ପିତାମାତାଙ୍କ ସାନ୍ନିଧ୍ୟରୁ ବଞ୍ଚିତ ହେଲେ କାହାକୁ ସେମାନେ ବିଶ୍ୱାସକୁ ନେବେ ? କାହା ଆଗରେ କହିବେ ସେମାନଙ୍କର ଭଲମନ୍ଦ କଥା ? କାହାଠାରୁ ପାଇବେ ଭବିଷ୍ୟତ ପାଇଁ ଉପଯୋଗୀ ହେଉଥିବା ମାର୍ଗଦର୍ଶନ ?

ଏବେ ବହୁ ପିତା ମତ ଦେଉଛନ୍ତି ଯେ ଅଧିକ ଅର୍ଥ ଉପାର୍ଜନ ଓ ସଞ୍ଚୟ ସନ୍ତାନମାନଙ୍କର ଉନ୍ନତ ଭବିଷ୍ୟତ ପାଇଁ ଅପରିହାର୍ଯ୍ୟ । ପୁଅର ଉଚ୍ଚତର ଶିକ୍ଷା ପାଇଁ ଯେ ବେଶୀ ଟଙ୍କା ଦରକାର, ଏହା ସତ । ଝିଅ ବିଭାଘରରେ ଅଧିକ ଯୌତୁକ ଦେବା ପାଇଁ ମଧ୍ୟ ବିପୁଳ ଅର୍ଥର ଆବଶ୍ୟକତା ରହିଛି । କିନ୍ତୁ ଟିକିଏ ଚିନ୍ତା କରନ୍ତୁ ତ ! ଆମେ

ପିଲାମାନଙ୍କ ଭବିଷ୍ୟତକୁ ଅଗ୍ରାଧିକାର ଦେଇ ପୁଞ୍ଜି ବିନିଯୋଗ କରିବା ନା ତାକୁ ଭଲ ମଣିଷ କରି ଗଢ଼ିବା ପାଇଁ ପୁଞ୍ଜି ଖଟେଇବା ? ସେଇଥିପାଇଁ ଜନ୍ ବ୍ରୁକ୍ସ ଖେଦ ପ୍ରକାଶ କରି କହିଥିଲେ, "ଏବକାରର ବାପମା' ସନ୍ତାନମାନଙ୍କୁ ଟଙ୍କା ଯୋଗେଇ ଚାଲିଛନ୍ତି ସିନା, ସେମାନଙ୍କର ସର୍ବାଙ୍ଗୀଣ ବିକାଶ ପ୍ରତି ବାପମା'ଙ୍କର ମୋଟେ ଧ୍ୟାନ ନାହିଁ ।" ସନ୍ତାନ ସହ ନିବିଡ଼ ସମ୍ପର୍କ ରକ୍ଷା କରି ନପାରିଲେ ସନ୍ତାନର ସାମଗ୍ରିକ ବିକାଶ ଯେ ବହୁମାତ୍ରାରେ ବ୍ୟାହତ ହୋଇପଡ଼ିବ ଏହା ନିଃସନ୍ଦେହ ।

ପୁଅଝିଅମାନେ ଟେଲିଭିଜନ୍‌ରୁ କି' ପ୍ରକାରର ସିନେମା କି ଧାରାବାହିକ ଦେଖିବାରେ ବେଶୀ ଆଗ୍ରହୀ, ତାହା ଲକ୍ଷ୍ୟ କରିବା ପାଇଁ ବାପାଙ୍କ ପାଖରେ ସମୟ ନାହିଁ । ପୁଅଝିଅ କେଉଁ ଚରିତ୍ରର ପିଲାମାନଙ୍କ ସହ ସାଙ୍ଗ ହେଉଛନ୍ତି, ତାହା ସେମାନଙ୍କ ଆଖିରେ ପଡ଼ିପାରୁନାହିଁ । ପିଲାଏ ଅନ୍ୟମାନଙ୍କ ସହ କେଉଁ ଧରଣର କଥୋପକଥନରେ ରତ ରହୁଛନ୍ତି, କେଉଁ ପିତା ଅବା ତାହା ଜାଣିବା ପାଇଁ ଆଗ୍ରହୀ ? ପୁଅଝିଅଙ୍କ କୌତୂହଳ, କଳ୍ପନାପ୍ରବଣତା, ଅନୁସନ୍ଧିତ୍ସା, ଚିନ୍ତାଧାରା ଆଦି ଜାଣିବା ନିମନ୍ତେ କେଉଁ ବାପା ସେମାନଙ୍କ ସହ ଘଣ୍ଟା ଘଣ୍ଟା ସମୟ ବିତେଇବାରେ ପ୍ରୟାସୀ ?

ତେଣୁ ବାପାମାନେ ପରିବାରକୁ ଉପେକ୍ଷା କରି କ୍ରମେ ହୋଇ ଉଠୁଛନ୍ତି ଅଧିକରୁ ଅଧିକ ଅର୍ଥସର୍ବସ୍ୱ । ଏହା ଫଳରେ ବଳି ପଡୁଛି ପାରିବାରିକ ସ୍ୱାର୍ଥ ଉପେକ୍ଷିତ, ହେଉଛି ସନ୍ତାନମାନଙ୍କ ସ୍ୱାର୍ଥ ।

ପିତାମାନେ ନିଜକୁ ପଚାରନ୍ତୁ ତ – "ମୁଁ କ'ଣ କେବଳ ମୋ' ଚାକିରି ନିକଟରେ ଉତ୍ତରଦାୟୀ ? ପରିବାର ତଥା ସନ୍ତାନସନ୍ତତିଙ୍କ ପ୍ରତି ମୋର କ'ଣ କୌଣସି କର୍ତ୍ତବ୍ୟ ନାହିଁ ? ମୁଁ ଯଦି ପରିବାର ପ୍ରତି ଅବହେଳା ପ୍ରଦର୍ଶନ କରେ, ଏହାର କ୍ଷତିପୂରଣ କରିବ କିଏ ? ଏହି କ୍ଷତି କ'ଣ ଅପୂରଣୀୟ ନୁହେଁ ?"

କେତେକ ଅନୁଧ୍ୟାନରୁ ପ୍ରମାଣ ମିଳିଛି ଯେ ଅଧିକ ଉପାର୍ଜନ କରୁଥିବା ବହୁ ପୁରୁଷବ୍ୟକ୍ତି ପରିବାରକୁ ଉପେକ୍ଷା କରି ନିଜେ ମାନସିକ ଚାପରେ ସନ୍ତୁଳି ହେଉଛନ୍ତି । ମାନସିକ ଚାପକୁ ଲାଘବ କରିବା ନିମନ୍ତେ କିଏ ମଦ୍ୟପାନ କରୁଛି ତ ଅନ୍ୟ କିଏ ଆସକ୍ତି ସୃଷ୍ଟିକାରୀ ଔଷଧ ସେବନ କରୁଛି । କେହି କେହି ଶାନ୍ତି ଖୋଜୁଛନ୍ତି ବେଶ୍ୟାଳୟରେ !

ବର୍ତ୍ତମାନର ଜୀବନଶୈଳୀ ଏପରି ବିବର୍ତ୍ତିତ ହୋଇପଡ଼ିଲାଣି ଯେ ପିତାଙ୍କ ମୁଖଦର୍ଶନ ବି ସନ୍ତାନର ଭାଗ୍ୟରେ ଜୁଟୁନାହିଁ । ଏପରିକି ପିତାମାତାଙ୍କ ସାମାଜିକ ଜୀବନ ସନ୍ତାନମାନଙ୍କ ସାମାଜିକ ଜୀବନଠାରୁ ଭିନ୍ନ ହୋଇପଡ଼ିଲାଣି । ପିଲାଏ ସେମାନଙ୍କ

ସାଙ୍ଗସାଥୀମାନଙ୍କ ସହ ସେମାନଙ୍କ ପାର୍ଟିରେ ମସ୍‌ଗୁଲ୍ ତ ବାପମା' ନିଜ ନିଜର ସାଙ୍ଗସାଥୀ ଧରି ମସ୍‌ଗୁଲ୍ ଅଲଗା ପାର୍ଟିରେ । ସମାନ ପାର୍ଟିକୁ ଗଲେ ବି ସନ୍ତାନମାନଙ୍କ ଆଡ୍ଡା ଓ ବାପମା'ଙ୍କ ଆଡ୍ଡା ଜମୁଛି ଅଲଗା ଅଲଗା କୋଠରିରେ । କହିବାକୁ ଗଲେ ପିତାମାତା ଓ ସନ୍ତାନମାନେ ଏବେ ବାସ କରୁଛନ୍ତି ଭିନ୍ନ ଭିନ୍ନ ଦୁନିଆରେ । ବାପ ହୁଏତ ଭାବୁଛି ଯେ ତା'ର ଘରୋଇ ବ୍ୟାପାର ଭିତରକୁ ସନ୍ତାନ ଉଙ୍କି ନମାରି, ସେ ତା'ର ଘରୋଇ ବ୍ୟାପାର ନିର୍ବାଚନ କରିନେଉ । ଏଭଳି ମନୋବୃତ୍ତି ପୋଷଣ କରୁଥିବା ପିତାର ସନ୍ତାନ ମଣିଷ ହୋଇ ଉତୁରିବ ନା ଉତୁରିବ ଅମଣିଷ ହୋଇ ?

**ପ୍ର : କୁହାଯାଇଥାଏ ଯେ 'ଶହେଜଣ ସ୍କୁଲ୍ ଶିକ୍ଷକଙ୍କ ଅପେକ୍ଷା ଜଣେ ପିତାର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ ।" ଏଭଳି ଉକ୍ତିରେ କ'ଣ କିଛି ସାରବତ୍ତା ଅଛି ?**

ଉ: ଏହି ଉକ୍ତିଟି ସମ୍ପୂର୍ଣ୍ଣ ଯୁକ୍ତିଯୁକ୍ତ । ସେକ୍‌ସପିଅର୍‌ଙ୍କ ଭାଷାରେ କହିଲେ 'ଜଣେ ବିଜ୍ଞ ପିତା ହିଁ ତା'ର ସନ୍ତାନର ନାଡ଼ି ନକ୍ଷତ୍ରକୁ ଖୁବ୍ ଭଲଭାବରେ ଜାଣିଥାଏ ।'

ସନ୍ତାନ ଜନ୍ମର ଜୈବିକ ଭୂମିକା ନିର୍ବାହ କରିବା ପିତାର ଏକମାତ୍ର ଦାୟିତ୍ୱ ବୋଲି ଭାବୁଥିବା ପିତା ପିତୃତ୍ୱର ଅବମାନନା କରିଥାଏ । କାରଣ ପିତାର ଦାୟିତ୍ୱ ସୁଦୂରପ୍ରସାରୀ । ସେ ନିଜ ସନ୍ତାନ ପାଇଁ ଆଦର୍ଶ ତଥା ଦୃଷ୍ଟାନ୍ତ ରୂପେ ଉଭା ହେବା ହିଁ ବାଞ୍ଛନୀୟ । ଏକ ସୁସମନ୍ୱିତ ଶୃଙ୍ଖଳିତ ଜୀବନଯାପନ କରିବା ନିମନ୍ତେ ପିତାମାନେ ସନ୍ତାନକୁ ଉତ୍ସାହ ପ୍ରଦାନ କରିବା ଉଚିତ ।

ପାଞ୍ଚ ଛଅ ବର୍ଷର ପିଲାକୁ ସାଧୁତା ସମ୍ପର୍କରେ ଶିକ୍ଷା ଦିଆଯିବା ଆବଶ୍ୟକ । ତାକୁ ଧୈର୍ଯ୍ୟ ତଥା ଅଧ୍ୟବସାୟ ସମ୍ପର୍କରେ ଅବଗତ କରାଇବା ମଧ୍ୟ ପିତାଙ୍କର ମୌଳିକ କର୍ତ୍ତବ୍ୟ । ପିଲାମାନଙ୍କୁ ଶବ୍ଦ ଧନ୍ଦା ସମାଧାନ କରିବାକୁ ଦେବା ତଥା ଶିକ୍ଷଣୀୟ କ୍ରୀଡ଼ାରେ ସେମାନଙ୍କୁ ନିୟୋଜିତ କରି ସବୁପ୍ରକାରର ସହାୟତା ପ୍ରଦାନ କରିବାରେ ପିତାମାନେ ସକ୍ରିୟ ଭୂମିକା ଗ୍ରହଣ କରିପାରିବେ ।

ଛୋଟ ପିଲାମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ଚାଳନାରେ କିପରି ସମନ୍ୱୟର ବିକାଶ କରାଯାଇପାରିବ, ତାହା ମଧ୍ୟ ଶିଖେଇବା ଦରକାର । ପେନ୍‌ସିଲ୍ ଧରି ଲେଖିବା, କତୁରି ଧରି କଟାକଟି କରିବା, ହାତ ଓ ଆଖିର ସମନ୍ୱୟ ରକ୍ଷା କରିବା ଉଦ୍ଦେଶ୍ୟରେ କ୍ୟାରମ୍ ଖେଳିବାକୁ ଦେବା, ବଲ୍‌କୁ ଉପରକୁ ଫିଙ୍ଗି ପୁଣି ଧରି ପକେଇବା ଭଳି ଶିକ୍ଷାଦେବାରେ ପିଲାମାନଙ୍କର ଯଥେଷ୍ଟ ଉପକାର ହୋଇଥାଏ । ବାପମା'ମାନେ ଏଥିପାଇଁ ସହଯୋଗ ନକଲେ ଏହି ଦାୟିତ୍ୱ ଅନ୍ୟ କିଏ କାହିଁକି ନିଜ ମୁଣ୍ଡକୁ ନେବ ?

ତା'ର ସ୍ମୃତିଶକ୍ତିକୁ ଉନ୍ନତ କରାଇବା ନିମନ୍ତେ ସ୍ମୃତି ସଂକ୍ରାନ୍ତ ଖେଳଗୁଡ଼ିକର ସାହାଯ୍ୟ ନିଆଯାଇପାରିବ । କଥୋପକଥନ ତଥା ଆଳାପଆଲୋଚନାର କ୍ଷମତା ବୃଦ୍ଧି କରିବା ପାଇଁ ତାକୁ ଗପ କହିବା, ଗପ ପଢ଼ି ଶୁଣେଇବା, ଉଭୟ ମିଶି ଗପ ପଢ଼ିବା ଏବଂ ଗପ କହିବା ପାଇଁ ତାକୁ ଉତ୍ସାହିତ କରିବାର ଅବଦାନ ଯଥେଷ୍ଟ ବେଶୀ । ଏପରିକି ତାଙ୍କୁ ଟେପ୍‌ରେକର୍ଡ଼୍‌ର ପାଖରେ ଗପ କୁହାଇ ପରେ କ୍ୟାସେଟ୍‌କୁ ବଜେଇ ତାକୁ ଶୁଣେଇବା ଉଚିତ । ପରିବାରର ସମସ୍ତେ ଏହି ଆସରକୁ ଉପଭୋଗ କଲେ ପିଲାମାନେ ଖୁବ୍ ଉତ୍ସାହିତ ହେବେ । ପିଲାମାନଙ୍କୁ ଖେଳରେ ନିୟୋଜିତ କଲେ ସେମାନେ ହାରିବା, ଜିତିବା ସମ୍ପର୍କରେ ଅବଗତ ହୋଇଥାନ୍ତି । ହାରଜିତ୍ ସହ ପିଲାବୟସରୁ ପରିଚିତ ହୋଇଥିଲେ ଜୀବନ ସଂଗ୍ରାମର ହାରଜିତ୍ ସେମାନଙ୍କୁ ବିଚଳିତ କରିପାରେ ନାହିଁ ।

ସେମାନଙ୍କୁ ପିକ୍‌ନିକ୍‌ରେ ନେବା, ଡଙ୍ଗାରେ ବସେଇ ବୁଲେଇବା, ଗଛ ଚଢ଼ିବା ଶିଖେଇଦେବା, ଛୋଟ ପାହାଡ଼ ଚଢ଼ିବା ଶିଖେଇବା ତଥା ନୂଆ ନୂଆ ଜାଗାକୁ ବୁଲେଇ ନେବା ଦ୍ୱାରା ସେମାନେ ଦୁଃସାହସୀ ହେବା ସହ ନୂତନ ଅଭିଜ୍ଞତା ଅର୍ଜନ କରିବାର ସୁଯୋଗ ପାଇଥା'ନ୍ତି ।

ବାପାଙ୍କ ସହ ମିଶି ପିଲାଏ ବାସନ ସଫା କରିପାରନ୍ତି, ଘରେ ଝାଡୁ ଦେଇପାରନ୍ତି, ନିଜ ନିଜର ଲୁଗାପଟା ସଫା କରିପାରନ୍ତି, ଛୋଟକାଟିଆ ରୋଷେଇ ବାସ କରିପାରନ୍ତି । ଏପରି କରିବା ଫଳରେ ସେମାନଙ୍କଠାରେ ଆତ୍ମବିଶ୍ୱାସ ଜାଗ୍ରତ ହୁଏ ଓ ଭବିଷ୍ୟତରେ ଏହା ସେମାନଙ୍କୁ ବେଶ୍ ସାହାଯ୍ୟ କରିଥାଏ । ଏପରିକି ଛୋଟ ଛୋଟ ମରାମତି କାମରେ ମଧ୍ୟ ସେମାନଙ୍କୁ ନିୟୋଜିତ କରାଯାଇପାରେ । ସାଇକଲ୍‌ରେ ପମ୍ପ୍ ଦେବା, ଟ୍ୟୁବ୍ ଲିକ୍ ହୋଇଥିଲେ ଲିକ୍ ବନ୍ଦ କରିବା, ହିଟର୍‌ର ତାର ଛିଣ୍ଡି ଯାଇଥିଲେ ତାର ଯୋଡ଼ିବା ଭଳି କାମରେ ପିଲାମାନେ ଖୁବ୍ ମଜା ପାଇଥାନ୍ତି ।

ବାପାମାନେ ମନେ ରଖିବା ଉଚିତ ଯେ ସେମାନେ ନିଜ ସନ୍ତାନକୁ ଜଣେ ଆତ୍ମନିର୍ଭରଶୀଳ ସଚ୍ଚା ମଣିଷ କରି ଗଢ଼ିବା ଆବଶ୍ୟକ । ସନ୍ତାନର ଭବିଷ୍ୟତ ତା'ର ବର୍ତ୍ତମାନ ଉପରେ ହିଁ ନିର୍ଭରଶୀଳ । ତେଣୁ ତା'ର 'ବର୍ତ୍ତମାନ'ଗୁଡ଼ିକୁ ସାକାର କରିପାରିଲେ ହିଁ ତା'ର ଉଜ୍ଜ୍ୱଳ 'ଭବିଷ୍ୟତ' ପାଇଁ ନିଜର ପ୍ରତିଶ୍ରୁତି ଦେଇହେବ ।

ବାପା କ'ଣ ପରିବାରର କେବଳ ରୋଜଗାରିଆ ସଦସ୍ୟ ଜଣେ ମାତ୍ର ? ତା'ର ସ୍ତ୍ରୀ ଓ ପିଲାମାନେ ବାପାର ସହାୟତା ଲୋଡ଼ନ୍ତି । ଘରର ସମସ୍ତ ହାନିଲାଭରେ ସେ ସ୍ତ୍ରୀ ଓ ପିଲାଙ୍କର ସମଭାଗୀ । ବାପାଠାରୁ ଏତିକି ଆଶା କରିବା କ'ଣ ଅଯୌକ୍ତିକ ? 'ବାସସ୍ଥାନ' ଓ 'ଘର' ଭିତରେ ରହିଛି ଅନେକ ପାର୍ଥକ୍ୟ । ଇଟା, ବାଲି, ସିମେଣ୍ଟ,

ଲୁହାରଡ଼, କାଠ ଇତ୍ୟାଦି ଉପକରଣ ବ୍ୟବହାର କରି ବାସସ୍ଥାନଟିଏ ତିଆରି କରିହୁଏ । କିନ୍ତୁ 'ଘର' ବୋଇଲେ ତା'ର ପରିବେଶରେ ଅନୁଭବ କରିହୁଏ ଶାନ୍ତି, ସମତା, ସ୍ନେହ, ପ୍ରେମ ଓ ପାରସ୍ପରିକ ସୌହାର୍ଦ୍ଦ୍ୟ । ସେଥିପାଇଁ ତ କୁହାଯାଇଛି – 'ସରଗୁ ସୁନ୍ଦର ଆହା ଅଟେ ସେହି ଘର ।' ଘରେ ଏହି ପ୍ରକାରର ଅନୁକୂଳ ବାତାବରଣ ନିରନ୍ତର ଉପଲବ୍ଧ କରାଇବାରେ ବାପାର ଭୂମିକା ମୁଖ୍ୟ ।

ବଡ଼ କ୍ଷୋଭର ବିଷୟ ଯେ ବର୍ତ୍ତମାନର ଯୁବପିଢ଼ି ମୂଲ୍ୟବୋଧର ଧାର ଧାରୁନାହାନ୍ତି । ନୈତିକତା ସେମାନଙ୍କ ପାଇଁ ଏକ ଅବୋଧ ଶବ୍ଦ । ତେଣୁ ବ୍ୟକ୍ତିଗତ ତଥା ଗୋଷ୍ଠୀଗତ ଜୀବନରେ ମୂଲ୍ୟବୋଧ ଓ ନୈତିକତାରେ ଘୋର ଅଭାବ ପରିଲକ୍ଷିତ ହେଉଛି । ଆମ ପିଲାପିଲି ଯଦି 'ଭଲ' ଓ 'ମନ୍ଦ'ର ପାର୍ଥକ୍ୟ ନଜାଣି ବଢ଼ିବେ, ତେବେ ସମାଜ ତ ଅସାମାଜିକ ବ୍ୟକ୍ତିମାନଙ୍କ ଦ୍ୱାରା ଭରିଯିବ । କହିବାକୁ ଗଲେ ଏହି ପ୍ରତିକୂଳ ପରିବେଶ ଏବେ ରାଜୁତି କରିବା ଆରମ୍ଭ ହୋଇଗଲାଣି । ଅନ୍ୟମାନଙ୍କ ପ୍ରତି ପିଲାମାନଙ୍କ ଠାରେ ସହାନୁଭୂତି ପ୍ରକାଶ ପାଉନାହିଁ । ହିଂସା, ଦ୍ୱେଷ, ପରଶ୍ରୀକାତରତା, ଅସମ୍ବେଦନଶୀଳତା ଆଦି ବଢ଼ିଚାଲିଛି ଅତି ଦ୍ରୁତ ହାରରେ ।

ଅଜା ଆଈ ଓ ପିତାମାତାଙ୍କ ଅମଳର ପାରମ୍ପରିକ ମୂଲ୍ୟବୋଧକୁ ଜଳାଞ୍ଜଳି ଦେବାରେ ପିଲାମାନେ ପଶ୍ଚାତ୍‌ପଦ ହେଉନାହାନ୍ତି । ଏହି କାରଣରୁ ଆମ ପିଲାଙ୍କ ଉଜ୍ଜ୍ୱଳ ଭବିଷ୍ୟତ ପାଇଁ ମୂଲ୍ୟବୋଧର ପୁନଃପ୍ରତିଷ୍ଠା ଜରୁରୀ ହୋଇପଡ଼ିଛି । କାରଣ ସନ୍ତାନମାନଙ୍କୁ ସୁନାଗରିକ ଭାବରେ ଗଢ଼ିବାରେ ପିତାମାତା, ପଡ଼ାପଡ଼ୋଶୀ, ସମାଜ ତଥା ରାଷ୍ଟ୍ରର ସ୍ୱାର୍ଥ ନିହିତ ।

ବାପାମାନେ ମନେରଖିବା ଉଚିତ ଯେ ପିଲାମାନେ ଖୁବ୍ ଦ୍ରୁତ ହାରରେ ବୃଦ୍ଧି ପ୍ରାପ୍ତ ହୋଇ ଶୈଶବରୁ କୈଶୋରରେ ପହଞ୍ଚିଯାଆନ୍ତି । ତେଣୁ ଶିଶୁ ଅବସ୍ଥାରୁ ସେମାନଙ୍କ ସହ ସ୍ନେହପୂର୍ଣ୍ଣ ଘନିଷ୍ଠ ସମ୍ପର୍କ ସ୍ଥାପନ ନକଲେ ପରେ ଅନୁତାପ କରିବା ହିଁ ସାର ହେବ । ପିତାଙ୍କର ଆନ୍ତରିକ ଘନିଷ୍ଠ ସାନ୍ନିଧ୍ୟରୁ ବଞ୍ଚିତ ହୋଇଥିବା ଶିଶୁ ପରବର୍ତ୍ତୀ କାଳରେ ପିତାଙ୍କ ସହ କଥାବାର୍ତ୍ତା କରିବା ପାଇଁ ଚେଷ୍ଟା କରୁନଥିବାର ଦୃଷ୍ଟାନ୍ତ ବିରଳ ନୁହେଁ । କାରଣ ତା' ପାଇଁ ତା' ପିତା ଜଣେ ଅପରିଚିତ ବ୍ୟକ୍ତିବିଶେଷ ।

ଏହି ପରିପ୍ରେକ୍ଷୀରେ ଦେଖିଲେ, ପ୍ରତ୍ୟେକ ପିତା ନିଜର କର୍ତ୍ତବ୍ୟ ପ୍ରତି ସଚେତନ ରହି ସନ୍ତାନର ଘନିଷ୍ଠ ବନ୍ଧୁ ରୂପେ ପରିଚିତ ହେବାର ଅନୁକୂଳ ପ୍ରଭାବ ସୁଦୂରପ୍ରସାରୀ ।



# ସମୟ ଦିଅ, ସମୟ ଦିଅ

"କେତେକ ପିତାମାତା ସେମାନଙ୍କ ସନ୍ତାନମାନଙ୍କ ପାଇଁ ସବୁକିଛି ବ୍ୟୟ କରିବା ପାଇଁ ପ୍ରସ୍ତୁତ, କିନ୍ତୁ ସନ୍ତାନମାନଙ୍କ ପାଇଁ ସମୟ ଦେବା ପାଇଁ କୁଣ୍ଠିତ ।"

–ମରିସ୍ ସିଟର୍

ପ୍ର : ସନ୍ତାନମାନଙ୍କ ପାଇଁ ସମୟ ଦେବା ନିମନ୍ତେ ସମସ୍ତେ ପରାମର୍ଶ ଦେଇଚାଲିଛନ୍ତି । କିନ୍ତୁ ସମୟ ଦେବାର ନିର୍ଦ୍ଦିଷ୍ଟ ରୂପରେଖ କଅଣ ? କିପରି ଏହାକୁ କାର୍ଯ୍ୟକାରୀ ତଥା ସମ୍ଭବ କରାଯାଇପାରିବ ?

ଉ : ଏ' ସମ୍ପର୍କରେ ଖାଲିଲ୍ ଗିବ୍ରାନ୍‌ଙ୍କ ଚେତାବନୀକୁ ଟିକିଏ ମନେ ରଖନ୍ତୁ । ସେ କହିଥିଲେ –

"ତୁମର ସନ୍ତାନମାନେ ତୁମର ସନ୍ତାନ ନୁହଁନ୍ତି । ସେମାନେ ହେଉଛନ୍ତି ଭବିଷ୍ୟତ ଜୀବନର ପୁଅଝିଅ । ସେମାନେ ତୁମ ମାଧ୍ୟମରେ ସଂସାରକୁ ଆସିଛନ୍ତି ସିନା, ତୁମଠାରୁ ସଂସାରକୁ ଆସିନାହାନ୍ତି । ସେମାନେ ତୁମସହ ରହିଛନ୍ତି ସିନା, ସେମାନଙ୍କ ଉପରେ ତୁମର ଏକଚାଟିଆ ଅଧିକାର ନାହିଁ ।

"ତୁମେ ସେମାନଙ୍କୁ ତୁମର ସ୍ନେହଶ୍ରଦ୍ଧା ଦେଇପାର, କିନ୍ତୁ ତୁମର ଚିନ୍ତାଧାରା ସେମାନଙ୍କ ଉପରେ ଲଦିଦିଅ ନାହିଁ, କାରଣ ସେମାନଙ୍କ ନିଜର ଚିନ୍ତାଧାରା ରହିଛି ।

"ତୁମେ ସେମାନଙ୍କ ଶରୀରକୁ ଘରେ ଆଶ୍ରୟ ଦେଇପାର, କିନ୍ତୁ ସେମାନଙ୍କ ଆତ୍ମାକୁ ତୁମ ନିୟନ୍ତ୍ରଣରେ ରଖିପାରିବ ନାହିଁ, କାରଣ ସେମାନଙ୍କ ଆତ୍ମା ଆସନ୍ତାକାଲିର ସଦନରେ ବାସ କରିଥାଏ । ସେହି ଆସନ୍ତାକାଲିର ସଦନକୁ ତୁମର ପ୍ରବେଶାଧିକାର ନାହିଁ; ଏପରିକି ସ୍ୱପ୍ନରେ ସୁଦ୍ଧା ତୁମେ ସେଠାରେ ପହଞ୍ଚିପାରିବ ନାହିଁ ।

"ତୁମେ ସେମାନଙ୍କ ଭଳି ହେବା ନିମନ୍ତେ ଉଦ୍ୟମ ଜାରି ରଖିପାର, କିନ୍ତୁ ସେମାନଙ୍କୁ ତୁମ ଭଳି ଗଢ଼ି ତୋଳିବା ନିମନ୍ତେ ଉଦ୍ୟମ କରନାହିଁ ।"

"କାରଣ, ଜୀବନ ଗତକାଲିରେ ଅଟକି ରହେନାହିଁ କି ପଛେଇ ପଛେଇ ଅଗ୍ରସର ହୁଏନାହିଁ ।"

ଏହା ପଢ଼ିଲା ପରେ ସନ୍ତାନମାନଙ୍କୁ ମଣିଷ ପରି ମଣିଷ କରି ଗଢ଼ିବା ନିମନ୍ତେ କି' ଧରଣର ପ୍ରୟାସ ଲୋଡ଼ା ଓ ଏହି ଦାୟିତ୍ୱ ଆପଣମାନଙ୍କ ପାଇଁ କେତେ ଗୁରୁତ୍ୱପୂର୍ଣ୍ଣ, ସେ ସମ୍ପର୍କରେ ଆପଣଙ୍କର ଏକ ସ୍ଥୁଳ ଧାରଣା ହୋଇଥିବ ।

ଆମ୍ଭେମାନେ ଦିନରାତି ଝାଳନାଳ ହୋଇ ଖଟିଚାଲିଛୁ ଆମ ପିଲାମାନଙ୍କ ସ୍ୱାର୍ଥ ପାଇଁ । କିନ୍ତୁ ଆମର ଏହି କଠିନ ଶ୍ରମରୁ ସେମାନେ ଆମ ସ୍ନେହଶ୍ରଦ୍ଧାର ଗନ୍ଧ ବାରିପାରନ୍ତି ନାହିଁ । ଆମେ ସେମାନଙ୍କୁ ଖୁସି କରିବା ନିମନ୍ତେ ଦାମିକା ପୋଷାକପତ୍ର ଓ ଉପହାର ଆଣି ଗଦାକରି ପକାଉଛୁ । ସେମାନେ ସେଥିରେ ବି ଆମର ସ୍ନେହଶ୍ରଦ୍ଧା ଦେଖିପାରନ୍ତି ନାହିଁ ।

ସେମାନଙ୍କୁ 'ସ୍ନେହଶ୍ରଦ୍ଧା' (LOVE) ବନାନ୍ କରିବାକୁ କହିଲେ ସେମାନେ ଏହାକୁ 'ସମୟ' (T.I.M.E.) ଭାବରେ ହିଁ ବନାନ୍ କରିଥାନ୍ତି ।

ତେଣୁ ଆମେ ବାପମା'ମାନେ ଯେ ଆମ ସନ୍ତାନମାନଙ୍କୁ ଖୁବ୍ ଭଲପାଉ, ସ୍ନେହ କରୁ, ଶ୍ରଦ୍ଧା କରୁ, ସେମାନଙ୍କ ପାଇଁ କେବଳ 'ସମୟ' ବ୍ୟୟ କରି ଆମେ ତା'ର ପ୍ରମାଣ ଦେଇପାରିବା । ଏହି ସମସ୍ୟାଟି ସହଜ, ପୁଣି ବେଶ୍ କଠିନ ମଧ୍ୟ ।

ଚାଲନ୍ତୁ ଏ ସମ୍ପର୍କରେ କେତେକ ନିର୍ଦ୍ଦିଷ୍ଟ ପରାମର୍ଶକୁ ବିଚାରକୁ ନେବା ।

## ପରିବାରରେ କଅଣ କରିବେ

ଆପଣଙ୍କ ସୁବିଧା ଦେଖି ଆପଣ ଶନିବାର କିମ୍ବା ରବିବାରର ଅପରାହ୍ଣକୁ କେବଳ ପିଲାମାନଙ୍କ ଉଦ୍ଦେଶ୍ୟରେ ହିଁ କଟାନ୍ତୁ । ସେହି ସମୟରେ ଅନ୍ୟ କାହାକୁ ଘରକୁ ନିମନ୍ତ୍ରଣ କରନ୍ତୁ ନାହିଁ । କହିବାକୁ ଗଲେ ଅପରାହ୍ଣଟି କେବଳ ବାପମା' ଓ ସନ୍ତାନମାନଙ୍କ ପାଇଁ ହିଁ ଉଦ୍ଦିଷ୍ଟ ।

ଅପରାହ୍ଣଟିକୁ କିପରି କଟେଇବେ, ସେ ନିଷ୍ପତ୍ତି ଛାଡ଼ି ଦିଅନ୍ତୁ ପିଲାମାନଙ୍କ ଉପରେ । କିଏ ହୁଏତ ପାର୍କକୁ ବୁଲିଯିବାକୁ ପସନ୍ଦ କରିପାରେ, କିଏ ପସନ୍ଦ କରିପାରେ ପଡ଼ିଆରେ ବଲ୍ ଖେଳିବା ପାଇଁ ତ ଅନ୍ୟ କିଏ ଘରେ ବସି ତାସ୍ କିମ୍ବା କ୍ୟାରମ୍ ଖେଳିବା ନିମନ୍ତେ ଚାହିଁପାରେ । କିନ୍ତୁ ସମସ୍ତେ କଥାବାର୍ତ୍ତା ହୋଇ ଓ ସମସ୍ତଙ୍କ ବୁଝାମଣାରେ ହିଁ କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମଟିକୁ ସ୍ଥିର କରିବେ ।

ଖେଳିଲା ବେଳେ କେତେକ ପିଲା, ବିଶେଷକରି ଛୋଟ ପିଲାମାନେ ସବୁବେଳେ ଜିତିବା ପାଇଁ ଚାହିଁଥାନ୍ତି । ତେଣୁ ଆପଣମାନେ ସେମାନଙ୍କ ସହ ମିଶି ଖେଳନ୍ତୁ ଓ ଜାଣିଜାଣି ହାରନ୍ତୁ । ଖେଳରେ ଜିତିଗଲେ ସେମାନେ ଖୁସିରେ କୁରୁଳି ଉଠିବେ ଓ ସେମାନଙ୍କ ଆନନ୍ଦ ଦେଖି ଆପଣଙ୍କ ଅନ୍ତର ବି କୁରୁଳି ଉଠିବ ।

ବୟସ ବଢ଼ିଚାଲିଲେ କ୍ରମେ ସେମାନେ ଜାଣିନେବେ ଯେ ଖେଳରେ ଜିତିବାଟା ଏକମାତ୍ର ଲକ୍ଷ୍ୟ ନୁହେଁ; ସମସ୍ତେ ଏକାଠି ହେବା କି ଏକାଠି ଖେଳିବାରେ ହିଁ ଆନନ୍ଦ ।

ମଝିରେ ମଝିରେ କୌଣସି ପାରିବାରିକ ବନ୍ଧୁଙ୍କୁ ସପରିବାର ଘରକୁ ନିମନ୍ତ୍ରଣ କରିବେ । ଏପରି କଲେ ଆପଣଙ୍କ ପିଲା ଓ ତାଙ୍କ ପିଲା ଏକାଠି ଖେଳିବା ଓ ଖାଇବାର ସୁଯୋଗ ପାଇବେ । ତେଣୁ ସେମାନଙ୍କଠାରେ ସାମାଜିକତା ଗୁଣର ବିକାଶ ହେବ ।

ବେଳେବେଳେ ପରିବାରରେ ଆୟୋଜନ କରନ୍ତୁ ପାରିବାରିକ ସଭା । ପୁଣି ଏହାକୁ ଆନୁଷ୍ଠାନିକ ସଭା କରିବେ । ସଭାରେ 'ସଭାପତି' ରହିବେ, ରହିବେ 'ସାର୍' ଓ 'ମ୍ୟାଡ଼ାମ୍' । ସଭାପତି ନିର୍ବାଚିତ ହେବେ ପାଳିକରି । ସେହି ସଭାରେ କିଛି ଭଲ କାମ ବିଷୟରେ ପ୍ରସ୍ତାବ ଗ୍ରହଣ କରିବେ । ଠିକ୍ କରିବେ ପରିବାରର ନିୟମ ଓ ପରସ୍ପରର କର୍ତ୍ତବ୍ୟ । ପର ସଭାରେ ଏହାର କାର୍ଯ୍ୟକାରିତା ସମ୍ପର୍କରେ ସମୀକ୍ଷା କରିବେ ଓ ଭୁଲ୍‌ଭଟକା ବିଷୟରେ ଆଲୋଚନା କରିବେ ।

ସୁବିଧା ଦେଖି ଈଶ୍ୱରଙ୍କ ବିଷୟରେ ଆଲୋଚନା କରିବେ । ପୁରାଣ କି ଧର୍ମଗ୍ରନ୍ଥରୁ ଅନୁଚ୍ଛେଦଟିଏ ପଢ଼ି ତା'ର ଅର୍ଥ ବୁଝେଇଦେବେ ପିଲାମାନଙ୍କୁ ।

ସମୟେ ସମୟେ ଅନୁଷ୍ଠିତ କରିବେ ପ୍ରଶ୍ନୋତ୍ତର କି ଅନ୍ତାକ୍ଷର କାର୍ଯ୍ୟକ୍ରମ ।

ସମୟେ ସମୟେ ନିଜ ଜୀବନରେ ଘଟିଥିବା ମଜା ଘଟଣା, ଏପରିକି ଦୁଃଖ ଘଟଣା ସମ୍ପର୍କରେ ସେମାନଙ୍କ ଆଗରେ ବର୍ଣ୍ଣନା କରିବେ ଏବଂ ସେମାନଙ୍କ ସୁଖଦ ଓ ଦୁଃଖଦ ଘଟଣା ବିଷୟରେ ଶୁଣିବେ ମଧ୍ୟ ।

ଯଦି ଆପଣଙ୍କର କାର୍ ଅଛି, ତେବେ କାର୍‌ରେ ପିଲାମାନଙ୍କୁ ବସେଇ ବୁଲେଇ ନେବେ । ଧୀରେ ଧୀରେ ଗାଡ଼ି ଚଳେଇ ସେମାନଙ୍କୁ ପଚାରିବେ – 'ଏବେ ଯେଉଁ କାର୍‌କୁ ଆମେ ଦେଖିବା, ତା'ର ରଙ୍ଗ କଅଣ ହୋଇଥିବ ?' 'ଗୋଟିଏ କିଲୋମିଟର୍ ଭିତରେ ଆମେ କେତୋଟି କାର୍ ଦେଖିବାକୁ ପାଇବା ?' 'ଦେଖିବାକୁ ପାଇଥିବା କାର୍‌ଗୁଡ଼ିକ ମଧ୍ୟରୁ କେତୋଟି 'ଆମ୍ବାସ୍ୟାଡ଼ର୍', କେତୋଟି 'ମାରୁତି', କେତୋଟି 'ସାଣ୍ଟ୍ରୋ' ଇତ୍ୟାଦି ?' ଏ ପ୍ରକାର ଖେଳରେ ପିଲାଏ ଖୁବ୍ ମଜା ପାଇବେ ।

ତେବେ ବୁଝି ଖବରଦାର୍ । କାର୍‌କୁ ଡ୍ରାଇଭର୍ ଚଳାଇବା ଦରକାର ଓ ଆପଣଙ୍କ ଖେଳରେ ତା'ର ଏକାଗ୍ରତା ନଷ୍ଟ ନହେବା ଉଚିତ । ସେ ଅନ୍ୟମନସ୍କ ହୋଇପଡ଼ିଲେ ଦୁର୍ଘଟଣା ଘଟିବାର ଆଶଙ୍କା ବେଶୀ ।

## ପିଲାଏ ବିଛଣାକୁ ଯିବା ସମୟରେ କଅଣ କରିବେ

ସେମାନଙ୍କ ପାଇଁ ସମୟ ଦେବା ନିମନ୍ତେ ବାପମା'ଙ୍କ ହାତରେ ସମୟ ଅଛି କି ନା, ତାହା ପିଲାମାନେ ଭଲ ଭାବରେ ଠଉରେଇ ପାରନ୍ତି । ସେ ଯାହାହେଉ, ରାତିରେ ପିଲା ଶୋଇବାକୁ ଗଲାବେଳେ ତା'ପାଇଁ ନିଶ୍ଚିତ ଭାବରେ ସମୟ ବାହାର କରିବେ ।

ତା' ପାଖରେ ଶୋଇ ତାକୁ ଗପ ପଢ଼ି ଶୁଣେଇବେ, କୌତୁକିଆ କଥା ବା 'ଜୋକ୍' କହିବେ ଏବଂ ସେ ଯାହା କହିବ ତାହା ମନ ଦେଇ ଶୁଣିବେ । ତାକୁ କାଖେଇ କି ପିଠିରେ ଲାଉ କରି ଶୋଇବା ଘରେ ବୁଲେଇବେ । ପୁଅଝିଅମାନେ ବିଛଣାକୁ ଗଲାବେଳେ ସେମାନଙ୍କ ସହ ନିଶ୍ଚୟ ଗପସପ କରିବେ ।

କେଉଁ ପିଲା ଚଞ୍ଚଳ ଶୋଇଯାଏ ତ ଅନ୍ୟ କିଏ ଶୁଏ ଡେରିରେ । ଯିଏ ଡେରିରେ ଶୁଏ, ସେ ଆଉ ଗୋଟିଏ ଗପ ଶୁଣିବା ପାଇଁ ହୁଏତ ଜିଦ୍ କରିପାରେ । ତେବେ ତା'ର ଶୋଇବା ସମୟକୁ ଆଦୌ ବିଳମ୍ବିତ କରିବେନି । ତେଣୁ ପିଲାମାନଙ୍କ ପାଖରେ ଅନ୍ତତଃ ୨୦ ମିନିଟ୍ କି ୩୦ ମିନିଟ୍ ରହିବେ ଓ ଏହି ସମୟକୁ ମାନି ଚଳିବେ । ପିଲାର ଜିଦ୍ ପାଖରେ ମୁଣ୍ଡ ନୁଆଁଇ ୩୦ ମିନିଟ୍‌ରୁ ଅଧିକ ସମୟ ତା' ପାଖରେ ରହିବେ ନାହିଁ ।

ପିଲାମାନଙ୍କ ପାଇଁ ସମୟ ଦେବେ ସତ, କିନ୍ତୁ ତାଙ୍କ ଖିଆଲର ଦାସ ହେବେନି । ସେମାନଙ୍କୁ ମଧ୍ୟ ଧାରଣା ଦେବେ ଯେ ନିଜର ମଧ୍ୟ ଅନେକ କାମଧନ୍ଦା ଅଛି ଓ ସେଥିପ୍ରତି ଆପଣ ମଧ୍ୟ କିଛି ସମୟ ଦେବା ଉଚିତ ।

## ପିଲାମାନଙ୍କ ନିଜ ସମୟ ପ୍ରତି ଧ୍ୟାନ ଦେବେ

ସନ୍ତାନମାନଙ୍କ ପାଇଁ ସମୟ ଦେବେ ବୋଲି ତାଙ୍କ ସହ ଛାଇ ପରି ଲାଗି ରହିଥିବେ ଓ ତାଙ୍କୁ ଏକୁଟିଆ ରହିବାକୁ ଦେବେ ନାହିଁ, ଏପରି ଭାବିନେବା ଠିକ୍ ନୁହେଁ । ଜାଣି ରଖନ୍ତୁ ଯେ ପିଲାମାନେ ନିଜ ସମୟର ମାଲିକ ହେବାକୁ ଭଲ ପାଆନ୍ତି । ଏକୁଟିଆ ରହି ନିଜ ଚିନ୍ତାରେ ନିଜେ ବୁଡ଼ି ରହିବାକୁ ଚାହାନ୍ତି । ତେଣୁ, ଏ' ପ୍ରକାରର ଅଭ୍ୟାସ ଶିଖେଇଦେବେ ସେମାନଙ୍କୁ । ସେମାନେ ବାପମା'ଙ୍କ ବୋଲମାନି ସମୟ ବିତେଇବା ପାଇଁ ଚାହାନ୍ତି ନାହିଁ । କିନ୍ତୁ ସେମାନେ ନିଜ ସମୟକୁ କିପରି ବିନିଯୋଗ କରିବେ, ସେ ସମ୍ବନ୍ଧରେ ସେମାନଙ୍କୁ ଅବଗତ କରେଇବା ବା ବତେଇଦେବା ସ୍ପୃହଣୀୟ ।

ଏକୁଟିଆ ଥିବାବେଳେ ସେମାନେ ଚିତ୍ର ଆଙ୍କିପାରନ୍ତି । ଚିତ୍ରରେ ରଙ୍ଗ ଦେଇପାରନ୍ତି । ଅଟା ଚକଟା ନେଇ କି କାଦୁଅରେ କଣ୍ଢେଇ ତିଆରି କରିପାରନ୍ତି ।

ବଡ଼ କ୍ଷୋଭର ବିଷୟ ଯେ ବହୁ ପିତାମାତା ସେମାନଙ୍କର ସନ୍ତାନମାନଙ୍କ ବିଷୟରେ ଖୁବ୍ କମ୍ ଜାଣନ୍ତି । ସେମାନେ କେଉଁ ପ୍ରକାରର ଉପହାରକୁ ପସନ୍ଦ କରନ୍ତି, କେଉଁଥିରେ ସେମାନଙ୍କର ବେଶୀ ଆଗ୍ରହ, କଅଣ ସେମାନଙ୍କର ରୁଚି, ଏପରିକି ସେମାନଙ୍କର ମେଧା ସାମର୍ଥ୍ୟ କେତେ – ଏହିସବୁ ବିଷୟରେ ଅନେକ ପିତାମାତା ଅଜ୍ଞ ।

ଅଧିକାଂଶ ପରିବାରରେ ତ ପିଲାମାନଙ୍କଠାରେ ଡାକଟିକେଟ ସଂଗ୍ରହ, ମୁଦ୍ରା ସଂଗ୍ରହ, ପତାକା ସଂଗ୍ରହ ଭଳି ରୁଚି ଜାଗ୍ରତ କରେଇବା ପ୍ରତି ଧ୍ୟାନ ଦିଆଯାଏ ନାହିଁ କି ସେମାନଙ୍କୁ ଉତ୍ସାହିତ କରାଯାଏ ନାହିଁ । କିନ୍ତୁ ଜାଣିରଖିବା ଉଚିତ ଯେ ଜୀବନ ଓ ଜୀବନର ବିକାଶରେ ରୁଚି ଗ୍ରହଣ କରିଥାଏ ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା । ତେଣୁ ସନ୍ତାନମାନଙ୍କଠାରେ ରୁଚି ଜାଗ୍ରତ କରେଇବା ଓ ରୁଚିକୁ ପ୍ରୋତ୍ସାହନ ଦେବା ନିମନ୍ତେ ପିତାମାତା ସମୟ ଓ ଅର୍ଥ ଖଟେଇବାର ଅନୁକୂଳ ପ୍ରଭାବ ସୁଦୂରପ୍ରସାରୀ । ବାଲିଗରଡା ଓ ଶାମୁକା ସଂଗ୍ରହ କରିବାରେ ବିଶେଷ ଟଙ୍କା ଖର୍ଚ୍ଚ କରିବାକୁ ପଡ଼େ ନାହିଁ । ବଜାରକୁ ଯାଇ ବିଭିନ୍ନ ପ୍ରକାରର ବାଇଗଣ, ମୂଳା, କଲରା ଆଦି କିଣିଲେ ସେମାନେ ବିଭିନ୍ନତା ସମ୍ପର୍କରେ ଧାରଣା ଅର୍ଜନ କରିବାର ସୁଯୋଗ ପାଇଥାନ୍ତି । ମଟର, ବୁଟ, କଖାରୁ, ଭେଣ୍ଡି, ବାଇଗଣ ଇତ୍ୟାଦିର ମଞ୍ଜି ଲଗେଇ ଗଜା ଅବସ୍ଥାରୁ ଉଦ୍ଭିଦର କ୍ରମବିକାଶ ସମ୍ବନ୍ଧରେ ମଧ୍ୟ ସେମାନଙ୍କୁ ଧାରଣା ଦେଇହେବ । ଏ ପ୍ରକାରର ପ୍ରକୃତି ପର୍ଯ୍ୟବେକ୍ଷଣ ସେମାନଙ୍କଠାରେ ଯଥେଷ୍ଟ କୌତୂହଳ ସୃଷ୍ଟି କରିଥାଏ । ନିଜ ବାସଗୃହ ବା ସାହି ପାଖରେ ଥିବା ବିଭିନ୍ନ ଗଛଗୁଡିକୁ ମଧ୍ୟ ସେମାନଙ୍କୁ ଚିହ୍ନେଇ ଦେବେ । ସେମାନଙ୍କ ପାଇଁ ବାଡିରୁ ଛୋଟ ପଟାଳିଟିଏ ଦେଇ ସେଠାରେ ବଗିଚା କରିବା ନିମନ୍ତେ ଉତ୍ସାହିତ କରିବେ ଓ ଏହି କାମରେ ସେମାନଙ୍କୁ ନିଜର ସହଯୋଗ ଦେବେ ମଧ୍ୟ । କେହି କେହି ସମ୍ବାଦପତ୍ର ଓ ପତ୍ରପତ୍ରିକାରୁ ଆକର୍ଷଣୀୟ ଲେଖା ସଂଗ୍ରହ କରି ସାଇତି ପାରନ୍ତି ।

## ଛୁଟିଦିନ ଓ ପର୍ବପର୍ବାଣିରେ ସମୟ ବିନିଯୋଗ

ମନେ ରଖିବେ ଯେ ପିଲାମାନେ ମଧ୍ୟ ସାମାଜିକ ପ୍ରାଣୀ । ଅନ୍ୟମାନଙ୍କ ସହ ମିଶିବା, ସେମାନଙ୍କ ସହ ସମ୍ପର୍କ ରଖିବା ଓ ସେମାନଙ୍କ ଭଲ ମନ୍ଦରେ ଭାଗୀଦାର ହୋଇ ସେମାନଙ୍କୁ ସାହାଯ୍ୟ କରିବାରେ ସେମାନେ ଆନନ୍ଦ ପାଇଥାନ୍ତି । ତେଣୁ ସେମାନଙ୍କୁ ଅନ୍ୟ ପିଲାଙ୍କ ସହ ମିଶିବାର ସୁଯୋଗ ଦେବେ । ଅନ୍ୟ ପିଲାମାନଙ୍କ ସହ ଖେଳିବା, ବୁଲିବା ଓ

ଏକାଠି ବଜାରକୁ ଯିବା ପାଇଁ ସେମାନଙ୍କୁ ମନା କରିବେନି । ଏପରିକି ମଝିରେ ମଝିରେ ଘରେ ଭୋଜିଭାତର ଆୟୋଜନ କରି ସେହି ପିଲାମାନଙ୍କୁ ଖାଇବା ନିମନ୍ତେ ନିମନ୍ତ୍ରଣ କରିବେ । ଏଥିରେ ନିଜ ଚାକର ଓ ଚାକରାଣୀଙ୍କ ପିଲାମାନଙ୍କୁ ମଧ୍ୟ ସାମିଲ କରିବେ । ପିଲାମାନଙ୍କଠାରେ ଧନୀଗରିବ, ଉଚ୍ଚନୀଚର ପାର୍ଥକ୍ୟ ନଥାଏ । ଏହି ମନୋଭାବ ଯେପରି ସାରାଜୀବନ ଅକ୍ଷୁଣ୍ଣ ରହେ, ନିଜ ସନ୍ତାନମାନଙ୍କୁ ସେହିପରି ଶିକ୍ଷା ପ୍ରଦାନ କରିବେ ।

ପରିବାରରେ ସଦସ୍ୟମାନଙ୍କର ଜନ୍ମଦିନ, ବିବାହ ବାର୍ଷିକୀ ଆଦି ପାଳନ କଲେ ପିଲାମାନେ ବନ୍ଧୁବାନ୍ଧବମାନଙ୍କ ସହ ପରିଚିତ ହେବାର ସୁଯୋଗ ପାଆନ୍ତି । ବିଭିନ୍ନ ପର୍ବପର୍ବାଣି ପାଳନ କରିବା ଦ୍ୱାରା ସେମାନେ ପରିଚିତ ହୁଅନ୍ତି ନିଜ ସଂସ୍କୃତି ବିଷୟରେ । ବିବାହ, ବ୍ରତ ଆଦି ଉତ୍ସବାନୁଷ୍ଠାନକୁ ସେମାନଙ୍କୁ ସାଥିରେ ନେଇ ଗଲେ ସେମାନଙ୍କର ଅନୁଭୂତି ପ୍ରସାରିତ ହେବାର ସୁଯୋଗ ମିଳେ ।

ଛୁଟିଦିନମାନଙ୍କରେ ସେମାନଙ୍କୁ ମନ୍ଦିର, ଗିର୍ଜା କି ମସ୍‌ଜିଦ୍ ଭଳି ଉପାସନା ପୀଠକୁ ବୁଲେଇ ନେବା, ପ୍ରାଣୀ ଉଦ୍ୟାନ କି ସଂଗ୍ରହାଳୟକୁ ପରିଦର୍ଶନ ପାଇଁ ନେବା ଏବଂ ବିଭିନ୍ନ ସଭାସମିତିରେ ଯୋଗ ଦେବା ପାଇଁ ନେବା ଦ୍ୱାରା ସେମାନଙ୍କର ଜ୍ଞାନର ପରିସୀମା ବୃଦ୍ଧିପାଏ । ଏହା ମନୋରଞ୍ଜନ ପାଇଁ ସୁଯୋଗ ସୃଷ୍ଟି କରି ମାନସିକ ଚାପ ମଧ୍ୟ ଲାଘବ କରେ ।

ମନେରଖିଥିବେ ଯେ ସନ୍ତାନମାନେ ବଡ ହୋଇ ଘର ଛାଡିଲାବେଳକୁ ଆପଣ ସେମାନଙ୍କୁ ମଣିଷ ଭଳି ମଣିଷକରି ଗଢି ଦେଇଥିବେ । ଶିକ୍ଷା ଦେଇଥିବେ ନୈତିକତା ଓ ମୂଲ୍ୟବୋଧ ସମ୍ପର୍କରେ । ସେମାନେ ଯେଉଁଠି ରହିଥାନ୍ତୁ ପଛେ ପରିବାରର ସେହି ଶହ ଶହ ମଧୁର ସ୍ମୃତିକୁ ଯେପରି ସାଇତି ରଖିଥିବେ ଓ ମନେ ପକେଇ ଉଲ୍ଲସିତ ହେଉଥିବେ । ଏହା ଯେ ସେମାନଙ୍କ ଜୀବନ ଯାତ୍ରା ପାଇଁ ଏକ ଅମୂଲ୍ୟ ପାଥେୟ, ଏହା ନିଃସନ୍ଦେହ ।

କିନ୍ତୁ ସେମାନଙ୍କ ଶୈଶବରେ ଆପଣ ସେମାନଙ୍କ ପାଇଁ ସମୟ ଭଳି ମହାର୍ଘ ପୁଞ୍ଜି ଖଟେଇଥିଲେ ସିନା ସେମାନେ ଉପରୋକ୍ତ ପ୍ରକାରେ ଲାଭ ଉଠେଇବା ନିମନ୍ତେ ସମର୍ଥ ହୋଇପାରିବେ !



# ଗପସପ କର, ଗପସପ କର

**"ପିଲାମାନଙ୍କ ଜୀବନର ପ୍ରଥମ ଭାଗରେ ବାପମା'ମାନେ ସେମାନଙ୍କୁ ଚାଲିବା ଶିଖାନ୍ତି, କଥା କହିବା ଶିଖାନ୍ତି, କିନ୍ତୁ ସେମାନଙ୍କ ଶୈଶବର ଅବଶିଷ୍ଟ ସମୟରେ ସେମାନଙ୍କୁ ବାଧ୍ୟ କରନ୍ତି ବସି ରହିବା ପାଇଁ ଓ ଚୁପ୍ ରହିବା ପାଇଁ !"**

**ପ୍ର : ସନ୍ତାନମାନଙ୍କ ସହ ଗପସପ କରିବା ଉପରେ ଏବେ ବେଶ୍ ଗୁରୁତ୍ୱ ଦିଆଯାଉଥିବାର ଆମେ ପଢ଼ିବାକୁ ପାଉଛୁ । ଏ' ବିଷୟରେ କିଛି ଆଲୋକପାତ କରିବା ନିମନ୍ତେ ଅନୁରୋଧ ।**

ଉ : ବହି, ଟେପ୍, କମ୍ପ୍ୟୁଟର ଗେମ୍ ଓ ଅନ୍ୟାନ୍ୟ ଶିକ୍ଷଣ ସାମଗ୍ରୀ ଉପରେ ବିଶେଷ ଗୁରୁତ୍ୱ ଦିଅନ୍ତୁ ନାହିଁ । ଏଥିପାଇଁ ତ କେତେ ନା କେତେ ଖର୍ଚ୍ଚ କରିବାକୁ ପଡ଼ିଥାଏ । କିନ୍ତୁ ବିନା ଖର୍ଚ୍ଚରେ ପୁଅଝିଅଙ୍କ ମାନସିକ, ସାମାଜିକ, ଶାରୀରିକ ଓ ଆଧ୍ୟାତ୍ମିକ ବିକାଶ ପାଇଁ ସେମାନଙ୍କ ସାଙ୍ଗରେ ଗପସପ ହୁଅନ୍ତୁ । ସେମାନଙ୍କୁ ଗପ କହନ୍ତୁ, ଗୀତ ଗାଇ ଶୁଣାନ୍ତୁ, ହସନ୍ତୁ, ହସାନ୍ତୁ ଓ କଥାବାର୍ତ୍ତା ମାଧ୍ୟମରେ ସେମାନଙ୍କ ସହ ଭାବର ଆଦାନ ପ୍ରଦାନ କରନ୍ତୁ ।

ଛୋଟ ପିଲାମାନେ ସ୍କୁଲ୍‌କୁ ଯିବାର ବୟସରେ ପହଞ୍ଚିଲେ ସେମାନଙ୍କ ମଧ୍ୟରୁ କେତେକ ଭଲ କଥା କହିପାରୁଥିଲେ ମଧ୍ୟ ଅନ୍ୟ କେତେକଙ୍କ ପାଟିରୁ ବଚନ ବାହାରେ ନାହିଁ । ଯେଉଁମାନେ ଡଗଡଗ ହୋଇ କହି ଚାଲନ୍ତି, ଚୁପ୍‌ଚାପିଆ ପିଲାଙ୍କ ତୁଳନାରେ ସେମାନେ ଅଧିକ ସମର୍ଥ ଓ ପାରିବାର ବୋଲି ଧରିନିଅନ୍ତି ଶିକ୍ଷକଶିକ୍ଷିକାମାନେ । କମ୍ କଥା କହୁଥିବା ପିଲା ସେମାନଙ୍କ ବିଚାରରେ ନିକମା । ଅନେକ ପିତାମାତା ଅଛନ୍ତି, ଯେଉଁମାନେ ନିଜ ପିଲାମାନଙ୍କ ସହ ସବୁବେଳେ ଗପସପରେ ମାତିଥାନ୍ତି । କିନ୍ତୁ ଏପରି ମଧ୍ୟ ପିତାମାତା ଅଛନ୍ତି, ଯେଉଁମାନେ ନିଜ ପିଲାମାନଙ୍କ ସାଙ୍ଗରେ ବିଶେଷ ଗପସପ

କରନ୍ତି ନାହିଁ । ବାପମା'ମାନେ ପୁଅଝିଅଙ୍କ ସହ ଗପସପ କଲେ ହିଁ ପିଲାମାନେ ଗପସପ କରିବା ଶିଖନ୍ତି ଓ ସେମାନଙ୍କଠାରେ ଭାଷା ସାମର୍ଥ୍ୟ ତଥା ଭାବ ଆଦାନପ୍ରଦାନର କଳାରେ ବିକାଶ ଘଟିଥାଏ ।

କିନ୍ତୁ ସନ୍ତାନ ସହ ଗପସପ ଆରମ୍ଭ କରିବା ପାଇଁ ପ୍ରକୃଷ୍ଟ ସମୟ କଅଣ ? ଏବେ ଶରୀର ବିଜ୍ଞାନୀ, ମନୋବିଜ୍ଞାନୀ ଓ ସମାଜ ବିଜ୍ଞାନୀମାନେ କହିଲେଣି ଯେ ସନ୍ତାନଟି ମା' ଗର୍ଭରେ ଥିବାବେଳେ ତାହା ସହ କଥାବାର୍ତ୍ତା କରିବା ଓ ତାକୁ ଗୀତ ଗାଇ ଶୁଣେଇବା ଆରମ୍ଭ କରିଦେବା ଉଚିତ । ବାପମା' ଉଭୟ ଏଥିରେ ଅଂଶଗ୍ରହଣ କରିବେ । ଗର୍ଭାଶୟରେ ଥିବା ସନ୍ତାନଟି ଆପଣଙ୍କ କଥା ଶୁଣି ପ୍ରତ୍ୟୁତ୍ତର ନଦେଇପାରେ । କିନ୍ତୁ ଆପଣ ଦୁହେଁ ଏଥିରୁ ବିରତ ହେବା ଠିକ୍ ନୁହେଁ । କେହି କେହି ଦାବି କରିଛନ୍ତି ଯେ ଆପଣଙ୍କ କଣ୍ଠସ୍ୱର ଶୁଣି ସେ ତାକୁ ମନେ ରଖିପାରେ । ବିଭିନ୍ନ ଶବ୍ଦ ଜରିଆରେ ତା'ର ଉତ୍ତର ଦେଇପାରେ ଓ ଜନ୍ମ ହେଲା ପରେ ମନେ ପକେଇପାରେ ମଧ୍ୟ । ଏପରି କରିବା ଫଳରେ ଗର୍ଭସ୍ଥ ସନ୍ତାନ ଓ ପିତାମାତାଙ୍କ ଭିତରେ କୁଆଡ଼େ ସ୍ଥାପିତ ହୋଇଯାଏ ଏକ ବିଶ୍ୱାସର ସେତୁ ।

ପିଲାଟି ଚାଲିଶିଖି ଏପଟ ସେପଟ ବୁଲିବା ବେଳେ ତା'ଠାରେ ଜାତ ହୁଏ ଆତ୍ମ-ସମ୍ମାନବୋଧ । ନିଜ ସାମର୍ଥ୍ୟ ଉପରେ ସେ ଆସ୍ଥା ପ୍ରକଟ କରେ । କିନ୍ତୁ 'ନା', 'ନା', 'ନା', 'ଏହା କରନା', 'ତାହା କରନା', 'ସେଥିରେ ହାତ ମାରନା' – ସମସ୍ତେ ଏହିପରି ଭାବରେ 'ନା', 'ନା' କହିଚାଲିଲେ ତା'ର ସାମର୍ଥ୍ୟକୁ ସେ ସନ୍ଦେହ କରିବା ପାଇଁ ଶିଖିଥାଏ ।

ଆପଣଙ୍କୁ ହୁଏତ ଆଶ୍ଚର୍ଯ୍ୟ ଲାଗୁଥିବ ଯେ ଟିକି ପିଲାଟି ସାଙ୍ଗରେ ଆପଣ କ'ଣ ଅବା କଥାବାର୍ତ୍ତା ହେବେ । କଥାବାର୍ତ୍ତା ହେବାର ପ୍ରସଙ୍ଗ କଅଣ ? କିନ୍ତୁ ସେ ଆପଣଙ୍କ ପାଖରେ ଥିଲେ, ଆପଣ କ'ଣ କରୁଛନ୍ତି ତାକୁ କହନ୍ତୁ । 'ପରିବା କାଟୁଛି', 'ଅଟା ଦଳୁଛି', 'ଆଳୁ ସିଝାଉଛି', 'ଲୁଗା ସଫା କରୁଛି' ଇତ୍ୟାଦି ଆପଣଙ୍କ ପ୍ରତ୍ୟେକ କାମ ବିଷୟରେ ତାକୁ ଅବଗତ କରେଇ ଚାଲିଲେ ତ ଆପଣଙ୍କ ପାଇଁ ପ୍ରସଙ୍ଗର ଅଭାବ ହେବନାହିଁ । ଘରକୁ କେହି ଅତିଥି ଆସିଲେ ଅତିଥିଙ୍କ ପରିଚୟ ସମ୍ବନ୍ଧରେ ପିଲାକୁ ଜଣାନ୍ତୁ, ତାକୁ ସାଙ୍ଗରେ ନେଇ ବଜାରକୁ ଯାଇଥିଲେ.ବଜାରରେ ଯାହା ଯାହା କରୁଛନ୍ତି କହନ୍ତୁ, ତାକୁ ସାଙ୍ଗରେ ନ ନେଇଥିଲେ ବଜାରର ସେଦିନର ଅନୁଭୂତି ସମ୍ପର୍କରେ ବଖାଣି ବସନ୍ତୁ ତା'

ଆଗରେ । ଏହି ପ୍ରକାରେ କେତେ ନା କେତେ ନୂଆ ଶବ୍ଦ, ପୁଣି ଆମ ନିତିଦିନିଆ ବ୍ୟବହାରରେ ଲାଗୁଥିବା ମାମୁଲି ଶବ୍ଦମାନ ତା' କାନରେ ପଡ଼ିବ ଓ ସେଗୁଡ଼ିକ ତା' ମସ୍ତିଷ୍କରେ ସଞ୍ଚିତ ହୋଇ ଚାଲିଥିବ । ଆପଣ ନ ଚିହ୍ନେଇଲେ ସେ ନାକ, କାନ, ଆଖି, ମୁଣ୍ଡ, ହାତ, ଗୋଡ଼, ପେଟ, ପିଠି ଇତ୍ୟାଦି ଚିହ୍ନିବ କିପରି ? ଏହି ଚିହ୍ନେଇବା ପ୍ରକ୍ରିୟାରେ ତ ସେ ଏହିସବୁ ଶବ୍ଦ ଓ ଆପଣଙ୍କ ବାକ୍ୟରେ ବ୍ୟବହୃତ ହୋଇଥିବା ଅନ୍ୟ ଶବ୍ଦଗୁଡ଼ିକ ସହ ପରିଚିତ ହୋଇଯିବ । ସନ୍ତାନ ସହ ଯେତେ ବେଶୀ ଗପସପ କରିବେ, ତା'ର ବିକାଶ ସେତେ ବେଶୀ ସୁଗମ ହୋଇଯିବ ଓ ତା' ସହ ଆପଣଙ୍କ ବନ୍ଧନ ସେତେବେଶୀ ସୁଦୃଢ଼ ହେଉଥିବ ।

କଥାବାର୍ତ୍ତା ତ ଏକପାଖିଆ ହୁଏନି । ତେଣୁ ପିଲାଟି ତା'ର ଦରୋଟି ଭାଷାରେ ଯାହା କହେ, ଆପଣ ସେହି ଶବ୍ଦ କି ଖଣ୍ଡବାକ୍ୟକୁ ତା'ର ଉଚ୍ଚାରଣ ଭଙ୍ଗୀରେ ଦୋହରାନ୍ତୁ । ସେ କୌଣସି ସୂଚନା ଦେଲେ, ସୂଚନାର ଅର୍ଥ ବାରି ଆପଣ ତା'ର ଯଥାର୍ଥ ଉତ୍ତର ଦିଅନ୍ତୁ । ସେ ଯଦି ପଚାରେ 'ବାବା ?' କହନ୍ତୁ, "ବାବା ଅଫିସ୍ ଯାଇଛନ୍ତି । ସେ ସଞ୍ଜବେଳକୁ ଫେରିବେ । ତୋ' ପାଇଁ ଖେଳନା ଆଣିବେ ....." ଇତ୍ୟାଦି । ଏହା ଫଳରେ କଥାବାର୍ତ୍ତା ହେଲା ଓ ସେ ବୁଝୁ କି ନବୁଝୁ, ତାକୁ କିଛି ଖବର ଦିଆଯାଇପାରିଲା ।

ପିଲା ଝାଡ଼ା ପରିସ୍ରା କରି ପକେଇଲେ ଏଥିରେ କୌଣସି ପ୍ରତିକ୍ରିୟା ପ୍ରକାଶ କରନ୍ତୁନି କି ଗୁରୁତ୍ୱ ଦିଅନ୍ତୁନି । ଏଥିପାଇଁ ନିଜର ବିରକ୍ତି ପ୍ରକାଶ ନକଲେ ପିଲାଟି ଲଜ୍ଜିତ ହେବାର ସମ୍ଭାବନା ଉପୁଜେ ନାହିଁ । ଏହା ତା'ର ପରବର୍ତ୍ତୀ ଜୀବନରେ ଯଥେଷ୍ଟ ସହାୟକ ହୋଇଥାଏ ।

ଅତି ପିଲାବେଳୁ ପିଲାମାନଙ୍କଠାରେ ସାମାଜିକ ଆଚରଣର ବିକାଶ ଘଟେ । ତେଣୁ ସେ ଅନ୍ୟମାନଙ୍କୁ ଦେଖି ମୁରୁକିହସା ଦିଏ ଓ ନିଜ ପ୍ରତି ସେମାନଙ୍କୁ ଆକୃଷ୍ଟ କରେ । ଆଉ ଟିକିଏ ବଡ଼ ହୋଇଗଲେ ଅନ୍ୟ ପିଲା ଓ ବୟସ୍କ ବ୍ୟକ୍ତିଙ୍କ ସହ ଖେଳିବାକୁ ଭଲପାଏ । ବାପା କି ମା' କାମରୁ ଫେରିଲେ ସେମାନଙ୍କୁ ଦେଖି ଖୁସି ହୁଏ । ଚାରିପାଞ୍ଚ ବର୍ଷର ହୋଇଗଲେ ତ ସେ ଖେଳସାଥୀମାନଙ୍କୁ ଛାଡ଼ିବା ପାଇଁ ରାଜି ହୁଏନି ।

ବାପମା' ଦୁହେଁ ଗପସପ ହେଉଥିବା ବେଳେ ଶିଶୁ ସନ୍ତାନକୁ ପାଖରେ ବସେଇ ତା' ସହ ମଧ୍ୟ ଗପସପ ହେବା ଉଚିତ । ମନରୁ ପାଞ୍ଚି ଗପସପ ଆରମ୍ଭ କରିବା ଆବଶ୍ୟକ । ସେଦିନର ଘଟଣାବଳୀ ସମ୍ପର୍କରେ ସେ ବୁଝିବା ଭାଷାରେ ଆପଣ କହିପାରନ୍ତି ।

ତେବେ ପିଲାମାନଙ୍କ ସହ ଭାବର ଆଦାନପ୍ରଦାନରେ କେବଳ ମା' ହିଁ ପ୍ରମୁଖ ଭୂମିକା ଗ୍ରହଣ କରିବା ଉଚିତ ନୁହେଁ । ଯେଉଁ ବାପମାନେ ପିଲାକୁ ଗାଧୋଇ ଦିଅନ୍ତି, ଖୁଆଇ ଦିଅନ୍ତି, ପୋଷାକପତ୍ର ପିନ୍ଧେଇ ଦିଅନ୍ତି, ତା'ସହ ଖେଳନ୍ତି, ତାକୁ ଗପ କହନ୍ତି, ଗୀତ ଶୁଣାନ୍ତି, ତା' ସହ ମିଶି ବାସନକୁସନ ଧୁଅନ୍ତି, ବଗିଚା କାମ କରନ୍ତି, ବାହାରକୁ ବୁଲେଇ ନିଅନ୍ତି – ସେହି ବାପାମାନଙ୍କ ସହିତ ପିଲା ଅଧିକ ଅନ୍ତରଙ୍ଗ ହୋଇଉଠେ ।

ହଁ, ଆମ ବାପମା'ଙ୍କର ଅନ୍ୟ ଏକ ଚିରାଚରିତ ଅଭ୍ୟାସ କଥା ବିଚାର କରନ୍ତୁ । ପିଲାମାନଙ୍କର ଦୋଷ ଦେଖିବା ଓ ଦୋଷ ଦର୍ଶେଇବା ବହୁ ବାପମା'ଙ୍କର ଅଭ୍ୟାସ । 'ଏହା କରିବା ଉଚିତ ନୁହେଁ', 'ତାହା କରନା', 'ଆଉ ଦିନେ ଏପରି କରିବୁନି' ଭଳି କହି ପିଲାର ଦୋଷ ବାହାର କରିଚାଲିଲେ, ତା' ମୁହଁର ଭାଷା ଆପେ ଆପେ ମରିଯିବ । କଥାବାର୍ତ୍ତା ନକରି ସେ କ୍ରମେ ନିରବ ହୋଇଆସିବ । ତା'ଠାରେ ପ୍ରକାଶ ପାଇବ ଚିଡ଼ିଚିଡ଼ା ଭାବ । ବଦଳିଯିବ ତା'ର ଆଚରଣ । ସ୍ୱାଭାବିକ ଖାଦ୍ୟ ପ୍ରତି ଆଗ୍ରହୀ ନହୋଇ ଅସ୍ୱାଭାବିକ ଖାଦ୍ୟ ଖାଇବା ନିମନ୍ତେ ସେ ଜିଦ୍ ଧରିବ । ତା' ନିଜ ପସନ୍ଦରେ ପୋଷାକପତ୍ର ପିନ୍ଧିବ । ତା' ନିଜ ଇଚ୍ଛାରେ ଯେତେବେଳେ ନାହିଁ ସେତେବେଳେ ଟେଲିଭିଜନ୍ ଦେଖିବ । ପାଠ ପଢ଼ିବାରେ ଆଗ୍ରହ ଦେଖେଇବନି । କ୍ଲାସ୍‌ରେ ପ୍ରଥମେ ଭଲ ନମ୍ବର ରଖୁଥିଲେ ମଧ୍ୟ କ୍ରମେ ଖରାପ କରି ଚାଲିବ । ନିୟମିତ ସ୍କୁଲ୍ ଯିବନି ।

ପୁଣି ପାଠପଢ଼ା ପ୍ରସଙ୍ଗ କି ଅନ୍ୟ ପ୍ରସଙ୍ଗରେ ଅନ୍ୟ ପିଲାଙ୍କ ସହ ତାକୁ ତୁଳନା କଲେ, ଏହାର ପରିଣାମ ଶୁଭଙ୍କର ହୁଏନି । 'ତୋ ଶ୍ରେଣୀର କମଳା ଖୁବ୍ ଭଲ ପଢୁଛି, ଭଲ ଆଙ୍କୁଛି; 'ରମା ଖେଳରେ ଯେମିତି, ପଢ଼ାରେ ସେମିତି, ଦେଖ୍, କ୍ଲାସ୍‌ପଢ଼ା ନସାରି ସେ ଚେୟାର ଉପରୁ ବି ଉଠିବନି'; 'ଦେଖୁନୁ ତୋ' ବଡ଼ ଭଉଣୀକୁ, ତାକୁ ଦେଖି ତା'ରି ଭଳି ହେବା ପାଇଁ ତୁ ଚେଷ୍ଟା କରୁନୁ କାହିଁକି' – ଏହି ପ୍ରକାରର ନକାରାତ୍ମକ ତୁଳନା ସନ୍ତାନର ଯେ ଅଶେଷ କ୍ଷତି କରିଥାଏ, ସେ ସମ୍ପର୍କରେ ପ୍ରତ୍ୟେକ ପିତାମାତା ସଚେତନ ରହିବା ଉଚିତ ।

କିନ୍ତୁ ପ୍ରତିକୂଳ ଆଚରଣ ଦେଖାଉଥିବା ଉକ୍ତ ସନ୍ତାନ ସହ ସକାରାତ୍ମକ କଥୋପକଥନ କଲେ, ତାକୁ ଭରସା, ଆଶ୍ୱାସନା ଦେଲେ, ତାକୁ ପ୍ରଶଂସା କରି ଚାଲିଲେ, ତାକୁ ସ୍ନେହଶ୍ରଦ୍ଧା ଦେଖେଇଲେ, ତାକୁ ଖୁବ୍ ଭଲ ପାଉଛନ୍ତି ବୋଲି ତା'ର ହୃଦ୍‌ବୋଧ

କରେଇପାରିଲେ, ତା'ର ଦୋଷତ୍ରୁଟିଗୁଡ଼ିକ ପ୍ରତି ଆଦୌ ଗୁରୁତ୍ୱ ନଦେଲେ ଓ ତା'ର ରୁଚି ପ୍ରତି ପ୍ରୋତ୍ସାହନ ଦେଲେ ସେହି ପିଲା ଯେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇ ଅନୁକୂଳ ବ୍ୟବହାର ଦେଖେଇବ, ଏହା ନିଃସନ୍ଦେହ ।

ସନ୍ତାନଟିକୁ ଅଧିକାଂଶ ସମୟରେ ନିଜ ସାନ୍ନିଧ୍ୟରେ ରଖିବା, ତାକୁ ଗପ ଶୁଣେଇବା, ବାହାରକୁ ବୁଲେଇ ନେବା, ବିଭିନ୍ନ ସାମାଜିକ ମିଳନକୁ ସାଙ୍ଗରେ ନେବା ଓ କଥାବାର୍ତ୍ତାରେ ତାକୁ ମସ୍‌ଗୁଲ୍ କରି ରଖିବାର ଅନୁକୂଳ ପ୍ରଭାବ ସୁଦୂରପ୍ରସାରୀ ।

ଆଉ ଗୋଟିଏ ଦିଗ ଦେଖନ୍ତୁ । ପିଲାମାନଙ୍କୁ କଅଁଳେଇ କହି କାମ ହାସଲ କରିବା ବହୁ ବାପମା'ଙ୍କୁ ଜଣାନାହିଁ । କୌଣସି କାମଟିଏ କରିବା ପାଇଁ କହିବାର ଥିଲେ, ତାକୁ ସିଧାସଳଖ ଛୋଟିଆ ବାକ୍ୟଟିରେ ନକହି ଏକ ଛୋଟ ବକ୍ତୃତାଟିଏ ଦେବା ଅନେକଙ୍କର ଅଭ୍ୟାସ । ଆପଣଙ୍କର କୌଣସି ପରାମର୍ଶ କି ନିର୍ଦ୍ଦେଶକୁ ପିଲା କାର୍ଯ୍ୟକାରୀ ନ କରିଥିଲେ ଏଥିପାଇଁ ପୁଣି ପାଞ୍ଚ-ଦଶମିନିଟିଆ ଶ୍ଳେଷାତ୍ମକ ଭାଷଣଟିଏ ଦେବାର ପରିଣାମ ଆଦୌ ହିତକର ହୋଇନଥାଏ । ବରଂ ଏପରି ଅଭିଯୋଗ ନ ବାଢ଼ି କାମଟି କରିବାରେ ତାକୁ ସହଯୋଗ କଲେ, ନିଜର ଆଚରଣରେ ଧୈର୍ଯ୍ୟ ଓ ଶାନ୍ତଭାବ ଅବଲମ୍ବନ କଲେ ସନ୍ତାନର ସହଯୋଗ ପାଇବାରେ ଆଦୌ ସମସ୍ୟା ଉପୁଜେ ନାହିଁ । ଯେଉଁ ବାପମା' ସନ୍ତାନ ସହ ବାକ୍‌ଯୁଦ୍ଧ ଚଳାନ୍ତି, ସେହି ଯୁଦ୍ଧ ତ କେବେ ସରେନି । ତାହାଛଡ଼ା ଏଥିରେ ବାପମା'ଙ୍କର କି ସନ୍ତାନର – କାହାର ହେଲେ ବି ମଙ୍ଗଳ ହୁଏନାହିଁ ।

ପିତାମାତା ଓ ସନ୍ତାନମାନଙ୍କ ପ୍ରତ୍ୟେକ କଥୋପକଥନରେ ସନ୍ତାନମାନେ ସକ୍ରିୟ ବକ୍ତା ଓ ପିତାମାତା ସକ୍ରିୟ ଶ୍ରୋତା ହେବା ହିଁ ସ୍ପୃହଣୀୟ । ସନ୍ତାନର ପ୍ରତ୍ୟେକ ବାକ୍ୟକୁ ସେମାନେ ଆନ୍ତରିକତାର ସହ ମନ ଦେଇ ଶୁଣିବା ଓ ଅଳ୍ପ କଥାରେ ଉତ୍ତର ଦେଇ ସନ୍ତାନକୁ କହିବା ନିମନ୍ତେ ଉତ୍ସାହିତ କରିବା ଦ୍ୱାରା ହିଁ କଥୋପକଥନ ତଥା ଭାବ ବିନିମୟ ସଫଳ ହୋଇଥାଏ । ଏହା ନକରି ସନ୍ତାନକୁ ନିରବ ତଥା ନିଷ୍କ୍ରିୟ ଶ୍ରୋତା ଭୂମିକାରେ ରଖି ପିତାମାତା ଅନର୍ଗଳ ଗପି ଚାଲିଲେ ସନ୍ତାନ ଉପରେ ଏହାର ପ୍ରଭାବ ଅନୁକୂଳ ହୁଏନାହିଁ ।

ମନେରଖିବେ ଯେ ସନ୍ତାନମାନଙ୍କ ପ୍ରସଙ୍ଗରେ ପିତା ଓ ମାତା ପ୍ରତ୍ୟେକେ ଜଣେ ଜଣେ ସୁପରିଚାଳକ ହେବା ବାଞ୍ଛନୀୟ । ଯୁକ୍ତି, ବିରକ୍ତି, ଅସ୍ୱସ୍ତି, କ୍ରୋଧ, ବ୍ୟଙ୍ଗାତ୍ମକ ସମାଲୋଚନା ଆଦି ସୁପରିଚାଳନାର ପରିପନ୍ଥୀ । ପିଲାମାନଙ୍କୁ ବୁଝେଇ ସୁଝେଇ ଉଦ୍ଦିଷ୍ଟ

ଲକ୍ଷ୍ୟ ହାସଲ କରିନେବାରେ ହିଁ ସୁପରିଚାଳନାର ସାର୍ଥକତା । ଉଦାହରଣ ସ୍ୱରୂପ, ନିଜର ଆର୍ଥିକ ଦୁରବସ୍ଥା ସମ୍ବନ୍ଧରେ ପିଲାମାନଙ୍କୁ ବିଶ୍ୱାସକୁ ନେଇ ବୁଝେଇ ପାରିଲେ ଅଯଥା ବ୍ୟୟ କରିବା ନିମନ୍ତେ ସେମାନେ ଆଦୌ ବାଧ କରିବେ ନାହିଁ । 'ଟେଲିଭିଜନ୍ ଦେଖ୍ ନା' ବୋଲି ଘୋଷି ଚାଲିଲେ ଏହା ପିଲାଙ୍କୁ ବିଦ୍ରୋହୀ କରିଦେବାର ସମ୍ଭାବନା ଅଧିକ । କିନ୍ତୁ ସେମାନେ କେଉଁ କେଉଁ ପ୍ରୋଗ୍ରାମ୍ ଦେଖିବେ, ସେମାନଙ୍କ ସହ ପରାମର୍ଶ କରି ଏହା ସ୍ଥିର କଲେ ଓ ନିଜେ ପିତାମାତା ଏହାକୁ ମାନି ଚାଲିଲେ, ପିଲାଏ ବି ଏହି ନିଷ୍ପତ୍ତି ପ୍ରତି ସମ୍ମାନ ଦେଇଚାଲିବେ ।

ବିଭିନ୍ନ ଗବେଷଣାରୁ ପ୍ରମାଣିତ ଯେ ଅତି ପିଲାବେଳୁ ଶିଶୁମାନଙ୍କ ସହ କଥୋପକଥନରେ ରତ ରହିଲେ ସେମାନଙ୍କ ପଠନ, ଲିଖନ ଓ ଗଣିତରେ ସାମର୍ଥ୍ୟ ବୃଦ୍ଧି ପାଇଥାଏ । ଯେଉଁ ପିଲା କଥାବାର୍ତ୍ତା ମାଧ୍ୟମରେ ଭାବ ବିନିମୟ କରିବାରେ ବିଶେଷ ପାରଙ୍ଗମ ନୁହେଁ, ସେ ସ୍କୁଲ୍‌ରେ ବିଶେଷ ସଫଳତା ପ୍ରଦର୍ଶନ କରିପାରେ ନାହିଁ ।

ସେ ଯାହାହେଉ, ସନ୍ତାନମାନଙ୍କ ସହ ଗପସପରେ ରତ ରହିବା ଯେ ସମୟର ଅପଚୟ ନୁହେଁ, ବରଂ ସମୟର ସଦୁପଯୋଗ, ଏ' ସମ୍ପର୍କରେ ପ୍ରତ୍ୟେକ ପିତାମାତା ଦୃଢ଼ ନିଶ୍ଚିତ ରହିବା ଦରକାର ।



# ପିଲା ଓ ସ୍କୁଲ୍

**"ଘର ହେଉଛି ଶିଶୁର ପ୍ରଥମ ବିଦ୍ୟାଳୟ ଓ ବିଦ୍ୟାଳୟ ହେଉଛି ତା'ର ଦ୍ୱିତୀୟ ଘର ।"**

**ପ୍ର : ମୋ' ଝିଅ ଏବେ ପ୍ରଥମ ଥର ପାଇଁ ସ୍କୁଲ୍‌କୁ ଯିବ । ମୋତେ ଛାଡ଼ି ତିନିଚାରି ଘଣ୍ଟା ସ୍କୁଲ୍‌ରେ ରହିବାକୁ ପଡ଼ିବ ତାକୁ । ଏକଥା ଭାବିଲା ବେଳକୁ ମୋତେ କାନ୍ଦ ମାଡୁଛି । ଏ ବିଷୟରେ କିଛି ପରାମର୍ଶ ମାଗୁଛି ଆପଣଙ୍କଠାରୁ ।**

ଉ : ପିଲାମାନଙ୍କୁ ଆମେ ଯେତେ ଭଲ ପାଇଲେ ବି ସେମାନଙ୍କୁ ତ ଆଉ ସବୁଦିନେ ଘରେ ରଖିପାରିବାନି । ସେମାନଙ୍କୁ ତ ସ୍କୁଲ୍ ଯିବାକୁ ହିଁ ପଡ଼ିବ । ତେବେ ସ୍କୁଲ୍‌କୁ ଗଲେ ଆପଣଙ୍କ ଝିଅ ପାଇଁ ଏହା ହେବ ଆପଣଙ୍କଠାରୁ ପ୍ରଥମ ବିଚ୍ଛେଦ । ତା'ର ସେହି କଅଁଳା ମନ ଭାବି ନେଉଥିବ ଅନେକ କଥା । ଯେପରିକି – 'ମୁଁ ବାପମା'ଙ୍କୁ ଘରେ ବିରକ୍ତ କରୁଥିଲି ବୋଲି ସେମାନେ ମୋତେ ସ୍କୁଲ୍‌କୁ ତଡ଼ିଦେଲେ', 'ମା' ମୋତେ ଆଉ ଭଲ ପାଉନାହାନ୍ତି,' 'ମୋ ସାନଭାଇକୁ ସେ ବେଶୀ ଭଲ ପାଉଥିବାରୁ ତାକୁ ଘରେ ରଖି ମୋତେ ସ୍କୁଲ୍‌କୁ ପଠେଇ ଦେଲେ', ଇତ୍ୟାଦି ।

ସ୍କୁଲ୍‌ରେ ପହଞ୍ଚି ସେ ହୁଏତ ଭାବି ବସିବ – 'ଏ ମିସ୍ ମୋ' ଉପରେ ରାଗିବେନି ତ ?' 'ମୋ' ବ୍ୟାଗ୍ ଓ ଜଳଖିଆ ବାକ୍ସକୁ ମୁଁ କେଉଁଠି ରଖିବି ?' 'ମୋତେ ପରିସ୍ରା କି ଝାଡ଼ା ମାଡ଼ିଲେ ମୁଁ କାହାକୁ କହିବି ?' 'ଲେଖିଲା ବେଳେ ତ ମୁଁ ପେନ୍‌ସିଲ୍‌କୁ ଭଲ ଭାବରେ ଧରିପାରୁନି, ତେଣୁ ଏଠାରେ ଲେଖାଲେଖି ଦରିବି କିପରି ?' 'ଏଠାରେ ମୋତେ ଯଦି କିଏ ମାଡ଼ ମାରେ, ମୁଁ କରିବି କଅଣ ? ମୁଁ ବି କ'ଣ ତାକୁ ମାରିବି ?'

ବାସ୍ତବରେ ସ୍କୁଲ୍‌କୁ ଯିବା ପିଲାମାନଙ୍କ ପାଇଁ ଏକ ବିରାଟ ମାନସିକ ଚାପ । ତେଣୁ ଏହି ଚିନ୍ତାରେ କେହି କେହି ଭଲ ଖାଇପାରନ୍ତି ନାହିଁ, କାହା ସାଙ୍ଗରେ ଭଲରେ କଥାବାର୍ତ୍ତା ହୋଇପାରନ୍ତି ନାହିଁ । ବହୁ ସମୟରେ ଚୁପ୍‌ଚାପ୍ ରହନ୍ତି । ରାତିରେ ବିଛଣାରେ ପରିସ୍ରା କରି ପକାନ୍ତି । ସ୍କୁଲ୍‌କୁ ଯିବାବେଳ ଆସିଗଲେ ସ୍କୁଲ୍ ନଯିବା ପାଇଁ ଜିଦ୍ ଧରନ୍ତି, କନ୍ଦାକଟା କରନ୍ତି । ପେଟ କାଟୁଛି କହି ପେଖନା କାଢ଼ନ୍ତି ।

- ତେବେ ତାକୁ ସ୍କୁଲ୍‌କୁ ପଠାଇବାର ଚାରି ପାଞ୍ଚ ମାସ ପୂର୍ବରୁ ଆପଣ ପ୍ରସ୍ତୁତି ଆରମ୍ଭ କରିଦେବେ । ଯେଉଁ ସ୍କୁଲ୍‌ରେ ତା'ର ନାଁ ଲେଖେଇବେ, ଅନ୍ତତଃ ପ୍ରତି ସପ୍ତାହରେ ଥରେ ତାକୁ ସେହି ସ୍କୁଲ୍‌ବାଟେ ବୁଲେଇ ନେବେ । ସ୍କୁଲ୍‌କୁ ଯାଇ ଶ୍ରେଣୀଗୃହ, କଳାପଟା, ଖେଳପଡ଼ିଆ ଇତ୍ୟାଦି ତାକୁ ଚିହ୍ନେଇଦେବେ । ଚିହ୍ନେଇ ଦେବେ ସ୍କୁଲ୍‌ର ମିସ୍‌ମାନଙ୍କୁ, ଆୟାଙ୍କୁ ।
- ମିସ୍ ଓ ଆୟାମାନେ ସ୍କୁଲ୍‌ରେ କଅଣ କରନ୍ତି, ତାହା ମଧ୍ୟ କହିଦେବେ ତାକୁ ।
- ସ୍କୁଲ୍‌କୁ ପଠାଇବା ପୂର୍ବରୁ ତାକୁ ଗୀତ ଗାଇବା, ଗପ କହିବା, ପେନ୍‌ସିଲ୍‌କୁ ଠିକ୍ ଭାବରେ ଧରିବା ଇତ୍ୟାଦି ବିଷୟରେ କିଛି କିଛି ଶିଖେଇଥିବେ ।
- ସ୍କୁଲ୍‌ର ମିସ୍‌ମାନଙ୍କ ସହ ସୁସମ୍ପର୍କ ରକ୍ଷା କରି ସେମାନଙ୍କ ସହ ଭାବ ବିନିମୟ କରିବେ । ଅତି ନମ୍ରତାର ସହ ସେମାନଙ୍କୁ ଜଣେଇଦେବେ ଯେ ପିଲାମାନଙ୍କୁ ୫ଟି ଷ୍ଟାର୍, ୪ଟି ଷ୍ଟାର୍ କି ୩ଟି ଷ୍ଟାର୍ ଇତ୍ୟାଦି ଦେଇ ଅନ୍ୟପିଲାଙ୍କ କୃତିସହ ତୁଳନା କରିବା ଯଥାର୍ଥ ପଦକ୍ଷେପ ନୁହେଁ । ଏପରି କଲେ ପିଲାମନରେ ପାର୍ଥକ୍ୟବୋଧର ଧାରଣା ଜନ୍ମେ । ତେବେ ଦଶ ବାର ବର୍ଷ ବୟସର ଛାତ୍ରଛାତ୍ରୀମାନଙ୍କ ପାଇଁ ଏପରି ତୁଳନା ବିଶେଷ କ୍ଷତିକାରକ ନୁହେଁ ।
- କୌଣସି ପିଲାକୁ ପ୍ରଶଂସା କରିବା କି ଅନ୍ୟ କାହାକୁ ନିନ୍ଦା କରିବା ମଧ୍ୟ ଅନୁଚିତ । କାରଣ ପ୍ରତ୍ୟେକ ପିଲା ତା' ପରିବାରରେ 'ସବୁଠାରୁ ସୁନାପିଲା', 'ସବୁଠାରୁ ଆଦରଣୀୟ' ଓ 'କେବଳ ପ୍ରଶଂସା ଶୁଣିବାରେ ଅଭ୍ୟସ୍ତ' । ତା'ର ଏହି ମାନସିକତାକୁ କ୍ଷୁଣ୍ଣ କରିବା ଆଦୌ ସ୍ପୃହଣୀୟ ନୁହେଁ ।
- ସ୍କୁଲ୍‌ରେ ପିଲାର କୃତିତ୍ୱରୁ ତା'ର ମୂଲ୍ୟାଙ୍କନ କରିବେନି । ଭଲ ନମ୍ବର ପାଇ ନଥିବା ପିଲାଟି ବି ଯଦି ପରିବାରରେ ମା'ଙ୍କୁ ସାହାଯ୍ୟ କରୁଥିବ, ଘରେ ଝାଡୁ ମାରି ଦେଉଥିବ, ବାସନ ସଫା କରି ଦେଉଥିବ କି ଲୁଗାପଟା ଭଙ୍ଗାଭଙ୍ଗି କରି ସାଇତି ରଖୁଥିବ – ତେବେ ଏହି କାମମାନ ମଧ୍ୟ ଖୁବ୍ ପ୍ରଶଂସନୀୟ ।
- ଶିଶୁ ତା'ର ଶୈଶବକୁ ମନ ଭରି ଉପଭୋଗ କରିବାର ସୁଯୋଗ ପାଇବା ଉଚିତ । ସେମାନେ ପଢ଼ିବେ ସତ, ହେଲେ ସେମାନଙ୍କ ପାଇଁ ମନୋରଞ୍ଜନର ଭୂମିକା ମଧ୍ୟ ସୁଦୂରପ୍ରସାରୀ । ଖେଳିବା, ଆଙ୍କିବା, ବସି ଗପବହି ପଢ଼ିବା, ସାଙ୍ଗସାଥୀମାନଙ୍କ ସହ ଗପସପ କରିବା ଇତ୍ୟାଦିର ଯଥେଷ୍ଟ ଅନୁକୂଳ ପ୍ରଭାବ

ରହିଛି । କାରଣ ଭଲ ପଢ଼ାପଢ଼ି କରିବାରେ ଏଗୁଡ଼ିକ ଯଥେଷ୍ଟ ସହାୟକ ହୋଇଥାଏ ।

- ଅଧିକାଂଶ ବାପମା'ଙ୍କର ଧାରଣା ଯେ ସ୍କୁଲ୍‌ରେ କେବଳ ପାଠ ପଢ଼ାଯାଏ । କିନ୍ତୁ ପିଲାମାନଙ୍କର ଦୃଷ୍ଟିକୋଣରୁ ବିଚାର କଲେ ସ୍କୁଲ୍ ହେଉଛି ସେମାନଙ୍କ ବ୍ୟକ୍ତିତ୍ୱ ବିକାଶର କ୍ଷେତ୍ର । ସାମାଜିକ କ୍ରିୟାକଳାପ ସହ ପରିଚିତ ହେବାର କ୍ଷେତ୍ର । ସେଠାରେ ସେମାନେ ଖେଳନ୍ତି, ଗାଆନ୍ତି, ନାଚନ୍ତି ଓ ପରସ୍ପର ସହ ସମ୍ପର୍କ ରକ୍ଷା କରିବା ଶିଖନ୍ତି । ସେହି ସ୍କୁଲ୍‌ରୁ ହିଁ ସେମାନେ ବାଛିଥାଆନ୍ତି ସେମାନଙ୍କର ଭବିଷ୍ୟତ ବନ୍ଧୁ । ତେଣୁ ସାତ ଆଠ ବର୍ଷ ନହେବାଯାଏ ସ୍କୁଲ୍ ସେମାନଙ୍କ ପାଇଁ ଏକ ମନୋରଞ୍ଜନ ସ୍ଥଳ ହୋଇ ରହିପାରିଲେ ଭଲ ।
- ପ୍ରଥମେ ପ୍ରଥମେ ସ୍କୁଲ୍‌ର ନୂତନ ପରିବେଶ ଯୋଗୁ ପିଲାମାନଙ୍କ ଆଚରଣରେ କେତେକ ପରିବର୍ତ୍ତନ ପରିଲକ୍ଷିତ ହୋଇପାରେ । କିଏ ଭଲ ଖିଆପିଆ କରେନି ତ କାହାକୁ ଭଲ ନିଦ ହୁଏନି । କିଏ ବିଛଣାରେ ବାରମ୍ବାର ପରିସ୍ରା କରେ ତ ଆଉ କିଏ ସକାଳୁ ଉଠିବାର ନାଁ ଧରେନି । ତେବେ ପିଲା ସ୍କୁଲ୍‌ରୁ ଫେରିଲା ପରେ ତାକୁ ଖାଇବାକୁ ଦେଇ ମାତ୍ର ଘଣ୍ଟାଟିଏ ପାଇଁ ଶୁଆଇ ପକାଇବେ । ତାକୁ ତା'ର ରାତି ଖାଇବା ଦେବେ ସଂଧ୍ୟା ୮ଟାରେ । ରାତି ଖାଇବା ସାରି ତାକୁ ପୁଣି ଶୁଆଇ ପକାଇବେ । ମଝିରେ ଥରେ ଉଠେଇ ପରିସ୍ରା କରାଇଦେବେ । ଏପରି କଲେ ସେ ବିଛଣାରେ ପରିସ୍ରା କରିବନି କି ସକାଳେ ସଅଳ ଉଠିବା ପାଇଁ ତା' ପାଇଁ ବିଶେଷ ସମସ୍ୟା ସୃଷ୍ଟି କରିବନି ।

ପ୍ର : **ସନ୍ତାନମାନଙ୍କୁ ପଢ଼େଇବା ପାଇଁ କ'ଣ ସବୁବେଳେ ଅତି ଭଲ ସ୍କୁଲ୍‌କୁ ବାଛି ନାଁ ଲେଖେଇବା ଦରକାର ?**

ଉ : ଅନେକ ପିତାମାତା ଅତି ଭଲ ସ୍କୁଲ୍ ପଛରେ ହିଁ ଦୌଡ଼ିଥାନ୍ତି । ଯେତେ ଖର୍ଚ୍ଚ ହେଉ ପଛେ ସେଥିପାଇଁ ଖାତର କରନ୍ତିନି । ଅତି ଭଲ ସ୍କୁଲ୍‌ରେ ପ୍ରତି କ୍ଲାସ୍‌ରେ ବହୁତ ପିଲା ଥାଆନ୍ତି । ଏହା ପିଲାମାନଙ୍କୁ ଆନନ୍ଦ ଦେଇପାରେନା । ତାହାଛଡ଼ା ସେଠାରେ ପ୍ରତିଯୋଗିତା ବେଶୀ । ତେଣୁ ପିଲା ହୁଏତ ବିଶେଷ ଭଲ ଫଳ ଦେଖେଇ ନପାରେ । ମୋଟାମୋଟି ଭାବରେ ଭଲ ହୋଇଥିବା ସ୍କୁଲ୍ ବହୁ ଦିଗରୁ ସୁବିଧା । ସାଧାରଣ ଭାବରେ ଭଲ ବିବେଚିତ ସ୍କୁଲ୍‌ରେ ପିଲାର ମଧ୍ୟ ସର୍ବାଙ୍ଗୀଣ ବିକାଶ ସମ୍ଭବ ।

ଆବାସିକ ସ୍କୁଲ୍‌ରେ ପିଲାଙ୍କୁ ପଢ଼େଇବା ମଧ୍ୟ ନିରାପଦ ନୁହେଁ । ଏପରି କଲେ ଛୋଟ ପିଲାଟି ବାପମା'ଙ୍କ ସାନ୍ନିଧ୍ୟରୁ ବଞ୍ଚିତ ହେବାକୁ ବାଧ୍ୟ ହୋଇଥାଏ । ଏହା ଫଳରେ ସେ ନିଜକୁ ଏକୁଟିଆ ଅନୁଭବ କରେ । ତେଣୁ ସେ ବିଷାଦଗ୍ରସ୍ତ ହୋଇପଡ଼ିବାର ସମ୍ଭାବନା ଅଛି । ଅବଶ୍ୟ ବାପମା' ଉଭୟେ କର୍ମଜୀବୀ ହୋଇଥିଲେ କି ଦୁର୍ଗମ ଅଞ୍ଚଳରେ ଚାକିରି କରିଥିଲେ ଓ ସେଠାରେ ଭଲ ସ୍କୁଲର ସୁବିଧା ନଥିଲେ, ସେ କ୍ଷେତ୍ରରେ ଆବାସିକ ସ୍କୁଲ୍‌ରେ ପିଲାଙ୍କୁ ନପଢ଼େଇ ଚାରା ନାହିଁ ।

ତାହାଛଡ଼ା ପିଲାଙ୍କୁ ସ୍କୁଲ୍‌ରେ ଭର୍ତ୍ତି କରିଦେଲେ ମଧ୍ୟ ସ୍କୁଲ୍ ସହ ନିରନ୍ତର ସମ୍ପର୍କ ରଖିବା ଜରୁରୀ । ସ୍କୁଲ୍‌ରେ ପିଲା ସମ୍ମୁଖୀନ ହେଉଥିବା ସମସ୍ୟାଗୁଡ଼ିକ ସମ୍ପର୍କରେ ଖୋଜଖବର ନେବା ଉଚିତ । ସ୍କୁଲ୍‌ରେ ପିଲାମାନଙ୍କୁ ଶିକ୍ଷକ ଗାଳିଦେଲେ କି ବେତମାଡ଼ ଦେଲେ ଏହାର ପ୍ରଭାବ ନକାରାତ୍ମକ ହୋଇଥାଏ । ଏପରିକି ସ୍କୁଲ୍-ବସ୍‌ରେ ମଧ୍ୟ ତତ୍ତ୍ୱାବଧାନରେ ରହିଥିବା ଶିକ୍ଷକ ବେତ ଉଞ୍ଚେଇ ପିଲାମାନଙ୍କୁ ଧମକ ଦେବା ଓ ସ୍ଥଳ ବିଶେଷରେ ବେତରେ ପିଟିବାର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ଏହାର ପରିଣାମ ଆଦୌ ଶୁଭଙ୍କର ହୁଏନାହିଁ । ଆପଣ ଯଦି ଏ' ସବୁର ଖବର ନ ରଖିବେ, ତେବେ ଆପଣଙ୍କ ପିଲାର ହିଁ କ୍ଷତି ହୋଇଚାଲିବ । ଆପଣଙ୍କ ପିଲାର କ୍ଲାସ୍‌ରେ କ'ଣ ଘଟୁଛି ଏବଂ କ୍ଲାସ୍‌ରେ ବା ସ୍କୁଲ୍‌ରେ ପିଲାର ଗତିବିଧି କିପରି – ଏ' ସମ୍ପର୍କରେ ଅବଗତ ନହେବା ପିତାମାତାଙ୍କ ପାଇଁ ଏକ ଅକ୍ଷମଣୀୟ ଅପରାଧ ।

ଯେଉଁ ପିତାମାତା ସ୍କୁଲ୍‌ର ଶିକ୍ଷକଶିକ୍ଷିକାମାନଙ୍କ ସହ ନିୟମିତ ସମ୍ପର୍କ ରକ୍ଷା ନକରନ୍ତି, ସେମାନେ ସନ୍ତାନମାନଙ୍କର ପ୍ରଗତି ବିଷୟରେ ପୂରାପୂରି ଅଜ୍ଞ ରହିଯାନ୍ତି । ପିଲା କ୍ଲାସ୍‌ରେ କାହିଁକି ଭଲ କରୁନି, କାହିଁକି ଅନ୍ୟମନସ୍କ ରହୁଛି, ଦୁଷ୍ଟାମି କରୁଛି କାହିଁକି ଇତ୍ୟାଦିର ଖବର କେବଳ ଶିକ୍ଷକମାନଙ୍କଠାରୁ ମିଳିପାରିବ । ଅବଶ୍ୟ କେତେକ ଶିକ୍ଷକ ଅତିରଞ୍ଜନ ବର୍ଣ୍ଣନା କରିବାରେ ଅଭ୍ୟସ୍ତ । ହେଲେ, ପିତାମାତାମାନେ ଶିକ୍ଷକଙ୍କ ଅଭିଯୋଗକୁ ଧୈର୍ଯ୍ୟ ଧରି ଶୁଣିବା ସହ ନିଜ ବିବେକ ଅନୁସାରେ ପଦକ୍ଷେପ ନେବା ନିରାପଦ ।

ସନ୍ତାନର ସମସ୍ୟା ଯେତେ ଚଞ୍ଚଳ ଆପଣଙ୍କ ଦୃଷ୍ଟିକୁ ଆସିବ, ତାହା ସେତେ ମଙ୍ଗଳ । କାରଣ ଏପରି ସ୍ଥଳେ ଆଶୁ ପ୍ରତିକାର କରି ସମସ୍ୟାକୁ ଦୂରେଇ ଦେଇହେବ ।

ସମସ୍ୟାର ସମାଧାନକୁ ଗଢ଼େଇ ଚାଲିଲେ ଏହା ପିଲାର ଯଥେଷ୍ଟ କ୍ଷତି କରିଥାଏ । ପିଲାର କ୍ଷତି ଅର୍ଥ ତ ଆପଣଙ୍କର ହିଁ କ୍ଷତି !

**ପ୍ର : ଘରେ କରି ଆଣିବା ପାଇଁ ଯେଉଁ ପଢ଼ା ଦିଆଯାଇଥାଏ, ସେଥିରେ ପିତାମାତାଙ୍କର ଭୂମିକା କ'ଣ ହେବା ଉଚିତ ?**

ଉ: କେତେକ ପିତାମାତା ଘରେ କରି ଆଣିବା ପାଇଁ ଶିକ୍ଷକମାନେ ପଢ଼ା ଦେଉଥିଲେ ତାକୁ ସମର୍ଥନ କରନ୍ତି ନାହିଁ । କିନ୍ତୁ ଘର ପାଇଁ ଦିଆଯାଉଥିବା ପଢ଼ାର ରହିଛି ଦୁଇଟି ଉପକାରୀ ଦିଗ । ପ୍ରଥମ କଥା ହେଲା, ସ୍କୁଲ୍‌ରେ ଯାହା ପଢ଼ା ହୋଇଥାଏ, ସେହି ସଂକ୍ରାନ୍ତ କିଛି ଅଧିକ ପଢ଼ା ଦେଲେ ପିଲାମାନଙ୍କର ବୌଦ୍ଧିକ ବିକାଶ ସୁଗମ ହୋଇଯାଏ ଓ ଏହି ପଢ଼ା ତା' ପାଇଁ ପୁନର୍ବାର-ପଠନର ଭୂମିକା ନିର୍ବାହ କରିଥାଏ । ଦ୍ୱିତୀୟତଃ ଘରପଢ଼ା ଦ୍ୱାରା ବୃଦ୍ଧି ପାଏ ଆତ୍ମଶୃଙ୍ଖଳା । ପିଲା ନିଜେ ନିଜେ ପଢ଼ିବା ପାଇଁ ଶିଖେ ଓ ଅନ୍ୟ କାହାର ସାହାଯ୍ୟ ନନେଇ ପ୍ରଶ୍ନର ସମାଧାନ ଖୋଜେ । ନିଜେ ନିଜେ ସମାଧାନ କରିବାରେ ସଫଳ ହେଲେ ସେ ଅନୁଭବ କରେ ସଫଳତାର ମଧୁର ଆନନ୍ଦ । ପରବର୍ତ୍ତୀ ଜୀବନରେ ଏହି ଅଭ୍ୟାସ ତା' ପାଇଁ ଯଥେଷ୍ଟ ମଙ୍ଗଳକର ସାବ୍ୟସ୍ତ ହୋଇଥାଏ । ବିଶେଷ କରି ଘରପାଠ କରିବା ନିମନ୍ତେ ସମୟ ବାହାର କରିବା ଦ୍ୱାରା ସେ ସମୟର ସୁପରିଚାଳନା କରି ଶିଖିଥାଏ ।

କିନ୍ତୁ ବଡ଼ ଦୁର୍ଭାଗ୍ୟର କଥା ଯେ ଘରପାଠ ଏବେ ଏକ ବାଧ୍ୟତାମୂଳକ କସରତରେ ପରିଣତ ହେଲାଣି । ପିଲାମାନେ ଯନ୍ତ୍ରବତ୍ ଘରପାଠ କରୁଥିବାରୁ ସେଥିରେ ସେମାନଙ୍କର ମୌଳିକତା ପ୍ରତିଫଳିତ ହୋଇପାରୁନାହିଁ । ଏପରିକି ସେମାନେ କ'ଣ କରୁଛନ୍ତି, ତାହା ମଧ୍ୟ ସେମାନେ ଜାଣିପାରୁନାହାନ୍ତି । ଫଳରେ ଘରପାଠ ସେମାନଙ୍କ କଳ୍ପନାକୁ ଉଦ୍ଦୀପିତ କରାଇବା ପରିବର୍ତ୍ତେ, ତାଙ୍କ ଉପରେ ଏକ ବୋଝ ଭଳି ସବାର ହୋଇଛି । ଘରପାଠ ଶିକ୍ଷକଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ଅଭିପ୍ରେତ ନୁହେଁ, ଛାତ୍ରର ଅଧିକତର ବିକାଶ ହିଁ ଏହାର ମୁଖ୍ୟ ଉଦ୍ଦେଶ୍ୟ ।

ଘର ପାଠ ପାଇଁ କେବଳ ପାଠ୍ୟପୁସ୍ତକ ଆଧାରିତ ସମସ୍ୟା ଦେଲେ ଚଳିବନି । ଯେଉଁ ପାଠ ଛାତ୍ରମାନଙ୍କର ସୃଜନଶୀଳତାକୁ ପ୍ରୋତ୍ସାହନ ଦେବ, ସେହି ପ୍ରକାରର ପାଠ ଦେବା ଉଚିତ ଓ ତାହା କାମ୍ୟ ମଧ୍ୟ ।

ତେବେ ପୁଅଝିଅ ସ୍କୁଲ୍‌ପଢ଼ା କି ଘରେ କରି ଆଣିବା ପାଇଁ ଦିଆଯାଇଥିବା ପଢ଼ାରେ ବ୍ୟସ୍ତଥିବା ବେଳେ ସେମାନଙ୍କୁ ଟେଲିଭିଜନ୍ ଦେଖିବା କି ଫୋନ୍ ଧରିବାରୁ ନିବୃତ୍ତ କରିବା ଉଚିତ । ବାପମା'ମାନେ ପୁଅଝିଅଙ୍କୁ ଘରପଢ଼ାରେ ଉତ୍ତର କହିଦେବା ମଧ୍ୟ ଅନୁଚିତ । ଏପରି କଲେ ସେମାନେ ସମସ୍ୟା ସମାଧାନ କରିବା ପାଇଁ ଆତ୍ମନିର୍ଭରଶୀଳ ହେବା ପରିବର୍ତ୍ତେ ପଢ଼ା କରିବା ନିମନ୍ତେ ପିତାମାତାଙ୍କ ଉପରେ ନିର୍ଭରଶୀଳ ହୋଇପଡ଼ନ୍ତି । 'ପଢ଼ା କର', 'ପଢ଼ା କର' ବୋଲି ସେମାନଙ୍କ ପଛରେ ଜୋକ ଭଳି ଲାଗିବା ମଧ୍ୟ ସ୍ପୃହଣୀୟ ନୁହେଁ । ଏପରି କଲେ ସେମାନଙ୍କଠାରେ ଅସନ୍ତୋଷ ତଥା କ୍ରୋଧ ଜାତ ହୋଇଥାଏ ଓ ସେମାନଙ୍କ ଆଗ୍ରହ ମରିଯାଏ । ଘରପାଠ କରିବା ପାଇଁ ସେମାନଙ୍କୁ ଲାଞ୍ଚ ଯାଚିବା ମଧ୍ୟ ଉଚିତ ନୁହେଁ । 'ପଢ଼ା ସାରିଦେଲେ ତୋତେ ଟଙ୍କା ଦେବି' 'ତୋତେ ଉପହାର ଦେବି' – ଏପରି ଲୋଭ ଦେଖେଇବେନି । କାରଣ ଏପରି କରିବା ଦ୍ୱାରା ସେ ଘରପାଠ କରିଦେଇଥିବାରୁ ସବୁବେଳେ 'କ୍ଷତିପୂରଣ' ପାଇବାର ଆଶା ପୋଷଣ କରିଚାଲେ ।



# କେବେ ଲେଖିବ 'ଏ', 'ବି', 'ସି', 'ଡି' ?

ପ୍ର : ମୋ ଝିଅକୁ ତିନିବର୍ଷ ପୂରିଲା ପରେ ମୁଁ ତାକୁ ନର୍ସରୀ ସ୍କୁଲ୍‌ରେ ଭର୍ତ୍ତି କରିଛି । ଏହା ଭିତରେ ତିନିମାସ ବିତିଗଲାଣି । କିନ୍ତୁ ସେ ଏ ପର୍ଯ୍ୟନ୍ତ ବି 'A', 'B' ଲେଖିବା ଶିଖିପାରିଲାନି । ତା'ରି ବୟସର ମୋ' ଭଉଣୀର ଝିଅ ଅନ୍ୟ ଏକ ସ୍କୁଲ୍‌ରେ ପଢୁଛି । ସେ କିନ୍ତୁ 'A', 'B' ଲେଖିପାରୁଛି । ମୋ ଝିଅ କ'ଣ ପାଠପଢ଼ାରେ ନିକମା ହୋଇ ବାହାରିବ କି ?

ଉ : ଏହା କେବଳ ଆପଣଙ୍କର ପ୍ରଶ୍ନ ନୁହେଁ; ଅନେକ ମା' ଏ' ପ୍ରକାରର ପ୍ରଶ୍ନ କରିଥାନ୍ତି । ସେତିକି ନୁହେଁ, ଘରେ ନ ଲେଖିଲେ ବି ସ୍କୁଲ୍‌ରେ ଲେଖିପାରୁଛି କି ନା, ଜାଣିବା ପାଇଁ ସେମାନେ ବେଶ୍ ଉତ୍କଣ୍ଠା ପ୍ରକାଶ କରନ୍ତି । 'ନା, ଲେଖିପାରୁନି' ବୋଲି ଶିକ୍ଷୟିତ୍ରୀଙ୍କ ପାଖରୁ ଶୁଣିଲେ ସେମାନଙ୍କ ମୁଣ୍ଡରେ ସତେ ଯେପରି ଚଡ଼କ ପଡ଼ିଯାଏ । ନିଜ ପିଲା 'ପଛୁଆ' (ପ୍ରକୃତରେ ପଛୁଆ ନୁହେଁ) ବୋଲି ତାଙ୍କ ମନରେ ଯେତେ ଦୁଃଖ ଆସେନି, ଅନ୍ୟ ଜଣଙ୍କର ପିଲା 'ଆଗୁଆ' (ପ୍ରକୃତରେ ଆଗୁଆ ନୁହେଁ) ବୋଲି ଭାବି ନେଲା ବେଳକୁ ତାଙ୍କ ମୁଣ୍ଡ ଆଉ ଛାତି କରତି ହୋଇଗଲା ଭଳି ଲାଗେ ।

ଏହି ପ୍ରକାର ସମସ୍ୟାର ଏକ ଉଦାହରଣ ଅବତାରଣା କରିଛନ୍ତି ଜଣେ ଶିକ୍ଷୟିତ୍ରୀ । ନିଜ ଝିଅ 'A', 'B' ଲେଖିପାରୁନି, କିନ୍ତୁ ସମାନ ବୟସର ପଡ଼ିଶା ଘର ଝିଅ 'A', 'B' ଲେଖିବା ଶିଖିଗଲାଣି ବୋଲି ଜାଣି ଜଣେ ଅଭିଭାବିକା ବେଶ୍ ବିବ୍ରତ ହୋଇପଡ଼ିଲେ । ତାଙ୍କୁ ପରାମର୍ଶ ଦେଇ ଉକ୍ତ ଶିକ୍ଷୟିତ୍ରୀ କହିଲେ, "ବ୍ୟସ୍ତ ହୁଅନ୍ତୁନି । ଛଅମାସ ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ । ସେତେବେଳେ କଥାବାର୍ତ୍ତା ହେବା ।"

ଛଅମାସ ବିତିଗଲା ପରେ ଶିକ୍ଷୟିତ୍ରୀ ଜଣକ ସେହି ମାଆ ଜଣଙ୍କୁ ପଚାରିଲେ, "ଏବେ ଆପଣଙ୍କ ଝିଅର ପଢ଼ାପଢ଼ି ଖବର କଅଣ ?" ମାଆ ଜଣକ ଉତ୍ତର ଦେଲେ, "ଏବେ ତା'ର ଟିକିଏ ଉନ୍ନତି ହୋଇଛି । ସେ 'A' ଠାରୁ 'Z' ପର୍ଯ୍ୟନ୍ତ ଲେଖିପାରୁଛି । ୧ ରୁ ୫୦ ପର୍ଯ୍ୟନ୍ତ ଗଣିପାରୁଛି । କେତେଗୁଡ଼ିଏ 'ରାଇମ୍' ମୁଖସ୍ଥ କରି ଗାଇଯାଉଛି ।

"ଆଉ ପଡ଼ିଶା ଘରର ଝିଅ ? ତା' ପଢ଼ା କେତେଦୂର ଗଲାଣି ?" – କୌତୂହଳୀ ହୋଇ ପଚାରିଲେ ଶିକ୍ଷୟିତ୍ରୀ ।

"ସେ ବିଶେଷ ଆଗେଇ ପାରିନି । ୨୬ଟି ଇଂରାଜୀ ଅକ୍ଷରରୁ ଲେଖି ଶିଖିଛି ଜମା ଅଧାଅଧି ଅକ୍ଷର । ଅଳ୍ପ କେତୋଟି ମାତ୍ର 'ରାଇମ୍' ଜାଣିଛି । ଗଣିପାରୁଛି ମାତ୍ର ୧ ରୁ ୧୦ ପର୍ଯ୍ୟନ୍ତ ।

ଉପର ଘଟଣାଟି ମନଗଢ଼ା କାହାଣୀ ନୁହେଁ ।

ଆପଣ ତଥା ଅନ୍ୟ ମାଆମାନେ ମନେ ରଖିବା ଦରକାର ଯେ ପ୍ରାକ୍-ପ୍ରାଥମିକ ଶିକ୍ଷା ହିଁ ଶିଶୁମାନଙ୍କ ମେଧାର ମୂଳଦୁଆ ପକେଇଥାଏ । ମୂଳଦୁଆ ପକେଇଥାଏ ସେମାନଙ୍କ ବ୍ୟକ୍ତିତ୍ୱର । ତେଣୁ, ଏହି ସମୟରେ ମାଆମାନେ ବୁଝିବିଚାରି କାମ କରିବା ନିରାପଦ । ବିଶେଷ କରି ସେମାନେ ନିମ୍ନଲିଖିତ କେତୋଟି ବିଷୟରେ ନିଶ୍ଚିତ ଭାବରେ ଧ୍ୟାନ ଦେବା ଉଚିତ । ପିଲା 'A', 'B' କି 'ଅ', 'ଆ' 'ଇ', 'ଈ' ଲେଖିପାରୁଛି କି ନା, ତାହା ଆଦୌ ବଡ଼ କଥା ନୁହେଁ ।

- ୩ ବର୍ଷର ପିଲା କଲମ କି ପେନ୍‌ସିଲ ଧରି ଲେଖିପାରିବା ନିମନ୍ତେ ସମର୍ଥ ନୁହେଁ । କାରଣ ଲେଖିବାରେ ସାହାଯ୍ୟ କରୁଥିବା ମାଂସପେଶୀ ସେହି ବୟସରେ ଠିକ୍ ଭାବରେ ବିକାଶ ଲାଭ କରି ନଥାଏ । ଖୁବ୍ ବେଶୀରେ ସେ ବଙ୍କାତଙ୍କା କରି କେତୋଟି ରେଖା ମାତ୍ର ଟାଣିପାରେ ।
- କିନ୍ତୁ ସବୁ ଜିନିଷକୁ ଅତି ଅନ୍ତରଙ୍ଗ ଭାବରେ ସେ ଲକ୍ଷ୍ୟ କରିପାରେ । ସବୁକଥା ଶୁଣିବାରେ ଆଗ୍ରହ ଦେଖାଇଥାଏ । ଯାହା ଦେଖେ ଓ ଯାହା ଶୁଣେ, ସେଗୁଡ଼ିକୁ ମନେ ରଖିପାରେ ମଧ୍ୟ । ତେଣୁ ଏହି ବୟସରେ କାଗଜ, କଲମ, ପେନ୍‌ସିଲ୍ ନ ଧରେଇ କଥୋପକଥନ ମାଧ୍ୟମରେ ତାକୁ ଶିକ୍ଷା ଦେବା ଉଚିତ । ଛବି ବହି ଦେଖେଇ ତାକୁ ଛବି ଚିହ୍ନେଇବାରେ ମଧ୍ୟ ଖୁବ୍ ଲାଭ । ମନେରଖନ୍ତୁ, ତା'ର ଲେଖା-କ୍ଷମତା ଉପରେ ଆଦୌ ଜୋର୍ ଦେବେନି ।
- ଅନ୍ୟ କୌଣସି ପିଲାର ସାମର୍ଥ୍ୟ ସହ ଆପଣଙ୍କ ସନ୍ତାନର ସାମର୍ଥ୍ୟର ତୁଳନା କରିବେନି । ଏପରି କଲେ ସନ୍ତାନର ଆତ୍ମବିଶ୍ୱାସ ବିକାଶ ଲାଭ କରିପାରେ ନାହିଁ । ତାହାଛଡ଼ା ପ୍ରଥମରୁ ହିଁ ତାହାଠାରେ 'ନିପାରିବା ପଣିଆ' ଜାତ ହୋଇପଡ଼େ ।
- ତିନି-ସାଢ଼େତିନିବର୍ଷ ବୟସର ପିଲା ଖେଳିବା ପାଇଁ ଖୁବ୍ ଭଲ ପାଆନ୍ତି । ତାହାଛଡ଼ା ସେମାନଙ୍କଠାରେ ଜାଣିବାର ଇଚ୍ଛା ଥାଏ ପ୍ରବଳ । ଖୁବ୍ କୌତୂହଳୀ

ମଧ୍ୟ ସେମାନେ । ତେଣୁ ସେମାନଙ୍କ ଠାରେ ସୃଜନଶୀଳତା ବା ନୂଆ କିଛି କରିବାର ଗୁଣକୁ ବୃଦ୍ଧି କରିବା ପିତାମାତାଙ୍କର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ।

- ୩ ରୁ ୬ ବର୍ଷ ଭିତରେ ସନ୍ତାନକୁ ସବୁ ବିଷୟରେ ଅଳ୍ପ କିଛି କିଛି ଧାରଣା ଦେବା ଉଚିତ ।
- ଜାଣିରଖନ୍ତୁ ଯେ ସନ୍ତାନର ବୁଦ୍ଧି ବା ମେଧା ପାଖାପାଖି ୧୨ ବର୍ଷ ବୟସ ପର୍ଯ୍ୟନ୍ତ ବିକାଶ ଲାଭ କରିଥାଏ । ତେଣୁ, କହିବାକୁ ଗଲେ ୧୨ ବର୍ଷ ବୟସ ପୂର୍ବରୁ ହିଁ ତା'ର ଭବିଷ୍ୟତ ତାହାଠାରେ ଖୋଦେଇ ହୋଇଯାଏ !
- କେଉଁ ସ୍କୁଲ୍ ସପ୍ତମ ଶ୍ରେଣୀ ପରୀକ୍ଷାରେ ଓ ଦଶମ ଶ୍ରେଣୀ ପରୀକ୍ଷାରେ ଖୁବ୍ ଭଲ ଫଳ ଦେଖେଇଛି, ସେହି ସ୍କୁଲ୍‌କୁ ବାଛି ସେଠାରେ ଆପଣଙ୍କ ତିନିବର୍ଷର ପିଲାର ନାଁ ଲେଖେଇବା ଦରକାର ନାହିଁ । ନର୍ସରୀଠାରୁ ଆରମ୍ଭ କରି ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଯେଉଁ ସ୍କୁଲ୍‌ରେ ଭଲ ଯତ୍ନ ନିଆଯାଏ, ସେହି ସ୍କୁଲ୍ ହିଁ ଆପଣଙ୍କ ପିଲା ନିମନ୍ତେ ଉପଯୋଗୀ ।
- ମନେ ରଖନ୍ତୁ – ୧୨ ବର୍ଷ ବୟସ ପର୍ଯ୍ୟନ୍ତ ନିଜ ସନ୍ତାନ ଉପରେ ସମ୍ପୂର୍ଣ୍ଣ ନିଘା ରଖିଥିବେ । ତା'ର ସବୁ ପ୍ରକାରର ଯତ୍ନ ନେବେ । ତାକୁ ଆଦୌ ଅବହେଳା କରିବେନି । ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ତା'ର ସବୁ ପ୍ରକାରର ଯତ୍ନ ନେଇଥିଲେ, ପରେ ଏହାକୁ କୋହଳ କରିଦେଲେ ବିଶେଷ କ୍ଷତି ହେବାର ସମ୍ଭାବନା ନଥାଏ ।
- ଖେଳିବା ପାଇଁ ପିଲାକୁ ପର୍ଯ୍ୟାପ୍ତ ସୁଯୋଗ ଦେବେ । ଖେଳିବା ହିଁ ହେବ ତା'ପାଇଁ ଶିକ୍ଷା ଗ୍ରହଣର ମାଧ୍ୟମ । ନିଜର ମାନସିକ ଚାପ ତା' ଉପରେ ଲଦି ଦେବେନି ଓ ନିଜ ମନ ଭିତରର ପ୍ରତିଯୋଗୀ ଭାବର ସୁରାକ ଦେବେନି ତାକୁ ।
- ଯେଉଁ ସ୍କୁଲ୍ ଆପଣଙ୍କ ସନ୍ତାନର ସ୍ୱାସ୍ଥ୍ୟ, ପୋଷାକପତ୍ର, ଆଚରଣ ଓ ଉତ୍ତମ ବ୍ୟବହାର ଇତ୍ୟାଦିର ଯତ୍ନ ନିଏନି, ସେପରି ସ୍କୁଲ୍‌ରେ ପିଲାକୁ ପଢ଼େଇବେନି । ଶିକ୍ଷା ଗ୍ରହଣ ପାଇଁ ସିଲାବସ୍‌ର ଗୁରୁତ୍ୱ ଅଛି । କିନ୍ତୁ, ତାହା ପ୍ରାଧାନ୍ୟ ପାଇବା ଆଦୌ ଉଚିତ ନୁହେଁ । ସନ୍ତାନର ସର୍ବାଙ୍ଗୀଣ ବିକାଶ ହିଁ ପ୍ରତି ପିତାମାତାଙ୍କର ଲକ୍ଷ୍ୟ ହେବା ଆବଶ୍ୟକ । ଏହା ମଧ୍ୟ ଆଜିକାଲିକା ଯୁଗ ପାଇଁ ଅତି ଦରକାରୀ ।



# ଟି.ଭି. ହୋଇଛି କାଳ ?

ପ୍ର : ମୋ' ପୁଅ ବେଶ୍ ଭଲ ପଢ଼େ । ଭଲ ମନେ ରଖିପାରେ । ପଢ଼ିଲେ ସେ ଆହୁରି ଭଲ କରନ୍ତା । କିନ୍ତୁ ଟେଲିଭିଜନ ହେଲାଣି କାଳ । ଟିକିଏ ଫୁରୁସତ ମିଳିଲେ ସେ ଟି.ଭି. ଖୋଲି ବସିଯାଉଛି । ତେଣୁ ଧୀରେ ଧୀରେ ପାଠପଢ଼ାରୁ ଓହରିବାରେ ଲାଗିଛି ସେ । କଅଣ ଏହାର ସମାଧାନ ?

ଉ : ସମାଧାନ ତ ଅତି ସହଜ । ଆପଣଙ୍କ ପୁଅର ଭବିଷ୍ୟତ ଆପଣଙ୍କ ପାଇଁ ବଡ଼ ନା ଘରର ଟି.ଭି.ଟି ଆପଣଙ୍କ ପାଇଁ ବଡ଼ ? ଟି.ଭି.ଟିକୁ ନେଇ ଦୁଆର ଦେଇ ବାହାରେ ଫୋପାଡ଼ି ଦିଅନ୍ତୁ । ଆପଣଙ୍କ ଘରେ ପଇସା ବଳିବ, ସମସ୍ତଙ୍କ ହାତରେ ସମୟ ବଳିବ, ତାହାଛଡ଼ା ଆପଣଙ୍କ ପୁଅ ପରୀକ୍ଷାରେ ସମସ୍ତଙ୍କୁ ପଛରେ ପକେଇ ଆଗେଇଚାଲିବ !

ତେବେ ଆପଣ ତ ତାହା କରିପାରିବେନି । କିନ୍ତୁ ଏତିକି କରନ୍ତୁ ଯେ ପିଲାମାନେ ଘରେ ଥିବାବେଳେ ଆପଣ ଓ ଆପଣଙ୍କର ସ୍ୱାମୀ କେବେ ବି ଟି.ଭି. ଖୋଲିବେନି । ଆପଣଙ୍କର ଯଦି ତାହା ଦେଖିବାରେ ଲୋଭ, କେଉଁ ନ୍ୟାୟରେ ପିଲାଙ୍କୁ ଏଥିପାଇଁ ବାରଣ କରିବେ ? ବରଂ ଟି.ଭି. ନଦେଖିବା ଦ୍ୱାରା ଯେଉଁ ବଳକା ସମୟ ପାଇବେ, ସେହି ସମୟରେ ପିଲାଙ୍କୁ ଗପ ପଢ଼ି ଶୁଣେଇବେ । ଆପଣଙ୍କୁ ଗପ ଶୁଣେଇବା ନିମନ୍ତେ ସେମାନଙ୍କୁ ଉତ୍ସାହ ଦେବେ । ସୁବିଧା ହେଲେ ସେମାନଙ୍କୁ ସାଙ୍ଗରେ ନେଇ ବାହାରକୁ ବୁଲି ଯାଇପାରନ୍ତି ।

ଶୁଣନ୍ତୁ, ଜଣେ ମାଆଙ୍କର ନିଜ ଅଙ୍ଗେନିଭା କଥା ।

"ମୋର ଗୋଟିଏ ଝିଅ ପଢ଼େ କଲେଜ୍‌ରେ, ଆଉ ଜଣକ ଷଷ୍ଠ ଶ୍ରେଣୀରେ । ପାଖେଇ ଆସିଲା ପରୀକ୍ଷା । ଆମେ ସ୍ୱାମୀ-ସ୍ତ୍ରୀ ଦୁଇଜଣ ନିଷ୍ପତ୍ତି ନେଲୁ ଯେ ଝିଅ ଦୁହିଁଙ୍କୁ ପଢ଼ିବା ନିମନ୍ତେ ବେଶୀ ସମୟ ଯୋଗାଇ ଦେବା ଦରକାର ।

"ସବା ଆଗେ ଆମେ କେବଲ୍ ଟି.ଭି. ସଂଯୋଗ କାଟିଦେଲୁ । ଆଶ୍ଚର୍ଯ୍ୟର କଥା ଯେ କେବଲ୍ ଟି.ଭି. କଟିଯିବା ପରେ ମୋ' ଦୁଇ ଝିଅଙ୍କ ଚାଲିଚଳଣ ବଦଳିଗଲା । ପରୀକ୍ଷାରେ ସେ ଦୁହେଁ ପୂର୍ବ ଅପେକ୍ଷା ବେଶୀ ନମ୍ବର ରଖିଲେ । କାରଣ ପଢ଼ିବା ଓ ଖେଳିବା ପାଇଁ ସେମାନଙ୍କୁ ପ୍ରଚୁର ସମୟ ମିଳିଗଲା । ଯେଉଁ ବିଷୟ ପଢ଼ିବାରେ ସେମାନେ ହେଳା କରୁଥିଲେ, ତାକୁ ପଢ଼ିବାର ବି ସୁଯୋଗ ପାଇଗଲେ ।

"ବେଶୀ ରାତି ଯାଏ ସିରିଆଲ୍ ଦେଖିବାର ପ୍ରଶ୍ନ ଉଠିଲାନି । ତେଣୁ ରାତିରେ ଖାଇସାରି ଚଞ୍ଚଳ ଶୋଇପଡ଼ିଲେ । ବଡ଼ି ଭୋରରୁ ଉଠି ପଢ଼ାପଢ଼ିରେ ଲାଗିଗଲେ । ଖାଲି ଯେ ପଢ଼ିବା ପାଇଁ ବେଶୀ ସମୟ ମିଳିଗଲା ତାହା ନୁହେଁ, ସାଙ୍ଗସାଥୀ ଓ ବନ୍ଧୁବାନ୍ଧବଙ୍କ ଘରକୁ ବୁଲିଗଲେ । ଘରେ ବସି ଛବି ଆଙ୍କିଲେ, ସମସ୍ତଙ୍କ ସାଙ୍ଗରେ ସମ୍ପର୍କ ରଖିବାରୁ ସେମାନଙ୍କ ମନ ବି ଭଲ ରହିଲା । ଫଳରେ ପାଠ ପଢ଼ିବାରେ ଆଗ୍ରହ ବଢ଼ିଲା । ପଢୁଥିବା ପାଠ ଭଲ ମନେ ରହିଲା ମଧ୍ୟ ।

"ଆହୁରି ଗୋଟିଏ ଭଲ ଫଳ ବି ମିଳିଲା । ଆମ ଭିତରେ ଓ ସେମାନଙ୍କ ଭିତରେ ଗଢ଼ି ଉଠିଲା ଭଲ ବୁଝାମଣା । ଆମେ ସେ ଦୁହିଁଙ୍କ ପାଖରେ ବସି ଗପସପ ହେବା ନିମନ୍ତେ ସମୟ ପାଇଗଲୁ । ଗପସପ ହେବା ଫଳରେ ଆମ-ଆମ ଭିତରେ ବିକାଶ ଲାଭ କଲା ବନ୍ଧୁତାର ସମ୍ପର୍କ । ସେମାନେ ସେମାନଙ୍କ ସମସ୍ୟା ବିଷୟରେ ମନ ଖୋଲି ଆମକୁ କହିପାରିଲେ । ଆମେ ବି ଘରର ବିଭିନ୍ନ ସମସ୍ୟା ବିଷୟରେ ସେମାନଙ୍କୁ କହିପାରିଲୁ । ଏପରିକି ସେମାନଙ୍କ ପଢ଼ାପଢ଼ି ପାଇଁ କେତେ ଖର୍ଚ୍ଚ କରିବାକୁ ପଡୁଛି, ତାହା ମଧ୍ୟ ଆଲୋଚନା ହେଲା । ଫଳରେ ସେମାନେ ଟଙ୍କା ପଇସାର ମୂଲ୍ୟ ବୁଝିବାର ସୁଯୋଗ ପାଇଲେ । ଏପରିକି ସେମାନଙ୍କୁ ଦିଆଯାଉଥିବା ପଇସାପତ୍ରକୁ ବାଜେ ଖର୍ଚ୍ଚରେ ଉଡ଼େଇ ନଦେଇ ସଞ୍ଚିବା ପାଇଁ ଆଗ୍ରହୀ ହେଲେ ।

"ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଲାଭଟି ବିଷୟରେ କହେ । ଚିନ୍ତା କରିବା ନିମନ୍ତେ ବହୁ ସମୟ ମିଳିଗଲା ତାଙ୍କୁ । ନିତିଦିନିଆ ସମସ୍ୟା ବା ଅସୁବିଧାକୁ ସମାଧାନ କରିବାର ଚିନ୍ତା, ନୂଆ କିଛି ସୃଷ୍ଟି କରିବାର ଚିନ୍ତା ଓ ସ୍କୁଲ୍-କଲେଜ୍‌ର ପାଠପଢ଼ା ସହିତ ଅନ୍ୟାନ୍ୟ ବିଷୟରେ ଭାବିବା ପାଇଁ ସେମାନେ ସମୟ ପାଇଗଲେ । ଏପରିକି ପାଠପଢ଼ା ବହି ସାଙ୍ଗକୁ ଅନ୍ୟ ଭଲ ଭଲ ବହି ପଢ଼ିବାର ଅଭ୍ୟାସ କରିପାରିଲେ ସେମାନେ । ସାନଝିଅ ସଂସ୍କୃତ ଶ୍ଳୋକ ମୁଖସ୍ଥ କରି ପ୍ରାର୍ଥନା କରିବା ସମୟରେ ଗାଇ ସମସ୍ତଙ୍କ ମନରେ ଆନନ୍ଦ ଭରିଦେଲା ।

"ଚିନ୍ତା କରନ୍ତୁ ତ, ଟି.ଭି. ବଦଳରେ କେତେ ସବୁ ଫାଇଦା ମିଳିଗଲା ଆମ ସ୍ୱାମୀ-ସ୍ତ୍ରୀ ଦୁହିଁଙ୍କୁ ଓ ଆମ ଦୁଇ ଝିଅଙ୍କୁ । ଆମେ ଯଦି ପାରିଲୁ, ତେବେ ଆପଣ ପାରିବେନି କାହିଁକି ? ଏତିକି କଥା, ସେମାନଙ୍କୁ ବୁଝେଇ ସୁଝେଇ ମନେଇବାକୁ ପଡ଼ିଲା । ମାସେ ଦୁଇମାସ ପରେ ପୁଣି କେବଲ୍ ସଂଯୋଗ ଲଗାଯିବ ବୋଲି ମିଛ କହିବାକୁ ହେଲା । ଏବେ ସେମାନେ ପୂରା ବୁଝିଗଲେଣି । କେବଲ୍ ଟି.ଭି. ସଂଯୋଗର ନାଁ ବି ଧରୁନାହାନ୍ତି ସେମାନେ ।

"ତେବେ ଆଉ ଗୋଟିଏ କଥା । ସନ୍ତାନମାନଙ୍କ ଉପରେ କିଛି କଟକଣା ରଖିବା ଦରକାର ସିନା, ନିଜର ନିଷ୍ପତ୍ତିକୁ ଜୋର୍ ଜବରଦସ୍ତ ସେମାନଙ୍କ ଉପରେ ଲଦିଦେଲେ ସେମାନେ ବିଦ୍ରୋହୀ ହୋଇଉଠନ୍ତି । ପିଲାମାନଙ୍କୁ ପଢ଼ିବା ପାଇଁ କହିବା ସଙ୍ଗେ ସଙ୍ଗେ ସେମାନଙ୍କ ମନୋରଞ୍ଜନ (ଟି.ଭି. ଦେଖିବା ବ୍ୟତୀତ) ପାଇଁ ଅନ୍ୟାନ୍ୟ ସୁଯୋଗ ସୃଷ୍ଟି କରିବେ । ପାଠପଢ଼ାରେ ସେମାନଙ୍କୁ ସାହାଯ୍ୟ କରିବେ । ଠିକ୍ ଭାବରେ ସବୁ ବିଷୟ ପଢ଼ିବା ପାଇଁ ସେମାନଙ୍କ ନିମନ୍ତେ ପାଠପଢ଼ା ରୁଟିନ୍‌ଟିଏ କରିଦେବେ । ରୁଟିନ୍ ଅନୁଯାୟୀ ପଢ଼ିବା ନିମନ୍ତେ ସେମାନଙ୍କୁ ଉତ୍ସାହିତ କରିବେ । ତେବେ, 'ପଢ଼୍', 'ପଢ଼୍' ବୋଲି ଶୁଆ ଭଳି ସବୁବେଳେ ଘୋଷି ଚାଲିବେନି । ପଢ଼ାପ୍ରତି ସେମାନଙ୍କଠାରେ ଆଗ୍ରହ ସୃଷ୍ଟି କରିବେ । ସେମାନେ ଯେପରି ପଢ଼ିବାର ମଜା ଅନୁଭବ କରନ୍ତି, ତାହା ଦେଖିବା ଆପଣଙ୍କର ଦାୟିତ୍ୱ ।"

ଆପଣଙ୍କ ପ୍ରଶ୍ନର ଉତ୍ତର ତ ଆପଣଙ୍କୁ ମିଳିଯାଇଥିବ । ସେ ଯଦି ପାରିଲେ, ତେବେ ଆପଣ ପାରିବେନି କାହିଁକି ? ହେଲେ, ଆପଣଙ୍କ ପାଇଁ ଲୋଡ଼ା ଏକ ଦୃଢ଼ ସଙ୍କଳ୍ପ ।



# ବ୍ୟକ୍ତିତ୍ୱ ତଥା ମୂଲ୍ୟବୋଧର ବିକାଶ

ଅନୁକରଣ କରିବା ହେଉଛି ସନ୍ତାନମାନଙ୍କର ପ୍ରାକୃତିକ ପ୍ରବୃତ୍ତି । ସେମାନଙ୍କୁ ଉତ୍ତମ ଆଚରଣ ଶିକ୍ଷା ଦେବା ପାଇଁ ଯେତେ ପ୍ରୟାସ କଲେ ମଧ୍ୟ ସେମାନେ ପିତାମାତାଙ୍କ ଆଚରଣକୁ ଅବିକଳ-ନକଲ କରି ଚାଲିଥିବେ ।"

–ଆବିଗେଲ୍ ଭାନ୍ ବ୍ୟୁରେନ୍

ପ୍ର : ମୋ ପୁଅକୁ ଏବେ ଦଶ ବର୍ଷ । ସେ ଯାହା ବୁଝିଥିବ ସେଇଆ । ବଡ଼ ସ୍ୱାର୍ଥପର । ତା' ମନରେ ଟିକିଏ ହେଲେ ଦୟାମାୟା ନାହିଁ । କହିବାକୁ ଗଲେ ସେ ଅତି ଉଗ୍ର ସ୍ୱଭାବର । ଭଲ ପଢ଼େ । ଭଲ ଗାଏ । ଭଲ ଖେଳେ । ହେଲେ କେଉଁଥିରେ ସନ୍ତୁଷ୍ଟ ହେବା ତା'ର ଜାତକରେ ନାହିଁ । ଆମ ବାପମା'ଙ୍କ ପାଇଁ କି ତା' ସାଙ୍ଗସାଥୀମାନଙ୍କ ପାଇଁ ତା' ମନରେ କୌଣସି ଦରଦ ଥିବା ଭଳି ଆମକୁ ଜଣାପଡ଼େ ନାହିଁ । ଅନ୍ୟମାନଙ୍କୁ ପଛରେ ପକେଇ ନିଜେ ଆଗେଇଯିବା ନିମନ୍ତେ ସେ ସବୁବେଳେ ସଂଗ୍ରାମ ଚଳେଇଛି । କଅଣ ଏହାର କାରଣ ? ଏହାର ସମାଧାନ ଅବା କଅଣ ?

ଉ : ଏବେ ଆମ ପିଲାମାନେ ପ୍ରାୟତଃ ଏହି ପ୍ରକାରର ଆଚରଣ ଦେଖାଉଛନ୍ତି । ଯେଉଁ ପିତାମାତାମାନେ ନିଜ ସନ୍ତାନମାନଙ୍କ ଭବିଷ୍ୟତ ନେଇ ଖୁବ୍ ଉଚ୍ଚ ଆଶା ପୋଷଣ କରନ୍ତି ଓ ସେହି ଆଶାକୁ ଚରିତାର୍ଥ କରିବା ନିମନ୍ତେ ସନ୍ତାନମାନଙ୍କୁ ସବୁବେଳେ ଚେତେଇ ଚାଲନ୍ତି, ସାଧାରଣତଃ ସେମାନଙ୍କ ପିଲାଏ ଏ' ଧରଣର ଆଚରଣ ଦେଖାଉଥିବାର ପରିଲକ୍ଷିତ ହୋଇଥାଏ । 'ମୋ ଝିଅ କ୍ଲାସ୍‌ରେ ଫାଷ୍ଟ୍ ହେଉ', 'ମୋ ପୁଅ ସବୁ କ୍ଷେତ୍ରରେ ତା'ର ସାଥୀମାନଙ୍କୁ ଟପିଯାଉ' – ଏହି ପ୍ରକାରର ମନୋଭାବ ପୋଷଣ କରୁଥିବା ବାପମା' ପିଲାମାନଙ୍କ ମୁଣ୍ଡକୁ ପାଗଳ କରିଦିଅନ୍ତି ବୋଲି କହିଲେ ଚଳେ । ବାପମା' ବାସ୍ତବବାଦୀ ନହେଲେ ପିଲାଏ ଅବା ବାସ୍ତବବାଦୀ ହୋଇପାରିବେ କିପରି ?

ଅନ୍ୟ ଏକ ଦିଗକୁ ମଧ୍ୟ ବିଚାର କରନ୍ତୁ । ଯେଉଁ ପରିବାରରେ ବାପମା' ନିଜେ ତୀବ୍ର ପ୍ରତିଯୋଗିତାମୂଳକ ଜୀବନ ସଂଗ୍ରାମରେ ବ୍ରତୀ, ନିଜେ ଅନ୍ୟମାନଙ୍କୁ ପଛରେ ପକେଇ ଉପରକୁ ଉଠିବା ପାଇଁ ବ୍ୟଗ୍ର, ସେମାନଙ୍କର ଏହି ମାନସିକତାର ପ୍ରଭାବ ସନ୍ତାନମାନଙ୍କ ଉପରେ ପଡ଼ିବା ସ୍ୱାଭାବିକ । ଏବେ ବାପମା' ନିଜ ବୃତ୍ତିରେ ଏତେ ବ୍ୟସ୍ତ ରହୁଛନ୍ତି ଯେ ପିଲାମାନଙ୍କ ସହ ଖୁସିଗପ କରିବା ପାଇଁ ବି ସେମାନେ ସମୟ ପାଉନାହାନ୍ତି । ପିଲାମାନଙ୍କ ଭାବନାରେ ସେମାନେ ଅଂଶୀଦାର ହୋଇପାରୁନାହାନ୍ତି । ଯେତେବେଳେ ଅବା କିଛି ନା କିଛି କଥାବାର୍ତ୍ତା ହେଉଛନ୍ତି, ସେତେବେଳେ କେବଳ ପାଠ ବିଷୟକୁ ନେଇ ଚର୍ଚ୍ଚା, ଜ୍ଞାନ ଗିଳେଇବାର ପ୍ରଚେଷ୍ଟା । ଯେଉଁ ପ୍ରକାର ଭାବର ଆଦାନପ୍ରଦାନ ପରସ୍ପରକୁ ନିକଟତର କରେଇବ, ସମାଜ ସହ ପରିଚିତ କରେଇପାରିବ, ଭବିଷ୍ୟତରେ ସମସ୍ତଙ୍କ ସହ ମିଳିମିଶି ଚଳିବାର ସୂତ୍ର ବତେଇପାରିବ, ସେହି ପ୍ରକାରର କଥାବାର୍ତ୍ତା ପିତାମାତା ଓ ସନ୍ତାନମାନଙ୍କ ମଧ୍ୟରେ କ୍ରମେ ସ୍ୱପ୍ନ ହେବାକୁ ବସିଲାଣି । ଫଳରେ ପିତାମାତା ଓ ସନ୍ତାନ ମଧ୍ୟରେ ଆବେଗିକ ବନ୍ଧନ ଶିଥିଳ ହେବାରେ ଲାଗିଛି । ଯେଉଁ ସମୟତକ ସମସ୍ତେ ଘରେ ରହୁଛନ୍ତି, ସେତେବେଳେ ବାପମା' ନିଜ ନିଜ କାମକୁ ନେଇ ବ୍ୟସ୍ତ ତ ପିଲାମାନେ ସେମାନଙ୍କ କାମକୁ ନେଇ ବ୍ୟସ୍ତ । ଟେଲିଭିଜନ୍‌ର ପରଦା ହୋଇଛି ଆନନ୍ଦ ଆହରଣ କରିବା ଓ ମନୋରଞ୍ଜନ କରେଇବାର ଏକମାତ୍ର ଉତ୍ସ !

କହିଲେ, ଆପଣ ସ୍ୱାମୀ-ସ୍ତ୍ରୀ ଦୁଇଜଣ ପୁଅକୁ କେଉଁ ନିଃସ୍ୱାର୍ଥପର କାମରେ ଲଗେଇଛନ୍ତି ଯେ ସେ ନିଃସ୍ୱାର୍ଥପରତା ଶିଖିବ କି ଅନ୍ୟମାନଙ୍କ ଭଲ ମନ୍ଦରେ ଭାଗୀଦାର ହୋଇପାରିବ ? ସେ ଗରିବ ଲୋକଙ୍କୁ ସାହାଯ୍ୟ କରୁ ବୋଲି ତାକୁ ଶିଖେଇଛନ୍ତି ? ତା'ଦ୍ୱାରା ଏହି କାମ କରେଇଛନ୍ତି ? କୌଣସି ଆତ୍ମୀୟ ଡାକ୍ତରଖାନାରେ ପଡ଼ିଥିଲେ ତା'କୁ ସାଙ୍ଗରେ ନେଇ ଡାକ୍ତରଖାନା ଯାଇଛନ୍ତି ? ସାଙ୍ଗସାଥୀମାନଙ୍କ ସହ ମିଶି ପିକ୍‌ନିକ୍ ଯିବା କି ସ୍କୁଲର ବିଭିନ୍ନ କାର୍ଯ୍ୟକ୍ରମର ପରିଚାଳନାରେ ଭାଗ ନେବା ପାଇଁ ତାକୁ ଉତ୍ସାହିତ କରିଛନ୍ତି ? ଆପଣ ଦୁହେଁ ଯଦି କେବଳ ତା'ର ନମ୍ବର, ସଫଳତା ଓ ସାର୍ଟିଫିକେଟ୍ ଉପରେ ଗୁରୁତ୍ୱ ଦେଉଥିବେ, ତେବେ ସେ ତା'ରି ପଛରେ ଗୋଡ଼େଇବ ଓ ଗୋଡ଼ାଉଛି ମଧ୍ୟ ।

ବାପ କି ମା' ଉଗ୍ର ହେଲେ ପିଲା ଉଗ୍ର ହେବାକୁ ଶିଖିବ । ଆପଣ ତୁ' ତା', ରେ' ରା' ଆଚରଣ ଦେଖେଇଲେ ସେ ଠିକ୍ ଏହିପରି ଆଚରଣ ଦେଖେଇବ । ଆପଣ ସାମାନ୍ୟ କଥାରେ ରାଗି ଉଠିଲେ ସେ ମଧ୍ୟ ସାମାନ୍ୟ କଥାରେ ରାଗିଉଠିବ । କାରଣ, ଅନୁକରଣ କରିବା ହେଲା ପିଲାମାନଙ୍କର ସ୍ୱାଭାବିକ ପ୍ରବୃତ୍ତି । ଆପଣଙ୍କ ପୁଅ ତା'

ବାପମା'ଙ୍କୁ ଅବିକଳ ଅନୁକରଣ କରି ଚାଲିଲେ ତାକୁ ଦୋଷ ଦେବା କାହିଁକି ? ବାପମା'ଙ୍କ କ୍ରୋଧ ସନ୍ତାନମାନଙ୍କର ଯେତେ ଅମଙ୍ଗଳ କରିଥାଏ ତାହା କଳ୍ପନାତୀତ ।

ମନେରଖନ୍ତୁ ଯେ ସନ୍ତାନର ବୌଦ୍ଧିକ ସଫଳତା ତା'ର ଏକମାତ୍ର ଆବଶ୍ୟକତା ନୁହେଁ । ତା'ର ସାମାଜିକ ଆଚରଣ, ବ୍ୟକ୍ତିତ୍ୱ, ତା'ର ସାଙ୍ଗସାଥୀ ଇତ୍ୟାଦି ହେଉଛନ୍ତି ତା'ର ସ୍ଥାୟୀ ପ୍ରମାଣପତ୍ର । ନାଁ ପଛରେ ଧାଡ଼ି ଧାଡ଼ି ଡିଗ୍ରୀ ଲଗେଇ ମଧ୍ୟ ସେ ଯଦି ସମାଜରେ ଗ୍ରହଣୀୟ ହୋଇପାରିଲାନି କି ସମାଜକୁ ଗ୍ରହଣ କରିପାରିଲାନି, କ'ଣ ତେବେ ତା' ଡିଗ୍ରୀଗୁଡ଼ିକର ମୂଲ୍ୟ ? ବାପମା' ଯଦି ପିଲାମାନଙ୍କ ଉପରେ ଅସ୍ୱାଭାବିକ ଚାପ ନ ଦେବେ ଏବଂ ନିଜ ନିଷ୍ପତ୍ତିକୁ ସେମାନଙ୍କ ଉପରେ ଲଦି ନଦେବେ, ତେବେ ଆମ ପିଲାଏ ଆହୁରି ଭଲ ଭାବରେ ଗଢ଼ି ହୋଇପାରିବେ । ଏହା ବୋଲି ସେମାନଙ୍କ ଉପରେ ଯେ ନିଘା ନରଖିବେ, ତାହା ନୁହେଁ ।

**ପ୍ର : ତାହାହେଲେ କ'ଣ ସନ୍ତାନର ବାହ୍ୟ ସଫଳତା ଅପେକ୍ଷା ତା'ର ବ୍ୟକ୍ତିତ୍ୱ ବା ଅନ୍ତଃସଫଳତା ହେଉଛି ଅଧିକ ଗୁରୁତ୍ୱପୂର୍ଣ୍ଣ ।**

ଉ: ହଁ, ତାହାହିଁ ଠିକ୍ ଏବଂ ସମ୍ପୂର୍ଣ୍ଣ ଠିକ୍ । ସନ୍ତାନର ବ୍ୟକ୍ତିତ୍ୱର ବିକାଶ ପାଇଁ ଯେତିକି ପୁଞ୍ଜି ଖଟେଇପାରିବେ, ଜୀବନ ସଂଗ୍ରାମକୁ ମୁକାବିଲା କରିବାରେ ସେ ସେତିକି ସଫଳ ହୋଇପାରିବ । ଜାଣିରଖନ୍ତୁ ଯେ ପିଲାମାନେ ବଡ଼ ସୃଜନଶୀଳ । ପ୍ରତ୍ୟେକ ପିଲା ଜଣେ ଜଣେ ଉଦ୍‌ଭାବକ, ଜଣେ ଜଣେ ଆବିଷ୍କାରକ । ନୂଆ ନୂଆ ଉଦ୍ୟମରେ ଜଡ଼ିତ ହେବା ସେମାନଙ୍କର ସ୍ୱାଭାବିକ ଗୁଣ । ତେଣୁ ସେ ନିଜର ଆଗ୍ରହକୁ ଆବିଷ୍କାର କରୁ । ଆପଣଙ୍କ ଆଗ୍ରହ ଓ ନିଷ୍ପତ୍ତି ତା' ଆଗ୍ରହରେ ବାଧକ ନହେଉ । ସନ୍ତାନର ବ୍ୟକ୍ତିତ୍ୱ ସବୁ ଦିଗରେ ପ୍ରସାର ଲାଭ କରୁ, କେବଳ ଗୋଟିଏ ଦିଗରେ ନୁହେଁ ।

**ପ୍ର : 'ବ୍ୟକ୍ତିତ୍ୱ' ଶବ୍ଦଟିକୁ ଆମେ ଅଧିକାଂଶ ସମୟରେ ବ୍ୟବହାର କରି ଚାଲିଛୁ । ହେଲେ 'ବ୍ୟକ୍ତିତ୍ୱ' କହିଲେ କଅଣ ବୁଝାଯାଏ ?**

ଉ: ଆପଣ 'ସୁଷମ ଖାଦ୍ୟ' ବିଷୟରେ ଶୁଣିଥିବେ କିମ୍ବା ଏ' ସମ୍ପର୍କରେ ଜାଣିଥିବେ । ଖାଦ୍ୟରେ ଥାଏ ଶ୍ୱେତସାର, ସ୍ନେହସାର, ପୁଷ୍ଟିସାର, ଧାତୁସାର, ଜୀବସାର ଓ ଜଳ ଭଳି ବିଭିନ୍ନ ଉପାଦାନ । ଏହି ପ୍ରତ୍ୟେକ ଉପାଦାନ ଆମର ସ୍ୱାସ୍ଥ୍ୟରକ୍ଷା ପାଇଁ ଦରକାର । ହେଲେ କେଉଁ କେଉଁ ଉପାଦାନ ଦୈନିକ କେତେ କେତେ ଦରକାର, ତାହାଠାରୁ ଅଧିକ କି କମ୍ ନ ଖାଇ ଠିକ୍ ସେହି ପରିମାଣରେ ବା ଆବଶ୍ୟକତା ଅନୁସାରେ ଖାଇଲେ ଆମେ ସୁଷମ ଖାଦ୍ୟ ଖାଇଲେ ବୋଲି କୁହାଯାଏ ।

ବ୍ୟକ୍ତିତ୍ୱ ହେଉଛି ଠିକ୍ ଏହିପରି ଏକ ବ୍ୟାପାର । ଆମେ ସମସ୍ତେ ସନ୍ତାନର ବହୁମୁଖୀ ଚରିତ୍ରର ପ୍ରଗତି ଚାହୁଁ । ସେଗୁଡ଼ିକ ପୁଣି ତା'ଠାରେ ଉପଯୁକ୍ତ ଅନୁପାତରେ ରହିଥିବା ଦରକାର । ଆମେ ସେମାନଙ୍କ ପାଠପଢ଼ା ପ୍ରତି ଯେତିକି ଗୁରୁତ୍ୱ ଦେଉ, ଚରିତ୍ରର ଅନ୍ୟ ଦିଗଗୁଡ଼ିକର ବିକାଶ ଦିଗରେ ସେତିକି ଧ୍ୟାନ ଦେଉନା । ତା' ଚରିତ୍ରର ସର୍ବବିଧ ବିକାଶ ଘଟିଲେ ସେ ନିଜର ସାମର୍ଥ୍ୟ ଓ ସୀମିତତା ବିଷୟରେ ସଚେତନ ହୋଇଥାଏ । ନିଜ ବିଷୟରେ ତା'ର ଏହି ସଚେତନତା ତା'ର ବୌଦ୍ଧିକ ସଫଳତା ତୁଳନାରେ ଅନେକ ଗୁଣ ଅଧିକ ଗୁରୁତ୍ୱପୂର୍ଣ୍ଣ । ଶିକ୍ଷାଗତ ଯୋଗ୍ୟତା ବ୍ୟକ୍ତିତ୍ୱର ବିକାଶରେ ସହାୟକ ହୋଇଥାଏ, କିନ୍ତୁ ତା' ଚରିତ୍ରର ସର୍ବବିଧ ବିକାଶ ନଘଟିଲେ ବିକୃତ ହୋଇପଡ଼େ ବ୍ୟକ୍ତିତ୍ୱ । ବ୍ୟକ୍ତିତ୍ୱର ବିଭିନ୍ନ ବିଭାବ ଏବଂ ମୂଲ୍ୟବୋଧ ସମ୍ପର୍କରେ ସନ୍ତାନମାନଙ୍କୁ ଅବଗତ କରେଇବା ତଥା ସେମାନଙ୍କୁ ବ୍ୟବହାରିକ ତାଲିମ ଦେବା କାର୍ଯ୍ୟ ପ୍ରତି ପିତାମାତାମାନେ ପ୍ରାୟତଃ ବୀତସ୍ପୃହ । ସେ କ୍ଲାସ୍‌ରେ ଖୁବ୍ ଭଲ କରୁଥିଲେ ସବୁକିଛି ଆପେ ଆପେ ଗଢ଼ି ହୋଇଯିବ ବୋଲି ଆମେ ଧାରଣା ପୋଷଣ କରିଥାଉ । ହେଲେ, ଏପରି ଧାରଣା ସମ୍ପୂର୍ଣ୍ଣ ଅମୂଳକ ।

ଆପଣ ନିଶ୍ଚିତ ଭାବରେ ଚାହିଁବେ ଯେ ଆପଣଙ୍କ ସନ୍ତାନ ନିଜ ଜୀବନରେ ବଡ଼ ହେବାର ଅଭିଳାଷ ପୋଷଣ କରୁ, ଏହାକୁ ସାକାର କରିବା ପାଇଁ କଠିନ ପରିଶ୍ରମ କରୁ, ଭଲମନ୍ଦର ପାର୍ଥକ୍ୟ ଜାଣି ଭଲ କାମରେ ରତ ରହୁ, କଷ୍ଟସହିଷ୍ଣୁ ହେଉ, ବିପଦ ଆପଦରେ ଧୈର୍ଯ୍ୟ ଧରି ଏହାର ମୁକାବିଲା କରିପାରୁ, ସମସ୍ତଙ୍କ ପ୍ରତି ନିରପେକ୍ଷ ବିଚାର କରୁ, ତା'ର କାର୍ଯ୍ୟ ଓ କଥାରେ ସାଧୁତା ଅବଲମ୍ବନ କରୁ, ଅନ୍ୟମାନଙ୍କ ଦ୍ୱାରା ପ୍ରଭାବିତ ନହୋଇ ସ୍ୱାଧୀନ ଭାବରେ ନିଜର ନିଷ୍ପତ୍ତି ନେଉ, ମନରୁ ନୂଆ ନୂଆ ଧାରଣାକୁ ଜନ୍ମ ଦେଉ, ଅନ୍ୟମାନଙ୍କ ପ୍ରତି ଅନୁକମ୍ପାଶୀଳ ହେଉ, କର୍ତ୍ତବ୍ୟପରାୟଣ ହେଉ, ଅନ୍ୟମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଆଗ୍ରହୀ ହେଉ, ପରିବାରର ସଦସ୍ୟ ତଥା ବନ୍ଧୁମାନଙ୍କୁ ଭଲ ପାଉ ଓ ସ୍ନେହ କରୁ, ନିଜର ମାନସିକ ସନ୍ତୁଳନ ରକ୍ଷାକରୁ, ସମୟଯାନୁବର୍ତ୍ତୀ ହେଉ, ଜ୍ୟେଷ୍ଠମାନଙ୍କୁ ତଥା ଅନ୍ୟମାନଙ୍କୁ ସମ୍ମାନ ପ୍ରଦର୍ଶନ କରୁ, ଦାୟିତ୍ୱବାନ୍ ହେଉ, ନିଜ କଥା ତଥା ଆଚରଣରେ ସଂଯତ ହେଉ, ନିଜ ଆତ୍ମମର୍ଯ୍ୟାଦା ରକ୍ଷା କରୁ, ନିଜ ଜୀବନରେ ଶୃଙ୍ଖଳିତ ରହୁ, ସେବା ମନୋବୃତ୍ତି ପୋଷଣ କରୁ, ମିତବ୍ୟୟୀ ହେଉ, ବିଶ୍ୱାସୀ ହେଉ, ନିଃସ୍ୱାର୍ଥପର ହେଉ, ସତ କହୁ, ମଣିଷ ଉପରେ ଏବଂ ଈଶ୍ୱରଙ୍କ ଉପରେ ଆସ୍ଥା ପୋଷଣ କରୁ ଇତ୍ୟାଦି ।

ଏବେ ଆପଣ ପତିପତ୍ନୀ ଦ୍ୱୟ ନିଜକୁ ପଚାରନ୍ତୁ ଯେ ସନ୍ତାନର ସ୍କୁଲପଢ଼ା, ଘରପାଠ ଇତ୍ୟାଦି ଉପରେ ଆପଣ କେତେ ଗୁରୁତ୍ୱ ଦେଉଛନ୍ତି ଏବଂ କେତେ ଗୁରୁତ୍ୱ

ଦେଉଛନ୍ତି ତା'ଠାରେ ଉପରୋକ୍ତ ବିଭାବଗୁଡ଼ିକର ବିକାଶ ପାଇଁ ? ସେହିସବୁ ବିଭାବକୁ ଏକତ୍ର ବିଚାର କଲେ ତାହା ହିଁ ସନ୍ତାନର ବ୍ୟକ୍ତିତ୍ୱ । ବିଳାତ, ଆମେରିକାରୁ ଉଚ୍ଚତର ଇଞ୍ଜିନିଅରିଂ ଶିକ୍ଷାପ୍ରାପ୍ତ ହୋଇ ଆସି ଆପଣଙ୍କ ସନ୍ତାନ ଏଠାରେ ଲାଞ୍ଚ ନେବାବେଳେ ଧରାପଡ଼ିଲେ ପିତାମାତା ହିସାବରେ ଆପଣଙ୍କ ଉନ୍ନତ ଶିର ଆପେ ଆପେ ଅବନତ ହୋଇଯିବନି କି ? ଉଚ୍ଚ ଡିଗ୍ରୀଧାରୀ ଆପଣଙ୍କ ଡାକ୍ତର ପୁଅ ରୋଗୀମାନଙ୍କଠାରୁ ପଇସା ଝୁଣିବାରେ ପାରଙ୍ଗମ ହୋଇଥିଲେ ବାପମା' ହିସାବରେ ଆପଣ ଗର୍ବ କରିବେ ନା ଅନ୍ତର୍ଦାହରେ ହନ୍ତସନ୍ତ ହେବେ ?

**ପ୍ର : ସନ୍ତାନଠାରେ ଏହିସବୁ ବିଭାବର ବିକାଶ କରାଯିବ କିପରି ?**

**ଉ :** ହଁ, ଏହି ପ୍ରଶ୍ନଟି ଖୁବ୍ ଗୁରୁତ୍ୱପୂର୍ଣ୍ଣ । କାରଣ ଏହାକୁ କାର୍ଯ୍ୟକାରୀ କରେଇବା ଯଥାର୍ଥରେ ଏକ ଦୁରୂହ ବ୍ୟାପାର । ତେବେ ଏହା ସହଜ ନୁହେଁ ସତ, କିନ୍ତୁ ଆପଣ ଏଥିରୁ ଓହରିଗଲେ ଚଳିବନି ।

ଚରିତ୍ରର ପ୍ରତ୍ୟେକ ବିଭାବ ସମ୍ପର୍କରେ ସନ୍ତାନକୁ ଅବଗତ କରେଇବା ପାଇଁ ସେହି ସଂକ୍ରାନ୍ତ ଗପ କହନ୍ତୁ । ପୁରାଣ ହେଉ, ଇତିହାସ ହେଉ କିମ୍ବା ସାମ୍ପ୍ରତିକ ସମୟର ଅନୁକରଣୀୟ ବ୍ୟକ୍ତିତ୍ୱଙ୍କ ସମ୍ପର୍କରେ ହେଉ, ଆପଣ ଉଦାହରଣମାନ ସଂଗ୍ରହ କରନ୍ତୁ ଓ ସନ୍ତାନମାନଙ୍କୁ କହନ୍ତୁ । ମଦର୍ ଟେରେସାଙ୍କ ଜୀବନରୁ ସେବାଗୁଣ ସମ୍ପର୍କରେ କହିବେ ତ ମହାତ୍ମା ଗାନ୍ଧୀଙ୍କ ଜୀବନରୁ ଉଦାହରଣ ଦେଇ କହିବେ ସତ୍ୟତା ଆଚରଣ ସମ୍ବନ୍ଧରେ । ବଡ଼ଲୋକଙ୍କ ଜୀବନୀ ପଢ଼ିବା ନିମନ୍ତେ ଉତ୍ସାହିତ କଲେ ତା'ର ପ୍ରଭାବ ମଧ୍ୟ ଖୁବ୍ ଅନୁକୂଳ ।

କିନ୍ତୁ ସର୍ବୋପରି ଆପଣ ପିତାମାତା ଦୁଇଜଣ ତଥା ପରିବାରରେ ଥିବା ବଡ଼ ଭାଇଭଉଣୀ ହେଉଛନ୍ତି ପିଲାର ଆଦର୍ଶ । ସନ୍ତାନକୁ ଯେଉଁ ଛାଞ୍ଚରେ ଆପଣ ଗଢ଼ିବାକୁ ଚାହୁଁଛନ୍ତି, ନିଜକୁ ଠିକ୍ ସେହି ଛାଞ୍ଚରେ ପରିବର୍ତ୍ତିତ ହେବାକୁ ପଡ଼ିବ । ନିଜକୁ ପରିବର୍ତ୍ତନ କରିବାର ନମନୀୟତା ଯଦି ଆପଣଙ୍କର ନାହିଁ, ତେବେ ତା'ର କଅଁଳା ଚରିତ୍ରକୁ ସର୍ବାଙ୍ଗ ସୁନ୍ଦର କରି ଗଢ଼ିବା ଆପଣଙ୍କ ପକ୍ଷେ ସମ୍ଭବ ହେବନାହିଁ । ପିତା ଯଦି ସନ୍ତାନ ପାଇଁ ସମୟ ଦେବାକୁ ଅସମର୍ଥ, ମା' ଯଦି ଅସମର୍ଥ ତା'ର ସାନ୍ନିଧ ଦେବାରେ, ତେବେ ପୁଅ ଝିଅ କ'ଣ ମନକୁ ମନ ଭଲ ହୋଇ ବାହାରିବେ ? କହିଲେ, ଅର୍ଥ ଉପାର୍ଜନ ପଛରେ ଗୋଡ଼େଇ ଗୋଡ଼େଇ ଯଦି ପୁଅ ବାଲୁଙ୍ଗା ହୋଇ ବାହାରିଲା, ଝିଅ ନାଁ ପକେଇଲା, ତେବେ କ'ଣ ସେ ଅଜସ୍ର ଅର୍ଥ ଉପାର୍ଜନର ମୂଲ୍ୟ ? ପରିବାରକୁ ଭଲ ପାଇବାର ପ୍ରଭାବ ଅର୍ଥ ଉପାର୍ଜନର ପ୍ରଭାବକୁ ସମ୍ପୂର୍ଣ୍ଣ ମଳିନ କରିଦେବ ।

ଉଦାହରଣ ସ୍ୱରୂପ, ସନ୍ତାନମାନଙ୍କୁ ଘରକାମର ବିଭିନ୍ନ ଦାୟିତ୍ୱ ଦିଅନ୍ତୁ ଓ ସେମାନେ ଏହାକୁ କିପରି ସମ୍ପାଦନ କରୁଛନ୍ତି ତା' ଉପରେ ନଜର ରଖନ୍ତୁ । ନିଜେ ଘରକୁ ଓ ପଢ଼ା ଟେବୁଲ୍‌କୁ ପରିଷ୍କାର ରଖନ୍ତୁ ଓ ସେମାନେ ମଧ୍ୟ ଯେପରି ନିଜ କୋଠରି ଓ ପଢାଟେବୁଲ୍ ପରିଷ୍କାର ରଖିବେ ତାହା ଦେଖନ୍ତୁ । କେବଳ ପରାମର୍ଶ ଦେଇ ଚାଲିଲେ କିଛି ଲାଭ ମିଳିବ ନାହିଁ । ସେମାନଙ୍କୁ କାମରେ ଦେଖେଇଦେବାରେ ହିଁ ଅଧିକ ସୁଫଳ ମିଳିପାରିବ ।

ମନେରଖନ୍ତୁ ଯେ ପିତାମାତା ଓ ସନ୍ତାନମାନଙ୍କ ମଧ୍ୟରେ ଅନ୍ତରଙ୍ଗ ସମ୍ପର୍କ ଗଢ଼ି ଉଠିଥିଲେ ସନ୍ତାନମାନେ କୈଶୋରରେ ଉପନୀତ ହେଲେ ମଧ୍ୟ ସେମାନେ ପରିବାର ପାଇଁ ଏବଂ ସମାଜ ପାଇଁ ଆଦୌ ସମସ୍ୟା ରୂପେ ଉଭା ହେବେନାହିଁ । ଟେଲିଭିଜନ୍, ପତ୍ରପତ୍ରିକା, ସମ୍ବାଦପତ୍ର ଇତ୍ୟାଦି ପିଲାମାନଙ୍କ ଚରିତ୍ରକୁ ବହୁଳ ଭାବରେ ପ୍ରଭାବିତ କରୁଥିଲେ ମଧ୍ୟ ପିତାମାତାମାନଙ୍କର ପ୍ରଭାବ ଏହା ବିରୋଧରେ ଏକ ବଳିଷ୍ଠ ପ୍ରତିଷେଧକ । ବାପମା' ଯଦି ମୂଲ୍ୟବୋଧ ରକ୍ଷା କରିବାରେ ବ୍ରତୀ ଓ ସନ୍ତାନମାନଙ୍କୁ ମୂଲ୍ୟବୋଧ ରକ୍ଷା କରିବା ପ୍ରତି ସଚେତନ କରେଇବାରେ ବ୍ରତୀ, ତେବେ ଏହି ପୁଞ୍ଜି ବିନିଯୋଗ ଆଦୌ ବ୍ୟର୍ଥ ଯିବନାହିଁ ।



# ଆବେଗ ପରିଚାଳନା

**ପ୍ର : ପିଲାବୁଢ଼ା ସମସ୍ତେ ତ ହସଖୁସି ଚାହିଁଥାନ୍ତି । ହସଖୁସିରେ ଜୀବନ କଟେଇପାରିଲେ ସ୍ୱାସ୍ଥ୍ୟ ଭଲ ରହେ । ହେଲେ ଭୟ, କ୍ରୋଧ, ଦୁଃଖ ଇତ୍ୟାଦି ମାନସିକ ଆବେଗ କ'ଣ ସୁସ୍ଥ ରଖିବାରେ ସହାୟକ ହୋଇଥାଏ ?**

ଉ : ମଣିଷର ସ୍ଥିତି ପାଇଁ ଭୟ, କ୍ରୋଧ ଓ ଦୁଃଖ ଆଦି ମାନସିକ ଆବେଗର ଅବଦାନ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏଇ ଭୟ କଥା ବିଚାର କରନ୍ତୁ । ଆମର ନିରାପତ୍ତା ଓ ସ୍ୱାସ୍ଥ୍ୟ ପାଇଁ ଏହାର ଆବଶ୍ୟକତା ବୋଧହୁଏ ସବୁଠାରୁ ବେଶୀ । ଭୟ ହେଉଛି ପ୍ରକୃତିର ଏକ ବିରାଟ ଦାନ । ଲଣ୍ଡା ଛାତରୁ ପଡ଼ିଯିବାର ଭୟ ଥିବାରୁ ଆମେ ସେଭଳି ଛାତରେ ସାବଧାନତାର ସହ ଚଲାବୁଲା କରିଥାଉ । ପହଁରା ଜାଣିନଥିଲେ ଜଳରେ ବୁଡ଼ିଯିବାର ଡର ଥିବାରୁ ନଈ କିମ୍ବା ପୋଖରୀରେ ଗାଧୋଇବା ବେଳେ ଆମକୁ ସାବଧାନ ରହିବାକୁ ପଡ଼ିଥାଏ । ରାସ୍ତାରେ ଗାଡ଼ି ମାଡ଼ିଯିବାର ଆଶଙ୍କା ଥିବାରୁ ରାସ୍ତା ଅତିକ୍ରମ କଲାବେଳେ ଆମେ ସତର୍କତା ଅବଲମ୍ବନ କରିଥାଉ । ନିଆଁ ତଥା ବିସ୍ଫୋରଣ ପ୍ରତି ଭୟ ଥିବାରୁ ବାଣ ଫୁଟେଇଲାବେଳେ ଆମେ ସଚେତନ ରହୁ । ଅନ୍ଧାର ରାତିରେ ସାପର ଭୟ ଥିବାରୁ ଆମେ ହାତରେ ଟର୍ଚ୍ଚ ନେଇ ବାହାରକୁ ଯାଉ । ବସ୍ କି ରେଳରେ ଯାତ୍ରା କଲାବେଳେ ପକେଟ୍‌ମାରୁ ହେବାର ଡର ଥିବାରୁ ଟଙ୍କା ପଇସାକୁ ଆମେ ନିରାପଦରେ ରଖିବାକୁ ବାଧ ହେଉ । ହଁ ନା ନାହିଁ ?

ତେଣୁ ଭୟ ବା ଡର ହେଉଛି ଏକ ସତର୍କତାମୂଳକ ସଙ୍କେତ । କ୍ରୋଧ ଓ ଦୁଃଖର ମଧ୍ୟ ଏହି ପ୍ରକାରର କିଛି ଭୂମିକା ରହିଛି । ସନ୍ତାନମାନେ ଆବେଗଶୂନ୍ୟ ହୁଅନ୍ତୁ ବୋଲି ଆମେ କେହି ଚାହୁଁନା । ବରଂ ସନ୍ତାନମାନଙ୍କର କ୍ରୋଧ, ବିଷାଦ, ବିରକ୍ତି, ଅସନ୍ତୋଷ, ଯନ୍ତ୍ରଣା, ଦୁଃଖ ଇତ୍ୟାଦି ପ୍ରତି ଆମେ କୌଣସି ଗୁରୁତ୍ୱ ନଦେଲେ, ତାହା ସେମାନଙ୍କର ଦେହ ଓ ମନ ଉପରେ ଖୁବ୍ ପ୍ରତିକୂଳ ପ୍ରଭାବ ପକାଇଥାଏ ।

ସେମାନଙ୍କଠାରେ ପ୍ରକାଶ ପାଏ ମାନସିକ ଅସ୍ଥିରତା, କାହାର ମୁଣ୍ଡ ବଥାଏ ତ ଅନ୍ୟ କାହାଠାରେ ଦେଖାଦିଏ ପେଟ ଗୋଳମାଳ । କିଏ ଅନିଦ୍ରାର ଶିକାର ହୋଇପଡ଼େ ତ ଅନ୍ୟ କିଏ ପାଲଟିଯାଏ ଚିଡ଼ା । କୌଣସି କୌଣସି ଶିଶୁ ବିଛଣାରେ ପରିସ୍ରା କରି ଚାଲନ୍ତି ।

ପିଲାମାନେ ହୁଏତ ସ୍କୁଲ୍‌କୁ ଯିବାପାଇଁ ଡରନ୍ତି । ଡରନ୍ତି ରାସ୍ତାକୁ ବାହାରିବା ପାଇଁ କି ଅନ୍ଧାରରେ ଯିବାଆସିବା କରିବା ପାଇଁ । ଭାବନ୍ତୁ ତ, କେଉଁ ପିଲା ସ୍କୁଲ୍‌କୁ ଯିବା ନିମନ୍ତେ ଡରିଥାଏ ? ଯେଉଁ ପିଲା ଘର ବାହାରେ କୌଣସି ଅସ୍ୱସ୍ତିକର ଅନୁଭୂତି ଅର୍ଜନ କରିଥାଏ, ସେ ହିଁ ଡରିଥାଏ ସ୍କୁଲ୍ ଯିବା ପାଇଁ । ସେ ଯାହାହେଉ, ସେହି ଅସ୍ୱସ୍ତିକର ଅନୁଭୂତିକୁ ଆମେ 'ଡର' ବା 'ଭୟ' ଭାବରେ ଗ୍ରହଣ କରିନେବା ଉଚିତ । କେତେକ ଭୟ ସ୍ୱାସ୍ଥ୍ୟ ଅନୁକୂଳ ତ ଅନ୍ୟ କେତେକ ଅସଙ୍ଗତ ।

ଉଦାହରଣ ସ୍ୱରୂପ, 'ଡ୍ରାକୁଲା' ଭଳି ଭୀତି-ଉଦ୍ରେକକାରୀ ଚଳଚ୍ଚିତ୍ର ଦେଖିଲେ କୌଣସି କୌଣସି ପିଲା ବିଛଣାରେ ପରିସ୍ରା କରିଥାନ୍ତି । ହେଲେ ଭୀତିପ୍ରଦ ସିନେମା ଅବା ମୂତ୍ରତନ୍ତ୍ରକୁ କାହିଁକି ପ୍ରଭାବିତ କରିବ ବା କିପରି ପ୍ରଭାବିତ କରିବ ତାହା ଆମକୁ ଅଜଣା । ତେବେ ପିଲାମାନଙ୍କର ମନ ହେଉଛି ଛାପା କାଗଜ ଭଳି । ଏହା ସବୁ ଅନୁଭୂତିକୁ ଶୋଷି ନେଇ ସାଇତି ରଖିଥାଏ । ଏହି କାରଣରୁ ପିଲାଙ୍କ ମନ ଭିତରକୁ ଅନୁପ୍ରବେଶ କରୁଥିବା ସୁସ୍ଥ ଓ ଅସୁସ୍ଥ ଘଟଣାଗୁଡ଼ିକ ଉପରେ ପିତାମାତା ତୀକ୍ଷ୍ଣ ନଜର ରଖିବା ସ୍ପୃହଣୀୟ ।

ବିଛଣାରେ ପରିସ୍ରା କରିବା ମୂଳରେ ଡ୍ରାକୁଲା ଛବି ଦେଖାର ସମ୍ପର୍କ ଅଛି ବୋଲି ଧାରଣା କରି ନପାରିଲେ ଆମେ ଅଯଥାରେ ପିଲାକୁ ଦଣ୍ଡ ଦେଇପାରୁ, ଏହା ବନ୍ଦ କରିବା ନିମନ୍ତେ ତାକୁ ଔଷଧ-ଚିକିତ୍ସାରେ ରଖିପାରୁ କିମ୍ବା ତାକୁ ଶାନ୍ତିରେ ଶୁଆଇ ନଦେଇ ରାତିରେ ୩ ରୁ ୪ଥର ପରିସ୍ରା କରେଇ ନେଇପାରୁ । ଏହି ପରିପ୍ରେକ୍ଷୀରେ ଦେଖିଲେ ବିଛଣାରେ ପରିସ୍ରା କରିବା ଏକ ମୌଳିକ ସମସ୍ୟା ନୁହେଁ । ବରଂ ଏହା ଅନ୍ୟ କୌଣସି ସମସ୍ୟାର ଏକ ପରିଣତି ମାତ୍ର ।

ତେଣୁ ପିଲା କୌଣସି କାମ ପାଇଁ କି କୌଣସି ଜାଗାକୁ ଯିବା ପାଇଁ ଭୟ କରୁଥିଲେ, ଏହାକୁ ଅବଜ୍ଞା କରିବା ଆଦୌ ନିରାପଦ ନୁହେଁ । ବରଂ ଭୟର କାରଣ ଅନୁସନ୍ଧାନ କରି ସମାଧାନର ପନ୍ଥା ଖୋଜି ବାହାର କରିବା ହିଁ ପିତାମାତାଙ୍କର କର୍ତ୍ତବ୍ୟ ।

ଅନେକ ପିଲା, ଏପରିକି ବୟସ୍କ ଲୋକ ମଧ୍ୟ ଅସରପା ଓ ଝିଟିପିଟି ଦେଖିଲେ ଡରରେ ଛାନିଆ ହୋଇପଡ଼ନ୍ତି । ପିଲାବେଳେ ଅସରପା ଓ ଝିଟିପିଟି ବିଷୟରେ କୌଣସି ଅସ୍ୱସ୍ତିକର ତଥ୍ୟ ଦେଇନଥିଲେ, ପିଲା ମନରେ ଆଦୌ ଭୟ ଉଦ୍ରେକ ହୋଇନଥାନ୍ତା । 'ଚଞ୍ଚଳ ଶୋଇପଡ଼, ନୋହିଲେ ତୋ' ଶେଯ ଉପରକୁ ଅସରପା ଚଢ଼ି ଆସିବେ' ବୋଲି କହି ଥରେ ଡରେଇ ଦେଇଥିଲେ ଜୀବନସାରା ସେହି ଅସରପାର ଡର ସ୍ଥାୟୀ ଭାବରେ କଲବଲ କରୁଥାଏ ।

ସେହିପରି ଅନେକ ପିଲାଙ୍କର ଡାକ୍ତର ଓ ଇଞ୍ଜେକ୍ସନ୍‌କୁ ଖୁବ୍ ଡର । 'ତୁ ଯଦି କନ୍ଦାକଟା କରିବୁ ତ ତୋତେ ମୁଁ ଡାକ୍ତରଙ୍କ ପାଖକୁ ନେଇଯିବି । ସେଠାରେ ଡାକ୍ତରବାବୁ ତୋତେ ଇଞ୍ଜେକ୍ସନ୍ ଦେଇଦେବେ' – ଏପରି କହି ଡରେଇ ଦେଲେ ପିଲାଟି ଡାକ୍ତର ଓ ଇଞ୍ଜେକ୍ସନ୍ ସିରିଞ୍ଜ୍ ଏବଂ ଛୁଞ୍ଚିକୁ ଡରିବାରେ ଅସ୍ୱାଭାବିକତା ରହିଲା କେଉଁଠି ?

ଭୟରୁ ଜନ୍ମ ନିଏ ଅସ୍ୱାଭାବିକ ଭୟ । ଅସ୍ୱାଭାବିକ ଭୟରେ ଜଡ଼ିତ ଥାଏ ତୀବ୍ର ଉତ୍କଣ୍ଠା ଓ ଏହା ହୋଇଉଠେ ସମସ୍ୟା ସୃଷ୍ଟିର ନାୟକ । ବାଘ କି ସିଂହ ନେଇଯିବ ବୋଲି ପିଲା ମୁଣ୍ଡରେ ଭର୍ତ୍ତି କରି ଦେଇଥିଲେ ସେ ଚିଡ଼ିଆଖାନା ଯିବା ପାଇଁ ଡରିବା ସ୍ୱାଭାବିକ । ଯେଉଁମାନଙ୍କ ଘରେ ପୋଷା ବିରାଡ଼ି କି ପୋଷା କୁକୁର ଥାଆନ୍ତି, ସେହି ପରିବାରର ପିଲାଏ ବିରାଡ଼ି କି କୁକୁରକୁ ଦେଖିଲେ ଡରନ୍ତିନି । ହେଲେ, କୁକୁର ବିରାଡ଼ିଙ୍କ ସହ ପରିଚିତ ହୋଇନଥିବା ପିଲା କୁକୁର-ବିରାଡ଼ି ଦେଖିଲେ ଭୟ କରିଥାଏ । ତେଣୁ, ସନ୍ତାନମାନଙ୍କଠାରେ ଭୟ ଜାତ କରେଇବାରେ ବାପମା' ଓ ପରିବାରର ସଦସ୍ୟମାନେ ହିଁ ଗ୍ରହଣ କରିଥାନ୍ତି ଗୁରୁତ୍ୱପୂର୍ଣ୍ଣ ଭୂମିକା ।

ସେହିପରି ଅନ୍ଧାର କଥା । ଅନ୍ଧାର ପ୍ରତି ପ୍ରାୟ ଆମ ସମସ୍ତଙ୍କର ଭୟ । ଅନ୍ଧାରରେ କିଛି ଦେଖାଯାଉନଥିବାରୁ ଅନ୍ଧକାର ପରିବେଶରେ ଆମେ ଅମଙ୍ଗଳକର ଆଶଙ୍କା ପୋଷଣ କରିଥାଉ । ପିଲାବେଳୁ ମୁଣ୍ଡରେ ଭର୍ତ୍ତି କରି ଦିଆଯାଇଥାଏ ଯେ ଅନ୍ଧାରରେ ହିଁ ଆତଯାତ ହୋଇଥାନ୍ତି ଚୋର, ଡକାୟତ, ସାପ, ହିଂସ୍ରଜନ୍ତୁ, ତଥାକଥିତ ଭୂତ, ଡାଆଣୀ, ଚିରଗୁଣୀ ଇତ୍ୟାଦି । ପୁଣି ଅନ୍ଧାରରେ ରାସ୍ତା ବାରି ହେଉ ନଥିବାରୁ ବାଟ ଚାଲିଲାବେଳେ ଦୁର୍ଘଟଣାର ଭୟ ରହିଥାଏ । ଅନ୍ଧାରରେ ଘଟିଥିବା କୌଣସି ଅସ୍ୱସ୍ତିକର ପରିସ୍ଥିତିର ସମ୍ମୁଖୀନ ହୋଇଥିଲେ ପିଲାମାନେ ସ୍ୱତଃ ଅନ୍ଧାରକୁ ଭୟ କରିଥାନ୍ତି ।

ପିଲାମାନଙ୍କ ମନରୁ ଅନ୍ଧାରର ଭୟ ଛଡ଼େଇବା ପାଇଁ ମା'ମାନେ ହିଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରନ୍ତି । କାରଣ 'ଅନ୍ଧାର ଘୁତୁଘୁଡ଼ି' 'ଭୂତ', 'ଡାଆଣୀ' ଇତ୍ୟାଦି

କାଳ୍ପନିକ ଚରିତ୍ରମାନ ମା'ମାନଙ୍କ ଦ୍ୱାରା ସୃଷ୍ଟ । ସାମୟିକ ଫାଇଦା ପାଇଁ ସେମାନେ ପିଲା ମୁଣ୍ଡରେ ଏହି ପ୍ରକାରର ଧାରଣା ପୂରେଇଥାଆନ୍ତି ସିନା, ଏଗୁଡ଼ିକ କିନ୍ତୁ ସ୍ଥାୟୀ ଭାବରେ ପିଲା ମୁଣ୍ଡରେ ଅଟକିଯାଏ ଏବଂ ସାରା ଜୀବନ ତାକୁ ଡରେଇ ଚାଲିଥାଏ ।

ଅନ୍ଧାରକୁ ଡରୁଥିବା ପିଲା ପାଖରେ ରାତିରେ ବସି ଝରକାବାଟେ ଅନ୍ଧାରକୁ ଚାହିଁବା ପାଇଁ ତାକୁ କହିବା, ରାତିରେ ଆଲୁଅ ଲିଭେଇ ଦେଇ ଅନ୍ଧାରରେ ପିଲା ପାଖରେ ବସିବା, ତା'ର ହାତ ଧରି ଅନ୍ଧାର ରାତିରେ ବୁଲେଇ ନେବା, ରାତିବେଳା ୨-୩ ଘଣ୍ଟା ଧରି ଅଗଣାକୁ ଅନ୍ଧାର କରି ରଖିବା ଭଳି ପଦକ୍ଷେପ ଗ୍ରହଣ କରିପାରିଲେ ପିଲା ମନରୁ ଅନ୍ଧାର ପ୍ରତି ଭୟ ଦୂରେଇଯିବ । ଅନ୍ଧାର ଯେ ଛାଇ ଆଲୁଅର ଖେଳ, ତାହା ପ୍ରଥମରୁ ପିଲାମାନଙ୍କୁ ଅବଗତ କରେଇଦେବା ଉଚିତ ।

ମନେ ରଖିବାର କଥା ଯେ ପିଲାକୁ ଦୁଇ ତିନିବର୍ଷ ହେବା ପର୍ଯ୍ୟନ୍ତ ଭୟ ତା' ମନରେ ସ୍ଥାୟୀ ଭାବରେ ଗାଦି ମାଡ଼ି ବସିନଥାଏ । ତେଣୁ ସଚେତନ ଭାବରେ ଚେଷ୍ଟା କଲେ ତାକୁ ଭୟମୁକ୍ତ କରାଯାଇପାରେ । କିନ୍ତୁ ପାଞ୍ଚ ଛଅ ବର୍ଷ ବେଳକୁ ଭୟର ଛାପ ମନ ଭିତରେ ଏତେ ଦୃଢ଼ ହୋଇଯାଏ ଯେ ତାକୁ ବାହାର କରିବା ପ୍ରାୟତଃ ଅସମ୍ଭବ ହୋଇଉଠେ ।

ପିଲା ମନରୁ ଭୟ ଛଡ଼େଇବା ପାଇଁ ପିତାମାତାମାନେ ତାକୁ ବାସ୍ତବ କଥା ବୁଝେଇଦେବା ଉଚିତ । ଭୟ ଉଦ୍ରେକକାରୀ ଘଟଣା ବା ବସ୍ତୁ ବିଷୟରେ ପ୍ରକୃତ ତଥ୍ୟକୁ ବୁଝେଇଦେଲେ, ପିଲାମାନଙ୍କଠାରୁ ଭୟ କ୍ରମେ ଦୂରୀଭୂତ ହୋଇଯାଏ । ଯେଉଁ ଭୟ ଅବାସ୍ତବ, ତାହା ସେମାନଙ୍କୁ କହିଦେବା ଦରକାର । ତେବେ ଏ'ସବୁ ପାଇଁ ଦରକାର ଅସୀମ ଧୈର୍ଯ୍ୟ ଓ ଆନ୍ତରିକତା । ପିଲାମାନେ ଭୟଶୂନ୍ୟ ହୋଇ ଜୀବନ ନିର୍ବାହ କରିବା ସେମାନଙ୍କର ନ୍ୟାଯ୍ୟ ଅଧିକାର ।

ବାପମା' ସଂଧ୍ୟାବେଳେ ସନ୍ତାନପାଖରେ ବସି ତାହାଠାରୁ ତା'ର ଦିନମାନର ଅନୁଭୂତି ଶୁଣିବା ପାଇଁ ପ୍ରୟାସୀ ହେବା ଉଚିତ । କେଉଁ ସହପାଠୀ ସାଙ୍ଗରେ ତା'ର କଳିତକରାଳ ହୋଇଛି କି ନା ? କ୍ଲାସ୍‌ର ପରୀକ୍ଷାରେ ସେ କେତେ ନମ୍ବର ରଖିଛି, ଖେଳରେ କିଏ ଜିତିଲା ଆଉ କିଏ ହାରିଲା, ଶିକ୍ଷକ ତାକୁ ସେଦିନ ଗାଳି ଦେଇଛନ୍ତି କିଏ ପ୍ରଶଂସା କରିଛନ୍ତି – ଏହିପରି ଅନେକ ଘଟଣା ସେ ହୁଏତ ବଖାଣି ବସିବ । କିନ୍ତୁ ପ୍ରତ୍ୟେକ ଘଟଣାକୁ ସକାରାତ୍ମକ ଦୃଷ୍ଟିକୋଣ ନେଇ ବୁଝେଇଦେଲେ ତା'ର ପରିଣତି ସର୍ବଦା ଶୁଭଙ୍କର ହୋଇଥାଏ । ଆମକୁ କେହି ଖରାପ ବୋଲି କହିଲେ ତାହା ଆମକୁ

ଖୁବ୍ ଆଘାତ ଦେଇଥାଏ । ପିଲାମାନଙ୍କ କ୍ଷେତ୍ରରେ ମଧ୍ୟ ସମାନ କଥା ପ୍ରଯୁଜ୍ୟ । ତେଣୁ ଆମ ସନ୍ତାନମାନେ ଯେପରି ଏହି ପ୍ରକାରର ଅଶୋଭନୀୟ ଅନୁଭୂତିରୁ ଦୂରେଇ ରହନ୍ତି, ତାହା ଦେଖିବା ପ୍ରତ୍ୟେକ ପିତାମାତାଙ୍କର କର୍ତ୍ତବ୍ୟ ।

**ପ୍ର : ପିଲାମାନେ ରାଗିଗଲେ ସେଥିପାଇଁ କି ପ୍ରତିକାର କରାଯାଇପାରେ ?**

ଉ: ପିଲାମାନେ କ୍ରୋଧକୁ କିପରି ନିଜ ନିୟନ୍ତ୍ରଣରେ ରଖିପାରିବେ, ସେଥିପାଇଁ ସେହି ପିଲାବେଳୁ ହିଁ ସେମାନଙ୍କୁ ତାଲିମ୍ ଦିଆଯିବା ଉଚିତ । ମନରେ ରାଗ ଆସିବା ମାତ୍ରେ ପ୍ରତିକ୍ରିୟା ପ୍ରକାଶ ନକରି ଟିକିଏ ଅଟକିଯିବାର ପ୍ରଭାବ ବେଶ୍ ଅନୁକୂଳ । ସହପାଠୀଟିଏ ବହିଟିଏ ଛଡ଼େଇ ନେଲେ ତତ୍‌କ୍ଷଣାତ୍ ତାହାଠାରୁ ବହିଟିକୁ ଝିଙ୍କି ଆଣିବା କି ତା' ମୁହଁରେ ମୁଥ ବସେଇଦେବା ପୂର୍ବରୁ ଟିକିଏ ଅପେକ୍ଷା କରିଗଲେ କ୍ରୋଧର ତୀବ୍ରତା ଆଶାତୀତ ଭାବରେ ହ୍ରାସ ପାଇଯାଏ । କ୍ରୋଧ ଜାତ ହେବା କ୍ଷଣି ୧ ଠାରୁ ୧୦ ପର୍ଯ୍ୟନ୍ତ ଗଣିସାରିବା ପରେ ପ୍ରତିକ୍ରିୟା ପ୍ରକାଶ କରିବା ନିମନ୍ତେ ଅନେକେ ପରାମର୍ଶ ଦେଇଥାନ୍ତି । ଏପରି ପଦକ୍ଷେପ ବେଶ୍ ଉପକାର କରିଥାଏ । ୧ ରୁ ୧୦ ପର୍ଯ୍ୟନ୍ତ ଗଣିବାର ସମୟ ଭିତରେ କ୍ରୋଧ ଯଥେଷ୍ଟ ମିଳେଇ ଯାଉଥିବାର ପ୍ରମାଣ ରହିଛି ।

ଘରେ ଭାଇ-ଭାଇ କିମ୍ବା ଭାଇ-ଭଉଣୀଙ୍କ ଭିତରେ କଳିକଜିଆ ତ ଅତି ସାଧାରଣ । ଘର ଛୋଟ ହୋଇଥିଲେ କଳିକଜିଆ ଲାଗିବା ସୁବିଧା ହୋଇଯାଏ । ତେବେ ଘର ଭିତରେ ସେମାନଙ୍କ ଭିତରୁ ପ୍ରତ୍ୟେକଙ୍କ ପାଇଁ ଜାଗା ନିର୍ଦ୍ଦିଷ୍ଟ କରିଦେଲେ କିଛିତ୍ ସମାଧାନ ମିଳିଯାଇପାରେ । ପଢ଼ା ଟେବୁଲ୍‌ରେ କିଏ କେଉଁଠି ବସିବ, କପ୍‌ବୋର୍ଡ଼୍ ଭିତରେ କିଏ କେଉଁ ଥାକରେ ବହିଖାତା ରଖିବ ବା କିଏ କେଉଁ ଘରେ ଘରପଢ଼ା କରିବ ଇତ୍ୟାଦି ବାଣ୍ଟିଦେଲେ କଳିକଜିଆର ହାର କମିଯାଇପାରିବ । ତାହାଛଡ଼ା ପିଲାମାନେ ସବୁ ସମୟରେ ଘର ଭିତରେ ରହିଲେ ସେମାନଙ୍କ ଭିତରେ ବେଶୀ କଳିକଜିଆ ହୋଇଥାଏ । ମଝିରେ ମଝିରେ ସେମାନଙ୍କୁ ବାହାରକୁ ବୁଲେଇ ନେଲେ ଏ' ଦୃଷ୍ଟିରୁ ଉପକାର ମିଳିଥାଏ । ଆଉ ଗୋଟିଏ କଥା ମନେ ରଖିବା ଦରକାର ଯେ ଯେଉଁ ସନ୍ତାନଟି ବେଶୀ ଶାନ୍ତ, ତାକୁ ଅବଜ୍ଞା କରିବା ଆଦୌ ଉଚିତ ନୁହେଁ । କାରଣ ଯେଉଁ ସନ୍ତାନଟି ସବୁ ସମୟରେ ଗୋଳମାଳର ସୂତ୍ରଧର, ଶାନ୍ତ ସ୍ୱଭାବର ଭାଇଟି ସବୁବେଳେ ତା'ର ଶିକାର ପାଲଟିଯାଏ । ବେଳେବେଳେ ସେମାନଙ୍କର ଗୋଳମାଳ ଅତିଷ୍ଠ

ହୋଇପଡ଼େ । ସେ କ୍ଷେତ୍ରରେ କଳିକଜିଆ କରିବା ନିମନ୍ତେ ସେମାନଙ୍କୁ ଘର ବାହାରକୁ ପଠେଇ ଦିଆଯାଇପାରେ । ହେଲେ ବାହାରକୁ ଚାଲିଗଲେ ମଧ୍ୟ ସେମାନଙ୍କ ଉପରେ ସର୍ବଦା ନିଘା ରଖିଥିବେ ।

ଆପଣ ପୁଣି ମନେ ରଖିବା ଉଚିତ ଯେ ସହୋଦରମାନଙ୍କ ଭିତରେ କଳିକଜିଆ ଓ ମାରପିଟ ପରେ ଅପେକ୍ଷାକୃତ ଶାନ୍ତ ସ୍ୱଭାବର ସନ୍ତାନଟି ପ୍ରାୟତଃ ଚୁପ୍ ରହିଯାଏ ବା ଘୁମ୍‌ସୁମ୍ ହୋଇ ରହେ । ବେଳେବେଳେ ସେ ଚୁପ୍‌କରି ଘର ଭିତରୁ ବାହାରିଯାଏ । କିନ୍ତୁ ସେ ନିଜକୁ ପ୍ରତ୍ୟାହାର କରି ନେଇଥିଲେ ମଧ୍ୟ ଭିତରେ ଭିତରେ ଯେ କୁହୁଳୁ ନଥାଏ, ଏହା କୁହାଯାଇପାରିବ ନାହିଁ । କ୍ରୋଧକୁ ଚାପି ରଖିବା ମଧ୍ୟ ଖୁବ୍ କ୍ଷତିକାରକ । ତେଣୁ କଳିକଜିଆ କରୁଥିବା ସନ୍ତାନମାନଙ୍କ ପାଖରେ ବସି ତାଙ୍କୁ କଅଁଳ କଥାରେ ବୁଝେଇ ଦେବେ । କହିଦେବେ ଯେ ମରାମରି କରିବା କି ଖରାପ ଭାଷାରେ ଗାଳିଦେବା ଆଦୌ ଶୋଭନୀୟ ନୁହେଁ । ତାହାଛଡ଼ା ସେମାନଙ୍କ କଳିକଜିଆକୁ ତୁରନ୍ତ ସମାଧାନ କରେଇଦେବେ ।

କ୍ରୋଧ ପ୍ରକାଶ ବେଳେବେଳେ ଉପକାର କରିଥାଏ ମଧ୍ୟ । ତେବେ ଏହା ଯେପରି କ୍ଷତିକାରକ ନହୁଏ, ସେଥିପ୍ରତି ସତର୍କ ରହିଥିବେ । କିନ୍ତୁ କଳିକଜିଆ କରିବା କି ରଗାରଗି ହେବା ଯେପରି ହିଂସାତ୍ମକ ପରିଣତି ଜାତ ନକରେ, ସେଥିପ୍ରତି ନଜର ରଖିଥିବେ ଓ ସମୟୋପଯୋଗୀ ହସ୍ତକ୍ଷେପ କରିବେ । ପିଲାମାନଙ୍କ କଳିକଜିଆ ଯୋଗୁ ସେମାନେ ପରସ୍ପର ଭିତରେ ଦିନେ ଦୁଇ ଦିନ ପାଇଁ କଥାବାର୍ତ୍ତା ବନ୍ଦ କରିଦେଲେ, ସେଥିରେ ଆତଙ୍କିତ ହୋଇପଡ଼ିବେନି । କାରଣ ଏହା ବେଶୀଦିନ ସ୍ଥାୟୀ ହେବନାହିଁ । ହେଲେ, ସେମାନଙ୍କୁ ଆଦୌ ପାଖଛଡ଼ା କରିବେନି । ବରଂ ସେମାନଙ୍କ ସମସ୍ୟା ସମାଧାନ କରିବାରେ ସହାୟତା ଯୋଗାଇଦେବେ ।

**ପ୍ର : ପିଲାମାନେ ନିଜ ନିଜ ଭିତରେ କଳିକଜିଆ କରି ଘୁମ୍‌ମାରି ରହିଲେ କି ରୁଷିଲେ କ'ଣ କରାଯାଇପାରିବ ?**

ଉ: ପିଲାମାନେ କ'ଣ ଅଭିମାନ କରିବେନି ନା ରୁଷିବେନି ? ଏହା ତ କ୍ରୋଧ ପ୍ରକାଶର ଏକ ସଙ୍କେତ । କିଏ ନିଜ କର୍ମ ପାଇଁ ଅନୁତାପ କରି ରୁଷିଥାଏ ତ ଅନ୍ୟ କିଏ ଅପରଜଣକ ଉପରେ ରାଗି ରୁଷିଥାଏ । ଅବଶ୍ୟ ଏହା ଧୀରେ ଧୀରେ ମିଳେଇ ଯାଇଥାଏ ।

ଟେଲିଭିଜନ୍‌ର ବହୁଳ ବ୍ୟବହାର ଫଳରେ ଏବେ ପିଲାମାନଙ୍କ ଆଚରଣରେ ହିଂସା ପ୍ରକାଶ ପାଉଛି । ସେମାନେ ମାରଧର କରିବାରେ ବ୍ୟାପୃତ ହୋଇପଡୁଛନ୍ତି । ସେମାନଙ୍କ ଚରିତ୍ର କ୍ରମେ କଠିନ ହୋଇଚାଲିଛି । ଦରଦୀ ଆବେଗ ସେମାନଙ୍କୁ ପ୍ରଭାବିତ କରିପାରୁନାହିଁ । ଏ' କ୍ଷେତ୍ରରେ ପିତାମାତାଙ୍କର ଭୂମିକା ହୋଇଉଠୁଛି ବେଶୀ ଗୁରୁତ୍ୱପୂର୍ଣ୍ଣ । କ୍ରୋଧ ହିଂସାର ରୂପ ନେଲେ ତା'ର ପରିଣତି ଆଦୌ ଶୁଭଙ୍କର ହୁଏନାହିଁ । ସେମାନେ ପିଲାମାନଙ୍କୁ ଶିକ୍ଷା ଦେବା ଉଚିତ ଯେ –

- ପିଲାମାନେ କଳିକଜିଆକୁ ଗାଳିଦେବାରେ ସୀମିତ ରଖିବା ସ୍ପୃହଣୀୟ । ମୁଥ ମରାମରି କି ବିଧା ଗୋଇଠା ମରାମରି ଆଦୌ ଗ୍ରହଣୀୟ ନୁହେଁ ।
- କାହାରିକୁ ଆଘାତ କରିବା ଜମା ଭଲ ନୁହେଁ ।
- କ୍ରୋଧ ଜାତ ହେବାର କାରଣ ଅନୁସନ୍ଧାନ କରି ତଦନୁଯାୟୀ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଆବଶ୍ୟକ ।
- ସେମାନେ ନିଜର ମନୋଭାବକୁ ଖୋଲାଖୋଲି ପ୍ରକାଶ କରିବା ଶୁଭଙ୍କର ।

ପିତାମାତା ନିଜ ନିଜ ଭିତରେ କଳିତକରାଳ ନକଲେ, ପରସ୍ପରକୁ ଗାଳିମନ୍ଦ ନଦେଲେ ସନ୍ତାନମାନେ ଠିକ୍ ଏହି ଧରଣର ଆଚରଣ ପ୍ରଦର୍ଶନ କରିବା ପାଇଁ ଶିଖିବେ । ତେଣୁ ପିତାମାତା ସନ୍ତାନମାନଙ୍କ ପାଇଁ ଆଦର୍ଶ ରୂପେ ଉଭା ହେବା ଉଚିତ ।

**ପ୍ର : ପିଲାମାନଙ୍କର ମନଦୁଃଖ ହୋଇଥିଲେ କି ସେମାନେ କନ୍ଦାକଟା କଲେ ପିତାମାତା କିପରି ଏହାର ମୁକାବିଲା କରିବେ ?**

ଉ : ପିଲାମାନଙ୍କର ମନଦୁଃଖ ହେବା କି କୌଣସି କାରଣରୁ ସେମାନେ କନ୍ଦାକଟା କରିବାରେ ଅସ୍ୱାଭାବିକତା କିଛି ନାହିଁ । ବରଂ ପିଲା ହୁଅନ୍ତୁ କି ବୟସ୍କ ବ୍ୟକ୍ତି ହୁଅନ୍ତୁ, କାନ୍ଦକୁ ଚାପି ରଖିବା ଦ୍ୱାରା ଅଧିକ କ୍ଷତି ହୋଇଥାଏ । କାନ୍ଦିବା ଦ୍ୱାରା ଦୁଃଖ ଲାଘବ ହୋଇଯାଏ । ତେବେ ମନମାରି ବସିଥିବା କିମ୍ବା କାନ୍ଦୁଥିବା ସନ୍ତାନପାଖରେ ବାପମା' ବସି ତାକୁ ଭରସା ଓ ସାନ୍ତ୍ୱନା ଦେବା ଉଚିତ । ଏପରିକି ସେମାନଙ୍କୁ କାଖେଇବା, ଗେଲ କରିବା ଓ ବଡ଼ପିଲାକୁ ଆଲିଙ୍ଗନ କରିବାର ଦୁଃଖ ଉପଶମକାରୀ ପ୍ରଭାବ ରହିଛି । ସେମାନେ ଯଦି ଚାହାଁନ୍ତି, ତେବେ କିଛି ସମୟ ସେମାନଙ୍କୁ ନିରବରେ ରହିବା ପାଇଁ ଛାଡ଼ିଦେବା ଆବଶ୍ୟକ । ପିଲା କାନ୍ଦୁଥିଲେ ପ୍ରଥମେ କାନ୍ଦିବାର କାରଣ ଅନୁସନ୍ଧାନ ନକରି

କି ସେ ବିଷୟରେ କିଛି ପଚରାଉଚରା ନକରି ଆଗେ ତାକୁ ସାନ୍ତ୍ୱନା ଦେବା ଉଚିତ । ପରେ ସେ ବଳେବଳେ କାନ୍ଦିବାର କାରଣ ଆପଣଙ୍କ ଆଗରେ ବଖାଣି ବସିବ । ପିଲାଙ୍କ ମନରେ ଏହି ବିଶ୍ୱାସ ଜାଗ୍ରତ କରେଇବେ ଯେ ସେମାନଙ୍କର ସବୁ ସମସ୍ୟାକୁ ଆପଣ ସମାଧାନ କରିପାରିବେ ଓ ସବୁବେଳେ ତା' ପଛରେ ଠିଆହୋଇ ତାକୁ ଭରସା ଯୋଗାଇଦେବେ ।

ତେବେ ପିଲାମାନଙ୍କୁ ଲାଜକୁଳା କରେଇବେନି । ସେ ଯେପରି ସମସ୍ତଙ୍କ ସହ କଥାବାର୍ତ୍ତା କରି ସାମାଜିକ ହୁଏ, ସେଥିପ୍ରତି ଯତ୍ନଶୀଳ ହେବେ । ଅନ୍ୟମାନଙ୍କୁ ନିଜର ପରିଚୟ ଦେବା ସଙ୍ଗେ ସଙ୍ଗେ ସେମାନଙ୍କର ଭଲମନ୍ଦ ପଚାରିବା ପ୍ରତି ବିମୁଖ ନହେବା ସ୍ୱାଗତଯୋଗ୍ୟ । ଅନ୍ୟମାନଙ୍କ ସହ କଥୋପକଥନ କରି ସାମାଜିକ ସମ୍ପର୍କ ସ୍ଥାପନ କରିପାରିଲେ ସାରା ଜୀବନଟା ଉପଭୋଗ୍ୟ ହୋଇପାରିବ ।



## ଛୋଟ ଭାଇଭଉଣୀଙ୍କ କଳିଗୋଳ

ପ୍ର : ମୋ' ପୁଅଝିଅମାନେ ଅଧିକାଂଶ ସମୟରେ କଳିଗୋଳ କରୁଛନ୍ତି । ନିଜ ନିଜ ଭିତରେ ମାଡ଼ଗୋଳରେ ମାତୁଛନ୍ତି । କଅଣ ଏହାର ପ୍ରତିକାର ?

ଉ : ଆପଣ ହୁଏତ ଭାବୁଥିବେ ଯେ ଏଗୁଡ଼ିକ ଅତି ସାଧାରଣ କଥା; ବୟସ ବଢ଼ିଗଲେ ଏହା ଆପେ ଆପେ ଚାଲିଯିବ । କିନ୍ତୁ ଏହା ସବୁ କ୍ଷେତ୍ରରେ ସମ୍ଭବ ହୋଇନଥାଏ । କେତେକ କ୍ଷେତ୍ରରେ ଏହାର ସୁଦୂରପ୍ରସାରୀ କୁପ୍ରଭାବ ରହିଛି । ବିଶେଷ କରି ଯେଉଁ ଭାଇ କି ଭଉଣୀଟି ଦୁର୍ବଳ ଓ ଅନ୍ୟ ଭାଇଭଉଣୀଙ୍କର ଅତ୍ୟାଚାରକୁ ସହିନେବାକୁ ବାଧ୍ୟ ହୋଇଥାଏ, ସେ ବଡ଼ ହୋଇଗଲେ ବି ଅତୀତର ସେହି ଅସ୍ୱସ୍ତିକର ସ୍ମୃତି ତା' ମନରୁ ପାସୋର ଯାଏନାହିଁ ।

ପରିବାରରେ ପିଲାମାନେ ଆମ ବାପମା'ଙ୍କ ଜୀବନରେ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ଭାଇଭଉଣୀଙ୍କ ସମ୍ପର୍କ ମଧ୍ୟ ଅବିଚ୍ଛେଦ୍ୟ । ଏହି ସମ୍ପର୍କକୁ ସ୍ଥାୟୀ ତଥା ଅବିଚ୍ଛେଦ୍ୟ ରଖିବା ନିମନ୍ତେ ପୁଅଝିଅମାନେ ବାପମା'ଙ୍କୁ ଆଦର୍ଶ ରୂପେ ମନେ କରିଥାନ୍ତି । ତେଣୁ ସେମାନଙ୍କ ଭିତରେ ପାରସ୍ପରିକ ସମ୍ପର୍କର ରୂପରେଖ, ପରିବାରର ପରିବେଶ ଓ ବାପମା'ଙ୍କ ଆଚରଣ ଉପରେ ବହୁମାତ୍ରାରେ ନିର୍ଭରଶୀଳ ।

ଭାଇଭଉଣୀଙ୍କ ମଧ୍ୟରେ କଳିଗୋଳ ଓ ମାଡ଼ ମରାମରି ସବୁ ଦେଶରେ ଦେଖାଯାଇଥାଏ । ଜାତି, ଧର୍ମ, ବର୍ଣ୍ଣ, ସାମାଜିକ ଓ ଅର୍ଥନୈତିକ ସ୍ଥିତି ଦ୍ୱାରା ଏହା ବିଶେଷ ପ୍ରଭାବିତ ହୋଇନଥାଏ । ପିଲାଏ ପରସ୍ପରକୁ ଗାଳି କରିବା ତ ଅତି ସାଧାରଣ । ରାଗି କରି ବଡ଼ ପାଟିରେ ଗାଳିଦେବା ଉପରେ ପିତାମାତାମାନେ ବିଶେଷ ଗୁରୁତ୍ୱ ଦେଇନଥାନ୍ତି । କିନ୍ତୁ ଏପରି ଗାଳିମନ୍ଦ କରିବା ଦ୍ୱାରା ଗାଳି ଖାଇଥିବା ଭାଇ କି ଭଉଣୀର ଆତ୍ମ ମର୍ଯ୍ୟାଦାରେ ଆଞ୍ଚ ଆସିଥାଏ । ତା' ମନରେ ଗାଳି ଦେଇଥିବା ଭାଇ କି ଭଉଣୀ ପ୍ରତି ଏକ ପ୍ରତିକୂଳ

ଚିନ୍ତା ଜାଗିଉଠେ । ଗାଳି ଦେଇଥିବା ସନ୍ତାନକୁ ପିତାମାତାମାନେ ସମର୍ଥନ କଲେ ଏହାର ପରିଣାମ ହୋଇପଡ଼େ ଆହୁରି କ୍ଷତିକର । ସାନ ଭାଇଭଉଣୀଙ୍କୁ ବଡ଼ ଭାଇଭଉଣୀମାନେ ଆକଟ କରିବା ଭିନ୍ନ କଥା, ସେମାନଙ୍କ ମନରେ ତୀବ୍ର ଆଘାତ ଦେବା ଭିନ୍ନ କଥା । ବଡ଼ ଭାଇଭଉଣୀମାନଙ୍କର ଏହା ସାମାଜିକ ଅଧିକାର ବୋଲି ଯୁକ୍ତି କରିବା ସ୍ପୃହଣୀୟ ନୁହେଁ କି ସେମାନଙ୍କୁ ସାନମାନେ ସମ୍ମାନ ଜଣାଇ ସେମାନଙ୍କ ଅତ୍ୟାଚାରକୁ ସହିନେବା ନିମନ୍ତେ ପିତାମାତା ଚାପ ପକେଇବା ମଧ୍ୟ ଆଦୌ ଉଚିତ ନୁହେଁ ।

ପୁଅଝିଅମାନଙ୍କ ମଧ୍ୟରେ ଝଗଡ଼ଝାଟି କେବଳ କଥାବାର୍ତ୍ତା ବା ଗାଳିମନ୍ଦରେ ସୀମିତ ହୋଇ ରହିନଥାଏ । ସେମାନେ ପରସ୍ପର ଭିତରେ ମାଡ଼ ମରାମରି ହୁଅନ୍ତି । କୌଣସି ଜିନିଷପତ୍ରକୁ ନେବାପାଇଁ ଉଭୟ ପକ୍ଷ ଦାବି କରିବାରୁ ମଧ୍ୟ ଗଣ୍ଡଗୋଳ ଉପୁଜିଥାଏ । ଭାଇଭଉଣୀ ପରସ୍ପରକୁ ଯୌନ ନିର୍ଯାତନା ଦେବାର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ବରଂ ଏ ଧରଣର ଅସ୍ୱସ୍ତିକର ସମ୍ବାଦମାନ ଏବେ କାନରେ ପଡୁଛି ।

ପରିବାରରେ ଭାଇଭଉଣୀମାନେ ପରସ୍ପରକୁ ପ୍ରତିଦ୍ୱନ୍ଦ୍ୱୀ ବା ପ୍ରତିଯୋଗୀ ବୋଲି ଭାବିବା ଅଧିକାଂଶ ପରିବାରରେ ପରିଲକ୍ଷିତ ହୋଇଥାଏ । ଏ' ସମ୍ପର୍କରେ ସମାଜବିଜ୍ଞାନୀମାନେ କିଛି କିଛି ଅନୁଧାନ କରିଛନ୍ତି ।

ଦେଖାଯାଇଛି ଯେ ଦ୍ୱିତୀୟ ସନ୍ତାନ ଜନ୍ମ ହେଲା ପରେ କେତେକ କ୍ଷେତ୍ରରେ ପ୍ରଥମ ସନ୍ତାନ ତା' ପ୍ରତି ଈର୍ଷାଳୁ ହୋଇଉଠେ । ପ୍ରଥମ ସନ୍ତାନଠାରେ ଦେଖାଦିଏ କେତେକ ଆଚରଣଗତ ପରିବର୍ତ୍ତନ । ପିତାମାତାଙ୍କର ଧ୍ୟାନ ଓ ଆଦରଯତ୍ନ ତା'ଠାରୁ ପ୍ରତ୍ୟାହୃତ ହୋଇ ତା' ସାନ ଭାଇ/ଭଉଣୀଟି ଉପରେ ଅଜାଡ଼ି ହୋଇପଡୁଛି ବୋଲି ସେ ମନେକରେ । ତେଣୁ ସାନଭାଇ/ଭଉଣୀଟି ପାଇଁ କିଛି କାମ କରିବା ନିମନ୍ତେ ବାପା କି ମାଆ ବରାଦ ଦେଲେ ସେ ପ୍ରତିକ୍ରିୟାଶୀଳ ହୋଇଉଠେ ।

ଅନୁଧାନରୁ ଜଣାପଡ଼ିଛି ଯେ ପରିବାରରେ କାମଧନ୍ଦା କରିବା ପାଇଁ ଭାଇଭଉଣୀମାନଙ୍କ ଭିତରେ ବେଶୀ ଗଣ୍ଡଗୋଳ ଉପୁଜିଥାଏ । ଯାହା ଉପରେ କାମ ପଡ଼େ, ଆରାମ କରୁଥିବା ଭାଇ/ଭଉଣୀଙ୍କ ବିରୋଧରେ ତା'ଠାରେ ଜାତ ହୁଏ ବିଦ୍ରୋହଭାବ । ବହୁ ପରିବାରର ପିଲାଙ୍କୁ ପଚାରିବାରୁ ସେମାନେ ଅଭିଯୋଗ କରି କହିଥିଲେ, "ବଡ଼ ଭାଇଭଉଣୀ ମୋ' ଉପରେ ବେଶୀ ହାକିମି ଦେଖାଉଛନ୍ତି । ମୋତେ ସବୁବେଳେ କାମ ବରାଦ କରୁଛନ୍ତି । ନିଜେ କିଛି କାମ ନକରି କରୁଛନ୍ତି ଆରାମ । ସେମାନଙ୍କ ଆରାମ କରିବାଟା ବାପମା'ଙ୍କ ଆଖିରେ ପଡୁନି । କିନ୍ତୁ ମୁଁ ଆଦେଶ ନ ମାନିଲେ

ବଡ଼ ଭାଇଭଉଣୀଙ୍କ ଗାଳି ସାଙ୍ଗକୁ ବାପମା'ଙ୍କ ଠାରୁ ମଧ୍ୟ ଗାଳି ଶୁଣିବାକୁ ପଡୁଛି ମୋତେ । ବାପାମା'ଙ୍କ ମତ ଯେ ବଡ଼ ଭାଇଭଉଣୀଙ୍କ କଥା ନ ମାନିବା କି ସେମାନଙ୍କ ଆଦେଶକୁ ଅବମାନନା କରିବା ସାନ ଭାଇଭଉଣୀଙ୍କର ଏକ ବିରାଟ ଅପରାଧ !

"ସେଇଥିପାଇଁ ମୋ' ମନ ଖରାପ ହେଲେ କି ସେମାନଙ୍କ ଅତ୍ୟାଚାର ଅସହ୍ୟ ହୋଇଉଠିଲେ ମୁଁ ସେମାନଙ୍କ ସହ କଥାବାର୍ତ୍ତା ବନ୍ଦ କରିଦିଏ ।"

ଅନୁଧ୍ୟାନକାରୀମାନେ ପ୍ରମାଣ ପାଇଛନ୍ତି ଯେ କେତେକ ପରିବାରରେ ଭାଇଭଉଣୀ ବର୍ଷ ବର୍ଷ ଧରି ପରସ୍ପର ଭିତରେ କଥାବାର୍ତ୍ତା କରୁନାହାନ୍ତି । ସେମାନଙ୍କୁ ମଧ୍ୟ ପ୍ରମାଣ ମିଳିଛି ଯେ ଭାଇଭଉଣୀଙ୍କ ଭିତରେ ଉପୁଜୁଥିବା ଗଣ୍ଡଗୋଳ ତଥା ମନୋମାଳିନ୍ୟ ପାଇଁ ପିତାମାତାମାନେ ବହୁଳାଂଶରେ ଦାୟୀ । ପିତାମାତା ଗାଳିମାଡ଼ ଦେଉଥିବା ସନ୍ତାନର ପକ୍ଷ ନେଇ ଅତ୍ୟାଚାରିତ ସନ୍ତାନକୁ ଉପେକ୍ଷା କରିବା ଆଦୌ ବାଞ୍ଛନୀୟ ନୁହେଁ । ପିତାମାତାଙ୍କର ଏଭଳି ଆଚରଣରୁ ସାବ୍ୟସ୍ତ ହେଉଛି ଯେ ଅତ୍ୟାଚାରିତ ହେଉଥିବା ସନ୍ତାନଟିର ଏହା ପ୍ରାପ୍ୟ ଓ ସେ ନିଜେ ଏହା ଅର୍ଜନ କରିଛି । ଏପରି ଧାରଣା ପୋଷଣ କରି ନେଉଥିବାରୁ ସେମାନେ ସନ୍ତାନମାନଙ୍କ ପାରସ୍ପରିକ ସମସ୍ୟାରେ ମୁଣ୍ଡ ଖେଳାଉନାହାନ୍ତି । ଏହାକୁ ପିଲାଙ୍କର ସ୍ୱାଭାବିକ କଳିତକରାଳ ବୋଲି ଧରି ନେଉଛନ୍ତି ସେମାନେ । ପିଲାଙ୍କ ମଧ୍ୟରେ ଗଣ୍ଡଗୋଳ ଘଟି ସମସ୍ୟା ଗୁରୁତର ନହେବା ଯାଏ ପିତାମାତାଙ୍କ ମନରେ ଚେତା ପଶୁନି ।

ଗବେଷଣାରୁ ଜଣାପଡ଼ିଛି ଯେ ଅନେକ ପରିବାରରେ ଭାଇଭଉଣୀଙ୍କ ଗଣ୍ଡଗୋଳର ପଶ୍ଚାତ୍‌ରେ ରହିଛି ପାରିବାରିକ ଅଶାନ୍ତି । ବାପମା'ଙ୍କ ଭିତରେ ମଧୁର ସମ୍ପର୍କ ନଥିଲେ, ଉଭୟ କଳିଗୋଳ ଓ ମାଡ଼ମରାମରିରେ ଜଡ଼ିତ ହୋଇଥିଲେ ତଥା ସେମାନେ ସନ୍ତାନମାନଙ୍କ ପ୍ରତି ପକ୍ଷପାତ ଆଚରଣ ପ୍ରଦର୍ଶନ କଲେ ପୁଅଝିଅଙ୍କ ପାରସ୍ପରିକ ସମ୍ପର୍କ ଉପରେ ଏହାର ପ୍ରତିଫଳନ ଘଟେ ।

ଭାଇଭଉଣୀଙ୍କ ମଧ୍ୟରେ ପିଲାବେଳେ ଘଟିଥିବା କଳିଗୋଳ କି ମାଡ଼ଗାଳି କେତେକ କ୍ଷେତ୍ରରେ ପରବର୍ତ୍ତୀ ଜୀବନରେ କୁପ୍ରଭାବ ପକାଇଥାଏ ବୋଲି ସମାଜ ବିଜ୍ଞାନୀମାନେ କହୁଛନ୍ତି । ବିଶେଷ କରି ଯେଉଁ ପିଲାଟି ଅଧିକାଂଶ ସମୟରେ ଅତ୍ୟାଚାରିତ ହୋଇଥାଏ, ବଡ଼ ହୋଇଗଲେ ସେ ଅନ୍ୟମାନଙ୍କ ସହ ସାମାଜିକ ସମ୍ପର୍କ ରକ୍ଷା କରିପାରେ ନାହିଁ । ଭାଇ କିମ୍ବା ଭଉଣୀଙ୍କ ତାଡ଼ନାର ଶିକାର ହୋଇଥିଲେ ସେ ଯଥାକ୍ରମେ ଅନ୍ୟ ପୁରୁଷ କି ନାରୀ ପ୍ରତି ମନରେ ଘୃଣା ଭାବ ପୋଷଣ କରିଥାଏ । ଭଉଣୀଦ୍ୱାରା ଅତ୍ୟାଚାରିତ

ଭାଇଟି ତା' ନିଜ ସ୍ତ୍ରୀକୁ ଆନ୍ତରିକତାର ସହ ଭଲ ପାଇପାରେ ନାହିଁ । ସେହିପରି ଭାଇଦ୍ୱାରା ନିର୍ଯାତିତ ହୋଇଥିବା ଭଉଣୀ, ତା'ର ସ୍ୱାମୀକୁ ସନ୍ଦେହ ଦୃଷ୍ଟିରେ ଦେଖିପାରେ । ତାହାଛଡ଼ା, ଅତ୍ୟାଚାରିତ ପିଲାଟି ପରବର୍ତ୍ତୀ କାଳରେ ହୋଇଉଠେ ଖୁବ୍ ସ୍ପର୍ଶକାତର । ତା'ଠାରେ ବିକାଶ ଲାଭ କଲେ ହୀନମନ୍ୟତା । ସେ ଆତ୍ମ-ବିଶ୍ୱାସୀ ହୋଇପାରେ ନାହିଁ । ସେ ନିଜକୁ ନିଜେ ଅପରାଧୀ ବୋଲି ମନେ କରୁଥିବାର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ ।

ଏହା ମଧ୍ୟ କୁହାଯାଉଛି ଯେ ଭାଇଭଉଣୀଙ୍କ ମଧ୍ୟରେ ମାତ୍ରା-ସୀମିତ ଈର୍ଷା ମଧ୍ୟ ବେଳେବେଳେ ଉପକାର କରିଥାଏ । ଏହା ଅତି ଗୁରୁତର ନ ହୋଇଥିଲେ, ଅତ୍ୟାଚାରିତ ସନ୍ତାନଟିଠାରେ ବୃଦ୍ଧି ପାଇପାରେ ସହନଶୀଳତା । ସେ ଅନ୍ୟମାନଙ୍କୁ କ୍ଷମା କରିବା ଶିଖେ । ସ୍ୱାଧୀନ ଭାବରେ ଦାୟିତ୍ୱ ନିର୍ବାହ କରିବାର ବିଶ୍ୱାସ ଜାଗିପାରେ ତା' ମନରେ ।

କିନ୍ତୁ ବାପମା'ଙ୍କ ମଧ୍ୟରେ ନିବିଡ଼ ସମ୍ପର୍କ ଥିଲେ ଓ ସେମାନେ ଉଭୟ ପିଲାମାନଙ୍କୁ ଯଥେଷ୍ଟ ସ୍ନେହଶ୍ରଦ୍ଧା ଏବଂ ଆଦର ଯତ୍ନ ପ୍ରଦର୍ଶନ କରୁଥିଲେ, ପିଲାମାନଙ୍କ ମଧ୍ୟରେ ଘଟୁଥିବା ସାମୟିକ ଗଣ୍ଡଗୋଳ କୌଣସି ସ୍ଥାୟୀ କ୍ଷତି କରିପାରେ ନାହିଁ ।

ତେବେ ସନ୍ତାନସନ୍ତତିଙ୍କ ମଧ୍ୟରେ ଘଟୁଥିବା କଳିଗୋଳକୁ ପିତାମାତାମାନେ 'ସାଧାରଣ ଘଟଣା' ବୋଲି ଭାବିନେଇ ସେଥିପ୍ରତି ଆଖି ବୁଜି ଦେବା ଆଦୌ ନିରାପଦ ନୁହେଁ । କାରଣ ଏହି କଳିଗୋଳ କି ନିର୍ଯାତନା ଅତ୍ୟାଚାରିତ ସନ୍ତାନଟିର ଆବେଗ ଓ ଭାବପ୍ରବଣତାକୁ ବିପର୍ଯ୍ୟସ୍ତ କରିଦେଇପାରେ ।



# ପିଲାମାନଙ୍କ ବ୍ୟକ୍ତିତ୍ୱର ବିକାଶ

"ଶୈଶବ ଓ ପ୍ରତିଭା – ଉଭୟର ମୁଖ୍ୟ ନିୟନ୍ତ୍ରଣକାରୀ ହେଉଛି ସମାନ । ତାହା ହେଲା କୌତୂହଳ । ତେଣୁ ଶୈଶବ ଆପଣାଛାଏଁ ବିକଶିତ ହେଉ, ପ୍ରତିଭା ଯେଉଁଠାରୁ ଆରମ୍ଭ କରେ, ସେହିଠାରୁ ଆରମ୍ଭ କରୁ । ଏହା ସମ୍ଭବ ହୋଇପାରିଲେ ଶୈଶବ ପ୍ରତିଭାର ସନ୍ଧାନ ପାଇବ ।"

–ଏଡ୍‌ୱାର୍ଡ୍ ଜି. ବୁଲ୍‌ୱାର୍-ଲିଟନ୍ (ଡାରୋନ୍ ଲିଟନ୍)

ପ୍ର : ମୋର ଦୁଇଟି ପୁଅ । ଦୁଇଜଣଙ୍କର ଚରିତ୍ର ପୂରା ବିପରୀତ । ଜଣେ ସବୁବେଳେ ବକର ବକର ହେଉଥାଏ, ଅନ୍ୟ ଜଣକ ସବୁବେଳେ ଚୁପ୍‌ଚାପ୍ । ଚୁପ୍‌ଚାପିଆ ସାନପୁଅକୁ ପ୍ରଶ୍ନ ପଚାରି କଥା ଆଦାୟ କରିବା ମୁସ୍କିଲ୍ । ଏପରିକି ସେ ଯାହା ଜାଣେ, ସେ ବିଷୟରେ ପଚାରିଲେ ବି ତା' ତୁଣ୍ଡରୁ ଉତ୍ତର ବାହାରେନି । ବଡ଼କୁ ଯାହା ଖାଇବା ପାଇଁ ଭଲ ଲାଗେ, ସାନର ସେଥିପ୍ରତି ବିତୃଷ୍ଣା । ବଡ଼ ତା'ର ଦାବି ପୂରଣ କରିନେବାରେ ତତ୍ପର, କିନ୍ତୁ ସାନକୁ ଯାହା ଦେଲେ କି ନଦେଲେ ସେଥିରେ ତା'ର ଆପତ୍ତି ନଥାଏ । ଏ' ତ ବଡ଼ ସମସ୍ୟା ଆମ ପାଇଁ । ସେଥିପାଇଁ ମୁଁ ବେଳେବେଳେ ଭାବେ, 'ଆମେ ପତିପତ୍ନୀ ଦୁହେଁ କ'ଣ ଉଭୟ ସନ୍ତାନଙ୍କୁ ସମାନ ଭାବରେ ବଢ଼େଇନୁ ? ଦୁଇଜଣକୁ ସମାନ ଦୃଷ୍ଟିରେ ଦେଖୁନୁ ?'

ଉ : ଆପଣଙ୍କ ପ୍ରଶ୍ନରେ କୌଣସି ଅସ୍ୱାଭାବିକତା ନାହିଁ । ଦୁଇଟି ପିଲା ସବୁ ଦିଗରୁ କେବେ ବି ସମାନ ହୋଇପାରିବେନି । ସେମାନେ ହେଉଛନ୍ତି ବିକାଶ ଦିଗରେ ଅଗ୍ରସର ହେଉଥିବା ଦୁଇଟି ଅଲଗା ବ୍ୟକ୍ତି ।

ତେବେ ପିତାମାତାଙ୍କର ଦାୟିତ୍ୱ ହେଲା ପ୍ରତି ସନ୍ତାନର ବ୍ୟକ୍ତିତ୍ୱକୁ ପରିପ୍ରକାଶ କରାଇବାରେ ସହାୟତା କରିବା । ଆପଣ ଜାଣିରଖିବା ଦରକାର ଯେ ପ୍ରତ୍ୟେକ ପିଲା

ଶୈଶବରୁ ହିଁ ସ୍ୱାଧୀନତା ଚାହିଁଥାଏ । ଅନ୍ୟର ବିନା ସାହାଯ୍ୟରେ ନିଜର କାମ କରିବାରେ ଆଗ୍ରହୀ ହୋଇଥାଏ । ତେଣୁ ପିଲା ପଛରେ ଛାଇଭଳି ଲାଗି ରହିବା ତା'ର ପସନ୍ଦ ନୁହେଁ । ଉଦାହରଣ ସ୍ୱରୂପ ଯେଉଁମାନେ ଭାବନ୍ତି ଯେ ପିଲାକୁ ଏକୁଟିଆ ଏପଟ ସେପଟ ହେବାକୁ ଛାଡ଼ିଦେଲେ ସେ ଚଉକି ଉପରକୁ ଚଢ଼ି ଟେବୁଲ୍ ଉପରକୁ ଚଢ଼ିବା ପାଇଁ ଚେଷ୍ଟା କରିବ ଏବଂ ଚଉକିକୁ ଉଠିବା ପୂର୍ବରୁ ଚଟାଣରେ ପଡ଼ି ଖଣ୍ଡିଆଖାବରା ହେବ – ସେମାନେ ଜାଣିରଖିବା ଉଚିତ ଯେ ସେ ଚଟାଣରେ ପଡୁ, କିଛି ମାତ୍ରାରେ ଖଣ୍ଡିଆଖାବରା ହେଉ । ଏହା ହେଲେ ସେ ଚଉକି ପ୍ରତି ସାବଧାନ ହେବାକୁ ଶିଖିବ । ସେଥିପାଇଁ ଏବେ ଡାକ୍ତରମାନେ କହୁଛନ୍ତି ଯେ ପିଲାକୁ ଖୁଆଇ ଦେଉଥିଲେ ପିଲା ଖାଇବା ଶିଖିପାରିବନି । ଦେଢ଼ବର୍ଷ ଦୁଇବର୍ଷ ବେଳକୁ ସେ ନିଜ ହାତରେ କି ଚାମଚରେ ଖାଇ ଶିଖିବା ଉଚିତ । ତିନି ବର୍ଷରେ ପହଞ୍ଚିଲା ବେଳକୁ ସେ ବିନା ସାହାଯ୍ୟରେ ନିଜେ ନିଜେ ଖାଇବା ପାଇଁ ସମର୍ଥ ହେବା ଉଚିତ । ୩-୪ ବର୍ଷର ପିଲାକୁ ତା'ର ମା' କିମ୍ବା ଆଈ ଯଦି ସବୁବେଳେ କାଖେଇ କୋଳେଇ ବୁଲିବେ ଓ ତା'ର ସବୁକାମ ନିଜେ କରିବେ, ତେବେ ତାକୁ ଶିଖିବାରୁ ବଞ୍ଚିତ କରାଗଲା ବୋଲି ଧରାଯିବ ।

ଆପଣଙ୍କ ସାନପୁଅ ଯଦି ଚୁପ୍‌ଚାପିଆ, ତେବେ ତା' ସହ ପରିବାରର ସମସ୍ତେ ବେଶୀ କଥାବାର୍ତ୍ତା କରିବା ଦରକାର । 'ତୁ କଅଣ ଖାଇବୁ' ବୋଲି ବାରମ୍ବାର ପଚାରି ତା' ବରାଦ ଅନୁସାରେ ଖାଦ୍ୟ ପ୍ରସ୍ତୁତ କରିବେ । ବାହାରକୁ ଯିବା ପୂର୍ବରୁ 'କୁଆଡ଼େ ଯିବା' ପଚାରି ତା'ର ମତାମତ ନେବେ । ବଜାରରେ ପହଞ୍ଚି 'କେଉଁ ଦୋକାନକୁ ଯିବା' ବୋଲି ଆଗେ ତାକୁ ହିଁ ପଚାରିବେ । ଆଗେ ବହି କିଣିବେ କି ଆଗେ ଖେଳନା କିଣିବେ, ତା'ର ମତକୁ ଚାହିଁ ସ୍ଥିର କରିବେ । ସେ ଯେଉଁ ପୋଷାକ ପିନ୍ଧିବ ବୋଲି ଚାହିଁବ ସେହି ପୋଷାକ ପିନ୍ଧେଇବେ । ତାହାଠାରେ କୌତୂହଳ ଜାତ କରାଇବାର ଦାୟିତ୍ୱ ଆପଣଙ୍କର । ଆପଣ ଯଦି ନିଜର ମତ ତା' ଉପରେ ଲଦି ଦେବେ ସେ ଆହୁରି ଚୁପ୍‌ଚାପିଆ ହୋଇଯିବ ଓ ସବୁ କଥାରେ ଆପଣଙ୍କ ଉପରେ ପୂରା ନିର୍ଭର କରିବ ।

ଆପଣ ମନେରଖିବା ଉଚିତ ଯେ ବଡ଼ପୁଅ ହେଉ କି ସାନପୁଅ ହେଉ, ଦୁହିଁଙ୍କର ବ୍ୟକ୍ତିତ୍ୱର ବିକାଶ ପାଇଁ ଆପଣଙ୍କର କର୍ତ୍ତବ୍ୟ ସମାନ । ଉଭୟଙ୍କୁ ପାଖରେ ବସେଇ ପଢ଼େଇବେ । ସେମାନେ ଯେପରି ନିଜେ ନିଜେ ପଢ଼ା କରନ୍ତି, ତା'ର ତତ୍ତ୍ୱାବଧାନ କରିବେ । ନିହାତି ଦରକାର ନପଡ଼ିଲେ ସେମାନଙ୍କୁ ପାଠ ବତେଇ ଦେବେନି । ସାମାନ୍ୟ ସୂଚନା ଦେଇ ଅବଶିଷ୍ଟାଂଶକୁ ପୂରଣ କରିବାର ଭାର ତାଙ୍କ ଉପରେ ଛାଡ଼ିଦେବେ । ଏପରି

ପଦକ୍ଷେପ ନେଲେ, "ମୁଁ କରିଛି" ବୋଲି ସେମାନଙ୍କଠାରେ ଆତ୍ମବିଶ୍ୱାସ ଜାଗ୍ରତ ହେବ । ଏହା ଫଳରେ ସେମାନଙ୍କ ମନରୁ ହୀନମନ୍ୟତା ଦୂରେଇଯିବ ଓ ଭବିଷ୍ୟତରେ ସେମାନେ ଦୁନିଆକୁ ସହଜରେ ମୁକାବିଲା କରିପାରିବେ । ଧରନ୍ତୁ ଆପଣ ପିକ୍‌ନିକ୍‌କୁ ଯିବାପାଇଁ ସ୍ଥିର କରିଛନ୍ତି । ଏ' କ୍ଷେତ୍ରରେ ଆଗେ ସାନପୁଅର ମତାମତ ଲୋଡ଼ିବେ । ସେ କିଛି ମତ ନଦେଲେ ତାକୁ ଭାବିବା ପାଇଁ ଓଳିଏ ଦିଓଳି ସମୟ ଦେଇ ପୁଣି ପଚାରିବେ । ଏପରି କଲେ ସେ ଧୀରେ ଧୀରେ ନିଜକୁ ଖୋଲିବା ନିମନ୍ତେ ଉତ୍ସାହିତ ହେବ ।

ଆମ୍ଭମାନଙ୍କ ପରିବାରରେ ନିଷ୍ପତ୍ତି ନେବାପାଇଁ ପିଲାମାନଙ୍କର ମତାମତ ଲୋଡ଼ାଯାଏ ନାହିଁ । ବଡ଼ମାନେ ନିଷ୍ପତ୍ତି ନିଅନ୍ତି, ସାନମାନେ ତାକୁ ମାନିନିଅନ୍ତି । ଆମର ଧାରଣା ଯେ ପିଲାମାନଙ୍କୁ ସବୁକଥାରେ ପଚାରିବା ଠିକ୍ ନୁହେଁ । କାରଣ ଏପରି କଲେ ସମସ୍ୟା ଉପୁଜିବା ସାର ହେବ ସିନା, ସମାଧାନରେ ପହଞ୍ଚି ହେବନାହିଁ । ଏହା କିନ୍ତୁ ସମ୍ପୂର୍ଣ୍ଣ ସତ ନୁହେଁ, ଆଂଶିକ ସତ । ହୁଏତ ପିଲାମାନଙ୍କ ମତାମତ ପ୍ରତି ଗୁରୁତ୍ୱ ଦେଲେ ସମାଧାନରେ ପହଞ୍ଚିବା ନିମନ୍ତେ ସମୟ ଓ ଶ୍ରମ ଉଭୟ ବିନିଯୋଗ କରିବାକୁ ପଡ଼ିବ । କିନ୍ତୁ ଏହାର ଅନୁକୂଳ ପ୍ରଭାବ ସୁଦୂରପ୍ରସାରୀ । କାରଣ ଯେଉଁ ପିଲାର ମତ ପରିବାରରେ ଗୁରୁତ୍ୱ ପାଇଥାଏ, ସେ ପିତାମାତାଙ୍କ ସହ ନିଃସଙ୍କୋଚରେ ସବୁ ବିଷୟରେ ଆଲୋଚନା କରିବା ପାଇଁ ଉତ୍ସାହିତ ହୋଇଥାଏ । ଫଳରେ ପିତାମାତା ଓ ସନ୍ତାନମାନଙ୍କ ମଧ୍ୟରେ ସ୍ଥାପିତ ହୁଏ ପାରସ୍ପରିକ ଭାବ ଆଦାନପ୍ରଦାନର ସୁଦୃଢ଼ ସେତୁ । ଯେଉଁ ପିଲାକୁ ପରିବାରରେ ଏହି ପ୍ରକାରର ସ୍ୱାଧୀନତା ମିଳେ, ସେ ବଡ଼ ହୋଇଗଲେ ଅନ୍ୟମାନଙ୍କ ସହ ଭାବର ଆଦାନପ୍ରଦାନ କରିବାରେ ପଶ୍ଚାତ୍‌ପଦ ହୁଏନାହିଁ । ପ୍ରତ୍ୟେକ ଘଟଣାର ଭଲ ଦିଗ ଓ ମନ୍ଦ ଦିଗକୁ ବିଚାର କରି କାର୍ଯ୍ୟ କରିଥାଏ ।

ପିଲାମାନଙ୍କୁ କିଛି କିଛି ପକେଟ୍ ଖର୍ଚ୍ଚା ଦେଇ ସେମାନେ ଏହାକୁ କିପରି ଖର୍ଚ୍ଚ କଲେ ତା'ର ଖୋଜଖବର ନେବେ । ସିନେମା ଯିବା କି ବଜାରରୁ ମିଠା କିଣି ଖାଇବା ପରିବର୍ତ୍ତେ ବହି, ଖାତା, କଲମ, ପେନ୍‌ସିଲ୍, ରବର କିଣିବା, ଭିକାରିକୁ ଦାନ କରିବା ଓ କିଛି କିଛି ସଞ୍ଚୟ କରିବା ବିଷୟରେ ସେମାନଙ୍କୁ ଅବଗତ କରାଇବେ ।

ଆପଣଙ୍କ ଦୁଇ ପୁଅଙ୍କ ରୁଚି ହୁଏତ ଭିନ୍ନ ଭିନ୍ନ । ତେଣୁ ଉଭୟଙ୍କ ବ୍ୟକ୍ତିତ୍ୱକୁ ପ୍ରୋତ୍ସାହନ ଦେବାଭଳି ପଦକ୍ଷେପ ନେବା ଆପଣଙ୍କ ଦାୟିତ୍ୱ । ଭାବନ୍ତୁନି ଯେ ବଡ଼ ପୁଅର ଚରିତ୍ର ସବୁ ଦିଗରୁ ଅନୁକରଣ ଯୋଗ୍ୟ ଓ ସାନପୁଅର ବ୍ୟକ୍ତିତ୍ୱରେ ରହିଛି କିଛି ତ୍ରୁଟି । ଦୁଇ ପୁଅଙ୍କ ନିଜ ନିଜର ରୁଚି ଓ ଆଗ୍ରହ ପ୍ରତି ଆପଣ ଗୁରୁତ୍ୱ ଦେବେ । କାରଣ

ଭବିଷ୍ୟତରେ ବଡ଼ପୁଅର କ୍ଷେତ୍ର ଓ ସାନପୁଅର କ୍ଷେତ୍ର ଯେ ନିଶ୍ଚିତ ସମାନ ହେବ, ଏପରି ଭାବିବା ଅମୂଳକ । ମନେରଖିବେ ଯେ ପିତାମାତା ହିସାବରେ ଆପଣଙ୍କ ଅବଦାନ ସେମାନଙ୍କ ପାଇଁ ସର୍ବଶ୍ରେଷ୍ଠ ଉପହାର । ସେମାନଙ୍କ ବିଷୟରେ ଆପଣଙ୍କର ଆଶା ଆକାଂକ୍ଷା କି ସେମାନଙ୍କ ଦ୍ୱାରା ଆପଣଙ୍କ ପାରିବାରିକ ମର୍ଯ୍ୟାଦା ରକ୍ଷା ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ ।

ପିଲାମାନଙ୍କୁ ମୂଲ୍ୟବୋଧର ଶିକ୍ଷା ଦିଅନ୍ତୁ । ଆତ୍ମସମ୍ମାନ ରକ୍ଷା ବିଷୟରେ ସଚେତନ କରାନ୍ତୁ । ସେମାନଙ୍କୁ ବତେଇ ଦିଅନ୍ତୁ ନିଷ୍ଠା ଓ ଅଧ୍ୟବସାୟର ସୁଫଳ ସମ୍ପର୍କରେ । ପ୍ରତ୍ୟେକ ସନ୍ତାନର ବ୍ୟକ୍ତିତ୍ୱକୁ ପ୍ରଶଂସା କରନ୍ତୁ ଓ ବ୍ୟକ୍ତିତ୍ୱର ବିକାଶ ପାଇଁ ଦିଅନ୍ତୁ ସ୍ୱାଧୀନତା । ପ୍ରଥମେ ସେମାନଙ୍କ ମୂଳଦୁଆକୁ ଦୃଢ଼ କରିବେ, ତା'ପରେ ହିଁ ସଂସାରର ଚାଲିଚଳନ ଓ ରୀତିନୀତି ବିଷୟରେ ସେମାନଙ୍କୁ ଅବଗତ କରାଇବେ । ଗପୁଡ଼ି ହେବା ଖରାପ ନୁହେଁ କି ଚୁପ୍‌ଚାପିଆ ରହିବା ଖରାପ ନୁହେଁ । ଏହା ହେଉଛି ଦୁଇ ପ୍ରକାରର ବ୍ୟକ୍ତିତ୍ୱର ଲକ୍ଷଣ । କିନ୍ତୁ ଉଭୟଙ୍କୁ ଭଲ ମଣିଷ କରି ଗଢ଼ିବା ପିତାମାତାଙ୍କର ନୈତିକ ଦାୟିତ୍ୱ ।



# ପିଲାମାନଙ୍କ ଯତ୍ନ ନେବାରେ ପରିବାରର କର୍ତ୍ତବ୍ୟ

"ପିଲାମାନଙ୍କର ବୃଦ୍ଧି ଓ ବିକାଶକୁ ସହାୟତା କରିବା ନିମନ୍ତେ ପରିବାର ହେଉଛି ପ୍ରାଥମିକ ଅନୁଷ୍ଠାନ ଓ ଏହା ପ୍ରାଥମିକ ଅନୁଷ୍ଠାନ ହୋଇ ରହିବା ମଧ୍ୟ ଶ୍ରେୟସ୍କର ।"

–ୟୁନିସେଫ୍

**ପ୍ର : ପିଲାମାନଙ୍କୁ ଭଲ ମଣିଷ କରି ଗଢ଼ିବା ପାଇଁ ପରିବାରର ସଦସ୍ୟମାନଙ୍କ କର୍ତ୍ତବ୍ୟ ଓ ଦାୟିତ୍ୱ କିପରି ହେବା ଉଚିତ ?**

ଉ : ମନେ ରଖିବା ଦରକାର ଯେ ପିତାମାତା, ସନ୍ତାନସନ୍ତତି ଓ ଅନ୍ୟ ସଦସ୍ୟମାନଙ୍କୁ ନେଇ ଆମର ପରିବାର । ତେଣୁ ପିଲାମାନଙ୍କର ଯଥାର୍ଥ ଯତ୍ନ ନେଇ ସେମାନଙ୍କୁ ଭଲ ମଣିଷ କରି ଗଢ଼ି ତୋଳିବା ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟ । ପୁଣି ଏହି ଦାୟିତ୍ୱ କେବଳ ପିତାମାତା କି ପରିବାରର ଅନ୍ୟମାନଙ୍କ ମଧ୍ୟରେ ସୀମିତ ନୁହେଁ । ଏଥିରେ ପିଲାମାନଙ୍କର ମଧ୍ୟ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସେ ଯାହାହେଉ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଆଗରୁ ଯୋଜନା ପ୍ରସ୍ତୁତ କରିବା ଉଚିତ ।

## ପିତାମାତାଙ୍କ ଦାୟିତ୍ୱ

ପିତାମାତା ନିଜର ଆଚାର-ଆଚରଣ ଦ୍ୱାରା ସନ୍ତାନମାନଙ୍କର ଆଦର୍ଶ ରୂପେ ଉଭା ହେବା ଆବଶ୍ୟକ । ପିଲାମାନେ ସାଧାରଣତଃ ବାପମା'ଙ୍କୁ ଅନୁକରଣ କରିଥାନ୍ତି ଓ ସେମାନଙ୍କୁ ଦୃଷ୍ଟାନ୍ତ ଭାବେ ଗ୍ରହଣ କରିଥାନ୍ତି ।

- ସେମାନଙ୍କୁ ନିର୍ଦ୍ଧାରିତ ସମୟରେ ଖାଇବାକୁ ଦେବା, ନିର୍ଦ୍ଧାରିତ ସମୟରେ ଶୁଆଇବା, ଶଯ୍ୟାତ୍ୟାଗ କରେଇବା, ନିତ୍ୟକର୍ମ କରିବାରେ ସାହାଯ୍ୟ ଯୋଗାଇବା, ପୋଷାକପତ୍ର ପିନ୍ଧେଇଦେବା ଇତ୍ୟାଦି ଦାୟିତ୍ୱ ନିର୍ବାହ କରିବା ପିତାମାତାଙ୍କର କର୍ତ୍ତବ୍ୟ ।

- ପିତା ହୁଅନ୍ତୁ କି ମାତା ହୁଅନ୍ତୁ, କେହି ନା କେହି ସନ୍ତାନମାନଙ୍କ ସାନ୍ନିଧରେ ରହିବା ଉଚିତ । ଏହା ସମ୍ଭବ ନହେଲେ, ପରିବାରର କୌଣସି ବିଶ୍ୱସ୍ତ ନିକଟ ଆତ୍ମୀୟ ଏହି ଦାୟିତ୍ୱ ବହନ କରିବା ଦରକାର । ପିତା କି ମାତା କି ଉଭୟେ ଘରେ ଅନୁପସ୍ଥିତ ରହିବାର କାରଣ ବିଷୟରେ ପିଲାମାନଙ୍କୁ ଅବଗତ କରାଇବା ସ୍ପୃହଣୀୟ । ପ୍ରତିଦିନ ନିୟମିତ ଭାବରେ ପିଲାମାନଙ୍କୁ ପଢ଼ାଇବା ଓ ସେମାନଙ୍କ ସହ ଖେଳିବା ମଧ୍ୟ ଆବଶ୍ୟକ । ସେମାନଙ୍କୁ କହିବାର ପର୍ଯ୍ୟାପ୍ତ ସୁଯୋଗ ଦେବା ଓ ସେମାନେ ଯାହା କହନ୍ତି, ତାକୁ ଧୈର୍ଯ୍ୟର ସହ ଶୁଣିବା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ସନ୍ତାନର ପିତାମାତା ହେବାର ଅର୍ଥ ବ୍ୟକ୍ତିଗତ ବ୍ୟାପାରକୁ ତ୍ୟାଗ କରିବା ନିମନ୍ତେ ପ୍ରସ୍ତୁତ ରହିବା ।
- ପିଲାମାନେ ପିତାମାତାଙ୍କର ଆଲିଙ୍ଗନ ଚାହାଁନ୍ତି, କୋଳ ହେବାପାଇଁ ଓ ଗେଲ ହେବାପାଇଁ ଚାହାଁନ୍ତି । ସେମାନଙ୍କୁ ଗାଳି ଦେବା ପରେ ବି କୋଳେଇ ନେଇ ସ୍ନେହଶ୍ରଦ୍ଧା ଦେଖେଇଲେ ମାଡ଼ ଗାଳିକୁ ତୁରନ୍ତ ପାସୋରି ପକାଇଥାନ୍ତି ସେମାନେ । ପିଲାମାନଙ୍କୁ ପ୍ରେମ କରିବାରେ ପିତାମାତା କୌଣସି ପ୍ରାକ୍-ସର୍ତ୍ତ ଆରୋପ କରିବା ଶ୍ରେୟସ୍କର ନୁହେଁ । ସେମାନଙ୍କୁ ଦେଇଥିବା ପ୍ରତିଶ୍ରୁତି ପାଳନ କରିବା ବାଞ୍ଛନୀୟ ।
- ପିଲାମାନଙ୍କ ବ୍ୟକ୍ତିଗତ ବୃଦ୍ଧି, ବିକାଶ ଓ ଉତ୍ତମ ଆଚରଣ ପାଇଁ ପୂର୍ବରୁ କାର୍ଯ୍ୟକ୍ରମ ଠିକ୍ କରିବା ଉଚିତ । ସେମାନଙ୍କ ପ୍ରତି ସତ୍ୟନିଷ୍ଠ ହେବା ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରତି ନିଜର ଦାୟିତ୍ୱକୁ ନିଷ୍ଠାର ସହ ପାଳନ କରିବା ମଧ୍ୟ ଆବଶ୍ୟକ ।
- ପିଲା ହେଲେ ବି ସେମାନଙ୍କଠାରେ ମଧ୍ୟ ଆତ୍ମସମ୍ମାନବୋଧ ଥାଏ । ତେଣୁ ସେହି ଆତ୍ମସମ୍ମାନକୁ ସମ୍ମାନ ଦେବା ଓ ତାକୁ କ୍ଷୁଣ୍ଣ ହେବାକୁ ନଦେବା ପିତାମାତାଙ୍କର ପ୍ରଧାନ କର୍ତ୍ତବ୍ୟ ।
- ଖେଳସାଥୀ ନିର୍ବାଚନ କରିବା, ଖେଳିବା ସ୍ଥାନ ସ୍ଥିର କରିବା, ବ୍ୟକ୍ତିଗତ ନୋଟ୍‌ବୁକ୍ କି ଟିପାଖାତା ରଖିବା ଇତ୍ୟାଦି କାର୍ଯ୍ୟରେ ସେମାନଙ୍କୁ ସମ୍ପୂର୍ଣ୍ଣ ସ୍ୱାଧୀନତା ପ୍ରଦାନ କରିବାର ପ୍ରଭାବ ଖୁବ୍ ଅନୁକୂଳ ।
- ପିତାମାତା ନିଜେ ଭୁଲ୍ କଲେ ନିଃସଙ୍କୋଚରେ ସନ୍ତାନମାନଙ୍କ ଆଗରେ ମାନିଯିବା ଉଚିତ ।
- କୌଣସି ଅବସ୍ଥାରେ ମଧ୍ୟ ସେମାନଙ୍କୁ ହୀନ ଦୃଷ୍ଟିରେ ଦେଖିବା କି ଅପମାନିତ କରିବା ସ୍ପୃହଣୀୟ ନୁହେଁ । ସେମାନଙ୍କ ମର୍ଯ୍ୟାଦାରେ ଆଞ୍ଚ ଆଣିବାର ପରିଣାମ ଶୁଭଙ୍କର ହୁଏନାହିଁ ।

- ଅନ୍ୟମାନଙ୍କ ସମ୍ମୁଖରେ ସେମାନଙ୍କୁ ସମାଲୋଚନା କରିବା କି ଶୃଙ୍ଖଳିତ କରିବାର ଅପଚେଷ୍ଟା ନିରାପଦ ନୁହେଁ ।
- ପାଠପଢ଼ା, ଖେଳ, ସଙ୍ଗୀତ ଇତ୍ୟାଦିରେ ସେମାନଙ୍କଠାରୁ ଅବାସ୍ତବ ପ୍ରତ୍ୟାଶା ପୋଷଣ କରିବା ଉଚିତ ନୁହେଁ ।
- ସେମାନଙ୍କ ସହ ଆଲୋଚନା କରି ସେମାନଙ୍କଠାରେ ନିଷ୍ପତ୍ତି ନେବା ଗୁଣର ବିକାଶ ସାଧନ କରିବା ଦରକାର ।

## ପିଲାମାନଙ୍କ କର୍ତ୍ତବ୍ୟ

- ପିତାମାତା ଯେଉଁ ପ୍ରକାରର ଆଚରଣ ଶିଖାଇଥିବେ, ତାକୁ ପାଳନ କରିବା ଉଚିତ ।
- ପିତାମାତା ନିର୍ଦ୍ଧାରଣ କରିଥିବା ସମୟ ଓ ଯୋଜନା ବା କାର୍ଯ୍ୟକ୍ରମ ମାନି ଚଳିବା ଦରକାର ।
- ପ୍ରଥମେ ପ୍ରଥମେ ଛୋଟ ଛୋଟ ଦାୟିତ୍ୱ ନିର୍ବାହ କରି ପରେ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ବହନ କରିବା ପାଇଁ ପ୍ରସ୍ତୁତ ରହିବା ଆବଶ୍ୟକ ।
- ସ୍କୁଲ୍‌ରେ ଓ ଘରେ ନିୟମିତ ପଢ଼ାପଢ଼ି କରିବା ସ୍ପୃହଣୀୟ ।
- ଟଙ୍କା ପଇସାକୁ ଦାୟିତ୍ୱସମ୍ପନ୍ନ ଭାବରେ ବ୍ୟୟ କରିବା ବାଞ୍ଛନୀୟ ।
- ପିତାମାତାଙ୍କ ପରାମର୍ଶ ମାନି ଚଳିବା ସଙ୍ଗେ ସଙ୍ଗେ ଆଚରଣରେ ସାଧୁତା ଓ ସତ୍ୟତା ଅବଲମ୍ବନ କରିବା ଉଚିତ ।
- ପରିବାରର ଆବଶ୍ୟକତା ପୂରଣ ପ୍ରତି ଧ୍ୟାନ ଦେବା ସଙ୍ଗେ ସଙ୍ଗେ ପରିବାରର ମର୍ଯ୍ୟାଦା ପ୍ରତି ସମ୍ମାନ ଦେବା ଆବଶ୍ୟକ ।

## ପରିବାରରେ ସମସ୍ତଙ୍କର କର୍ତ୍ତବ୍ୟ

ପରିବାରରେ ଆମ ସମସ୍ତଙ୍କର ସ୍ୱାର୍ଥ ନିହିତ । ତେଣୁ ସମସ୍ତେ ନିମ୍ନଲିଖିତ ଦିଗଗୁଡ଼ିକ ପ୍ରତି ଯତ୍ନବାନ୍ ରହିବା ଉଚିତ । ଏହି ନିୟମଗୁଡ଼ିକୁ ମାନି ଚଳିଲେ ପରିବାରର ଶାନ୍ତି ବ୍ୟାହତ ହେବାର ସମ୍ଭାବନା ଉପୁଜିବ ନାହିଁ । ପରିବାରର ଅନୁକୂଳ ପରିବେଶ ପିଲାମାନଙ୍କର ଅନୁକୂଳ ବିକାଶ ଦିଗରେ ସହାୟକ ହୋଇପାରିବ ।

- ପରସ୍ପର ପ୍ରତି ସ୍ନେହ, ଶ୍ରଦ୍ଧା, ପ୍ରେମ ଓ ସମ୍ମାନ ପ୍ରଦର୍ଶନ କରିବା ।
- ନିଜ ନିଜର ସାମର୍ଥ୍ୟ ଅନୁସାରେ କାମ କରିବା ।
- ପରସ୍ପରର ଦୃଷ୍ଟିକୋଣକୁ ଧୈର୍ଯ୍ୟର ସହ ଶୁଣିବା ।
- କାହାରି ପ୍ରତି ପକ୍ଷପାତ ଆଚରଣ ନକରିବା ।
- ସବୁ ପିଲାଙ୍କୁ ସମାନ ଦୃଷ୍ଟିରେ ଦେଖିବା ।
- ପ୍ରତ୍ୟେକ କାମରେ ଭାଗୀଦାର ହେବା ।
- ପ୍ରତ୍ୟେକ ସୁବିଧା ସୁଯୋଗକୁ ସମାନ ଭାବରେ ଉପଭୋଗ କରିବା ।
- ପ୍ରତ୍ୟେକଙ୍କ ସମ୍ପତ୍ତି ପ୍ରତି ସମ୍ମାନ ଦେବା ।
- ପ୍ରତ୍ୟେକଙ୍କ ଉପରେ ଆସ୍ଥା ଓ ବିଶ୍ୱାସ ସ୍ଥାପନ କରିବା ।
- ସ୍ୱାର୍ଥପରତାକୁ ପ୍ରଶ୍ରୟ ନଦେବା କି କାହାପ୍ରତି ଅଧିକ ଅନୁଗ୍ରହ ପ୍ରଦର୍ଶନ ନକରିବା ।
- କାହା ମନରେ ଦୁଃଖ ନଦେବା କି କାହାକୁ ପରିହାସ ନକରିବା ଇତ୍ୟାଦି ।



# ଆଗୁଆ ଯୋଜନା

"ସନ୍ତାନମାନଙ୍କର ବିକାଶ ପାଇଁ ପିତାମାତାଙ୍କ ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ଏହି ବିକାଶ କାଳରେ ସେମାନଙ୍କ ନିଜର ଉଦ୍ୟମରେ ସେମାନଙ୍କୁ ଯଥାସମ୍ଭବ ସହାୟତା ଯୋଗାଇଦେବା ପିତାମାତାଙ୍କର କର୍ତ୍ତବ୍ୟ । ଯେପରି କୌଣସି କଢଟିକୁ ଫୁଟି ତୁରନ୍ତ ଫୁଲରେ ପରିଣତ ହେବା ନିମନ୍ତେ ବାଧ୍ୟ କରାଯାଇପାରେନା, ଠିକ୍ ସେହିପରି ସନ୍ତାନ ଉପରେ ତା'ର ବିକାଶଧାରାକୁ ବାପମା' ଲଦିଦେଇ ପାରିବେ ନାହିଁ ।"

–ସି. ନର୍ଥକୋଟ୍ ପାର୍କିନ୍‌ସନ୍

**ପ୍ର : ପିଲାମାନଙ୍କୁ ଭଲ ମଣିଷ କରି ଗଢ଼ିବା ପାଇଁ କେଉଁ ପ୍ରକାରେ ଆଗତୁରା ଯୋଜନା ପ୍ରସ୍ତୁତ କରିବାକୁ ପଡ଼ିବ ?**

ଉ : ହଁ, ଏହା ଏକ ଭଲ ପ୍ରଶ୍ନ ଓ ସବୁ ପିତାମାତାଙ୍କ ପାଇଁ ଅତି ଗୁରୁତ୍ୱପୂର୍ଣ୍ଣ ମଧ୍ୟ । ଜାଣି ରଖନ୍ତୁ ଯେ ଆମ ପରିବାରଗୁଡ଼ିକୁ ମୁଖ୍ୟତଃ ଦୁଇ ପ୍ରକାରରେ ବିଭକ୍ତ କରାଯାଇପାରେ । ଗୋଟିଏ ପ୍ରକାରର ପରିବାରରେ ପିତାମାତାମାନେ ସେମାନଙ୍କ ସନ୍ତାନମାନଙ୍କୁ ଗଢ଼ିବା ପାଇଁ ଏକ ନିର୍ଦ୍ଦିଷ୍ଟ ଯୋଜନା ପ୍ରସ୍ତୁତ କରିଥାନ୍ତି । ଅନ୍ୟ ପ୍ରକାରଟିରେ ସନ୍ତାନମାନେ ପାରମ୍ପରିକ ଢଙ୍ଗରେ ବିକାଶ ଲାଭ କରିଥାନ୍ତି ସିନା, ସେମାନଙ୍କ ସୁବିକାଶ ଦିଗରେ ପିତାମାତାଙ୍କର କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ନଥାଏ । ପ୍ରଥମୋକ୍ତ ଗୋଷ୍ଠୀରେ ପିତାମାତା ନିଜ ପାଇଁ କିଛି ନିୟମ ନିର୍ଦ୍ଧାରଣ କରନ୍ତି ଓ ତାକୁ ଗୁରୁତ୍ୱର ସହ ପାଳନ କରିଥାନ୍ତି । ସେହିପରି ପିଲାମାନଙ୍କ ପାଇଁ ମଧ୍ୟ କେତେକ ନିୟମ ଧାର୍ଯ୍ୟ ହୋଇଥାଏ ଓ ପିଲାଏ ମଧ୍ୟ ସେହି ନିୟମଗୁଡ଼ିକୁ ପାଳନ କରନ୍ତି । ଫଳରେ ପରସ୍ପରର ସ୍ୱାଧୀନତା ଅକ୍ଷୁଣ୍ଣ ରହିବା ସଙ୍ଗେ ସଙ୍ଗେ ପିତାମାତା ଓ ସନ୍ତାନ ପରସ୍ପରର ପ୍ରତ୍ୟାଶା ସମ୍ପର୍କରେ ମଧ୍ୟ ସଚେତନ ରହିଥାନ୍ତି । ପିଲାମାନେ କେଉଁ ପ୍ରକାରେ ଚଳିବେ, କଅଣ କଅଣ କରିବେ ଓ

କଅଣ କଅଣ କରିବେନି ତଥା ଘରେ ଏବଂ ବାହାରେ କେଉଁ ଧରଣର ଆଚରଣ ପ୍ରଦର୍ଶନ କରିବେ, ତାହା ସେମାନଙ୍କୁ ଆଗରୁ ଜଣାଇ ଦିଆଯାଏ ।

କିନ୍ତୁ, ଯେଉଁ ପରିବାରରେ ପିଲାମାନଙ୍କୁ ଗଢ଼ି ତୋଳିବା ପାଇଁ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରାଯାଏ ନାହିଁ, ସେଠାରେ ପିତାମାତା ଓ ସନ୍ତାନସନ୍ତତି ନିଜ ନିଜ ବାଟରେ ସ୍ୱାଧୀନତା ଉପଭୋଗ କରନ୍ତି ବୋଲି ଜଣାପଡୁଥିଲେ ମଧ୍ୟ ଅଙ୍କୁଶବିହୀନ ସ୍ୱାଧୀନତା ସୃଷ୍ଟି କରିଥାଏ ଯାବତୀୟ ବିଶୃଙ୍ଖଳା । ଏହିଭଳି ପରିବାରରେ ସମସ୍ୟା, କଳିତକରାଳ, ପାଟିତୁଣ୍ଡ, ରାଗରୋଷ, ଦଣ୍ଡ ପ୍ରଦାନ ଆଦି ଗାଦି ମାଡ଼ି ବସିଥାଏ ଓ ନିତ୍ୟନୈମିତ୍ତିକ ବ୍ୟାପାରରେ ପରିଣତ ହୋଇଥାଏ । ହେଲେ ପୂର୍ବରୁ ଯୋଜନା ପ୍ରସ୍ତୁତ କରିଥିଲେ ଏହିସବୁ ସମସ୍ୟାକୁ ସହଜରେ ନିବାରଣ କରାଯାଇପାରେ ।

## - ଆଗରୁ ଜଣାଇ ଦିଅନ୍ତୁ

ଭାଇଭଉଣୀମାନେ ଘରେ କଳି କରିବା ଅତି ସାଧାରଣ ଘଟଣା । କିନ୍ତୁ କଳିର ମଞ୍ଜିକୁ ଠଉରେଇ ସେଥିପ୍ରତି ଆଗରୁ ବାଟ ତିଆରି କରିବା ମା'ର ଦାୟିତ୍ୱ । କୌଣସି ଏକ ଖାଦ୍ୟକୁ ଖାଇବା ପାଇଁ ଦୁଇ ସନ୍ତାନ ଜିଦ୍ ଧରନ୍ତି, ଗୋଟିଏ ଖେଳନାକୁ ଉଭୟେ ନେବାପାଇଁ ଜିଦ୍ କରନ୍ତି । କିନ୍ତୁ ଏପରି ପରିସ୍ଥିତି ଉପୁଜିବ ବୋଲି ଆଗରୁ ଠଉରେଇ ନିର୍ଦ୍ଦିଷ୍ଟ ଖାଦ୍ୟକୁ ଦୁଇଜଣଙ୍କ ଭିତରେ ବାଣ୍ଟିଦେବା କି ଦୁଇଟି ସମାନ ପ୍ରକାରର ଖେଳନା କିଣିବା ଦ୍ୱାରା ସମସ୍ୟା ଉପୁଜିବାର ସମ୍ଭାବନା ରହେନାହିଁ ।

ଥାଳିରେ ଖାଦ୍ୟ ଛାଡ଼ିବନି କି ଖାଦ୍ୟ ତଳେ ପକେଇବନି ବୋଲି ଆଗରୁ ସତର୍କ କରି ଦେଇନଥିଲେ 'ଖାଦ୍ୟ ନ ଛାଡ଼ିବା' କିମ୍ବା 'ଖାଦ୍ୟ ତଳେ ନ ପକେଇବା' ବିଷୟରେ ସେମାନେ ଜାଣିବେ କିପରି ? ପିଲାମାନଙ୍କଠାରୁ ମା' ଯାହା ଆଶା କରନ୍ତି, ତାହା ଆଗରୁ ସେମାନଙ୍କୁ ଜଣାଇଦେବା, ପରାମର୍ଶ କାର୍ଯ୍ୟକାରୀ ହେଲା କି ନାହିଁ ତା'ର ତଦାରଖ କରିବା, କାର୍ଯ୍ୟକାରୀ ହୋଇନଥିଲେ ସେହି ପିଲାମାନଙ୍କ ଦ୍ୱାରା ତାକୁ କାର୍ଯ୍ୟକାରୀ କରାଇବା, କାର୍ଯ୍ୟକାରୀ ହୋଇଥିଲେ ଏଥିପାଇଁ ସେମାନଙ୍କୁ ପ୍ରଶଂସା କରିବାର ସୁଫଳ ଅଧିକ ।

ସ୍କୁଲ୍‌ରେ ସେମାନେ କଅଣ କରିବେ ଓ କଅଣ କରିବେନି, ସ୍କୁଲ୍‌ରେ ଭର୍ତ୍ତି କରିବା ପୂର୍ବରୁ ପିଲାମାନଙ୍କୁ ଜଣାଇଦେଲେ ପ୍ରଥମ ଦିନରୁ ହିଁ ସେମାନେ ସଚେତନ ହୋଇଯାଆନ୍ତି । ଶିକ୍ଷକମାନଙ୍କ ପ୍ରତି କିପରି ଆଚରଣ କରିବାକୁ ପଡ଼ିବ କି ସାଙ୍ଗସାଥୀମାନଙ୍କ ସହ କିପରି ବ୍ୟବହାର କରିବାକୁ ହେବ, ତାହା ପ୍ରଥମେ ସେମାନଙ୍କୁ ଅବଗତ କରାଇଦେବା ଦରକାର ।

କାହାଘରକୁ ବୁଲିଗଲେ ସେଠାରେ କଅଣ କରିବା ଉଚିତ ଓ କଅଣ କରିବା ଉଚିତ ନୁହେଁ, ବୁଲିଯିବା ଆଗରୁ ସେମାନଙ୍କୁ କହିଦେବା ଦରକାର । ବଜାର ଗଲେ ଦୋକାନରେ କି ପ୍ରକାରର ଆଚରଣ ଦେଖାଇବାକୁ ପଡ଼ିବ, ବଜାରକୁ ଯିବା ଆଗରୁ ପିଲାଏ ତାହା ଜାଣିରଖିବା ବାଞ୍ଛନୀୟ । ପିଲାମାନଙ୍କ ପାଠପଢ଼ା ପ୍ରତି ଧ୍ୟାନ ଦେବା, ସେମାନଙ୍କୁ ଘର ପଢ଼ାରେ ସାହାଯ୍ୟ କରିବା, ପଢ଼ି ଶୁଣେଇବା, ସେମାନଙ୍କୁ ପଢ଼ିବାକୁ କହି ନିଜେ ମନଧ୍ୟାନ ଦେଇ ଶୁଣିବା, ନିଜର ଭୁଲ୍ ହୋଇଗଲେ କୌଣସି ସଙ୍କୋଚ ନକରି ପିଲାମାନଙ୍କଠାରୁ ଭୁଲ୍ ମାଗିବା ଇତ୍ୟାଦି ପିଲାମାନଙ୍କ ଉପରେ ଅନୁକୂଳ ପ୍ରଭାବ ପକାଇଥାଏ । ଏପରି କରିବା ଦ୍ୱାରା ସେମାନେ ଧରିନିଅନ୍ତି ଯେ ଏହି ଧାରାରେ ଚଳିବା ହିଁ କାମ୍ୟ ।

କିନ୍ତୁ ଯେଉଁ ବାପମା' ଏପରି କୌଣସି ଆଗତୁରା ଯୋଜନା କରନ୍ତିନି, ନିଜର ବ୍ୟସ୍ତତା ଓ ସମୟ ଅଭାବର ଦ୍ୱାହି ଦେଇ ଏଥିପ୍ରତି କୌଣସି ଗୁରୁତ୍ୱ ଦିଅନ୍ତିନି, ପିଲାଏ ଜାଣିପାରନ୍ତିନି କେତେବେଳେ ବିଛଣା ତ୍ୟାଗ କରିବାକୁ ପଡ଼ିବ କି କେତେବେଳେ ସକାଳ ଜଳଖିଆ ଖାଇବାକୁ ହେବ । ତେଣୁ ସ୍କୁଲ୍‌କୁ ଯିବାରେ ଡେରି ହୁଏ । ଫଳରେ ମା'ଙ୍କର ପାଟି ଆରମ୍ଭ ହୋଇଯାଏ । ବାପା ଗାଳିବର୍ଷଣ କରିଚାଲନ୍ତି । ପିଲାଏ ସ୍କୁଲ୍‌ରୁ ଫେରିଲା ବେଳକୁ ଘରେ ବାପା ଥିବେ କି ମା' ଥିବେ ତା'ର କୌଣସି ଖୋଜଖବର ନଥାଏ ପିଲାଙ୍କ ପାଖରେ । ପିଲାଏ ଘରର ଚାକରବାକରଙ୍କ ଅନୁଶାସନ ଦ୍ୱାରା ଚଳନ୍ତି । ଅତିଥିମାନଙ୍କ ସହ କିପରି ଆଚରଣ ଦେଖାଇବା ଉଚିତ ଜାଣି ନଥିବାରୁ ଅତିଥିଙ୍କ ଉପସ୍ଥିତି ପ୍ରତି କୌଣସି ଭ୍ରୂକ୍ଷେପ କରନ୍ତିନି । ଏପରିକି ବାପମା'ଙ୍କ ସହ ଅତିଥିଙ୍କୁ କଥା କୁହାଇ ନଦେଇ ଆରମ୍ଭ କରିଦିଅନ୍ତି ପାଟିଗୋଳ । ବାପମା' ମଧ୍ୟ ନିରୁପାୟ । କାରଣ ସେମାନଙ୍କ ତାଗିଦ ପିଲାମାନଙ୍କ ଉପରେ କୌଣସି ପ୍ରଭାବ ପକେଇବନି ବୋଲି ସେମାନେ ନିଃସନ୍ଦେହ । ପିଲାଙ୍କୁ ପ୍ରଥମରୁ ଅବଗତ କରାଇ ତାଲିମ ଦେଇଥିଲେ ସିନା ପିଲାଏ ଉତ୍ତମ ଆଚରଣ ଦେଖାଇଥାନ୍ତେ ! ଏଭଳି ପିଲାଙ୍କୁ ବାହାରକୁ ନେଲେ ମଧ୍ୟ ସେମାନଙ୍କ ଦୌରାତ୍ମ୍ୟରେ କୌଣସି ଊଣା ହୁଏନି ।

ଏହା ବୋଲି ଏହି ପିଲାମାନେ 'ତିନି ପାଞ୍ଚିରୁ ଗଲେଣି' ବା 'ସେମାନଙ୍କୁ ବାଟକୁ ଆଣିବାର ସବୁ ରାସ୍ତା ବନ୍ଦ' ବୋଲି ଭାବିନେଲେ ଚଳିବନି । ଏଭଳି ପିଲାଙ୍କ ଘନିଷ୍ଠ ସାନ୍ନିଧ୍ୟରେ ରହି, ସମୟ ଦେଇ ସେମାନଙ୍କ ଗହଣରେ କଟାଇବା ଦ୍ୱାରା ସେମାନେ ଧୀରେ ଧୀରେ ବାପମା'ଙ୍କ କଥା ମାନିବା ପାଇଁ ଉତ୍ସାହିତ ହୁଅନ୍ତି । ପିଲାମାନଙ୍କୁ ଭଲ ମଣିଷ କରି ଗଢ଼ିବା ପାଇଁ 'ସମୟ' ହେଉଛି ସର୍ବଶ୍ରେଷ୍ଠ ପୁଞ୍ଜି । ସମୟ ବ୍ୟୟ କଲେ ସୁଫଳ ମିଳିବାର ଆଶା ଯଥେଷ୍ଟ ବେଶୀ ।

କୌଣସି ବାପମା' ସନ୍ତାନ ପ୍ରତି ସେମାନଙ୍କର କର୍ତ୍ତବ୍ୟକୁ ଅସ୍ୱୀକାର କରନ୍ତିନି । କିନ୍ତୁ ସେଥିପାଇଁ ଯେ ନିଜକୁ ପରିଶ୍ରମ କରିବାକୁ ପଡ଼ିବ, ତାହା ଗ୍ରହଣ କରିପାରନ୍ତିନି ସେମାନେ । ପିଲାଙ୍କ ସହ ନିଜେ ଖେଳିବା, ସେମାନଙ୍କ ସହ ନାଚିବା, ସେମାନଙ୍କୁ ଗପ କହିବା, ସେମାନେ ଯାହା କହୁଛନ୍ତି, ତାକୁ ଆଗ୍ରହର ସହ ଶୁଣିବା, ସେମାନଙ୍କ ସାଙ୍ଗରେ ମିଶି ଗୀତ ଗାଇବା, ସେମାନଙ୍କଠାରୁ ପ୍ରଶ୍ନ ଆହ୍ୱାନ କରି ନିଜେ ଉତ୍ତର ଦେବାପାଇଁ ଚେଷ୍ଟା କରିବା, ସେମାନଙ୍କ ପଢ଼ି ଶୁଣେଇବା ଓ ସେମାନଙ୍କୁ ପଢ଼ିବା ପାଇଁ ଉତ୍ସାହିତ କରି ଏକାଗ୍ରତାର ସହ ଶୁଣିବା, ମିଳିମିଶି ଛବି ଆଙ୍କିବା, ନିଜର ଶ୍ରଦ୍ଧାପୂର୍ଣ୍ଣ ତତ୍ତ୍ୱାବଧାନରେ ସେମାନଙ୍କୁ କିଛି କିଛି ସ୍ୱାଧୀନତା ଦେବା ଦ୍ୱାରା ତଥାକଥିତ ତିନି ପାଞ୍ଚିରୁ ଯାଇଥିବା ପିଲା ଅଳ୍ପ ଦିନ ଭିତରେ ବାଟକୁ ଫେରିଆସିବ । ଘର କାମରେ ସେମାନଙ୍କୁ ନିୟୋଜିତ କଲେ ବାପମା'ଙ୍କ ଉପରେ ସନ୍ତାନର ବିଶ୍ୱାସ ଜାତ ହୁଏ ଓ ଏହାର ସୁଫଳ ଅଧିକ ।

## ସମ୍ଭାବ୍ୟ ପରିଣତି ସମ୍ପର୍କରେ ଅନୁମାନ କରିବା

କୌଣସି ଘଟଣାର ସମ୍ଭାବ୍ୟ ପରିଣତି ବିଷୟରେ ଆପଣ ପୂର୍ବରୁ ଅନୁମାନ ନଲଗେଇଥିଲେ ପିଲାକୁ କି ଅନ୍ୟମାନଙ୍କୁ ଯଥୋଚିତ ପରାମର୍ଶ ଦେଇ ହୁଏନାହିଁ ।

ଉଦାହରଣ ସ୍ୱରୂପ ଆପଣଙ୍କ ଝିଅ ଖେଳନାଟିଏ ନେଇ ବାହାରକୁ ଖେଳିବାକୁ ଯାଇଥିଲେ ସମବୟସ୍କ ତା'ର ଖେଳସାଥୀ ସେହି ଖେଳନାଟିକୁ ତା'ଠାରୁ ନେବାକୁ ଜିଦ୍ କରିପାରେ । ଏପରିକି ଛଡ଼େଇ ନେଇପାରେ ମଧ୍ୟ । ଏପରି ପରିସ୍ଥିତି ଉପୁଜୁଥିବା ଅତି ସାଧାରଣ । ଏ' କ୍ଷେତ୍ରରେ ଘରୁ ବାହାରିଲାବେଳେ ଝିଅକୁ ଯଥାର୍ଥ ପରାମର୍ଶ ଦେବେ । କହିବେ, "ଦେଖ୍, ରୀତା ତୋ'ଠାରୁ ଖେଳନାଟି ନେବାକୁ ଚାହିଁଲେ ତୁ ତାକୁ କିଛି ସମୟ ପାଇଁ ଖେଳନାଟିକୁ ଦେବୁ । କିଛି ସମୟ ପରେ ସେ ବଳେବଳେ ତୋତେ ଖେଳନାଟିକୁ ଫେରେଇ ଦେବ । ଯଦି ନଦିଏ, ତେବେ ତା'କୁ ମରାମରି ନକରି ମୋତେ ଆସି କହିବୁ କି ରୀତାର ମା'ଙ୍କୁ ଯାଇ କହିବୁ । ବୁଝିରଖ, ତାକୁ ଜମା ମାରଧର କରିବୁନି ।" ସେହିପରି ରାସ୍ତା ପାଖରେ ଖେଳୁଥିଲେ ରାସ୍ତାକୁ ଦୌଡ଼ିଯିବା ପାଇଁ ମନାକରି ଖେଳିବା ନିମନ୍ତେ ପଠାଇବେ । ବଲ୍ ରାସ୍ତାକୁ ଗଡ଼ିଗଲେ ନିଜେ ନ ଯାଇ କୌଣସି ବଡ଼ ପିଲାକୁ କହି ବଲଟିକୁ ଆଣିବା ନିମନ୍ତେ ସତର୍କ କରିଦେବେ ତାକୁ । ଚାକର ଚାକରାଣୀମାନେ ପିଲାମାନଙ୍କୁ ଖେଳିବାକୁ ନେଇ ନିଜ ନିଜ ଭିତରେ ଗପସପ କରନ୍ତି ଓ ପିଲାମାନେ ଆପଣାଛାଏଁ ଖେଳିବା ପରେ କିଛି ସମୟ ପରେ ଖେଳରୁ ସେମାନଙ୍କର ଆଗ୍ରହ ଚାଲିଯାଏ । ଏପରି କ୍ଷେତ୍ରରେ ଚାକର ଚାକରାଣୀଙ୍କୁ ମଧ୍ୟ ଉପଯୋଗୀ ପରାମର୍ଶ ଦେଇ ପଠେଇବେ ।

ସେମାନେ ପିଲାମାନଙ୍କୁ ଏକାଠି କରି ସେମାନଙ୍କୁ ଗୀତ ଗାଇ ଶୁଣେଇବା, ଗପ କହିବା କି ସେମାନଙ୍କ ସହ ମିଶି ଖେଳିବା ଦ୍ୱାରା ଉଭୟଙ୍କର ମନୋରଞ୍ଜନ ହୋଇଥାଏ ।

ବେଳେବେଳେ ପିଲାମାନଙ୍କ ପାଇଁ ପିତାମାତାମାନେ କରିଥିବା ଯୋଜନାକୁ ବୋହୂର ଶାଶୁଶ୍ୱଶୁରମାନେ ଭଣ୍ଡୁର କରିଦିଅନ୍ତି । ସେମାନେ ପୁରୁଣାକାଳିଆ ଢଙ୍ଗରେ, ନାତିନାତୁଣୀଙ୍କୁ ବଢ଼େଇବା ପାଇଁ ଚାହାଁନ୍ତି ଓ ନିଜ ଦୀର୍ଘ ଅନୁଭୂତିର ଦ୍ୱାହି ଦେଇ ନିଜକୁ 'ଠିକ୍' ବୋଲି ଦାବି କରନ୍ତି । ଶାଶୁଶ୍ୱଶୁରମାନଙ୍କର ବିରାଗ ଭାଜନ ହେବା ବୋହୂର ଉଦ୍ଦେଶ୍ୟ ନୁହେଁ, ହେଲେ ସନ୍ତାନର ସ୍ୱାର୍ଥକୁ ମଧ୍ୟ ସେ ଜଳାଞ୍ଜଳି ଦେଇପାରେନି । ନାତିନାତୁଣୀଙ୍କ ପ୍ରତି ଅଜସ୍ର ସ୍ନେହଶ୍ରଦ୍ଧା ରହିଥିବା ସତ୍ତ୍ୱେ ଶାଶୁଶ୍ୱଶୁରଙ୍କ ପିଲାପାଳନ ପଦ୍ଧତି ଅଧିକାଂଶ କ୍ଷେତ୍ରରେ ଅନୁକୂଳ ହୋଇପାରୁନି । ଏହା ବାସ୍ତବରେ ଏକ ସମ୍ବେଦନଶୀଳ ସମସ୍ୟା । ତେଣୁ ସନ୍ତାନର ପିତାମାତା ବୁଦ୍ଧିମତ୍ତାର ସହ ଏହି ସମସ୍ୟାର ସମାଧାନ କରିବା ଶ୍ରେୟସ୍କର । ବିଶେଷ କରି ବାପମା'ଙ୍କୁ ବୁଝାଇବାର ଭାର ପୁଅ ବହନ କରିବା ନିରାପଦ ।

ପିଲାମାନଙ୍କୁ ଆକଟ କରିବା ନିମନ୍ତେ ମା'ମାନେ ଅଧିକାଂଶ ସମୟରେ କହିଥାନ୍ତି, "ଅପେକ୍ଷା କର, ବାପା ଘରକୁ ଆସିଲେ ତୋ' ଦୁଷ୍ଟାମି କଥା ମୁଁ ବାପାଙ୍କୁ କହିଦେବି । ତାଙ୍କଠାରୁ ମାଡ଼ ଖାଇଲେ ହିଁ ତୁ' ବାଟକୁ ଆସିବୁ ।" ବୁଝି ଖବରଦାର୍, କେବେ ହେଲେ ଏପରି କହିବେନି କି ପ୍ରକୃତରେ ଏପରି କରିବେନି । ଏପରି କରିବା ଦ୍ୱାରା ଆପଣ ନିଜର ଅକ୍ଷମତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ବାପା "ଅତି ନିଷ୍ଠୁର" ବୋଲି ପିଲା ମନରେ ଧାରଣା ସୃଷ୍ଟି କରନ୍ତି । ତେଣୁ ସନ୍ତାନମାନେ ପ୍ରକୃତରେ କୌଣସି ସମସ୍ୟା ସୃଷ୍ଟି କରୁଥିଲେ ପିତାମାତା ଉଭୟେ ପରସ୍ପର ମଧ୍ୟରେ ଆଲୋଚନା କରି ଅନୁକୂଳ ସମାଧାନ ପନ୍ଥା ବାହାର କରିବା ହିଁ ସ୍ପୃହଣୀୟ ।

## ସନ୍ତାନକୁ ଭାଗୀଦାର କରିବା

ପିଲାକୁ ଭଲ ମଣିଷ କରି ଗଢ଼ିବା ନିମନ୍ତେ ଆପଣ ଯାହା କିଛି ଆଗୁଆ ଯୋଜନା କରିବେ, ତାହା ପିଲାକୁ ଜଣାଇବେ । ଯେପରିକି, "ତୁ ଖେଳିବାକୁ ଯିବା ମନା ନାହିଁ, କିନ୍ତୁ ସଂଧ୍ୟା ୬ଟା ବେଳକୁ ଆସି ଘରେ ପହଞ୍ଚିବୁ ।" ସେ ଡେରି କରି ଆସିଲେ ତା'ର ଏହି ଆଚରଣର ଦୃଢ଼ ପ୍ରତିବାଦ କରିବେ । ଆପଣ କୌଣସି ପ୍ରତିକ୍ରିୟା ପ୍ରକାଶ ନକରି ସହିଗଲେ ତା'ର ଆଚରଣରେ ଅନୁକୂଳ ପରିବର୍ତ୍ତନ ଆସିପାରିବନି । ତାହାଛଡ଼ା ଆପଣଙ୍କ ପରାମର୍ଶ କି ନିର୍ଦ୍ଦେଶକୁ ସେ ଆଦୌ ଗୁରୁତ୍ୱ ବି ଦେବନି । ଏପରିକି ଛଅଟାରେ ଫେରିବା ପାଇଁ

କହିଥିଲେ ଛଅଟା ପନ୍ଦରମିନିଟ୍ ବି ହେବ ନାହିଁ । ସେହିପରି ସନ୍ତାନଙ୍କୁ ସର୍ତ୍ତମୂଳକ ନିର୍ଦ୍ଦେଶ ମଧ୍ୟ ଦେବେ । ଉଦାହରଣ ସ୍ୱରୂପ, "ତୁ ସକାଳେ ତୋ ବିଛଣାପତ୍ର ସଜାଡ଼ି ରଖିଲେ ହିଁ ସଂଧ୍ୟାରେ ଟି.ଭି. ଦେଖିବୁ, ନୋହିଲେ ନାହିଁ ।" ସେ ଯଦି ବିଛଣା ପତ୍ର ନ ସଜାଡ଼ିଥାଏ, ତେବେ ତାକୁ ଟି.ଭି. ଦେଖିବା ନିମନ୍ତେ ଅନୁମତି ଦେବେ ନାହିଁ । ସେହିପରି ପ୍ରତ୍ୟେକ ଦିନର ପଢ଼ାପଢ଼ି ସମୟକୁ ପୂର୍ବରୁ ଧାର୍ଯ୍ୟ କରିଦେବେ ଓ ଠିକ୍ ସେହି ସମୟରେ ସନ୍ତାନମାନେ ଯେପରି ପଢ଼ାପଢ଼ି ଆରମ୍ଭ କରିବେ, ତା'ର ତଦାରଖ କରିବେ । ପିଲାମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ନିୟମ ବାନ୍ଧିଲାବେଳେ ତାକୁ କାର୍ଯ୍ୟକାରୀ କରିବାରେ ଆପଣ ସ୍ୱାମୀ-ସ୍ତ୍ରୀ ଦୁଇଜଣ ସମାନ ଦୃଷ୍ଟିକୋଣ ପୋଷଣ କରିବେ । ଦୁଇଜଣଙ୍କ ମତ ସମାନ ନ ହେଲେ ପିଲାଏ ଏହାର ସୁଯୋଗ ନେଇଥାନ୍ତି ।

### ପାରିବାରିକ ଅଧିବେଶନ

ପିତାମାତା ଓ ସନ୍ତାନମାନେ ଏକାଠି ବସି ଦୈନନ୍ଦିନ କାମ ବିଷୟରେ ଆଲୋଚନା କରିବେ ଓ ପରସ୍ପର ଭିତରେ କାମ ବାଣ୍ଟିନେବେ । କିଏ ବଜାର ସଉଦା କରିବ, କିଏ ରାନ୍ଧିବ, କିଏ ପରଷିବ, କିଏ ଅଇଁଠା ବାସନ ଧୋଇବ, କିଏ ପଢ଼େଇବ, କିଏ ଗପ କହିବ, କିଏ ବହି ପଢ଼ି ଶୁଣେଇବ, କିଏ ଘରେ ଝାଡୁ ଦେବ ଇତ୍ୟାଦି ପ୍ରତ୍ୟେକ କାମର ଦାୟିତ୍ୱ କାହାକୁ ଦିଆଯିବ, ତାହା ପାରିବାରିକ ଅଧିବେଶନରେ ଆଲୋଚନା କରି ଓ ପରସ୍ପରର ମତ ନେଇ ସ୍ଥିର କରିବେ ଓ ତାହା ଠିକ୍ ଭାବରେ ପାଳିତ ହେଲା କି ନା, ତା'ର ଖୋଜଖବର ନେବେ । ଏହିପରି ଭାବରେ ଆଗରୁ ଯୋଜନା କରିଥିଲେ ଓ ଯୋଜନା ଅନୁସାରେ ସମସ୍ତେ ମାନି କାମ କଲେ ଘରେ ପାଟିତୁଣ୍ଡ, କଳିଗୋଳ, ଠେଲାପେଲା, ରାଗରୋଷ ଇତ୍ୟାଦିର ସମ୍ଭାବନା ଆଶାତୀତ ଭାବରେ ହ୍ରାସ ପାଇଯିବ ।



# ଆଗେ ନିଜକୁ ସଜାଡ଼ି ନିଅନ୍ତୁ ତ !

ପ୍ର : ମୋ' ପୁଅକୁ ଏବେ ଏଗାର ବର୍ଷ । ବେଶ୍ ବୁଦ୍ଧିଆ ସେ । କିନ୍ତୁ ପଢ଼ାପଢ଼ିରେ ସେ ଆଦୌ ମନ ଦେଉନି । ତାହାଠାରୁ ଯେଉଁ ପ୍ରକାରର ଭଲ କରିବା ଆଶା, ସେହି ପ୍ରକାରେ ସେ ପରୀକ୍ଷାରେ ଭଲ କରୁନି । ତାହାଛଡ଼ା ଭଙ୍ଗାରୁଜା କରିବା, ଫୋପଡ଼ାଫିଙ୍ଗା କରିବା, ସାମାନ୍ୟ କଥାରେ ରାଗି ଉଠିବା, ଅସଂଯତ ଭାଷା ବ୍ୟବହାର କରିବା ତା'ର ହେଲାଣି ନିତିଦିନିଆ ଆଚରଣ । ପାଠ ପଢ଼ିବାର ନାଁ ଧରୁନି ସେ । ତାକୁ ନେଇ ମୋ'ର ଉଦ୍‌ବେଗର ସୀମା ନାହିଁ । ଗଲା ପାଞ୍ଚବର୍ଷ ଭିତରେ ତିନିଥର ତା'ର ସ୍କୁଲ୍ ବଦଳେଇଲେଣି । ଜଣେ ମନୋବିଜ୍ଞାନୀ କହିଲେ ଯେ ସେ ଭଲ ପଢ଼ାପଢ଼ି କରିପାରିବନି କି ଶିକ୍ଷାଦୀକ୍ଷାରେ ଭଲ ଉଧେଇ ପାରିବନି । ପୁଅର ଚିନ୍ତା ହିଁ ଏବେ ମୋର ଏକମାତ୍ର ଚିନ୍ତା । ଏ' ବିଷୟରେ ମୋତେ କିଛି ପରାମର୍ଶ ଦେଇପାରିବେ କି ?

ଉ : ଶିକ୍ଷାଦୀକ୍ଷାରେ ତା'ର ଅସାମର୍ଥ୍ୟ ଯୋଗୁ ତା'ର ଆଚରଣ ଅନୁକୂଳ ହେଉନି କି ଅନୁକୂଳ ଆଚରଣର ଅଭାବରୁ ସେ ଭଲ ପଢ଼ାପଢ଼ି କରିପାରୁନି, ତାହା କହିବା କଷ୍ଟ । କିନ୍ତୁ ଯେକୌଣସି କାରଣଟି ଅନ୍ୟ ପ୍ରକାରର ପରିଣତ ପାଇଁ ଦାୟୀ । ପିଲାମାନଙ୍କ ଉପରେ ମାନସିକ ଓ ଆବେଗିକ ଚାପ ବଢ଼ିଗଲେ ତାହା ସେମାନଙ୍କ ପାଠପଢ଼ାକୁ ବ୍ୟାହତ କରିଥାଏ । ଶିକ୍ଷାଗ୍ରହଣ କରିବାରେ ତ୍ରୁଟି ଦେଖାଦେଲେ ତାହା ନାନାପ୍ରକାରର ଆବେଗିକ ସମସ୍ୟା ସୃଷ୍ଟି କରିପାରେ ।

ଡାକ୍ତରୀ ଦୃଷ୍ଟିକୋଣରୁ ଦେଖିଲେ ମସ୍ତିଷ୍କରେ ବିଭିନ୍ନ ରୋଗ ଯୋଗୁ ପିଲାମାନଙ୍କ ପଢ଼ାପଢ଼ିରେ ସମସ୍ୟା ଉପୁଜେ । କିନ୍ତୁ ଏ' ତ ଡାକ୍ତରଙ୍କ କାମ ଓ ସେ ଏଥିପାଇଁ ଚିକିତ୍ସା କରିବେ । ହେଲେ, ସମସ୍ୟାଟି ଆପଣଙ୍କ ଦ୍ୱାରା ସୃଷ୍ଟି ହେଉନି ତ ? ଆପଣ ପତିପତ୍ନୀ ଦୁଇଜଣ ପୁଅ ବିଷୟରେ ଅତି ଉଚ୍ଚ ଆକାଂକ୍ଷା ପୋଷଣ କରୁନାହାନ୍ତି ତ ? ତା' ବୟସର

ଅନ୍ୟ ପିଲାମାନଙ୍କ ସହ ତା'ର ତୁଳନା ତ କରି ଚାଲୁନାହାନ୍ତି ଅଧିକାଂଶ ସମୟରେ ? କେହି ଜଣେ ପିଲା ଭଲ କୃତିତ୍ୱ ଦେଖାଇବାର ଅର୍ଥ ନୁହେଁ ଯେ ସବୁପିଲା ତା'ରି ଭଳି କୃତିତ୍ୱ ପ୍ରଦର୍ଶନ କରିବାକୁ ବାଧ୍ୟ ।

ବହୁ ପିତାମାତା ଓ ଶିକ୍ଷକଶିକ୍ଷିକା ନିଜ କଳନା ଅନୁସାରେ ପିଲାମାନଙ୍କଠାରୁ କୃତିତ୍ୱ ଆଶା କରିଥାନ୍ତି । ଏହି ଲକ୍ଷ୍ୟ ପୂରଣ କରିବା ପାଇଁ ପିଲାମାନଙ୍କ ଉପରେ ଚାପ ପକେଇ ପକେଇ ଚାଲନ୍ତି । ସେମାନେ ବୁଝି ରଖିବା ଦରକାର ଯେ ସବୁ ପିଲା ସମାନ ନୁହଁନ୍ତି । ସବୁ ପିଲାଙ୍କ କ୍ଷେତ୍ରରେ ପଢ଼ି ମନେ ରଖିବାର କ୍ଷମତା ସମାନ ନୁହେଁ । କିଏ ଅତି ଚଞ୍ଚଳ ଚଞ୍ଚଳ ଶିଖିପକାଏ ତ ଅନ୍ୟ କିଏ ଶିଖିବାରେ ଓ ମନେ ରଖିବାରେ ଟିକିଏ ମନ୍ଥର ।

କୌଣସି ପିଲା ପରୀକ୍ଷାରେ ଫେଲ୍ ହୋଇଗଲେ କିମ୍ବା ପରୀକ୍ଷାରେ ଆଶାନୁରୂପ ସଫଳତା ଦେଖେଇ ନପାରିଲେ ପରିବାରର ସମସ୍ତେ ତାକୁ ଛିଛାକର କରନ୍ତି । କେହି କେହି ଶିକ୍ଷକ ତାକୁ ତାଚ୍ଛଲ୍ୟ କରିବାକୁ ପଛାନ୍ତିନି । ଏହା ପିଲା ପାଇଁ ଏକ ଶକ୍ତ ଆଘାତ । ପରିବାରରେ ତାକୁ ସାହାଯ୍ୟ ନ ମିଳିଲେ, ତା' ପ୍ରତି ସମବେଦନା ପ୍ରକାଶ ନ ପାଇଲେ ସେ ବିଚରା କାହାର ଶରଣ ପଶିବ ? ଏହା କ'ଣ ଧରିନେବା ଠିକ୍ ଯେ ପରୀକ୍ଷାରେ ତା'ର ବିଫଳତାରେ ସେ ମହାଖୁସି ଓ ପରିବାରର ଅନ୍ୟମାନେ କେବଳ ହିଁ ଏଥିରେ ଦୁଃଖୀ ? ହାରିଯାଇଥିବା କିମ୍ବା ହାରିଯାଉଥିବା ଆମ ପୁଅଝିଅମାନେ ଆମଠାରୁ ଟିକିଏ ସ୍ନେହଶ୍ରଦ୍ଧା ଓ ଭରସା ପାଇବେ ବୋଲି ଆକୁଳରେ ଅପେକ୍ଷା କରିଥାନ୍ତି । କିନ୍ତୁ ଏହା ସେମାନଙ୍କୁ ମିଳି ନପାରିଲେ, ସେମାନଙ୍କ ମନ ଇତସ୍ତତଃ ଧାଇଁବାରେ ଭୁଲ୍ ରହିଲା କେଉଁଠି ?

ସନ୍ତାନମାନେ ସବୁ କ୍ଷେତ୍ରରେ କୃତିତ୍ୱ ଦେଖାନ୍ତୁ ବୋଲି ଆମେ ସବୁ ବାପମା' ଚାହିଁଥାଉ । ଏହି କାରଣରୁ ହିଁ ଆମେ ସବୁବେଳେ ଆମ ସନ୍ତାନକୁ ଅନ୍ୟମାନଙ୍କ ସନ୍ତାନ ସହ ତୁଳନା କରିବା ପାଇଁ ଡେଇଁପଡୁ । କେବଳ ସେତିକି ନୁହେଁ, ଏଥିପାଇଁ ଆମେ ନିଜକୁ ବେଶ୍ ବିବ୍ରତ ଓ ଉତ୍କଣ୍ଠିତ ମନେ କରୁ । ଫଳରେ ପରିବାରରେ ଏକ ଗମ୍ଭୀର ପରିବେଶ ରାଜୁତି କରେ । ହସଖୁସିଆ, ମଉଜିଆ ବାତାବରଣ ଉଭେଇଯାଏ । ଏହା ସନ୍ତାନର ଦୃଷ୍ଟିରୁ ବାଦ୍ ପଡ଼େନି । ଫଳରେ ତା'ର ମାନସିକ ଅବସ୍ଥାରେ ସୃଷ୍ଟି ହୁଏ ଝଡ଼ । ସେ ନିଜକୁ ଅଶାନ୍ତ ମନେ କରେ । ତା' ମନରେ ଜାତ ହୁଏ ବିଦ୍ରୋହ । ପିତାମାତାଙ୍କ ମନଲାଖି ହୋଇ ନପାରିବାରୁ ସେ ନିଜକୁ ଅପରାଧୀ ବୋଲି ଭାବେ । ଏହି କାରଣରୁ ତା'ର ପାଠପଢ଼ା, ଶିକ୍ଷାଦୀକ୍ଷାରେ ଜାତ ହୁଏ ବିଶୃଙ୍ଖଳା । ସେ ନିଜ ଢଙ୍ଗରେ ପ୍ରତିବାଦ ଜଣାଏ ;

ପ୍ରକାଶ କରେ ପ୍ରତିକ୍ରିୟା । କେହି କେହି ହିଂସାତ୍ମକ ଆଚରଣ ପ୍ରଦର୍ଶନ କରିଥାନ୍ତି ମଧ୍ୟ । ଆମେ ପିତାମାତାମାନେ ସବୁବେଳେ ପୁଅଝିଅଙ୍କୁ ଖୁଣିଲେ ଓ ସେମାନଙ୍କ ଦୋଷ ଦେଖୁ ଚାଲିଲେ, ପୁଅଝିଅମାନଙ୍କ ଆତ୍ମମର୍ଯ୍ୟାଦାରେ ଆଞ୍ଚ ଆସେ । ଏହାର ପରିଣାମରେ ସେମାନଙ୍କଠାରେ ପ୍ରକାଶ ପାଏ ଅସ୍ୱାଭାବିକ ଆଚରଣ ।

ଆମ ସନ୍ତାନମାନେ କ'ଣ ସବୁବେଳେ ଆମକୁ ସୁହାଇବା ଭଳି ଆଚରଣ ଦେଖେଇବାକୁ ବାଧ୍ୟ ? କୌଣସି କୌଣସି ସନ୍ତାନର ଆଚାର ବ୍ୟବହାରରେ କିଛି କିଛି ବ୍ୟତିକ୍ରମ ପ୍ରକାଶ ପାଇପାରେ । ହେଲେ ଆମେ ବାପମା'ମାନଙ୍କୁ ପରିବାରର ସୁଖଶାନ୍ତିକୁ ବଜାୟ ରଖିବାକୁ ପଡ଼ିବ । ପରିବାରରେ ଶାନ୍ତିପୂର୍ଣ୍ଣ ବାତାବରଣ ଥିଲେ ସନ୍ତାନମାନଙ୍କୁ ଶାନ୍ତଶିଷ୍ଟ ରଖିବାରେ ତାହା ଖୁବ୍ ସହାୟକ ହୋଇଥାଏ । ଆମ୍ଭେମାନେ ବିଦ୍ରୋହରେ ଜଳୁଥିଲେ ସନ୍ତାନମାନଙ୍କ ମନରେ ବି ଜାତ ହୁଏ ବିଦ୍ରୋହ । କାରଣ ମନୋଭାବ ବଡ଼ ସଂକ୍ରାମକ ।

ତେଣୁ, ଆପଣ ପୁଅକୁ ପାଖରେ ବସେଇ ଗେହ୍ଲା କରନ୍ତୁ । ତା'କୁ ଯେ ଆପଣ ଖୁବ୍ ଭଲ ପାଆନ୍ତି, ଖୋଲାଖୋଲି ଭାବରେ ତାହା ଦେଖେଇ ଚାଲନ୍ତୁ । ମଝିରେ ମଝିରେ ତା' ପାଇଁ ଉପହାର କିଣି ଆଣି ଦିଅନ୍ତୁ । ଆପଣ ଓ ଆପଣଙ୍କ ସ୍ୱାମୀ ଯେ ଆଦୌ ବିବ୍ରତ ନୁହଁନ୍ତି, ପୁଅକୁ ଏହା ଜାଣିବାର ସୁଯୋଗ ଦିଅନ୍ତୁ । ତା' ସହ ଭଲରେ କଥାବାର୍ତ୍ତା କରନ୍ତୁ । ଏପରି କରିବା ଫଳରେ ସେ ଆପଣ ଦୁହିଁଙ୍କୁ କ୍ରମେ ବିଶ୍ୱାସ କରିବ । ଏହା ଫଳରେ ଧୀରେ ଧୀରେ ସେ ତା'ର ସମସ୍ୟା ବିଷୟରେ ଆପଣଙ୍କ ଆଗରେ ମୁହଁ ଖୋଲିବ । ଆପଣ ଥରେ ତା' ଅନ୍ତରର କଥା ଜାଣିନେଲା ପରେ ଏହାର ସମାଧାନର ପନ୍ଥା ଖୋଜିବା ସହଜ ହୋଇପଡ଼ିବନି ଆପଣଙ୍କ ପାଇଁ ? ବାପମା' ସନ୍ତାନମାନଙ୍କର ଅନ୍ତରଙ୍ଗ ବନ୍ଧୁ ବୋଲି ପିଲାଙ୍କୁ ଜାଣିବାର ସୁଯୋଗ ଦେବା ଅତି ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ବଡ଼ ଦୁଃଖର କଥା ଯେ ଆମେ ସେମାନଙ୍କର ବନ୍ଧୁ ହେବାପାଇଁ କୁଣ୍ଠା ପ୍ରକାଶ କରୁଛେ । ସେମାନଙ୍କଠାରୁ ନିଜକୁ ଦୂରେଇ ରଖୁଛେ । ଏହି କାରଣରୁ ଏବକାର ପିଲାଏ ବନ୍ଧୁ ଖୋଜିବା ପାଇଁ ବାହାରକୁ ବାହାରି ଯାଉଛନ୍ତି । ଏହାର ପରିଣାମ ପରିବାର ପ୍ରତି ଓ ବାପମା'ଙ୍କ ପ୍ରତି ଆଦୌ ମଙ୍ଗଳକର ହୋଇପାରୁନାହିଁ ।

ପ୍ରତ୍ୟେକ ପିଲାଠାରେ ରହିଛି ଅନ୍ତର୍ନିହିତ ଶକ୍ତି । କିନ୍ତୁ ସେହି ଶକ୍ତିକୁ ଆବିଷ୍କାର କରିବାର ଦାୟିତ୍ୱ ବାପମା'ଙ୍କର । ତା'ର ଏହି ଶକ୍ତିକୁ ତା'ର ବିକାଶ ଓ ଉନ୍ନତି ପାଇଁ ବିନିଯୋଗ କରିବା ମଧ୍ୟ ସେହି ବାପମା'ଙ୍କର ଦାୟିତ୍ୱ । ବାପମା' ବାସ୍ତବବାଦୀ ହୋଇ

ପ୍ରକୃତ ସ୍ଥିତି ବିଷୟରେ ଅବଗତ ରହିପାରିଲେ ପରିବାରରେ ଶାନ୍ତି ବିରାଜମାନ କରିବ । ଏହି ଶାନ୍ତ ପରିବେଶ ସନ୍ତାନମାନଙ୍କର ଅନୁକୂଳ ବିକାଶରେ ଯଥେଷ୍ଟ ସହାୟକ ହୋଇପାରିବ ।

ଆପଣ ନିଜକୁ ଶାନ୍ତ ରଖନ୍ତୁ । ସ୍ୱାମୀ ମଧ୍ୟ ନିଜକୁ ବିବ୍ରତ ମନେ କରିବା ଉଚିତ ନୁହେଁ । ପୁଅ ଉପରେ ଅଯଥା ଚାପ ପକାନ୍ତୁନାହିଁ, ତା, ସହ ଅତି ନିବିଡ଼ ସମ୍ପର୍କ ସ୍ଥାପନ କରନ୍ତୁ । ତାକୁ ବିଶ୍ୱାସକୁ ନିଅନ୍ତୁ । ପରିବାରର ଛୋଟ ଛୋଟ କାମରେ ତାର ସାହାଯ୍ୟ ନିଅନ୍ତୁ । ତା' ଉପରେ ମଧ୍ୟ କିଛି କିଛି ଦାୟିତ୍ୱ ଦିଅନ୍ତୁ । ଏହା ଫଳରେ ତା'ଠାରେ ଆତ୍ମବିଶ୍ୱାସ ବଢ଼ିଚାଲିବ ଓ ସେ ଧୀରେ ଧୀରେ ବାଟକୁ ଚାଲିଆସିବ । ତେବେ ଆଗେ ନିଜକୁ ସଜାଡ଼ି ନିଅନ୍ତୁନା !'



# ପିତାମାତାଙ୍କ ଗୋଚରାର୍ଥେ

ଜନ୍ ବୁକ୍‌ସ କହିଛନ୍ତି, "ଏବକାର ବାପମା'ମାନେ ସନ୍ତାନମାନଙ୍କ ବିକାଶ ପାଇଁ ବିଶେଷ କିଛି କରୁନାହାନ୍ତି, ସନ୍ତାନମାନଙ୍କୁ କେବଳ ପଇସା ଦେବାରେ ଲାଗିଛନ୍ତି ।"

ଆବିଗେଲ୍ ଭାନ୍ ବ୍ୟୁରେନ୍‌ଙ୍କ ମତରେ, "ତୁମ ସନ୍ତାନମାନେ ଭଲ ମଣିଷ ହୋଇ ବିକାଶ ଲାଭ କରୁଥାଆନ୍ତୁ ବୋଲି ଯଦି ଚାହୁଁଛ, ତେବେ ସେମାନଙ୍କ ପାଇଁ ଅଧା ପଇସା ଖର୍ଚ୍ଚ କର, କିନ୍ତୁ ଖର୍ଚ୍ଚ କରିବା ପାଇଁ ପ୍ରସ୍ତୁତ ହୋଇଯାଅ ଦୁଇଗୁଣ ସମୟ ।"

ତେବେ ଅଧିକାଂଶ ପିତାମାତା ସେମାନଙ୍କ ଶିଶୁ-ସନ୍ତାନମାନଙ୍କ ପାଇଁ ବ୍ୟସ୍ତତା ପ୍ରକାଶ କରନ୍ତି ନାହିଁ, ହେଲେ ସେମାନଙ୍କ କିଶୋରକିଶୋରୀ ସନ୍ତାନମାନଙ୍କ ପାଇଁ ସେମାନଙ୍କ ମୁଣ୍ଡବ୍ୟଥାର ସୀମା ନଥାଏ ।

କୈଶୋର ହେଉଛି ଶୈଶବ ଓ ବୟସ୍କାବସ୍ଥା ବା ଯୁବାବସ୍ଥାର ସନ୍ଧିସ୍ଥଳ । ଏହା ଏପରି ଏକ ଅବସ୍ଥା ଯେଉଁ ଅବସ୍ଥାରେ ସମାଜ ପିଲାମାନଙ୍କୁ 'ଶିଶୁ' ବୋଲି ବିବେଚନା କରେନାହିଁ କି 'ବୟସ୍କ' ବ୍ୟକ୍ତି ରୂପେ ବି ଗ୍ରହଣ ନକରି ତଦନୁରୂପ ଦାୟିତ୍ୱ ଅର୍ପଣ କରେନାହିଁ । ପ୍ରକୃତରେ ବି ଏହା ଠିକ୍ । କାରଣ କିଶୋରକିଶୋରୀଙ୍କ ବୟସ୍କ-ଶରୀରଟି ଭିତରେ ଅଟକି ଯାଇଥାଏ ଶିଶୁର କୋମଳ ମନଟି । ତେଣୁ ଏମାନେ ଶିଶୁର ନିରାପତ୍ତା ଦାବି କରିବା ସଙ୍ଗେ ସଙ୍ଗେ ଦାବି କରିଥାନ୍ତି ବୟସ୍କର ସ୍ୱାଧୀନତା ।

ପ୍ରାୟ ୨୩୦୦ ବର୍ଷ ତଳେ ବିଶିଷ୍ଟ ଗ୍ରୀକ୍ ଦାର୍ଶନିକ ସକ୍ରେଟିସ୍ କହିଥିଲେ, "ଅଶୋଭନୀୟ ଆଚରଣ, ଅନ୍ୟମାନଙ୍କ ଉପରେ ହାକିମି, ପିତାମାତାଙ୍କୁ ପ୍ରତିରୋଧ, ସେମାନଙ୍କ କଥାରେ ପ୍ରତିବାଦ ଓ ଅସମ୍ମତି, କୌଣସି ସମାବେଶରେ କାହାରିକୁ କୁହାଇ ନଦେବା, ଖାଇବା ପିଇବାରେ ଲଗାମଛଡ଼ା ହେବା ଓ ଶିକ୍ଷକମାନଙ୍କୁ ଡରେଇ ହରେଇ ରଖିବା ... କୈଶୋରର ଲକ୍ଷଣ ।"

ସଂଖ୍ୟା ଦୃଷ୍ଟିରୁ ବିଚାର କଲେ କିଶୋର କିଶୋରୀମାନଙ୍କର ସଂଖ୍ୟା ଆମ ସମଗ୍ର ଜନସଂଖ୍ୟାର ପାଖାପାଖି ଏକଚତୁର୍ଥାଂଶ । ଏମାନଙ୍କର ବୟସ ସୀମା ୧୦ ରୁ ୨୦ ବର୍ଷ ।

ଏମାନଙ୍କର ଅସୁମାରି ସମସ୍ୟା । ସେମାନଙ୍କ ସମସ୍ୟାରେ ସେମାନେ ଓ ଆମେ ସମସ୍ତେ ଚିନ୍ତିତ, ବ୍ୟଥିତ, ଆତଙ୍କିତ ଓ ଭୟଭୀତ । ଏହା ସତ୍ତ୍ୱେ, କୈଶୋର ସମସ୍ୟାକୁ ଏକ ଜାତୀୟ ସମସ୍ୟାର ସ୍ୱୀକୃତି ମିଳିନାହିଁ କି ସେମାନଙ୍କ ସମସ୍ୟାର ସମାଧାନ ପାଇଁ କୌଣସି ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଗ୍ରହଣ କରାଯାଇନାହିଁ । ସେମାନଙ୍କ ସମସ୍ୟା ସୃଷ୍ଟିର ନାୟକମାନେ ହେଲେ ସେମାନେ ନିଜେ ଓ ସେମାନଙ୍କ ପିତାମାତା, ଆତ୍ମୀୟ, ଶିକ୍ଷକଶିକ୍ଷିକା ଓ ସାଙ୍ଗସାଥୀ । ସରକାର ଓ ସମାଜର ମଧ୍ୟ ଏଥିରେ ଯଥେଷ୍ଟ ଅବଦାନ ରହିଛି । ତେଣୁ ସମସ୍ୟା ସମାଧାନ ପାଇଁ ଏହି ପ୍ରତ୍ୟେକ ଗୋଷ୍ଠୀ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଉଚିତ । ତେବେ ଏଥିରେ ପିତାମାତାଙ୍କର ଭୂମିକା ଅଧିକ ଗୁରୁତ୍ୱପୂର୍ଣ୍ଣ ।

ଏହି ପରିପ୍ରେକ୍ଷୀରେ ପିତାମାତାଙ୍କ ସହ ପଦେଅଧେ କଥାବାର୍ତ୍ତା ହେବା ପ୍ରାସଙ୍ଗିକ ମନେ ହୁଏ ।

ପ୍ରିୟ ଭାଇଭଉଣୀମାନେ,

ନିଜ କିଶୋର ବୟସର ପୁଅଝିଅଙ୍କ ସହ ତୁମ୍ଭମାନଙ୍କୁ ଦିନରାତି ଯୁଝିବାକୁ ପଡୁଛି ନା ? "ତୁ' ...ତୁ' ... ମୈଁ...ମୈଁ..." ଭଳି କିଏ ଭୁଲ୍ ଆଉ କିଏ ଠିକ୍-ତାହା ସ୍ଥିର ହୋଇପାରୁନି ନା ?

ଶୁଣ, ଏହାର ରହିଛି ଏକ ସରଳ ସମାଧାନ । ତୁମେ ସମସ୍ତେ ତ ସେହି କୈଶୋର ବାଟ ଦେଇ ଆସିଛ । ତେଣୁ ତୁମକୁ ଯେତେବେଳେ ୧୦ ରୁ ୨୦ ବର୍ଷ ହୋଇଥିଲା, ସେତିକିବେଳର କଥା ମନେ ପକାଅ । ତୁମେ ସେତେବେଳେ ଯାହା ଯାହା ଅନୁଭବ କରିଥିଲ, ଯେଉଁ ପ୍ରକାରେ ଆଚରଣ ଦେଖାଉଥିଲ, ତୁମ ପିଲାଏ ତ ପ୍ରାୟ ସେହି ପ୍ରକାରେ ଅନୁଭବ କରୁଛନ୍ତି ଓ ଆଚରଣ ଦେଖାଉଛନ୍ତି । ତେଣୁ ସେମାନେ ଆଦୌ ବ୍ୟତିକ୍ରମ ନୁହଁନ୍ତି । ତୁମ୍ଭେମାନେ ସେହି ଅତୀତର ବିରାଟ ଅନୁଭୂତିକୁ କାମରେ ଲଗେଇଲେ ତ ସମାଧାନ ଆପେ ଆପେ ମିଳିଯିବ । ଭାବି ଦେଖ ତ, ତୁମରି ଜୀବନକାଳ ଭିତରେ ହିଁ ତୁମ ପିଲାଙ୍କର କିଶୋର ଅବସ୍ଥା ଆରମ୍ଭ ହେବ ଓ କିଶୋର ଅବସ୍ଥା ସରିଯିବ । ସୁତରାଂ ତୁମେ ଏହାକୁ ହାତଛଡ଼ା କରିଦେଲେ ଅନୁତାପ କରିବା ସାରହେବ କି ନା ?

ପୁଣି ଭାବି ଦେଖ ତ, ତୁମ ପିଲାଏଁ ଯେତେବେଳେ ଶିଶୁ ଥିଲେ, ସେତେବେଳେ ସେମାନେ ତୁମର ଆଚରଣର ଭଲମନ୍ଦ ବାରି ପାରୁନଥିଲେ, ତୁମ ସହିତ କଳିକଜିଆ କରୁନଥିଲେ, ଯୁକ୍ତି କରୁନଥିଲେ କି ତୁମର ଭୁଲ୍ ବାଛୁ ନଥିଲେ । ତେଣୁ ସେତେବେଳେ ତୁମର ଆଚରଣ ଥିଲା ଅତି ସ୍ୱାଭାବିକ । ସେଥିରେ ଛଳନା ନଥିଲା । ଶିଶୁଟି ତୁମ ବୋଲରେ

ନାଚିବ ବୋଲି ତୁମେ ଭାବୁନଥିଲ କି ତୁମକୁ ନିଜ ବ୍ୟବହାର ଅଦଳବଦଳ କରି ଚଳିବାକୁ ପଡ଼ିବ ବୋଲି ଚିନ୍ତା କରୁନଥିଲ । କିନ୍ତୁ ଶୈଶବକୁ ଛାଡ଼ି ସନ୍ତାନଟି କୈଶୋରରେ ପାଦ ଦେବାମାତ୍ରେ ତୁମ ପାଇଁ ଏକ ସ୍ୱତନ୍ତ୍ର ଧରଣର ଆଚରଣ ବା ବ୍ୟବହାରର ଆବଶ୍ୟକତା ଅଛି ବୋଲି ତୁମେ ମନେ କରୁଛ । ତୁମ ଆଚରଣରେ ଓ ତୁମ କିଶୋର ସନ୍ତାନର ଆଚରଣରେ ଯଦି କୌଣସି ଛଳନା କି କୃତ୍ରିମତା ନ ରହନ୍ତା, ତେବେ ଖୁବ୍ ଭଲ ହୁଅନ୍ତାନି ?

ପ୍ରତ୍ୟେକ ପରିବାରର ସମସ୍ୟା ଭିନ୍ନ । ତେଣୁ ପିତାମାତା ଓ ପିଲାମାନଙ୍କ ସମସ୍ୟାର ସମାଧାନ ପନ୍ଥା ସମସ୍ୟାକୁ ଚାହିଁ ଅଲଗା ଅଲଗା ହେବା ସ୍ୱାଭାବିକ । ଏହା ସତ୍ତ୍ୱେ, ମନେରଖ ଯେ ତୁମର ଓ ତୁମ ପିଲାର ରାସ୍ତା ଦୁଇପଟିଆ ନୁହେଁ ଯେ ଉଭୟଗୋଷ୍ଠୀ ନିଜ ନିଜ ବାଟ କାଟି ଚାଲିବେ । ବରଂ ଏକପଟିଆ ରାସ୍ତାରେ ପରସ୍ପର ସହ ସମ୍ପର୍କ ରଖି ଓ କଥାବାର୍ତ୍ତା ହୋଇ ଆଗେଇବା ଉଚିତ । ତୁମେ ବାପମା'ମାନେ ଆଜ୍ଞାକାରୀ ନୁହଁ କି ତୁ ପିଲାମାନେ ଆଜ୍ଞାପାଳନକାରୀ ନୁହନ୍ତି । ତୁମେ ଯମତା ଜାହିର କରିବ ଓ ସେମାନେ ତୁମ କ୍ଷମତା ପାଖରେ ନତମସ୍ତକ ହୋଇ ଚଳିବେ, ତାହା ଆଦୌ ଠିକ୍ ନୁହେଁ । ତୁମେ ବରିଷ୍ଠ ଓ ସେମାନେ କନିଷ୍ଠ ହେଲେ ମଧ୍ୟ ତୁମେ ବରିଷ୍ଠ ବୋଲେଇଲେ ଚଳିବନି । ଏହା ସତ୍ତ୍ୱେ ସେମାନେ ତୁମକୁ ବରିଷ୍ଠ ହେବା ଚାହାନ୍ତି । ବନ୍ଧୁ ଭଳି ବ୍ୟବହାର ଦେଖେଇଲେ ମଧ୍ୟ ତୁମେ ସେମାନଙ୍କ ପାଇଁ ମାର୍ଗ ଦର୍ଶକ ହୁଅ ବୋଲି ସେମାନଙ୍କର ଇଚ୍ଛା । ବେଳେବେଳେ ତୁମ୍ଭମାନଙ୍କର ତାଡ଼ନାକୁ ମଧ୍ୟ ସେମାନେ ସ୍ୱାଗତ କରିଥାନ୍ତି । ହେଲେ ତୁମେ ଯଦି ନିଜର କ୍ରୋଧକୁ ଚାପି ମନେମନେ ରାଗରେ କୁହୁଳୁଥାଅ, ତାହା ସେମାନଙ୍କର ସହ୍ୟ ହୁଏନାହିଁ । କାରଣ "ବୋମା କେତେବେଳେ ଫୁଟିବ" ଏହି ଆଶଙ୍କାରେ କିଏ ଅବା ଅପେକ୍ଷା କରି ରହିବ ଭାବ ତ !

ବେଳେବେଳେ ତୁମର ମନେ ହେଉଥିବ, ସତେ ଯେପରି ତୁମ ପିଲାଏ ତୁମକୁ ଚାହୁଁନାହାନ୍ତି; ତୁମ ପାଖରେ ତାଙ୍କର କୌଣସି ଆବଶ୍ୟକତା ନାହିଁ । କିନ୍ତୁ ସେଥିରେ ତାଙ୍କର କି' ଦୋଷ ? ସେମାନେ ପୂରା ପିଲା ନୁହନ୍ତି କି ପୂରା ଯୁବା ନୁହନ୍ତି । ଅଧା ପିଲା-ଅଧା ବୟସ୍କ । ତେଣୁ ସେମାନେ ଭ୍ରମରେ ପଡ଼ିବା ସ୍ୱାଭାବିକ । ସେମାନଙ୍କର ଆଚରଣ ମଧ୍ୟ ଅଦ୍ଭୁତ । ବେଳେବେଳେ କହିବେ, "ମୋତେ ଏକୁଟିଆ ରହିବାକୁ ଛାଡ଼ିଦିଅ" – ମୁହୂର୍ତ୍ତେ ଯାଇଥିବ କି ନା, ପୁଣି ଲୋଡ଼ିବେ ତୁମର ଘନିଷ୍ଠ ସାନ୍ନିଧ । ସୁତରାଂ, ସେମାନଙ୍କର କଥାକୁ ଗଣ୍ଠି କରି ଧରିବା ଆଦୌ ଶୋଭନୀୟ ନୁହେଁ । ତାହାଛଡ଼ା ସେମାନଙ୍କ ସହ ବିବାଦରେ ଜଡ଼ିତ ହୋଇ ପଡ଼ିବା ମଧ୍ୟ ନିରାପଦ ନୁହେଁ ।

କିନ୍ତୁ ମନେ ରଖିଥିବେ ଯେ ପରିବାରରେ ହସଖୁସିର ଜୁଆର ଛୁଟୁଥିଲେ, ଥଟ୍ଟାମଜାର ବାତାବରଣ ରହିଥିଲେ ଯେକୌଣସି ଅସ୍ୱସ୍ତି ଅଳ୍ପ ସମୟ ଭିତରେ ଦୂର ହୋଇଯାଏ ।

କିଶୋର ବୟସର ପିଲାମାନେ ନିଜର କର୍ତ୍ତୃତ୍ୱ ଜାହିର କରିବାକୁ ଚାହୁଁଥିବାରୁ ସେମାନଙ୍କର ଆଚରଣ ପିତାମାତା-ବିରୋଧୀ ହୋଇଥାଏ । କିନ୍ତୁ ଯେଉଁ ପିତାମାତା ବିଚାରବନ୍ତ, କିଶୋର ସମୟର ସମସ୍ୟା ପ୍ରତି ସଚେତନ, ସେ କ୍ଷେତ୍ରରେ ପିଲାମାନେ ବିଦ୍ରୋହୀ ହୋଇପଡ଼ିବାର ସୁଯୋଗ ପାଇପାରନ୍ତି ନାହିଁ । ହେଲେ, କାଳକ୍ଷେପଣ ନୀତି ଅବଲମ୍ବନ କରିବା, ସବୁ କାମକୁ ଡେରିରେ କରିବା କିମ୍ବା କୌଣସି କାମ ସମ୍ପାଦନ କରିବାରେ ଡେରି ଡେରି କରିବା ଅନେକ ପିଲାଙ୍କର ଲକ୍ଷଣ । ମନୋବିଜ୍ଞାନୀଙ୍କ ମତରେ ଏହା ହେଉଛି ବିଦ୍ରୋହୀ ମନୋଭାବର ଏକ ଭିନ୍ନ ପରିପ୍ରକାଶ । ତେବେ ଏହା ପ୍ରାୟତଃ ଏକ ନିରାପଦ ବିଦ୍ରୋହ । ଧୀରେ ଧୀରେ ଓ ଧୈର୍ଯ୍ୟ ଧରି ଏହି ସମସ୍ୟାର ମୁକାବିଲା କରିବା ତୁମର ଦାୟିତ୍ୱ ଓ କର୍ତ୍ତବ୍ୟ ।

କିଶୋର ବୟସର ପୁଅଝିଅ ଘରୁ ଗୋଡ଼ କାଢ଼ିଲେ ପିତାମାତାଙ୍କର ଚିନ୍ତା ବଢ଼ିଯାଏ । ତୁମେ ଏଭଳି ଚିନ୍ତା ପ୍ରକଟ କରିବା ସ୍ୱାଭାବିକ । ତୁମେ ଯେ ସେମାନଙ୍କର ନିରାପତ୍ତା ପ୍ରତି ସଚେତନ, ଏହା ତାହାର ପ୍ରମାଣ । ତେବେ ତୁମେ କ'ଣ ସବୁବେଳେ ସେମାନଙ୍କୁ ସୁରକ୍ଷା ବଳୟ ଭିତରେ ରଖିପାରିବ ? ତାହାଛଡ଼ା ସବୁବେଳେ ସେମାନଙ୍କୁ ସୁରକ୍ଷା ଦେଇଚାଲିଲେ ସେମାନେ ନିଜକୁ ନିଜେ ସୁରକ୍ଷିତ ରଖିବାର ପନ୍ଥା ଶିଖିବେ କିପରି ? ବରଂ ସେମାନଙ୍କୁ ସୀମିତ ସ୍ୱାଧୀନତା ଦେଲେ, ନିଜ ଉପରେ ସେମାନଙ୍କର ଆସ୍ଥା ଓ ବିଶ୍ୱାସ ଦୃଢ଼ୀଭୂତ ହୋଇପାରିବ । ନିଜର ଚିନ୍ତା ସତ୍ତ୍ୱେ, ସେମାନଙ୍କୁ କିଛି କିଛି ସ୍ୱାଧୀନତା ପ୍ରଦାନ କରିବାର ବିପଦ ବରଣ କରିବା ପାଇଁ ତୁମେ ପ୍ରସ୍ତୁତ ରହିବା ଉଚିତ । କାରଣ ସେମାନେ ନିଜ ଦାୟିତ୍ୱ ନିଜେ ନେଲେହିଁ ସାବଧାନ ରହିବାକୁ ଶିଖିବେ । ଅପରିଚିତ ବ୍ୟକ୍ତିମାନଙ୍କ ସହ ଭାବ ଆଦାନପ୍ରଦାନ କରିବା ପାଇଁ ଶିଖିବେ । ଯେଉଁ ପିଲା ସର୍ବଦା ବାପମା'ଙ୍କ ହେପାଜତରେ ସୁରକ୍ଷିତ ରହିଥାଏ, ତାହାଠାରେ ସମାଜକୁ ମୁକାବିଲା କରିବାର ପ୍ରବୃତ୍ତି ଓ ଦକ୍ଷତା ଜାତ ହୁଏନାହିଁ । କେମିତି ପୋଷାକପତ୍ର ପିନ୍ଧିବ, ନିଜକୁ କିପରି ଆକର୍ଷଣୀୟ କରିବ, ବାହାର ଲୋକଙ୍କ ସହ କିପରି ବ୍ୟବହାର କରିବ, କୌଣସି ସମସ୍ୟାର ଆଶୁ ସମାଧାନ କରିବ କିପରି – ଏହିସବୁ ବିଷୟ ଶିକ୍ଷଣୀୟ । ତେଣୁ ତୁମର ପିଲାମାନେ ଏସବୁ ବିଷୟରେ ପ୍ରତ୍ୟକ୍ଷ ଅନୁଭୂତି ଅର୍ଜନ କରିବା ଅତି ଗୁରୁତ୍ୱପୂର୍ଣ୍ଣ ।

ବେଳେବେଳେ ପୁଅପିଲାଙ୍କ ଆଡୁ ଝିଅମାନେ ସମସ୍ୟାର ସମ୍ମୁଖୀନ ହୋଇଥାଆନ୍ତି । ଏହା ପିତାମାତାଙ୍କ ପାଇଁ ଓ ଝିଅପାଇଁ ଅତ୍ୟନ୍ତ ଅସ୍ୱସ୍ତିକର ହୋଇଥାଏ । ଏ' କ୍ଷେତ୍ରରେ ଝିଅକୁ ଭଲମନ୍ଦ ବିଷୟରେ ଖୋଲାଖୋଲି ବୁଝେଇ ତାକୁ ଭରସା ଦେବା ତୁମର କର୍ତ୍ତବ୍ୟ । ଏହାଛଡ଼ା, ତା'ର ସମସ୍ୟା ଶୁଣି ସମାଧାନର ପନ୍ଥା ମଧ୍ୟ ତା'କୁ ବତେଇଦେବେ । ତେବେ, ଝିଅଟିଠାରେ ଆତ୍ମ-ସୁରକ୍ଷା ସମ୍ପର୍କିତ ପ୍ରବୃତ୍ତି ପ୍ରକାଶ ପାଇବା ଆବଶ୍ୟକ ଓ ଏଥିରେ ତୁମର ସହଯୋଗ ଏକାନ୍ତ କାମ୍ୟ । ଯେଉଁ ଝିଅ ଦୃଢ଼ମନା, ସେ ପୁଅପିଲାଙ୍କ ଆଡୁ ବିପଦର ସମ୍ମୁଖୀନ ହେବାର ସମ୍ଭାବନା ଊଣା । କାରଣ ଏଭଳି ଝିଅ ସହ ବଦମାସି କରିବା ପାଇଁ ପୁଅମାନେ ଡରନ୍ତି ।

ଆଉ ଗୋଟିଏ କଥା ନିୟମିତ ଭାବରେ ପୁଅଝିଅମାନଙ୍କୁ କିଛି ହାତଖର୍ଚ୍ଚା ଦେଉଥିବ । ସେମାନଙ୍କ ଉପରେ ଖୁସି ଥିଲେ ଦେବ, ରାଗିଥିଲେ ବି ଦେବ । ସବୁବେଳେ ଭାବିବ ଯେ ହାତଖର୍ଚ୍ଚ ହେଉଛି ସେମାନଙ୍କର ଦରମା ଭଳି । ଏହା ଫଳରେ ସେମାନେ ନିଜର ରୁଚିକୁ ଚାହିଁ କିଛି କିଣାକିଣି କରିପାରିବେ । ପରିବାରର ସଦସ୍ୟମାନଙ୍କ ପାଇଁ ଉପହାର ଆଣିପାରିବେ । ତାହାଛଡ଼ା, ଟଙ୍କା ପଇସାକୁ କିପରି ଯୁକ୍ତିସଙ୍ଗତ ଭାବରେ ବ୍ୟୟ କରାଯାଏ, ଏହା ଶିଖିବା ପାଇଁ ସେମାନଙ୍କୁ ସୁଯୋଗ ମିଳିଯିବ । ମଝିରେ ମଝିରେ ଘରର ଆର୍ଥିକ ଅବସ୍ଥା ଓ ସମ୍ଭାବ୍ୟ ବାହାରିଆ ଖର୍ଚ୍ଚ ବିଷୟରେ ମଧ୍ୟ ସେମାନଙ୍କ ସହ ଆଲୋଚନା କରିବ । ନିଜର ଅସ୍ୱଚ୍ଛଳତା ସେମାନଙ୍କ ପାଖରୁ ଆଦୌ ଲୁଚେଇ ରଖିବନି । କାରଣ ସେମାନେ ପରିବାରର ଆର୍ଥିକ ସ୍ଥିତି ସମ୍ପର୍କରେ ଜାଣିଲେ ହିଁ ଖର୍ଚ୍ଚବାଟରେ ସଚେତନ ରହିପାରିବେ ।

ବହୁ ପିତାମାତା ଅଭିଯୋଗ ବାଢ଼ିଥାନ୍ତି ଯେ ପିଲାମାନେ ସେମାନଙ୍କୁ ପୂର୍ବଭଳି ଭଲ ପାଉନାହାନ୍ତି । ବାପମା'ଙ୍କର କୋଳ ହେବାପାଇଁ ସଙ୍କୋଚ କରୁଛନ୍ତି । କିନ୍ତୁ ଏହା ସ୍ୱାଭାବିକ । ତେଣୁ ଏଥିପାଇଁ ବ୍ୟଥିତ ହେବା ଆଦୌ ଯୁକ୍ତିଯୁକ୍ତ ନୁହେଁ । ମନେପକାଅ ତ ବେଳ ଥିଲା, ଯେତେବେଳେ ନିଜ ସନ୍ତାନକୁ ଗାଧୋଇଦେବା ବେଳେ ତା'କୁ ପୂରା ଲଙ୍ଗଳା କରି ତୁମେ ଗାଧୋଇ ଦେଉଥିଲ, ହେଲେ ବଡ଼ ହେବାକୁ ଆରମ୍ଭ କଲାପରେ ସେ କ୍ରମେ ଅସ୍ୱସ୍ତି ଅନୁଭବ କଲା । ତୁମ ଉପସ୍ଥିତିରେ ଉଲଗ୍ନ ହେବାପାଇଁ ସଙ୍କୋଚ କଲା । ତେଣୁ ନିଜ ଶରୀର ସମ୍ପର୍କରେ ସେ ଯେପରି ଗୋପନୀୟତା ବା ନିଭୃତତା ଦାବି କରୁଛି, ନିଜ ଆବେଗ ଓ ମାନସିକତା ସମ୍ପର୍କରେ ମଧ୍ୟ ସେ ଆଶା କରୁଛି ଗୋପନୀୟତା ବା ନିଭୃତତା । ତୁମେ ବୟସ୍କ ବ୍ୟକ୍ତିମାନେ କ'ଣ ସେଇଆ କରୁନ ? ସେଇଆ ଚାହୁଁନ ? ସୁତରାଂ, ପିଲାର

ନିଭୃତତାକୁ ତୁମେ ଭୁଲ୍ ବୁଝିବ କାହିଁକି ? ପ୍ରଥମେ ପ୍ରଥମେ ହୁଏତ ଏଥିପାଇଁ ତୁମ ମନରେ ଆଘାତ ଲାଗିପାରେ, କିନ୍ତୁ କ୍ରମେ ତୁମେ ଏହାକୁ ସହିନେବା ଉଚିତ ।

ସମାଜରେ ମୂଲ୍ୟବୋଧର ଦ୍ରୁତ ଅବକ୍ଷୟରେ ବ୍ୟଥିତ ହୋଇ ଜଣେ ବରିଷ୍ଠ ବ୍ୟକ୍ତି ଶ୍ରୀମା'ଙ୍କୁ ପଚାରିଲେ, "ମା, ଭବିଷ୍ୟତ ପ୍ରତି ମୁଁ ଆଦୌ ଆଶାବାଦୀ ହୋଇପାରୁନି । ସତରେ କ'ଣ ଏହାର କିଛି ସମାଧାନ ଅଛି ?"

ମା' ଉତ୍ତର ଦେଲେ, "ହଁ ଅଛି । ଉଚ୍ଚ ପଦପଦବୀରେ ଅଧିଷ୍ଠିତ ବ୍ୟକ୍ତିମାନେ ଯଦି ନିଜେ ଦୃଷ୍ଟାନ୍ତ ହୋଇପାରିବେ, ତେବେ ସମସ୍ୟା ତୁରନ୍ତ ସମାହିତ ହୋଇଯିବ । ସେମାନେ ନିଜ ଜୀବନକୁ ତ୍ରୁଟିଶୂନ୍ୟ କରିପାରିଲେ ଓ ଜୀବନରେ ସମ୍ପୂର୍ଣ୍ଣ ସାଧୁତା ଅବଲମ୍ବନ କଲେ ସେମାନଙ୍କ ପରାମର୍ଶକୁ ଅନ୍ୟ ସମସ୍ତେ ଗୁରୁତ୍ୱ ଦେବେ । ଫଳରେ ସମାଜରେ ପ୍ରତିଷ୍ଠିତ ହେବ ଅନୁକୂଳ ପରିବର୍ତ୍ତନ ।"

ମା' ପୁଣି କହିଛନ୍ତି, "ଆଧ୍ୟାତ୍ମିକତା ହିଁ ନାରୀମାନଙ୍କର ଯଥାର୍ଥ କର୍ମକ୍ଷେତ୍ର ।" ଅର୍ଥାତ୍ ଆଧ୍ୟାତ୍ମିକତାର ଆଶ୍ରୟ କରି ସେମାନେ ଅସମ୍ଭବକୁ ସମ୍ଭବ କରାଇପାରିବେ । ଶ୍ରୀ ଅରବିନ୍ଦଙ୍କ ଭାଷାରେ, "ପ୍ରେମ ହିଁ ପ୍ରେମର ଜନନୀ ।" ତେଣୁ ପିତାମାତାମାନେ ଆଧ୍ୟାତ୍ମିକତା ଓ ପ୍ରେମକୁ ପୁଞ୍ଜିରୂପେ ବିନିଯୋଗ କରିପାରିଲେ କିଶୋରକିଶୋରୀମାନଙ୍କର ଏପରି କୌଣସି ସମସ୍ୟା ନାହିଁ, ଯାହାକୁ ସେମାନେ ସମାଧାନ କରିପାରିବେନି । ସୁତରାଂ ତୁମେ ତୁମ ସନ୍ତାନମାନଙ୍କଠାରେ ଏହାକୁ ପରୀକ୍ଷା କରେଇ ନେଇପାର ।



# ପରିବାରରେ ପିଲାମାନଙ୍କ ନିରାପତ୍ତା

ପ୍ରତିବର୍ଷ ଶହଶହ ସଂଖ୍ୟକ ଶିଶୁ ଆଘାତପ୍ରାପ୍ତ ହେଉଛନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ମୃତ୍ୟୁମୁଖରେ ପଡୁଛନ୍ତି । ଦୁର୍ଘଟଣାଗ୍ରସ୍ତ ହୋଇ ଆଘାତ ପାଇବା ଘଟଣାଗୁଡ଼ିକ ମଧ୍ୟରୁ ଅଧିକାଂଶ ସଂଘଟିତ ହୋଇଥାଏ ଶିଶୁମାନଙ୍କ ନିଜ ଘରେ କିମ୍ବା ଘରର ଆଖପାଖରେ । ପୁଣି ଦୁର୍ଘଟଣାମାନ ଘଟିଥାଏ ପ୍ରାୟତଃ ପିତାମାତା କିମ୍ବା ଶିଶୁର ଦାୟିତ୍ୱରେ ଥିବା ବୟସ୍କବ୍ୟକ୍ତିଙ୍କ ଉପସ୍ଥିତିରେ । ସମସ୍ତେ ଜାଣି ରଖିବା ଉଚିତ ଯେ ଦୁର୍ଘଟଣା ପାଇଁ ଦୁର୍ଭାଗ୍ୟ ଦାୟୀ ନୁହେଁ, ଦାୟୀ ହେଉଛି ଅସାବଧାନତା । ତେଣୁ, କେତୋଟି ସହଜ ତଥା ସରଳ ସତର୍କତା ଅବଲମ୍ବନ କଲେ ବହୁ ଦୁର୍ଘଟଣାକୁ ନିବାରଣ କରାଯାଇପାରିବ ।

## ରୋଷେଇ ଘର

ଘର ଭିତରେ ଘଟୁଥିବା ଆକସ୍ମିକ ଦୁର୍ଘଟଣାଗୁଡ଼ିକ ମଧ୍ୟରୁ ଅଧିକାଂଶ ଦୁର୍ଘଟଣା ଘଟିଥାଏ ରୋଷେଇଘରେ ।

ପିଲାମାନେ ନିଆଁସହ ଖେଳିବା ପାଇଁ ଭଲ ପାଆନ୍ତି । ତେଣୁ ଚୁଲି ଜଳୁଥିବାବେଳେ ଚୁଲି ପାଖକୁ ପିଲାମାନଙ୍କୁ ଛାଡ଼ିବେନି । ପିଲାର ହାତପାଆନ୍ତାରେ ଦିଆଶିଲି ରଖିବେନି । ଚୁଲି ଉପରେ ଗରମ ଡେକ୍‌ଚି, କଡ଼େଇ ଇତ୍ୟାଦି ରହିଥିଲେ, ତା' ପାଖକୁ ପିଲାଙ୍କୁ ଛାଡ଼ିବା ମନା । ସସ୍‌ପ୍ୟାନ୍ କିମ୍ବା ଅନ୍ୟାନ୍ୟ ପାତ୍ର ଚୁଲି ଉପରେ ରହିଥିଲେ ତା'ର ବେଣ୍ଟକୁ କାନ୍ଥ ଆଡ଼କୁ ରଖିବେ କିମ୍ବା ଦୂରେଇ ରଖିବେ । ଏହା ଫଳରେ ସେମାନେ ବେଣ୍ଟକୁ ଧରି ପକେଇ ଗରମ ଜିନିଷ ଢାଳି ପକେଇବାର ସମ୍ଭାବନା ରହିବନି । ପିଲା ବୟସରୁ ହିଁ ସେମାନଙ୍କୁ ନିଆଁପ୍ରତି ସତର୍କତା ସଂପର୍କରେ ଶିକ୍ଷାଦେବେ । ଗ୍ୟାସ୍‌ଗନ୍ଧ ବାରିଲେ ସଙ୍ଗେ ସଙ୍ଗେ ଗ୍ୟାସ୍ ବିତରଣକାରୀଙ୍କୁ ଖବର ଦେବେ ।

ରୋଷେଇ ଘରେ ଥିବା ଛୁରି, ପନିକି, ହେମଦସ୍ତା, ଶିଳ, ଶିଳପୁଆ ଇତ୍ୟାଦିକୁ ପିଲାମାନଙ୍କ ହାତପାଆନ୍ତାରେ ରଖିବେନି ।

କିରାସିନିରେ ରୋଷେଇ କରୁଥିଲେ ତାକୁ ଲୁଚେଇ କିମ୍ବା ତାଲା ପକେଇ ରଖିବେ । ବାସନ ମଜା ସାବୁନ୍, ସର୍ଫ, ରୋଷେଇବାସ ପାଇଁ ବ୍ୟବହାର କରାଯାଉଥିବା ଭିନିଗାର୍, ସସ୍ ଇତ୍ୟାଦି ମଧ ପିଲାମାନଙ୍କର ହାତପାଆନ୍ତାରେ ରହିବନି ।

## ଗାଧୁଆ ଘର

ଗାଧୁଆଘର ଓ ପାଇଖାନା ସଫା କରିବା ନିମନ୍ତେ ଏସିଡ୍ ଏବଂ ଡିଟରଜେଣ୍ଟ ବ୍ୟବହାର କରାଯାଇଥାଏ । ଏଗୁଡ଼ିକ ଚର୍ମରେ ବାଜିଲେ ଘାଆ କରେଇଦିଏ । ଖାଇଦେଲେ ଏହାର ବିଷକ୍ରିୟା ବଡ଼ ବିପଜ୍ଜନକ । ତେଣୁ, ଘରର ପିଲାମାନେ ଯେପରି ଏଗୁଡ଼ିକର ସଂସ୍ପର୍ଶରେ ନଆସିବେ, ସେଥିପ୍ରତି ଯତ୍ନବାନ୍ ରହିବେ । ପିଲାମାନଙ୍କୁ ଉଷୁମ ପାଣିରେ ଗାଧୋଇବାର ହେଲେ ଗାଧୁଆ କୁଣ୍ଡରେ ଆଗେ ଥଣ୍ଡାପାଣି ନେଇ ତା' ପରେ ସେଥିରେ ଉଷୁମପାଣି ଢାଳିବେ । ଆଗେ ଉଷୁମ ପାଣି ନେଇ ପରେ ଥଣ୍ଡାପାଣି ଢାଳିବେନି ।

ଗାଧୁଆ ଘରେ କି ପାଇଖାନାରେ ଶିଉଳି ଲଗେଇ ଦେବେନି । ଗାଧୁଆ ଘର ଚଟାଣକୁ ତେଲିଆ ରଖିବେନି ।

## ବିଦ୍ୟୁତ୍ ପ୍ରତି ସାବଧାନତା

ବିଦ୍ୟୁତ୍ ହେଉଛି ବଡ଼ ବିପଜ୍ଜନକ । ପ୍ଲଗ୍‌ର କଣା ଭିତରେ ଆଙ୍ଗୁଠି ଭର୍ତ୍ତି କରିବା ଏବଂ କାଠି ପୂରେଇବାରେ ପିଲାମାନଙ୍କର ବେଶି କୌତୂହଳ । ତେଣୁ ବ୍ୟବହୃତ ହେଉ ନଥିଲେ, ପ୍ଲଗ୍‌ର କଣାକୁ ବନ୍ଦରଖିବା ନିରାପଦ ।

ଘରେଥିବା ବୈଦ୍ୟୁତିକ ଉପକରଣରେ ଲମ୍ବା ସଂଯୋଗ ତାର ବ୍ୟବହାର କରିବେନି । ପିଲାମାନେ ତାରକୁ ଟାଣି ଦେଇ ଉପକରଣକୁ ତଳେ ପକେଇଦେବାର ସମ୍ଭାବନା ଥାଏ । ବିଦ୍ୟୁତ୍ ସଂଯୋଗ ତାର ଅକ୍ଷତ ରହିଥିବା ବାଞ୍ଛନୀୟ । ଗୋଟିଏ ପଏଣ୍ଟରୁ ଗୁଡ଼ାଏ ଏକ୍ସଟେନ୍‌ସନ୍ ବା ସଂଯୋଗ କରିବେନି । ଏପରି କଲେ ସେଠାରେ ଅଧିକ ମାତ୍ରାର ତାପ ଜାତହୋଇ ସର୍ଟ ସର୍କିଟ୍ ଜାତ ହୋଇପାରେ କିମ୍ବା ସେହିସ୍ଥାନରୁ ନିଆଁ ବାହାରିପାରେ ।

ନୂଆ ଘର ତିଆରି କରୁଥିଲେ ଇଲେକ୍‌ଟ୍ରିକ୍ ସୁଇଚ୍ ଏବଂ ପ୍ଲଗ୍ ଇତ୍ୟାଦି ପିଲାମାନଙ୍କ ହାତପାଆନ୍ତାରେ ନ ରଖିବାପାଇଁ ଇଲେକ୍‌ଟ୍ରିକ୍ ମିସ୍ତ୍ରୀଙ୍କୁ ନିର୍ଦ୍ଦେଶ ଦିଅନ୍ତୁ । ତାହାଛଡ଼ା, ଘରେ ସ୍ଥାପନ କରନ୍ତୁ ମାଟିସହ ସଂଯୁକ୍ତ ହୋଇପାରୁଥିବା 'ସର୍କିଟ୍ ବ୍ରେକର୍' ।

## ଖାଦ୍ୟ ସଂପର୍କିତ ନିରାପତ୍ତା

କେତେକ ଧରଣର ଖାଦ୍ୟ ପିଲାମାନଙ୍କୁ ଖାଇବାକୁ ଦେଲେ, ତାହା ଶ୍ୱାସନଳୀ ଭିତରେ ପଶିଯାଇ ସେମାନଙ୍କଠାରେ ଶ୍ୱାସରୋଧ କରିଦେବାର ସମ୍ଭାବନା ଥାଏ । ପିଲାମାନଙ୍କର ନିଃଶ୍ୱାସ ପ୍ରଶ୍ୱାସପଥ ଅପେକ୍ଷାକୃତ ସରୁ । ତେଣୁ, ତାହା ସହଜରେ ରୁଦ୍ଧ ହୋଇଯାଏ । ତାହାଛଡ଼ା, ପାଟିରେ ଖାଦ୍ୟ ରଖି ପିଲାମାନେ ପ୍ରାୟତଃ ଗପସପ କରିଥାନ୍ତି ଏବଂ ହସିଥାନ୍ତି । ଏହା ଫଳରେ ଖାଦ୍ୟ ଟୁକୁଡ଼ା ପାଟିରୁ ଖସିଯାଇ ଶ୍ୱାସନଳୀ ଭିତରେ ପଶିଯାଇପାରେ ।

ତେଣୁ ପାଞ୍ଚବର୍ଷ ବୟସରୁ କମ୍ ବୟସ୍କ ପିଲାମାନଙ୍କୁ ମିଶ୍ରି, ମୁଢ଼ୁକୁ, ଗଜା ଆଦି କଠିନ ଖାଦ୍ୟ ଖାଇବାକୁ ଦେବେନି । କାଜୁ, ଚିନାବାଦାମ ମଞ୍ଜି, କୋଳି ଇତ୍ୟାଦି ମଧ୍ୟ ନିରାପଦ ନୁହେଁ । ପପ୍‌କର୍ନ, ଖଇ ଇତ୍ୟାଦି ହାଲୁକା ହୋଇଥିବାରୁ ନିଃଶ୍ୱାସ ନେଲାବେଳେ ତାହା ତଣ୍ଟିଭିତରକୁ ପଶିଯିବାର ସମ୍ଭାବନା ଥାଏ ।

ପ୍ରତିଥର ଅଳ୍ପ ପରିମାଣର ଖାଦ୍ୟ ପାଟିକୁ ନେବାପାଇଁ ପିଲାମାନଙ୍କୁ ପରାମର୍ଶ ଦେବେ । ପାଟିରେ ଖାଦ୍ୟ ରଖି କଥାବାର୍ତ୍ତା ନ କରିବା କି ନହସିବା ପାଇଁ ସତର୍କ କରିଦେବେ ।

## ଖେଳଣା

ପିଲାଙ୍କ ଖେଳନାଗୁଡ଼ିକୁ ନିର୍ଦ୍ଦୋଷ ବୋଲି ଧରିନେବେନି । ଖେଳନାର ଡିଜାଇନ କି ସେ ସଂପର୍କିତ ନିରାପତ୍ତା ବ୍ୟବସ୍ଥା ବିଷୟରେ ଆମ ଦେଶରେ କୌଣସି ନିୟମ ନାହିଁ । ମନେ ରଖିବେ ଯେ ଯେଉଁ ଖେଳନା ବଡ଼ ପିଲାଙ୍କ ଖେଳନା ପାଇଁ ଉପଯୋଗୀ, ତାହା ଛୋଟପିଲାଙ୍କ ପାଇଁ ନିରାପଦ ନ ହୋଇପାରେ । ଖେଳନାରେ ମୁନିଆଁ ଅଂଶ କି ଧାରୁଆ ଅଂଶ ନଥିଲେ ତାହା ସେମାନଙ୍କ ପାଇଁ ନିରାପଦ । ସେଥିରେ ଛୋଟଛୋଟ ଅଂଶ ରହିଥିଲେ ପିଲାମାନେ ତାକୁ ଦାନ୍ତରେ ଖେଣ୍ଡିନେଇ ଗିଳି ଦେଇଥାନ୍ତି । ଏହାଫଳରେ, ଉକ୍ତ ଅଂଶଟି ତଣ୍ଟିଭିତରକୁ ଚାଲିଯାଇପାରେ ।

ରଙ୍ଗିନ ଖେଳନା ମଧ୍ୟ ବିପଦ ସୃଷ୍ଟି କରିପାରେ । ରଙ୍ଗିନ ଖେଳନା ଆକର୍ଷଣୀୟ ସିନା, କିନ୍ତୁ ପିଲାଟି ଖେଳନାକୁ ପାଟିରେ ପୂରେଇ ଚୁଚୁମିଲେ ଖେଳନାର ରଙ୍ଗ ପିଲାପେଟକୁ ଯାଇ ପିଲାର କ୍ଷତି କରିଥାଏ । ସେହିପରି ଖେଳନାରେ ବୋତାମ ଲାଗିଥିଲେ, ପିଲାମାନେ

ବୋତାମକୁ ଦାନ୍ତରେ ଛିଣ୍ଡେଇ ଗିଳି ଦେବାବେଳେ ତାହା ତଣ୍ଟି ଭିତରକୁ ଚାଲିଯାଇ ଶ୍ୱାସରୋଧ କରିପାରେ ।

## ଚାଲି ଶିଖିବା ଉପକରଣ

ଛୋଟପିଲା ଚାଲି ଶିଖିବାବେଳେ ପ୍ରଥମେ ଗୋଟିଏ ଦୁଇଟି ପାହୁଣ୍ଡ ପକାଇ ବସିପଡ଼େ । କାନ୍ଥଧରି ଚାଲିବା ତା' ପାଇଁ ନିରାପଦ ବୋଲି ମଣେ ସେ । ଏହି ସମୟରେ ବହୁ ପିତାମାତା ଉତ୍ସାହିତ ହୋଇ ତା' ପାଇଁ ଚାଲିଶିଖିବା ଉପକରଣ ବା 'ବେବି ୱାକର୍' କିଣି ଆଣନ୍ତି । 'ବେବି ୱାକର୍' ଧରି ଚାଲିଲେ ଯେ ଶିଶୁଟି ଚଞ୍ଚଳ ଚଞ୍ଚଳ ଚାଲି ଶିଖିବ, ଏହା ଭାବିନେବା ଠିକ୍ ନୁହେଁ । ନିଜେ ନିଜେ ଚାଲି ଶଖିଲେ ଶିଶୁଟି ନିଜର ଚାଲିକୁ ନିୟନ୍ତ୍ରଣ କରିପାରେ । କିନ୍ତୁ, ବେବି ୱାକର ଧରି ଚାଲିଲେ ଶିଶୁର ନିଜ ନିୟନ୍ତ୍ରଣ କ୍ଷମତା କାମ ନକରି ସେ ବେବି ୱାକରର୍ ନିୟନ୍ତ୍ରଣାଧୀନ ହୋଇଯାଏ । ବେବି ୱାକର୍ ଡଗ ଡଗ ହୋଇ ଗଡ଼ିଯାଉଥିବାରୁ ତାକୁ ଧରିଥିବା ଶିଶୁଟି ତା' ସହ ଘୋଷାରି ହୋଇ ପାଖରେ ଥିବା ଆସବାବପତ୍ର ତଥା ଅନ୍ୟାନ୍ୟ ଉପକରଣ ସହ ଧକ୍କା ଖାଏ । ଏପରିକି ଶିଢ଼ିରେ ଗଡ଼ିପଡ଼ି ଆହତ ହୋଇପାରେ । ସୁତରାଂ, ବେବି ୱାକର ପ୍ରଲୋଭନରେ ନ ପଡ଼ିବା ହିଁ ମଙ୍ଗଳ ।

## ଜଳପ୍ରତି ସତର୍କତା

ପିଲାମାନେ ଜଳକୁ ଭୟ କରନ୍ତି ନାହିଁ । ବରଂ ଏହା ସହ ସେମାନେ ଘନିଷ୍ଠ ଭାବରେ ପରିଚିତ ବୋଲି ମନେ କରନ୍ତି । କିନ୍ତୁ, ଆପଣ ଜଳରେ ଅନିଷ୍ଟ ଦର୍ଶନ କରିବାରେ ଶିଶୁର ସ୍ୱାର୍ଥ ସୁରକ୍ଷିତ । ବାଲଟିରେ ଅତି ଅଳ୍ପଜଳ ରହିଥିଲେ ବି ପିଲା ତାକୁ ଦେଖିବାରେ ଆଗ୍ରହୀ ହୋଇ ତା' ଭିତରେ ପଡ଼ିଯାଇପାରେ । ମୁଣ୍ଡପଟିଆ ହୋଇ ପଡ଼ିଗଲେ ସୃଷ୍ଟି ହୋଇପାରେ ମୃତ୍ୟୁଭଳି ପରିଣାମ । ଗାଧୁଆକୁଣ୍ଡ, ପୋଖରୀ କୂଳ, ନଈତୁଠ, କୂଅମୂଳ, ସନ୍ତରଣାଗାର ଇତ୍ୟାଦି ପାଖରେ ପିଲାମାନେ ରହିଥିଲେ ସେମାନଙ୍କ ଉପରେ ତୀକ୍ଷ୍ଣ ନିଘା ରଖିଥିବେ । ଆପଣ ସାମାନ୍ୟ ଅନ୍ୟମନସ୍କ ହୋଇ, ସେମାନଙ୍କ ଉପରୁ କ୍ଷଣକ ପାଇଁ ବି ଦୃଷ୍ଟି ଫେରେଇନେବା ଅବସରରେ ଘଟିଯାଇପାରେ ଅଘଟଣ । ତାହାଛଡ଼ା, ଏକାଧିକ ପିଲାଙ୍କୁ ଧରି ଜଳାଶୟ ନିକଟରେ ଆତଯାତ ହେବାର ଦୁଃସାହସ କରିବେନି । ଏପରି ପରିସ୍ଥିତିକୁ ଏଡ଼େଇ ନପାରିଲେ ଏକାଧିକ ବୟସ୍କ ବ୍ୟକ୍ତିଙ୍କୁ ନିଶ୍ଚୟ ସାଥିରେ ନେବେ ।

## ଅନ୍ୟାନ୍ୟ

ନିୟମିତ ବ୍ୟବଧାନରେ ଘରଭିତରେ ଏବଂ ବାହାରେ ବୁଲି ଆସିବେ । ପିଲାମାନଙ୍କ ପାଇଁ ବିପଦ ସୃଷ୍ଟି କରିବାର ସମ୍ଭାବନା ଥିବା କୌଣସି ବସ୍ତୁ ଆପଣଙ୍କ ଦୃଷ୍ଟିରେ ପଡ଼ିଲେ ତାକୁ ସାଙ୍ଗେ ସାଙ୍ଗେ ଦୂରେଇ ଦେବେ । କୌଣସି ଔଷଧପତ୍ର ପିଲାମାନଙ୍କର ହାତପାଆନ୍ତାରେ ରଖିବେନି । ବଡ଼ ବଟିକା କି କ୍ୟାପ୍‌ସୁଲ୍‌କୁ ସେମାନେ ଚକୋଲେଟ୍ ଭାବି ଗିଳି ପକେଇବାର ଆଶଙ୍କା ଥାଏ ।

ପୂର୍ବରୁ ବ୍ୟବହୃତ ହୋଇ ବୋତଲରେ ବଳି ପଡ଼ିଥିବା ଖାଇବା ଔଷଧ ଏବଂ ଆଖି, କାନ, ନାକ ଇତ୍ୟାଦିରେ ପକାଯାଉଥିବା ଔଷଧକୁ ପୁନର୍ବାର ବ୍ୟବହାର କରିବେନି । ଏହା ଶିଶୁ ଏବଂ ବୟସ୍କ ସମସ୍ତଙ୍କ ପାଇଁ କ୍ଷତିକାରକ ।

ଘରର ବାଲକୋନିରେ ପିଲାମାନଙ୍କୁ ଏକୁଟିଆ ଖେଳିବାକୁ ଛାଡ଼ିବେନି । ଛାତରେ ଉଚ୍ଚ ପାରାପେଟ ନଥିଲେ ଛାତରେ ଖେଳୁଥିବା ପିଲା ପାରାପେଟ ଉପରେ ଚଢ଼ି ତଳକୁ ପଡ଼ିଯିବାର ଡର ରହିଛି । ଘରର ପାହାଚଗୁଡ଼ିକ ପିଲାମାନଙ୍କ ପାଇଁ ଆଦୌ ନିରାପଦ ବିବେଚିତ ହୁଏନି । ପାହାଚରେ ଝୁଣ୍ଟିପଡ଼ିବା ଏବଂ ପାହାଚ ଚଢ଼ିବା କି ଓହ୍ଲେଇବାବେଳେ ଖସିପଡ଼ିବା ଅତି ସାଧାରଣ ଦୁର୍ଘଟଣା । ତେଣୁ, ପିଲାମାନଙ୍କୁ ପାହାଚ ପାଖକୁ ଛାଡ଼ିବେନି ।

ପିଲାଙ୍କ ବେକରେ ହାର କି ସୂତା ପିନ୍ଧେଇବା ମଧ୍ୟ ନିରାପଦ ନୁହେଁ । ଦେଳେବେଳେ ତାହା ଅନ୍ୟ କୌଣସି ଉପକରଣରେ ଲାଖି ଟାଣି ହୋଇଗଲେ ପିଲାର ଶ୍ୱାସରୋଧ ହୋଇଯାଇପାରେ ।

ଜଳନ୍ତା ଧୂପବତି କି ସଳିତାର ନିଆଁକୁ ଦେଖି ଖୁବ୍ କୌତୂହଳୀ ହୋଇପଡ଼ନ୍ତି ପିଲାମାନେ । ତାକୁ ଧରିବା ପାଇଁ ଧାଇଁଯାଆନ୍ତି । ତେଣୁ, ତାକୁ ମଧ୍ୟ ପିଲାମାନଙ୍କଠାରୁ ଦୂରେଇ ରଖିବେ ।

ଖେଳିବାପାଇଁ ପିଲାମାନଙ୍କୁ ଆଦୌ ପ୍ଲାଷ୍ଟିକ୍ ବ୍ୟାଗ୍ ଧରେଇ ଦେବେନି । କାରଣ, ବ୍ୟାଗରେ ସେମାନେ ମୁଣ୍ଡ ଭର୍ତ୍ତିକରି ଅଣନିଃଶ୍ୱାସୀ ହୋଇପଡ଼ିବାର ଆଶଙ୍କା ରହିଛି । ବେଲୁନ୍ ଫାଟିଗଲେ ବେଲୁନର ରବରକୁ ପାଟିକୁ ନେଇ ଢୋକିବାବେଳେ ତାହା ମଧ୍ୟ ଶ୍ୱାସରୋଧ କରାଇଥାଏ । ଏହି ଦୃଷ୍ଟିରୁ ଦେଖିଲେ ପବନ ଭର୍ତ୍ତି ହୋଇଥିବା ବେଲୁନ୍ ହେଉଛି ଖେଳନା, କିନ୍ତୁ ବେଲୁନ୍ ଫାଟିଗଲେ ତା'ର ରବର ହେଉଛି କାଳ । ପିଲାମାନେ ଘରର ପୋଷା କୁକୁର, ବିଲେଇ ଓ ଚଢ଼େଇମାନଙ୍କ ସହ ଖେଳିବା ମଧ୍ୟ ମନା ।

## ଯାତ୍ରା କରିବା ସମୟରେ ସତର୍କତା

**(କ) ଦୁଇଚକିଆ ଯାନ** – ହେଲ୍‌ମେଟ୍ ନଲଗେଇ ସ୍କୁଟର କି ମୋଟର ସାଇକେଲ୍ ଚଳାଇବା ତ ଆଦୌ ନିରାପଦ ନୁହେଁ । ପିଲାମାନଙ୍କ ପାଇଁ ସ୍ୱତନ୍ତ୍ର ହେଲ୍‌ମେଟ୍ ନଥିବାରୁ ସେମାନଙ୍କୁ ସ୍କୁଟର କି ମୋଟରସାଇକେଲ୍‌ରେ ବସେଇ ନେବା ମନା । ଶରୀର ଅନୁପାତରେ ବୟସ୍କମାନଙ୍କ ତୁଳନାରେ ପିଲାମାନଙ୍କ ମୁଣ୍ଡ ବଡ଼ । ତେଣୁ ଦୁର୍ଘଟଣାଗ୍ରସ୍ତ ହୋଇ ପଡ଼ିଗଲେ ପିଲାମାନଙ୍କ ମୁଣ୍ଡ ହିଁ ପ୍ରଥମେ ଭୂଇଁରେ ବାଡ଼େଇ ହୋଇଯାଏ । ଗାଡ଼ି ଧୀରେ ଧୀରେ ଚାଲୁଥିବାବେଳେ ପିଲାମାନେ ଖସିପଡ଼ିଲେ ମଧ୍ୟ ତାହାର ପରିଣତି ଗୁରୁତର ହୋଇପାରେ । ଏପରିକି ପିଲା ମୃତ୍ୟୁମୁଖରେ ପଡ଼ିପାରେ ମଧ୍ୟ ।

ପୁଣି ରାସ୍ତାରେ ଘଟୁଥିବା ଦୁର୍ଘଟଣାଗୁଡ଼ିକ ଅପେକ୍ଷା ଘର ଭିତରେ ଘଟୁଥିବା ଦୁର୍ଘଟଣାଗୁଡ଼ିକର ସଂଖ୍ୟା ଯଥେଷ୍ଟ ବେଶି । ଏପରିକି ଘର ଭିତରର ଦୁର୍ଘଟଣା ପ୍ରାଣହାନିର କାରଣ ହେବାରେ ଅସ୍ୱାଭାବିକତା କିଛି ନାହିଁ ।

ସେ ଯାହାହେଉ, ପିଲାମାନେ ଦୁର୍ଘଟଣାଗ୍ରସ୍ତ ହେବାର ଅଧିକ ସମ୍ଭାବନାଥିବାରୁ ସେମାନଙ୍କର ନିରାପତ୍ତା ପାଇଁ ବୟସ୍କବ୍ୟକ୍ତିମାନେ ଅଧିକ ସତର୍କ ରହିବା ହିଁ ସ୍ପୃହଣୀୟ ।



# ମୋ' ପିଲାବେଳର କଥା

ମୋ' ପିଲାବେଳର କଥା ଏବେ ଝାପ୍‌ସା ଝାପ୍‌ସା ଯାହା ମନେ ପଡୁଛି ମୋର ! ସେତେବେଳେ ମୁଁ ମୋ' ବାପମା'ଙ୍କ ପାଇଁ ଏକ ବୋଝ ହୋଇନଥିଲି ଆଦୌ । ମୁଁ ହୋଇନଥିଲି କି ମୋ' ସାଙ୍ଗସାଥୀମାନେ ସେମାନଙ୍କ ବାପମା'ଙ୍କ ପାଇଁ ମୁଣ୍ଡବ୍ୟଥାର କାରଣ ହୋଇନଥିଲେ । ସେତେବେଳେ ପିଲାପାଳିବା ଓ ପିଲାଙ୍କୁ ମଣିଷ କରିବା ଏକ ଧରାବନ୍ଧା ନିୟମରେ ଗଡ଼ି ଚାଲୁଥିଲା । ପୁଅଝିଅମାନେ ଗୋଟାଏ କ'ଣ 'ହେବେ', ଏ' ଧାରଣା ସେତେବେଳକାରର ବାପମା'ଙ୍କ ମୁଣ୍ଡରେ ପଶି ନଥିଲା । କିନ୍ତୁ ଏବେ ? ବାପ୍‌ରେ ବାପ୍, କଅଣ ଗୋଟାଏ ହେବାପାଇଁ କି ତୀବ୍ର ପ୍ରତିଯୋଗିତା ! ଭବିଷ୍ୟତରେ କିଛି ହେବା ପାଇଁ ଆଣ୍ଠୁଗଣ୍ଠି ଛିଣ୍ଡେଇ ଦଉଡୁଛନ୍ତି ପିଲାଏ, ସେମାନଙ୍କୁ କିଛି କରିବା ପାଇଁ ଆହୁରି ଜୋର୍‌ରେ ଦୌଡ଼ିବାରେ ଲାଗିଛନ୍ତି ସେମାନଙ୍କର ବାପା ଆଉ ମାଆ । ସମତାଳରେ ଦଉଡ଼ନ୍ତେ ହେଲେ, ସମାନ ଦିଗରେ ଦଉଡ଼ନ୍ତେ ଅବା ? ଏହା ନହେବାରୁ ଦେଖାଦେଉଛି ସଙ୍ଗତି ସଙ୍କଟ, ଉପୁଜୁଛି ମାନସିକ ସଂଘର୍ଷ । ନିରବ ରହିବା କି ମୁଣ୍ଡ ଥଣ୍ଡା ରଖିବା ପାଇଁ ପିତାମାତାମାନେ ଯେତେ ପ୍ରୟାସ କଲେ ବି ସନ୍ତାନମାନଙ୍କର ବିକାଶଧାରା ସାଙ୍ଗରେ ଖାପଖୁଆଇ ଚାଲିବା ବେଳେବେଳେ ଅସମ୍ଭବ ହୋଇଉଠୁଛି । ବାପମା'ଙ୍କର ଅଭିଯୋଗ ଯେ ଆଜିକାଲିକାର ପିଲା ମୂଲ୍ୟବୋଧର ଧାର ଧାରୁନାହାନ୍ତି କି ଦୁନିଆର କାହା ପ୍ରତି ସେମାନଙ୍କର ସାମାନ୍ୟତମ ସମ୍ମାନବୋଧ ନାହିଁ । ଏଭଳି ଅମାନିଆ ଉଚ୍ଛୃଙ୍ଖଳ ପିଲାଙ୍କୁ ମଣ କରିବା ପ୍ରାୟତଃ ସାଧ୍ୟାତୀତ ସେମାନଙ୍କ ପକ୍ଷେ । ପିଲାଙ୍କର ଅଭିଯୋଗ ଯେ ଏହି ପ୍ରତିଯୋଗିତାମୂଳକ ଜୀବନ ସହିତ ସେମାନଙ୍କର କଅଁଳ ମନ ଖାପଖୁଆଇ ପାରୁନି । ଶୈଶବର ସୁଆଦ ସେମାନେ ଚାଖିପାରିଲେନି । ଉପଭୋଗ କରିପାରୁ ନାହାନ୍ତି ଚଳଚଞ୍ଚଳ କୈଶୋର । ପଙ୍ଗୁ ଶୈଶବ ଏବଂ ବିକୃତ କୈଶୋର ପରବର୍ତ୍ତୀ ଜୀବନର ସୌଷ୍ଠବକୁ ଯେ କଳଙ୍କିତ କରିଦେବ, ଏଥିରେ କ'ଣ କୌଣସି ସନ୍ଦେହ ଅଛି ? ଏହାକୁ ଏବେ କୁହାଯାଉଛି

ପିଢ଼ି ବ୍ୟବଧାନର ସମସ୍ୟା । ଏହା ପୁଣି ଏପରି ଏକ ଏତଲା, ଯେଉଁଥିରେ ମୁଦେଇ ଏବଂ ମୁଦାଲା, ଅଭିଯୋଗକାରୀ ଏବଂ ଅଭିଯୁକ୍ତ ଉଭୟ ପ୍ରାୟତଃ ଠିକ୍ । ତଥାପି ନ୍ୟାୟ ପ୍ରଦାନ କଲାବେଳେ ପିଲାମାନଙ୍କର ଅପରିପକ୍ୱତାକୁ ବିଚାରକୁ ନେଇ ସେମାନଙ୍କ ପ୍ରତି କିଞ୍ଚିତ କୋହଳ ମନୋଭାବ ପ୍ରଦର୍ଶନ କରାଯାଇପାରେ । ପିତାମାତାଙ୍କର ବୟସ ଅନୁଭୂତି, ଧୈର୍ଯ୍ୟ, ସହିଷ୍ଣୁତା ଆଦି ପରିପ୍ରେକ୍ଷୀରେ ସନ୍ତାନମାନଙ୍କ ସମସ୍ୟା ପାଇଁ ସେମାନଙ୍କୁ ଉତ୍ତରଦାୟୀ କରିବା ହୁଏତ ବିଶେଷ ଅଯୌକ୍ତିକ ହେବନାହିଁ ।

ବାପମା'ଙ୍କ ସାଙ୍ଗରେ ଆଲୋଚନା କଲେ ସେମାନେ ମତ ଦେଉଛନ୍ତି ଯେ ସନ୍ତାନସନ୍ତତିଙ୍କ ପ୍ରତି ଯାହା ସର୍ବୋତ୍ତମ, ମଙ୍ଗଳକର ତାହା ସେମାନେ ଭଲ ଭାବରେ ଜାଣନ୍ତି । କିନ୍ତୁ ଯେତେ କହିଲେ ବି ପିଲାମାନେ ସେମାନଙ୍କ ପରାମର୍ଶ ପ୍ରତି କାନ ଦେଉନାହାନ୍ତି । ହେଲେ ବଡ଼ ପରିତାପର ବିଷୟ ଯେ ପିଲାମାନଙ୍କ ପାଇଁ କଅଣ ଠିକ୍ ଏବଂ କଅଣ ଭୁଲ୍ ତାହା ବାପମା'ମାନେ ସତରେ ଜାଣିନାହାନ୍ତି । ବର୍ତ୍ତମାନର ଦ୍ରୁତ ପରିବର୍ତ୍ତନଶୀଳ ଦୁନିଆରେ ବିକାଶ ଲାଭ କରୁଥିବା ଶିଶୁକୁ ଦିଗ୍‌ଦର୍ଶନ ଦେବା ବାସ୍ତବରେ ଏକ ଦୁରୂହ ସମସ୍ୟା । ସେ' ତ ଏବେ ତଥ୍ୟ ବିସ୍ଫୋରଣରେ ଦିଗହରା । ତା' ମୁଣ୍ଡରେ ସବାର୍ ହୋଇଛି ଇଣ୍ଟରନେଟ୍ । ଟେଲିଭିଜନ୍‌ର ସୁଇଚ୍ ଟିପିଟିପି ଚାଲିଲେ ତା' ସମ୍ମୁଖରେ ପ୍ରଦର୍ଶିତ ହୋଇଚାଲିଛି ୪୦ଟିରୁ ଊର୍ଦ୍ଧ୍ୱ ଭିନ୍ନ ଭିନ୍ନ ଚ୍ୟାନେଲ୍ । କେତେବେଳେ ମୁଷ୍ଟିଯୋଦ୍ଧା ତା'ର ଆଦର୍ଶ ତ ଆଉ କେତେବେଳେ ତା'ର ମଡ଼େଲ୍ ସାଜୁଛି ସିନେମାଷ୍ଟାର୍ । ଘରର ଠିକାଚାକରାଣୀର ମାସିକ ଦରମା ଯାହା, ତା'ର ଦୁଇଗୁଣ ପରିମାଣ ଅର୍ଥ ହେଲାଣି ସନ୍ତାନର ମାସିକିଆ ପକେଟ୍‌ମନି । ବର୍ତ୍ତମାନର ପିଲାଙ୍କ ପାଇଁ ଏହି ଯେଉଁ ଅନୁଭୂତି, ତା'ର କ'ଣ କିଛି ଧାର ଧାରିଥିଲେ ତାଙ୍କର ବାପ ମା' ? ପୂର୍ବ ଅନୁଭୂତି ନ ଥାଇ ପିଲାଙ୍କ ଅନୁଭୂତିର କି ଚିକିତ୍ସା କରିବେ ଏବକାର ପିତାମାତା ?

ତେବେ ସମସ୍ତେ ଅନ୍ତତଃ ଏକମତ ହେବେ ଯେ ଏବକାରର ବାପମା' ସେମାନଙ୍କ ସନ୍ତାନମାନଙ୍କଠାରୁ ଅବାସ୍ତବ ସଫଳତାମାନ ଆଶା କରି ଚାଲିଛନ୍ତି । ନିଜ ସନ୍ତାନର ମାନସିକ କି ଶାରୀରିକ ସାମର୍ଥ୍ୟ ପ୍ରତି ସେମାନଙ୍କର ନିଘା ନାହିଁ । ସେମାନେ ଧାରଣା କରି ନେଉଛନ୍ତି ଯେ ସେମାନଙ୍କର ପିଲା ହେବ 'ଅଲ୍‌ରାଉଣ୍ଡର୍' । ପାଠପଢ଼ାରେ ସେ ହେବ ସମସ୍ତଙ୍କଠାରୁ ଆଗୁଆ । ଖେଳରେ ମାରିନେବ ଜିତାପଟ୍ । ତୂଳୀ ଧରିଲେ ଟପିଯିବ ନାମକରା ଚିତ୍ରଶିଳ୍ପୀଙ୍କୁ । ବକ୍ତୃତା ପ୍ରତିଯୋଗିତାରେ ସ୍ତମ୍ଭିତ କରିଦେବ ଶ୍ରୋତା ଏବଂ

ବିଚାରକ ମଣ୍ଡଳୀଙ୍କୁ । କିନ୍ତୁ ଯେଉଁଥିରେ ହାତ ଦେବ, ସେଥିରେ ପ୍ରଥମ ହେବାର ଯୋଗ୍ୟତା ତା'ଠାରେ ଥିଲେ ସିନା ? ସେତିକି ମେଧାସମ୍ପନ୍ନ ସିନା ହୋଇଥିଲେ ତା'ଠାରୁ ଉପରୋକ୍ତ ପ୍ରକାରେ କୃତିତ୍ୱ ହୁଏତ ଆଶା କରାଯାଇପାରେ ? ନୋହିଲେ, ଏହାର ପରିଣାମ ହେବ ଅତ୍ୟନ୍ତ ଭୟାବହ । ପିତାମାତା ନୈରାଶ୍ୟରେ ଆକ୍ରାନ୍ତ ହୋଇପଡୁଥିବାବେଳେ ସନ୍ତାନର ଅପରିପକ୍ୱ ମନପାଇଁ ତଜ୍ଜନିତ ମାନସିକ ଚାପ ହେବ ଦୁଃସହ ।

ଏବେ ଅନେକ ବାପମା' ଆଉ ଏକ ପ୍ରକାର ଭୁଲ୍ କରି ବସୁଛନ୍ତି । ଅନ୍ୟ ପିଲାଙ୍କ କୃତିତ୍ୱ ସହ ନିଜ ପିଲାର କୃତିତ୍ୱକୁ ତୁଳନା କରିବା ସଙ୍ଗେ ସଙ୍ଗେ ନିଜର ସନ୍ତାନମାନଙ୍କ ମଧ୍ୟରେ ମଧ୍ୟ କୃତିତ୍ୱକୁ ତଉଲିବାରେ ହେଳା କରୁନାହାନ୍ତି । କୃତିତ୍ୱର ଓଜନରେ ବେଶୀ ହୋଇଯାଉଥିବା ପିଲାକୁ 'ବାହାବା' ଦେଇ କୃତିତ୍ୱରେ ଲଘୁ ମାଲୁମ ପଡୁଥିବା ସନ୍ତାନକୁ ତାଚ୍ଛଲ୍ୟ କରିବାରେ ସେମାନେ ପଶ୍ଚାତ୍‌ପଦ ହେଉନାହାନ୍ତି । ସେମାନଙ୍କ କଳ୍ପନାରେ ନିକମା ବିବେଚିତ ସନ୍ତାନଟି ଯେ ଏହାଦ୍ୱାରା କି ଧରଣର ମାନସିକ ଆଘାତ ପାଏ, ତାହା ବାପମା'ମାନେ ହୃଦୟଙ୍ଗମ କରିପାରନ୍ତିନି । ପ୍ରତ୍ୟେକ ସନ୍ତାନର ସାମର୍ଥ୍ୟ ଭିନ୍ନ । ତେଣୁ ସନ୍ତାନମାନଙ୍କ ମଧ୍ୟରେ ସାମର୍ଥ୍ୟର ତୁଳନା ଯେ ଅଯୌକ୍ତିକ, ତାହା ବାପମା'ମାନେ ଜାଣି ରଖିବା ଦରକାର ।

ସନ୍ତାନମାନଙ୍କଠାରେ ମୂଲ୍ୟବୋଧର ଅବକ୍ଷୟ ଘଟୁଛି ବୋଲି ବକ୍ତବ୍ୟ ଦେବା ଅପେକ୍ଷା ମୂଲ୍ୟବୋଧ ସମ୍ବନ୍ଧରେ ସେମାନଙ୍କୁ ଶିକ୍ଷା ଦେବା ପ୍ରତି ସେମାନେ ଯତ୍ନବାନ୍ ହେବା ସ୍ପୃହଣୀୟ । ଶୈଶବାବସ୍ଥାରୁ ନିଜର ସଂସ୍କୃତି, ପରମ୍ପରା ଆଦି ବିଷୟରେ ସେମାନଙ୍କୁ ଅବଗତ କରାଇବାର ଆବଶ୍ୟକତା ଅଛି । ବିଶେଷଜ୍ଞମାନେ ମତ ଦେଉଛନ୍ତି ଯେ ଏବେ ଅନେକ ପରିବାରରେ ମାତୃଭାଷା ସାହାଯ୍ୟରେ କଥୋପକଥନ ଚାଲୁନାହିଁ । ଯେଉଁ ପରିବାରରେ ମାତୃଭାଷା ଉପେକ୍ଷିତ, ସେହି ପରିବାରର ପିଲାମାନେ ସଂସ୍କୃତି ବା ପରମ୍ପରା ପ୍ରତି ସଚେତନ ହେବାର ପ୍ରଶ୍ନ ଉଠୁଛି କୁଆଡୁ ?

ମନସ୍ତତ୍ତ୍ୱବିତ୍‌ମାନେ ଆହୁରି ଏକ ଦିଗ ପ୍ରତି ଆମର ଦୃଷ୍ଟି ଆକର୍ଷଣ କରେଇଛନ୍ତି । ସେମାନଙ୍କର ଅନୁଧ୍ୟାନ ଅନୁଯାୟୀ ବହୁ ପରିବାରରେ ବାର୍ତ୍ତାଳାପ କ୍ରମେ ବିଲୁପ୍ତ ହେବାରେ ବସିଲାଣି । ବାପମା' ଉଭୟ କର୍ମଜୀବୀ ହୋଇଥିବାରୁ ସେମାନଙ୍କ ପାଇଁ ସମୟ ହୋଇଛି ଏକ ମହାର୍ଘତମ ସାମଗ୍ରୀ । ସେମାନଙ୍କର ପରିବାରରେ ରହଣି ସମୟତକ କ୍ଲାନ୍ତି ଅପନୋଦନ କିମ୍ବା ଗୃହର ଦୈନନ୍ଦିନ କାର୍ଯ୍ୟରେ ନିୟୋଜିତ । ସନ୍ତାନମାନଙ୍କର

ମାନସିକତାକୁ ଚାହିଁ ସେମାନଙ୍କର ମାନସିକ ଏବଂ ଆବେଗିକ ଦାବି ପୂରଣ କରିବା ନିମନ୍ତେ ବାପମା'ଙ୍କର ସମୟ ନାହିଁ କି ସାମର୍ଥ୍ୟ ମଧ ନାହିଁ । ଫଳରେ ପିତାମାତାଙ୍କ ଭଳି ଆଦର୍ଶ ଶିକ୍ଷକଙ୍କର ଶିକ୍ଷାଦାନରୁ ସନ୍ତାନସନ୍ତତି ବଞ୍ଚିତ । ଶିଶୁ ମନସ୍ତତ୍ତ୍ୱବିତ୍‌ମାନେ ସତର୍କ କରେଇଦେଇ କହୁଛନ୍ତି, "ପ୍ରତିଦିନ ପୁଅଝିଅଙ୍କ ସହ ଗପସପରେ ମାତିଯାଅ । ଗପସପ କଲାବେଳେ ନିଜେ ହୋଇଯାଅ ଶ୍ରୋତା, ବକ୍ତା ହୋଇଯାଆନ୍ତୁ ପିଲାମାନେ । ଆଗେ ଶୁଣିଯାଅ ସେମାନଙ୍କୁ । ପରେ ସେମାନଙ୍କୁ ସୁହାଇଲା ଭଳି ଏବଂ ଅତି ସତର୍କତାର ସହ ସେମାନଙ୍କୁ ପ୍ରତ୍ୟୁତ୍ତର ଦିଅ ।

ସେମାନେ ପୁଣି କହିଛନ୍ତି, "ପିଲାଙ୍କୁ ମଣିଷ କରି ଗଢ଼ିବା ପାଇଁ ଉପଯୁକ୍ତ ସନ୍ତୁଳନ ରକ୍ଷା ସବୁଠାରୁ ବଳି ଗୁରୁତ୍ୱପୂର୍ଣ୍ଣ । ଆଗଚଲା ହୁଅନି । ସେମାନଙ୍କ କାମ ସେମାନଙ୍କ ହାତରେ ଛାଡ଼ିଦେଇ ସେମାନଙ୍କ ଉପରେ ନିଘା ରଖିଥାଅ । ସେମାନଙ୍କୁ ସାହାଯ୍ୟ କର, କିନ୍ତୁ ସେମାନଙ୍କର ବଦଳିଆ ହୋଇଯାଅନି । ସେମାନେ ଘରପଢ଼ା କରି ନଥିଲେ ସେମାନଙ୍କ ପାଖରେ ବସି ପଢ଼ା ସାରିଦେବା ପାଇଁ ସେମାନଙ୍କୁ ଉତ୍ସାହିତ କର । କିନ୍ତୁ ଖାତା ଘୋଷାରି ଆଣି ନିଜେ ପଢ଼ା କରି ଦିଅନି । ସେମାନେ ସ୍କୁଲ୍‌ରେ ଅନୁପସ୍ଥିତ ଥିଲେ, ସାଙ୍ଗସାଥୀଙ୍କ ନୋଟ୍ ଖାତାରୁ ସେମାନଙ୍କୁ ପାଠ ଟିପିବାର ସୁଯୋଗ ଦିଅ । ନିଜ ହାତକୁ ସେ କାମ ନିଅନି । ନିଜ କାମ ନିଜେ କରିବା ଏବଂ ପ୍ରତି କାମରେ ଆପଣଙ୍କଠାରୁ ଇତିବାଚକ ଉତ୍ସାହ ପାଇବା ଦ୍ୱାରା ସେମାନେ ଆତ୍ମନିର୍ଭରଶୀଳ ହେବାକୁ ଶିଖିଥାଆନ୍ତି ଓ ଏହା ସେମାନଙ୍କଠାରେ ଆତ୍ମବିଶ୍ୱାସ ଜାଗ୍ରତ କରିଥାଏ ।

ପିଲାମାନଙ୍କୁ ଟଙ୍କା ପଇସା ଦେବାରେ ମଧ ସର୍ବାଧିକ ସାବଧାନତା ଅବଲମ୍ବନ ବାଞ୍ଛନୀୟ । ସେମାନଙ୍କ ଦାବିକୁ ମାନିନେଇ ସେମାନଙ୍କୁ ଟଙ୍କା ପଇସା ଦେଇଚାଲିଲେ ସେମାନେ ଅର୍ଥର ମୂଲ୍ୟ ବିଷୟରେ ସଚେତନ ହୋଇପାରନ୍ତି ନାହିଁ । ତାହାଛଡ଼ା ଅପରିଣତ ବୟସରେ ଟଙ୍କା ହାତକୁ ଆସିଗଲେ ତା'ର ଦୁରୁପଯୋଗର ଯଥେଷ୍ଟ ସମ୍ଭାବନା ଥାଏ ମଧ । ଟଙ୍କା ଦେବାର ଯଥାର୍ଥତା ସମ୍ବନ୍ଧରେ ସନ୍ତୁଷ୍ଟ ହେଲେ ହିଁ ସେମାନଙ୍କୁ ଏହା ଦେବାରେ ମନା ନାହିଁ ।"

ବାପମା'ମାନେ ଜାଣି ରଖିବା ଦରକାର ଯେ ଶ୍ରେଣୀରେ ପ୍ରଥମ ଦ୍ୱିତୀୟ ହେବା କି ପ୍ରଥମ ଦଶଜଣଙ୍କ ଭିତରେ ରହିବାରେ ବିଶେଷ କିଛି ଗୁରୁତ୍ୱ ନାହିଁ । ଜୀବନରେ ଜ୍ଞାନ କାମରେ ଆସେ, ଶ୍ରେଣୀରେ ପୋଜିସନ୍ କାମରେ ଆସେନି । ଏଇ 'ପୋଜିସନ୍' ପଛରେ

ଗୋଡ଼େଇ ଗୋଡ଼େଇ ପିଲା ନୟାନ୍ତ, ନୟାନ୍ତ ସେମାନଙ୍କର 'ବାପମା' । ଏହା ଅବଶ୍ୟ ସତ ଯେ ପାଠପଢ଼ାରେ ମନୋଯୋଗୀ ହେବା ତଥା ଶିକ୍ଷକ, ସାଥୀ ଏବଂ ଗୁରୁଜନମାନଙ୍କ ସହ ଭାବର ଆଦାନପ୍ରଦାନରେ ବ୍ରତୀ ରହିବାରେ ତଥ୍ୟ ଆହରଣ ପ୍ରୋତ୍ସାହନ ପାଇଥାଏ ଓ ସାର୍ଥକ ହୋଇଥାଏ ଶିକ୍ଷା ଗ୍ରହଣର ଉଦ୍ଦେଶ୍ୟ । ଶିକ୍ଷା ପ୍ରାପ୍ତି ଯଦି ଆମର ଧ୍ୟେୟ । ତେବେ ତା' ସହ ଶ୍ରେଣୀରେ ସ୍ଥାନ ଅଧିକାରକୁ ଯୋଡ଼ି ବସିବା କେଉଁ ଯୁକ୍ତିରେ ? ଚିନ୍ତା କରିବାକୁ ସମର୍ଥ ହେବା ହିଁ ଶିକ୍ଷାର ପ୍ରଧାନ ଲକ୍ଷ୍ୟ । ବ୍ୟବହାରରେ ସକାରାତ୍ମକ ପରିବର୍ତ୍ତନ ଆଣିବାରେ ଏହାର ସାର୍ଥକତା ।

ପରୀକ୍ଷାରେ କୃତିତ୍ୱ ଅର୍ଜନ କରିବାକୁ ନିରୁତ୍ସାହିତ କରିବା ଆମର ଉଦ୍ଦେଶ୍ୟ ନୁହେଁ । ବରଂ କୃତିତ୍ୱ ପ୍ରଦର୍ଶନ ଦ୍ୱାରା ଅଧିକରୁ ଅଧିକ ଜାଣିବା ପାଇଁ ସ୍ପୃହା ଜାଗ୍ରତ ହୋଇଥାଏ । କିନ୍ତୁ ପରୀକ୍ଷା ଯଦି ଅସ୍ୱାଭାବିକ ମାନସିକ ଚାପର ଏକ କାରଣ ହୋଇ ଉଭା ହୋଇପଡ଼େ ଓ ପରୀକ୍ଷା ଯୋଗୁ ଶିକ୍ଷାଗ୍ରହଣର ମହାନନ୍ଦ ଯଦି ନିରାନନ୍ଦରେ ପରିଣତ ହୋଇଯାଏ, କଅଣ ତେବେ ସେ ଶିକ୍ଷାର ମୂଲ୍ୟ ? ଜୀବନଟା କେବଳ କ'ଣ ପରୀକ୍ଷା-ସର୍ବସ୍ୱ ଯେ ପରୀକ୍ଷାରେ କୃତିତ୍ୱ ହେବ ଜୀବନର ସଫଳତା ବା ବିଫଳତାର ମାପକାଠି ?

ଏବେ ୯-୧୨ ବର୍ଷ ବୟସର ପିଲାମାନଙ୍କଠାରେ ମୁଣ୍ଡ ବଥେଇବା ଲକ୍ଷଣ ପ୍ରକାଶ ପାଉଛି । ପିଲାଙ୍କ ମୁଣ୍ଡବ୍ୟଥା ଯୋଗୁ ମୁଣ୍ଡବ୍ୟଥା ବଢ଼ିଯାଉଛି ବାପମା'ଙ୍କର । ଆଖି ପରୀକ୍ଷା, ନାକ ପରୀକ୍ଷା, ଏକ୍ସରେ, ସ୍କାନିଙ୍ଗ୍ ଆଦି ପରୀକ୍ଷାରୁ ପିଲାଙ୍କଠାରେ କୌଣସି ଦୋଷ ଥିବାର ଜଣାପଡୁନି । ଏହି ମୁଣ୍ଡ ବଥେଇବାକୁ ଜଣେ ପ୍ରଖ୍ୟାତ ସ୍ୱାସ୍ଥ୍ୟ ବିଶେଷଜ୍ଞ 'ଦଶମ ଶ୍ରେଣୀ ଲକ୍ଷଣ' ବୋଲି ଅଭିହିତ କରିଛନ୍ତି । ଦଶମ ଶ୍ରେଣୀ ପରୀକ୍ଷା ପାଖେଇ ଆସିଲେ ଛାତ୍ରଛାତ୍ରୀ ଏବଂ ସେମାନଙ୍କର ବାପମା'ଙ୍କଠାରେ ଉତ୍କଣ୍ଠା ବଢ଼ିଯାଏ । ପରୀକ୍ଷାରେ କିପରି ହେବ, ସେ ବିଷୟରେ ସେମାନେ ଚିନ୍ତିତ ହୋଇପଡ଼ନ୍ତି । ବାପମା'ଙ୍କ ପ୍ରତ୍ୟାଶା ସନ୍ତାନଟି ଚରିତାର୍ଥ କରିପାରିବ କି ନା, ସେହି ଭାବନା ହିଁ ତାକୁ କବଳିତ କରିପକାଏ । ତେଣୁ ପରୀକ୍ଷା ହୋଇପଡ଼େ ଏକ ବୋଝ । ତା'ର କୋମଳ ମନ ଏହି ଚାପକୁ ସହ୍ୟ କରି ନପାରିବାରୁ ତା'ଠାରେ ପ୍ରକାଶ ପାଏ ମୁଣ୍ଡବ୍ୟଥାର ଲକ୍ଷଣ ।

କେହି କେହି ଛାତ୍ର ବାହାନା ଦେଖେଇ 'ମୁଣ୍ଡ ବଥଉଛି' ବୋଲି ବାରମ୍ବାର କହିଥାନ୍ତି । ଏହା ସେମାନଙ୍କ ପାଇଁ ଏକ ସୁରକ୍ଷା ବ୍ୟବସ୍ଥା । କାରଣ ପରୀକ୍ଷାରେ ଖରାପ ହୋଇଗଲେ 'ମୁଣ୍ଡ ବଥାଇବା ଯୋଗୁ ପଢ଼ିପାରିଲିନି' ବୋଲି ସଫେଇ ଦେବା ସହଜ

ହୋଇଯାଏ । ଏଭଳି ସଫେଇକୁ ସତ ବୋଲି ଗ୍ରହଣ କରିନେବାରେ ପିତାମାତା କିମ୍ୱା ଅନ୍ୟାନ୍ୟ ଆତ୍ମୀୟ ଦ୍ୱିଧାବୋଧ କରନ୍ତିନି । ମୁଣ୍ଡ ବଥାଇବା ସମ୍ପର୍କରେ ବାରମ୍ୱାର ଅଭିଯୋଗ ବାଢ଼ିବା, ସେଥିପାଇଁ ବିଭିନ୍ନ ପରୀକ୍ଷା ନିରୀକ୍ଷା କରି ଡାକ୍ତରଙ୍କ ପରାମର୍ଶ ଲୋଡ଼ିବା ଭଳି ଭିତ୍ତିଭୂମି ଆଗରୁ ତ ପ୍ରସ୍ତୁତ ହୋଇସାରିଥାଏ ।

ତେଣୁ ସନ୍ତାନସନ୍ତତିଙ୍କର ବିଭିନ୍ନ ସମସ୍ୟାକୁ ମନ ଦେଇ ଶୁଣିବା, ସନ୍ତାନର ସମସ୍ୟାକୁ ବିନା ଦ୍ୱିଧାରେ ପ୍ରକାଶ କରିବା ନିମନ୍ତେ ତାକୁ ଉତ୍ସାହିତ କରିବା, ତା' ମନରେ ଥିବା ଆଶଙ୍କା ଦୂର କରିବା ନିମନ୍ତେ ଆଗ୍ରହ ସହକାରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଏବଂ ସନ୍ତାନଠାରେ ଆତ୍ମବିଶ୍ୱାସ ଜାଗ୍ରତ କରାଇବା ପ୍ରତି ସମୁଚିତ ଧ୍ୟାନ ଦେଲେ ଏହାର ପ୍ରଭାବ ସୁଦୂରପ୍ରସାରୀ ।

ଜୀବନରେ ସଫଳତାର ସ୍ୱପ୍ନ ଦେଖିବା ଆଦୌ ଅବାସ୍ତବ ନୁହେଁ । ସଫଳ ହେବାର ପ୍ରେରଣା ମନରେ ଜାଗ୍ରତ ନହେଲେ, ଇଚ୍ଛାଶକ୍ତି ତୀବ୍ର ନହେଲେ, ଧୈର୍ଯ୍ୟ ଏବଂ ଅଧ୍ୟବସାୟ ଅବଲମ୍ୱନ ନକଲେ ବିଶେଷ ସଫଳତା ଅର୍ଜନ ସମ୍ଭବ ନୁହେଁ । ପ୍ରୟାସ ବିନା କେବଳ ମେଧା ସଫଳତା ଆଣିପାରିବନି । ବରଂ ସାଧାରଣ ମେଧା ଆଉ ମଧ୍ୟ ନିରବଚ୍ଛିନ୍ନ ଉଦ୍ୟମ ସଫଳତାର ପଥ ସୁଗମ କରିଦିଏ ।



# କଥାଟିଏ କହୁଁ କୋଥଳି

"ହଁ ତା'ପରେ କ'ଣ ହେଲା ପ୍ରଦୀପ ମାମା ?"

"ବଡ଼ ଅାଁ କରି ତ ମୋ ଆଡ଼କୁ ମାଡ଼ି ଆସିଲା ବାଘଟା ଆଉ । ମୁଁ ସଙ୍ଗେ ସଙ୍ଗେ କଣ କଲି ନା, ତା ପାଟି ଭିତରେ ମୋ ଡାହାଣ ହାତଟାକୁ ଜୋରରେ ଭର୍ତ୍ତି କରିଦେଲି । ବାଘର ଜିଭଟାକୁ କଷି କରି ଜାବୁଡ଼ି ଧରିଲି । ସେ ବିଚରା ଆଉ କରିବ କଅଣ ? ଗାଁ ଗାଁ ହୋଇ ଛଟିପିଟି ହେଉଥାଏ । କେମିତି ପଳେଇବ, ସେଇକଥା ଭାବୁଥାଏ । ମୁଁ ତା' କାନକୁ ମୋ' ବାଆଁହାତରେ ମୋଡ଼ି ଦେଇ କହିଲି, ବଦ୍‌ମାସ୍, ଆଉ ଦିନେ ଦୁଷ୍ଟାମି କରିବୁନି ? ଡରରେ ଛାନିଆ ହୋଇଗଲା ସେ । ତା' ଆଖିରୁ ଠପ୍ ଠପ୍ ହୋଇ ଲୁହ ଗଳି ପଡ଼ିଲା । ମୁଁ ପୁଣି କହିଲି, ଯା ପଳା, ଆଜି ତୋତେ ଛାଡ଼ିଦେଲି ସିନା କିନ୍ତୁ ଆଉ ଦିନେ ବଦ୍‌ମାସି କଲେ ତୋ' ଜୀବନ ନେଇଯିବି । କ'ଣ ବୁଝିଲ ତ ? ମୁଁ ଯେମିତି ହାତ କୋହଳ କରିଦେଇଛି, ସେ ଚିରାମାରି ଜଙ୍ଗଲକୁ ଛୁ ମାରିଲା ।"

× × × × × ×

"ହାତୀ ଗପଟା କହୁନ ।"

"ଓଃ, ହାତୀ କଥା ? ମୁଁ ତ ଯାଇଥାଏ ଆଫ୍ରିକା । ସଞ୍ଜବେଳେ ବୁଲିଯାଇଥାଏ ବଣକୁ । ହଠାତ୍ ମୋ ଆଗରେ ବାଟ ଓଗାଳି ଠିଆ ହୋଇଗଲା ଦନ୍ତାହାତୀଟାଏ । ଶୁଣ୍ଢକୁ ଉପରକୁ ଟେକି ଫଁ ଫଁ ନିଶ୍ୱାସ ନେଉଥାଏ । ମୁଁ ହାତୀକୁ କହିଲି, ଏ ହାତୀ ବୁଢ଼ା, ବାଟ ଛାଡ଼ିବୁ ନା ଦେଖିବୁ ? ସେ ମୁଣ୍ଡ ହଲାଇ ମନା କଲା । ମୋତେ ତା' ଶୁଣ୍ଢରେ ଟେକି ନେଇ କଚାଡ଼ି ଦେବ ବୋଲି ଝପଟି ଆସିଲା ମୋ ପାଖକୁ । ମୁଁ କୁଦାଟାଏ ମାରି ଧରିପକାଇଲି ତା ଶୁଣ୍ଢକୁ । ଦଉଡ଼ି ମୋଡ଼ିଲା ଭଳି ଶୁଣ୍ଢଟାକୁ ମୋଡ଼ି ଚାଲିଲି । ବାସ୍, ସେତିକିରେ ସେ ସାବାଡ଼ । ପ୍ରାଣ ବିକଳରେ ମୋ ଗୋଡ଼ତଳେ ଆଣ୍ଠୁମାଡ଼ି ବସିପଡ଼ିଲା । ମୁଁ ତ ତା' ବିକଳ ସହି ପାରିଲିନି । ତେଣୁ ତାକୁ ଛାଡ଼ିଦେଲି । ରଡ଼ିଛାଡ଼ି ସେ ପଳେଇଲା ବଣ ଭିତରକୁ ।"

× × ×

"ପ୍ରଦୀପ ମାମା ମ, ଆଜି କ'ଣ କିଛି ଗପ କହିବନି ?"

"କହିଥାନ୍ତି ଯେ, ଗପ ତ ଟ୍ରେନ୍‌ରେ ଆସୁଥିଲା । ରେଳଲାଇନ୍ ଭାଙ୍ଗିଯାଇଥିବାରୁ ଅଧାବାଟରେ ଟ୍ରେନ୍ ଅଟକିଯାଇଛି । ତେଣୁ ଟ୍ରେନ୍ ଆସି ପହଞ୍ଚିଲେ ସିନା ଗପ ଟ୍ରେନ୍‌ରୁ ଓହ୍ଲେଇ ମୋ ପାଖକୁ ଆସିଥାନ୍ତା ? ଏବେ ଆଉ ଗପ କହିବି କେମିତି, କହୁନ ?"

ପ୍ରଦୀପ ମୋର ସହପାଠୀ । ମୋ' ପୁଅଝିଅମାନେ ତାକୁ ପ୍ରଦୀପମାମା ବୋଲି ଡାକନ୍ତି । ଏହିଭଳି ମନରୁ ଫାନ୍ଦି ଗପ କହିବାରେ ସେ ଧୁରନ୍ଧର । ପିଲାଏ ମୋ'ର ବଡ଼ ହୋଇ ବାହାସାହା ହୋଇଗଲେଣି । କିନ୍ତୁ ପ୍ରଦୀପମାମାଙ୍କୁ ଦେଖିଲେ, ସେମାନଙ୍କର ଅତୀତଟା ପୁଣି ଜିଇଁଉଠେ । ମନେ ପଡ଼ିଯାଏ ସେମାନଙ୍କ ପିଲାବେଳର କଥା । ମନେପଡ଼ିଯାଏ ପ୍ରଦୀପମାମାଙ୍କ ମନଗଢ଼ା ସେହି ବାଘ, ହାତୀ, ମୂଷାମାନଙ୍କର କାହାଣୀ । ପ୍ରଦୀପ ଭଳି ଆଉ ଜଣେ କଥକ ମୁଁ ଏଯାଏ ଦେଖିନି ।

ଆଗେ ଘର ଥିଲା ବିଦ୍ୟାଳୟ, ବିଦ୍ୟାଳୟ ଥିଲା ଘର । ଘର ଆଉ ବିଦ୍ୟାଳୟ, ବାପାମା' ଏବଂ ଶିକ୍ଷକ – ଏଇମାନେ ହିଁ ଗଢୁଥିଲେ ପିଲାଙ୍କ ଭବିଷ୍ୟତ । ଏଇମାନଙ୍କ ନିକଟରୁ ପିଲାଏ ଭଲକଥା ଶିଖୁଥିଲେ । ପୁରୁଣାକାଳିଆ ଢଙ୍ଗରେ ମଉଜ କରୁଥିଲେ ସେମାନେ । ବାସ୍ତବତାର ଗନ୍ଧ ନଥିବା କେବଳ କଳ୍ପନା ପ୍ରସୂତ ଘଟଣାଗୁଡ଼ିକ ବା ଗଳ୍ପମାନ ସେମାନଙ୍କୁ ଆମୋଦିତ କରୁଥିଲା । ଏବେ ସେମାନେ ଟେଲିଭିଜନ ଦେଖିବାରେ ବାଇଆ । ବାପମା' ଏବଂ ଶିକ୍ଷକମାନଙ୍କୁ ଠେଲି ଟେଲିଭିଜନ ସାଜିଛି ସେମାନଙ୍କର ଆଦର୍ଶ । ଏହା ବୋଲି ବାପମା' ଏବଂ ଶିକ୍ଷକମାନଙ୍କର ଭୂମିକାକୁ ତ ହେୟଜ୍ଞାନ କରିହେବନାହିଁ । 'ମୂଲ୍ୟବୋଧ କମି କମି ଯାଉଛି, ପିଲାଏ ମାନୁନାହାନ୍ତି, ଯେତେ ଯାହା କହିଲେ କିଛି ଲାଭ ହେଉନି' – ଏଇଆ କହି ତ ସେମାନେ ନିଜ ମୁଣ୍ଡରୁ ଦାୟିତ୍ୱ ଖସେଇ ଦେଲେ ଚଳିବନି । କାହା ଉପରେ ଏ ଅଭିମାନ ? କ'ଣ ନିଜ ପିଲାଙ୍କ ଉପରେ ? ଛୋଟ ପିଲା ନୂଆ ନୂଆ ଶବ୍ଦ ଶିଖିବାରେ ଭାରି ଖୁସୀ ହୁଅନ୍ତି । ନିଜ ଘରେ ଅଶ୍ଳୀଳ ଶବ୍ଦ ବ୍ୟବହୃତ ହେଉଥିବାର ଶୁଣିଲେ, ସେଭଳି ଶବ୍ଦକୁ ମନେ ରଖିବା ଓ ନିଜେ ବ୍ୟବହାର କରିବାରେ ଆଗ୍ରହୀ ହୋଇଉଠନ୍ତି । ବାପମା' ରାଗିଯାଇ ଯାହା ପାଟିକୁ ଆସିଲା ବକି ଦେଇଗଲେ, ପୁଅଝିଅମାନେ ସେମାନଙ୍କୁ ଅବିକଳ ଅନୁକରଣ କରୁଥିବାର ଦେଖାଯାଏ । ତେଣୁ ସନ୍ତାନସନ୍ତତି ଶାଳୀନ ବ୍ୟବହାର ଦେଖାନ୍ତୁ ବୋଲି ଚାହିଁଲେ ପିତାମାତା ଏବଂ ପରିବାରର ଅନ୍ୟମାନେ ଭଦ୍ର ତଥା ବିନମ୍ର ବ୍ୟବହାର ଦେଖାଇବାକୁ ହିଁ ପଡ଼ିବ । କର୍ତ୍ତୃତ୍ୱ ଜାହିର କରିବାରେ ଆସ୍ଥା ସ୍ଥାପନ କରୁଥିବା ପିତାମାତା ସନ୍ତାନମାନଙ୍କ ଦ୍ୱାରା ପ୍ରାୟତଃ ପ୍ରତ୍ୟାଖ୍ୟାତ

ହୋଇଥାନ୍ତି । ଏହା କେତେକଙ୍କୁ ଅସ୍ୱସ୍ତିକର ବା ଅରୁଚିକର ଲାଗିଲେ ବି ଏଥିରେ ଅସତ୍ୟ କିଛି ନାହିଁ ।

ପ୍ରଖ୍ୟାତ ଶିଶୁ ମନସ୍ତତ୍ତ୍ୱବିତ୍ ଡକ୍ଟର କେଭିନ୍‌ଲେମ୍ୟାନ୍ କହନ୍ତି, "ପରସ୍ପର ପ୍ରତି ସମ୍ମାନ ପ୍ରଦର୍ଶନ କରିବା ତଥା ବିଚାରବନ୍ତ ହେବା ହେଉଛି ଈଶ୍ୱରଙ୍କର ଯୋଜନା ।" ସନ୍ତାନସନ୍ତତି ପିତାମାତାଙ୍କୁ ସମ୍ମାନ ପ୍ରଦର୍ଶନ କରିବା ଯେପରି କାମ୍ୟ, ପ୍ରତିବଦଳରେ ପିତାମାତାମାନେ ମଧ୍ୟ ସନ୍ତାନସନ୍ତତିଙ୍କ ପ୍ରତି ସ୍ନେହଶୀଳ ହେବା ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରତି ନ୍ୟାଯ୍ୟ ସମ୍ମାନ ପ୍ରଦର୍ଶନ କରିବାକୁ ଅଙ୍ଗୀକାରବଦ୍ଧ ।

ମା' କ୍ଷୀର ଖାଉଥିବା ଶିଶୁ ମା' କ୍ଷୀର ଛାଡ଼ି କ୍ରମେ ବୋତଲରେ ଖାଇବାକୁ ଶିଖେ ଓ ପରେ ପରେ ଗିନା ଚାମଚରେ ଖାଇବାର ଅଭ୍ୟାସ କରିଥାଏ । କେଉଁ ପିଲା ଚଞ୍ଚଳ ମା' କ୍ଷୀର ଛାଡ଼େ ତ ଆଉ କିଏ ଛାଡ଼ିଥାଏ ଡେରିରେ । ଠିକ୍ ସେହିପରି ପିଲାବେଳର ଆସକ୍ତିକୁ ପରିହାର କରି ନୂତନତାକୁ ଆଦରିନେବା ପାଇଁ ସମୟ ଲାଗେ । ଏ କ୍ଷେତ୍ରରେ ଉଚିତ ମାର୍ଗଦର୍ଶନ କରାଇବାରେ ପିତାମାତାଙ୍କର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ବାଲ୍ୟାବସ୍ଥାରେ ପିଲାଙ୍କୁ ବହି ସହ ପରିଚିତ କରାଇଲେ ପିଲାଠାରେ ପଠନସ୍ପୃହା ଜାଗ୍ରତ ହୋଇଥାଏ । ତାକୁ ବ୍ୟାଟ୍-ବଲ୍ ଉପହାର ଦେଲେ ସେ ବ୍ୟାୟାମ ଓ କ୍ରୀଡ଼ା କସରତ ପ୍ରତି ରୁଚି ଦେଖାଏ । କିନ୍ତୁ ତା'ର ମନ ବଦଳାଇବା ନିମନ୍ତେ ତାକୁ ଟେଲିଭିଜନ୍ ଦେଖିବାକୁ ଉତ୍ସାହିତ କଲେ ଏହାର ପରିଣତ ଆଦୌ ଶୁଭଙ୍କର ହୁଏନାହିଁ ।

ପିଲାମାନଙ୍କ ପାଇଁ ହିତକର ହେଉଥିବା ମନୋରଞ୍ଜନ କାର୍ଯ୍ୟକ୍ରମରେ ନିଜେ ପିତାମାତା ସେମାନଙ୍କ ସହ ସମ୍ପୂର୍ଣ୍ଣ ଜଡ଼ିତ ହୋଇପଡ଼ିଲେ ଏହାର ସୁଫଳ ସୁଦୂରପ୍ରସାରୀ । "ମୋତେ ବିରକ୍ତ କରାନା ତ । ଯା, ବାହାରେ ସାଙ୍ଗମାନଙ୍କ ମେଳରେ ଖେଳିବୁ ଗଲୁ" – ଏଭଳି ବାକ୍ୟ ଆମ୍ଭମାନଙ୍କୁ ବେଶ୍ ମାମୁଲି ଜଣାପଡୁଛି । ଆମେ ସମସ୍ତେ ତ ଏଭଳି କଥା କହିବାରେ ଅଭ୍ୟସ୍ତ । କିନ୍ତୁ ଏହା ଶିଶୁକୁ ଭାରି ବାଧେ । ତା' କବଳରୁ ବା ଦୌରାତ୍ମ୍ୟରୁ ସାମୟିକ ମୁକ୍ତି ପାଇବା ପାଇଁ ତାକୁ ଯଦି ବାହାରକୁ ଖେଳିବା ପାଇଁ ତଡ଼ିଦିଆଯାଏ, ଏହା ଶିଶୁର ମର୍ଯ୍ୟାଦା ପ୍ରତି ଏକ ଗୁରୁତର ଅବମାନନା । କଥାମାନି ସେ ହୁଏତ ନିରବରେ ବାହାରକୁ ଚାଲିଯାଇପାରେ, କିନ୍ତ ତା' ମନରେ ଏଇ ଭାବନା ବସା ବାନ୍ଧେ – "ଏକୁଟିଆ ରହିବେ ବୋଲି ତେବେ ମାଆ ମୋତେ ଖେଳିବା ପାଇଁ ବାହାରକୁ ପଠେଇ ଦେବାକୁ ଚାହିଁଲେ ?" ବାପମା'ଙ୍କର ଏହିଭଳି ମନ୍ତବ୍ୟରୁ ପିଲାମାନେ କ'ଣ ନା କ'ଣ ଅର୍ଥ କରିବସନ୍ତି ଓ ନିଜଠାରେ ଭାବ ପ୍ରକାଶର ଅସାମର୍ଥ୍ୟ ହେତୁ ତାହା ଠିକ୍ ବୋଲି ଧାରଣା

କରିନିଅନ୍ତି । ତେଣୁ ପିଲାମାନଙ୍କ ସହ କଥାବାର୍ତ୍ତା କଲାବେଳେ ବାପମା'ମାନେ ସର୍ବାଧିକ ସତର୍କତା ଅବଲମ୍ବନ କରିବା ବାଞ୍ଛନୀୟ ।

ମନେ ପକାନ୍ତୁ ତ, ଆପଣ ଯେତେବେଳେ ୫-୭ ବର୍ଷର ହୋଇଥିଲେ ସେତିକି ବେଳର କଥା । ଆପଣ ସେତେବେଳେ ଲୁଚକାଳି ଖେଳୁ ନଥିଲେ ? ଲୁଚକାଳି ଖେଳଟା ଭାରି ସରଳିଆ ଖେଳ, ନୁହେଁ ? କଅଣ ଅବା ବୁଦ୍ଧି ଖର୍ଚ୍ଚ ରହିଛି ସେଥିରେ ? ତଥାପି ଆପଣଙ୍କ ବାପା ଆଉ ମାଆ ବି ଆପଣଙ୍କ ସାଥିରେ ପ୍ରତିଯୋଗିତା କରୁଥିଲେ । ସେମାନେ ହୋଇଯାଉଥିଲେ ଆପଣଙ୍କର ଖେଳସାଥୀ । କେତେବେଳେ ସେ ଲୁଚୁଥିଲେ ଆପଣ ଖୋଜୁଥିଲେ ତ ଅନ୍ୟ କେତେବେଳେ ଆପଣ ଲୁଚୁଥିଲେ, ଖୋଜୁଥିଲେ ସେ । ଆପଣ ଲୁଚୁଥିଲେ କବାଟ କଣରେ, ଟ୍ରଙ୍କ୍-ସୁଟ୍‌କେସ୍ ପଛପଟେ । ଏପରିକି ଖୋଜିବା ଲୋକର ମୁହଁକୁ ଚାହିଁ, ତାଙ୍କ ଆଖି ସାଙ୍ଗରେ ଆଖି ମିଳେଇ ବି ଲୁଚୁଥିଲେ ଆପଣ । ବାପା ମାଆମାନେ ଆପଣଙ୍କୁ ଦେଖି ନଦେଖିଲା ଭଳି ଏପଟ ସେପଟ, ଏ' ଘର ସେ'ଘର ହୋଇ ଖୋଜିବାରେ ଲାଗିଯାଉଥିଲେ । ଆପଣଙ୍କୁ ନ ପାଇବାର ବାହାନା କରୁଥିଲେ । ଏପରିକି ବେଳେବେଳେ ଏହି ଲୁଚାଖୋଜା ଖେଳରେ ଆପଣଙ୍କ ସାଙ୍ଗରେ ତାଙ୍କର ଧକ୍କା ହୋଇଯାଉଥିଲା । ତା'ପରେ ସମସ୍ତେ ହସିହସି ଗଡ଼ି ଯାଉଥିଲେ । କିଏ ଜିତିଲା, କିଏ ହାରିଲା, ତା'ର ହିସାବ କରିବା ସେ ଖେଳର ଲକ୍ଷ୍ୟ ନଥିଲା । କିନ୍ତୁ 'ବାଜେ ଖେଳ' ମୂର୍ଖଙ୍କ ଖେଳ ବୋଲି ଏବେ ବିବେଚିତ ହେଉଥିବା ସେହି ଖେଳକୁ କ'ଣ ଆପଣ ଏବେ ବି ଝୁରି ହେଉନାହାନ୍ତି ? ଖେଳର ଉଦ୍ଦେଶ୍ୟ ଥିଲା ହସିବା, ହସେଇବା । ବାସ୍, ଲୁଚକାଳି ତା'ର ଏହି ଉଦ୍ଦେଶ୍ୟକୁ ସମ୍ପୂର୍ଣ୍ଣ ଚରିତାର୍ଥ କରୁଥିଲା ।

ଆପଣଙ୍କର ରଜଦୋଳି କଥା ମନେ ପଡ଼େନି ? ଆମ୍ବ ଗଛରେ ଚଢ଼ି ବାପା ବାନ୍ଧିଦେବେ ଦୋଳି । ଆପଣଙ୍କୁ ଦୋଳିରେ ବସେଇ, ଆପଣଙ୍କୁ ହୁସିଆରିରେ ଧରି ସେ ଦୋଳି ଝୁଲେଇ ନଥିଲେ ? ଦୋଳି ଖେଳଟା ଗୌଣ, ଆପଣଙ୍କୁ ଖୁସି କରେଇବା ପାଇଁ ବାପାଙ୍କର ପ୍ରୟାସ ଥିଲା ମୁଖ୍ୟ । ବାପାମାଆ ଆଉ ଆପଣଙ୍କର ସେଇ ସ୍ୱତନ୍ତ୍ର ବନ୍ଧନ ଯୋଗୁଁ ତ ଆଜି ଆପଣଙ୍କୁ ଉଲ୍ଲସିତ କରୁଛି ଲୁଚକାଳି ଆଉ ଦୋଳିଖେଳ ।

ହଁ, ଆହୁରି ମନେ ପକାନ୍ତୁ । ବର୍ଷାଦିନର ସେହି ଖରାବେଳ । ମେଘ ପକାଉଥିବ ଟୁପୁରୁ ଟୁପୁରୁ । ମାରୁଥିବ ଘଡ଼ଘଡ଼ି । ଆଈଙ୍କ ପାଖରେ ବସି, ଆପଣ ଆଉ ଆଈ ମଜି ଯାଇଥିବେ ଲୁଡୁଖେଳରେ । 'ଗୋଟି' ମଲା କି 'ପାଚିଲା କି ତାକୁ

'ସାପଖାଇ' ସେ ପୁଣି ଲେଉଟି ଆସିଲା ସାପର ଲାଙ୍ଗୁଡ଼ ପାଖକୁ, ଖେଳର ଏହି ଧାରା ଆପଣଙ୍କଠାରେ ସୃଷ୍ଟି କରୁଥିଲା ହର୍ଷ ଆଉ ବିଷାଦ । ଜିତିବାର ହର୍ଷ ଆଉ ହାରିବାର ଅବସାଦ । କିନ୍ତୁ ଏବେ ଆମ ପିଲାଙ୍କୁ ଲୁଡୁଖେଳ ବୋକାଙ୍କ ଖେଳ ବୋଲି ମାଲୁମ ପଡୁଛି । ଟେଲିଭିଜନ, ସିନେମା ଆଉ ସୁପରମ୍ୟାନ୍ ପାଖରେ ବନ୍ଦୀ ପଡ଼ିଛି ସେମାନଙ୍କର ମନ ।

ପୁଣି ଆସୁଛି ଗପ ବା କାହାଣୀର ଦୁନିଆକୁ । ଏବେ ଆଇମାନେ ଆଉ ଗପ କହୁନାହାନ୍ତି ନାତିନାତୁଣୀମାନଙ୍କୁ । ମାଆ ବାପାମାନେ ନିଜ ନିଜ ଚାକିରିରେ ହାଲିଆ । ହୁଏତ ଅଜା ଆଇ, ବାପା ମାଆ ବି ଗପ ଜାଣିନଥିବେ କିମ୍ବା ଗପର ବିଷୟବସ୍ତୁ ଜାଣିଥିଲେ ବି ଗପ କହିବାର ଶୈଳୀ ମାଲୁମ୍ ନଥିବ ସେମାନଙ୍କୁ । ତେଣୁ ସ୍କୁଲ୍‌ର ଗପ ପିରିଅଡ୍‌ରେ ଶିକ୍ଷକମାନେ ସେ କାମ ତୁଲେଇ ଦେଉଛନ୍ତି ଔପଚାରିକ ଭାବରେ । ଫଳରେ ପୁରାଣ କାହାଣୀ କି କାଳ୍ପନିକ ଗପ ହରେଇ ବସିଲାଣି ତା'ର ମଧୁରତା । ସେସବୁ ଗଳ୍ପ କଳ୍ପନା ଉପରେ ଆଧାରିତ ହୋଇଥିଲେ ହେଁ, ପ୍ରାୟ ପ୍ରତ୍ୟେକ ପିଲା ସେଭଳି ଗପ ଶୁଣିବାରେ ଆନନ୍ଦ ପାଇଥାନ୍ତି । ସଙ୍କେତଧର୍ମୀ ଉକ୍ତ ଗପଗୁଡ଼ିକ ସ୍ପଷ୍ଟ ଭାବରେ ବ୍ୟକ୍ତ ହୋଇନଥିଲେ ମଧ ତା'ର ସୂକ୍ଷ୍ମଭାବ ହିଁ ଶିଶୁମନଲାଖି ହୋଇଥାଏ । ଏବେ ମନସ୍ତତ୍ତ୍ୱବିତ୍‌ମାନେ କହିଲେଣି ଯେ, ପିଲାମାନଙ୍କୁ ଉପଦେଶାତ୍ମକ ଏବଂ ନୀତିମୂଳକ ଗଳ୍ପ କହିବା ଦ୍ୱାରା ସେମାନଙ୍କ ମନ ଉପରେ ବେଶ୍ ଅନୁକୂଳ ପ୍ରଭାବ ପଡ଼ିଥାଏ । ତେଣୁ ପରବର୍ତ୍ତୀ କାଳରେ ବୟସ୍କମାନଙ୍କ ଦୁନିଆର ବାସ୍ତବତା ସହ ସେମାନେ ସହଜରେ ମୁକାବିଲା କରିପାରନ୍ତି । ମନସ୍ତତ୍ତ୍ୱବିତ୍‌ମାନେ ଏହାକୁ କହୁଛନ୍ତି 'କଳ୍ପନାକାରିଗରି' (Imagineering) ।

ସୃଜନଶକ୍ତି ବା ନୂଆ କିଛି ସୃଷ୍ଟି କରିବାର କ୍ଷମତା ଆଦୌ ରହସ୍ୟମୟ ନୁହେଁ । ଏଥିରେ କିଛି କୁହୁକ ନାହିଁ କି ଏହା ପିଲାମାନଙ୍କ ଉପଲବ୍‌ଧିର ଊର୍ଦ୍ଧ୍ୱତର ବ୍ୟାପାର ନୁହେଁ । ଗପ ପଢ଼ିବା, ଗପ ଶୁଣିବା, ଗପଟିଏ ଲେଖିବାକୁ ଚେଷ୍ଟା କରିବା, ଅନ୍ୟମାନଙ୍କୁ ଗପ ଶୁଣେଇବା ଇତ୍ୟାଦି ଶିଶୁମାନଙ୍କଠାରେ ସୃଜନଶୀଳତା ଉଦ୍ରେକ କରାଇବାର ଏକ ବଳିଷ୍ଠ ବ୍ୟାୟାମ । କହିବାକୁ ଗଲେ ଗଳ୍ପ ହେଉଛି ସୃଜନଶୀଳତାର ପୋଷାକ । ବିଶିଷ୍ଟ ଦାର୍ଶନିକ ଏବଂ ନୋବେଲ୍ ପୁରସ୍କାର ବିଜେତା ଜର୍ଜ ବର୍ଣ୍ଣାଡ୍ ଶ' ଥରେ କହିଥିଲେ "କଳ୍ପନା କରିବାରେ ପ୍ରୟାସୀ ହେବାହିଁ ସୃଜନଶୀଳତାର ସର୍ବପ୍ରଥମ ପଦକ୍ଷେପ ।"

ସନ୍ତାନସନ୍ତତିମାନଙ୍କଠାରେ ଅନୁକୂଳ ମାନସିକ ସ୍ୱାସ୍ଥ୍ୟର ବିକାଶ ପାଇଁ କ'ଣ କରାଯାଇପାରେ ବୋଲି ପଚରାଗଲେ ଏହାର ଏକମାତ୍ର ଉତ୍ତର ହେଉଛି ପିତାମାତା ଏବଂ ସନ୍ତାନମାନଙ୍କ ମଧ୍ୟରେ ଉତ୍ତମ ବୁଝାମଣା ଏବଂ ଦୃଢ଼ ସମ୍ପର୍କସ୍ଥାପନ । ବାପମା'ମାନେ ପିଲାମାନଙ୍କର ଯେତେ ଯେତେ ନିକଟତର ହେଉଥିବେ, ଟେଲିଭିଜନ ଏବଂ କୁସଙ୍ଗୀମାନଙ୍କର ପ୍ରଭାବ ସେତେ ସେତେ ଦୂରେଇ ଯାଉଥିବ । ଏହା ବର୍ଷେ ଦି ବର୍ଷର ଶିଶୁ ସନ୍ତାନ ପାଇଁ ଯେତିକି ପ୍ରଯୁଜ୍ୟ, ସେତିକି ପ୍ରଯୁଜ୍ୟ କିଶୋରକିଶୋରୀ ବା ତରୁଣତରୁଣୀମାନଙ୍କ ପାଇଁ ।

ଯେଉଁ ବାପମା' ସନ୍ତାନମାନଙ୍କର ଅନୁଭବ ଏବଂ ସେମାନଙ୍କର ଆତ୍ମମର୍ଯ୍ୟାଦାକୁ ଗୁରୁତ୍ୱ ଦେବାରେ ଯେତିକି ସଚେତନ, ଠିକ୍ ସମାନୁପାତିକ ଭାବରେ ସେମାନେ ଉପଭୋଗ କରିଚାଲିବେ ସେମାନଙ୍କ ପ୍ରତି ସନ୍ତାନମାନଙ୍କର ସ୍ନେହ, ଶ୍ରଦ୍ଧା ଏବଂ ସମ୍ମାନବୋଧ । ସେମାନଙ୍କୁ କାହାଣୀ ଶୁଣେଇବା, ପାଠ ପଢ଼ିବାରେ ସେମାନଙ୍କୁ ସାହାଯ୍ୟ କରିବା, ସେମାନଙ୍କ ସହ ବିଭିନ୍ନ ସମସ୍ୟା ବିଷୟରେ ଆଲୋଚନା କରିବା, ସେମାନଙ୍କ ସାଙ୍ଗରେ ଖେଳରେ ମାତିବା ଆଦି ପିତାମାତା ଏବଂ ସନ୍ତାନ ଭିତରେ ରହିଥିବା ସମ୍ପର୍କର ସେତୁକୁ ଅଧିକ ଦୃଢ଼ୀଭୂତ କରିଥାଏ । ସମସ୍ତଙ୍କ ପିଲାଏ ତ ସେଇଆ ହିଁ ଚାହିଁଥାନ୍ତି । ହେଲେ, ଆପଣ ସେମାନଙ୍କ ପାଇଁ ସେତକ କାମ କଲେ ସିନା ?



# ପିତାମାତା ପିଲାମାନଙ୍କର ପ୍ରଥମ ଶିକ୍ଷକ

"ସାରା ପୃଥିବୀଟାରେ ରହିଛି ମାତ୍ର ଗୋଟିଏ ଭଲପିଲା ଏବଂ ସେ ରହିଛି ପ୍ରତ୍ୟେକ ମା' ପାଖରେ ।"

–ଇଂରେଜ ଲୋକୋକ୍ତି

ପ୍ର : ସବୁ ବାପମା' ଚାହାନ୍ତି ଯେ ସେମାନଙ୍କ ସନ୍ତାନମାନେ ଭଲ ଆଚରଣ ଶିଖନ୍ତୁ, ଭଲ ଆଚରଣ ଦେଖାନ୍ତୁ । ଏଥିପାଇଁ କେଉଁ ପ୍ରକାରର ଦଣ୍ଡ ଉପଯୋଗୀ ?

ଉ : ଭଲ ପ୍ରଶ୍ନଟିଏ । କୌଣସି ପିଲା ଭଲ ଆଚରଣ କି ମନ୍ଦ ଆଚରଣ ଧରି ଜନ୍ମ ନେଇନଥାଏ । ତାକୁ ଠିକ୍ ବାଟ ବତେଇଲେ ସେ ଠିକ୍ କଥା ଶିଖେ, ଠିକ୍ ବାଟ ନ ବତେଇଥିଲେ କି ଭୁଲ୍ ବାଟ ବତେଇଲେ ସେ ଭୁଲ୍ କରିବା ସ୍ୱାଭାବିକ । ଏ ବିଷୟରେ ଡାକ୍ତର ମାଥୁ ଗୋଟିଏ ଭଲ ଉଦାହରଣର ଅବତାରଣା କରିଛନ୍ତି । ସେ ପଚାରିଛନ୍ତି, "ଧରାଯାଉ ଯେ ଗୋଟିଏ ପିଲା ଅତି ଖରାପ ବ୍ୟବହାର ଦେଖାଉଛି । ତାହାହେଲେ, କେଉଁ ପ୍ରକାରର ଦଣ୍ଡ ଦେଲେ ସେ ଆଉ ଖରାପ ବ୍ୟବହାର ଦେଖେଇବନି ?

"ଦଣ୍ଡ ପ୍ରଦାନ ଦ୍ୱାରା ଖରାପ ବ୍ୟବହାର ସଂଶୋଧିତ ହୋଇଯାଉଥିଲେ ତ ସମସ୍ୟା ନଥିଲା । କିନ୍ତୁ ନିକିତିରେ ବଟକରା ପକେଇ ଜିନିଷ ତଉଲିଲା ଭଳି ଖରାପ ବ୍ୟବହାର ଓ ଦଣ୍ଡ ପ୍ରଦାନକୁ ସମାନ ଭାବରେ ତଉଲି ହୁଏନାହିଁ । ଦଣ୍ଡ ଦେଲେ ତା'ର ପ୍ରଭାବ କ୍ଷଣିକ ମାତ୍ର । କାରଣ ଏହା ପିଲାର ମନୋଭାବକୁ ବିଦ୍ରୋହୀ କରିଦେବାର ଆଶଙ୍କା ବେଶୀ । ପ୍ରତ୍ୟେକ ବାପମା' ଚାହାନ୍ତି ଯେ ତାଙ୍କ ପିଲାଠାରେ ବ୍ୟକ୍ତିତ୍ୱର ବିକାଶ ହେଉ । ତା'ର ଚରିତ୍ର ମହତ୍ ହେଉ । ପୁଣି ଉତ୍ତମ ବ୍ୟକ୍ତିତ୍ୱ ଓ ମହତ୍ ଚରିତ୍ର ତାହାଠାରେ ସ୍ଥାୟୀ ହୋଇ ରହୁ । ଏହା ଫଳରେ ତା'ର ଭବିଷ୍ୟତ ଉଜ୍ଜ୍ୱଳ ହୋଇପାରିବ । ତେଣୁ ସନ୍ତାନଠାରେ ଉତ୍ତମ ଆଚରଣ ଓ ଚରିତ୍ରର ବିକାଶ ସାଧନ କରିବାକୁ ହେଲେ ଦଣ୍ଡ ପ୍ରଦାନକୁ ମାଧ୍ୟମ ରୂପେ ଗ୍ରହଣ କରିବା ଆଦୌ ଶୁଭଙ୍କର ନୁହେଁ ।"

ଆପଣ ଜାଣିରଖିବା ଦରକାର ଯେ ପ୍ରତ୍ୟେକ ପିତାମାତା ଉତ୍ତମ ଆଚରଣଧାରୀ ସନ୍ତାନ ଚାହାନ୍ତି । ଏହା ଯଦି ସର୍ବଜନୀନ ସତ୍ୟ, ତେବେ ମୂଳରୁ ବା ପ୍ରଥମରୁ ଆମେ ତାଙ୍କୁ ଅନୁକୂଳ ଆଚରଣ ଶିଖେଇବା କାମ୍ୟ ନା ସେ ଖରାପ ବ୍ୟବହାର ଦେଖେଇବା ପର୍ଯ୍ୟନ୍ତ ଆମେ ଅପେକ୍ଷା କରି ରହିଥିବା କାମ୍ୟ ? ତାହାଠାରେ ଖରାପ ବ୍ୟବହାର ଦେଖିଲେ ତେବେ ଯାଇ ତା'ର ସଂଶୋଧନ ପାଇଁ ଆମେ ପଦକ୍ଷେପ ନେବା ନା ପ୍ରଥମରୁ ତାଙ୍କୁ ଠିକ୍ ବ୍ୟବହାର ବତେଇ ଉପଯୋଗୀ ତାଲିମ ଦେବା ? ତାଙ୍କୁ ଯଥୋଚିତ ତାଲିମ ଦେଲେ କି ଠିକ୍ ଆଚରଣ ସମ୍ପର୍କରେ ଅବଗତ କରେଇଲେ ସେ ଯେ ମନ୍ଦ ବ୍ୟବହାର ଦେଖେଇବନି, ଏହା କହିବା ଆମର ଉଦ୍ଦେଶ୍ୟ ନୁହେଁ । ତାଲିମ ପାଇଥିବା ପିଲାମାନେ ମନ୍ଦ ବ୍ୟବହାର ଦେଖେଇପାରନ୍ତି । ହେଲେ ଏହାର ହାର ଯେ ଯଥେଷ୍ଟ ହ୍ରାସ ପାଇଯିବ, ତାହା ନିଃସନ୍ଦେହ ।

ତାହାଛଡ଼ା ମନ୍ଦ ବ୍ୟବହାର ପାଇଁ ଦଣ୍ଡ ପ୍ରଦାନ କରିବା ଅପେକ୍ଷା ମନ୍ଦ ବ୍ୟବହାରର ସଂଶୋଧନ ପାଇଁ ଗ୍ରହଣଯୋଗ୍ୟ ସଂଶୋଧନୀ ପଦକ୍ଷେପ ନେବା ନିଶ୍ଚିତ ଭାବରେ ସ୍ୱାଗତଯୋଗ୍ୟ । ସଂଶୋଧନୀ ପଦକ୍ଷେପମାନ ଆଚରଣରେ ଯଥେଷ୍ଟ ପରିବର୍ତ୍ତନ ଆଣିଥାଏ । ଦଣ୍ଡ ପରିବର୍ତ୍ତେ ପ୍ରଶଂସା ଓ ପୁରସ୍କାରକୁ ପୁଞ୍ଜି ରୂପେ ବିନିଯୋଗ କରିବାର ଅନୁକୂଳ ପ୍ରଭାବ ସୁଦୂରପ୍ରସାରୀ ।

ବହୁ ସମୟରେ ଆମେ ପିଲାମାନଙ୍କଠାରୁ ଯେଉଁ ପ୍ରକାରର ଆଚରଣ ଆଶା କରିଥାଉ, ସେ ସମ୍ପର୍କରେ ତାଙ୍କୁ କୌଣସି ଧାରଣା ଦେଇନଥାଉ କି କହିନଥାଉ । ଏ କ୍ଷେତ୍ରରେ ଦୋଷ ଆମ ବାପମା'ଙ୍କ ଠାରେ ସିନା, ପିଲାମାନଙ୍କଠାରେ ନୁହେଁ । କଅଣ କରିବା ଉଚିତ ଓ କଅଣ କରିବା ଉଚିତ ନୁହେଁ, କୌଣସି ଏକ ପରିସ୍ଥିତିରେ ପିଲାଙ୍କ ଆଚରଣ କିପରି ହେବା ଦରକାର, ତାହା ଆଗେ ସେମାନଙ୍କୁ ଜଣେଇଦେବା ଆବଶ୍ୟକ । ପାଞ୍ଚ ଛଅ ବର୍ଷ ବୟସ ନହେବା ପର୍ଯ୍ୟନ୍ତ ପିଲାମାନେ ସବୁବେଳେ ବାପମା'ଙ୍କ ପରାମର୍ଶ ଓ ଦିଗ୍‌ଦର୍ଶନ ଉପରେ ନିର୍ଭର କରିଥାନ୍ତି । ବାପମା'ଙ୍କ ପ୍ରତି ଓ ଅନ୍ୟ ପିଲାମାନଙ୍କ ପ୍ରତି ସେମାନଙ୍କର ବ୍ୟବହାର କିପରି ହେବା ଉଚିତ, ତାହା ତ ସେମାନେ ଜାଣିନଥାନ୍ତି; ତେଣୁ ସେମାନଙ୍କୁ ଏ ବିଷୟରେ ଶିକ୍ଷା ଦେବା ବାଞ୍ଛନୀୟ ।

ପିଲାମାନେ ସର୍ବଦା କୌତୂହଳୀ । ଅନ୍ୟ କାହା ପାଖରେ କୌଣସି ଆକର୍ଷଣୀୟ ଜିନିଷ ଦେଖିଲେ ସେମାନେ ନିଜ ପାଇଁ ତାହା ଚାହିଁଥାନ୍ତି । ଏପରିକି ସୁଯୋଗ ପାଇଲେ ଅନ୍ୟମାନଙ୍କ ଜିନିଷ ମଧ୍ୟ ନେଇ ଆସନ୍ତି । କିନ୍ତୁ ତାହା ଆଣିବା ଉଚିତ ନୁହେଁ ବୋଲି ସେମାନଙ୍କୁ ଆଗରୁ କହି ରଖିଥିଲେ ସିନା ସେମାନେ ଏଥିରୁ ନିବୃତ୍ତ ରହିଥାନ୍ତେ ।

ବଡ଼ କ୍ଷୋଭର ବିଷୟ ଯେ ପିଲାମାନଙ୍କ ଚରିତ୍ର ଗଠନ କରିବା ନିମନ୍ତେ ଆମେ ସଚେତନ ଭାବରେ କୌଣସି ଉଦ୍ୟମ ନକରି ସେମାନଙ୍କଠାରେ ଅଶୋଭନୀୟ ଆଚରଣ ଦେଖିଲେ ଚିହିଙ୍କି ଉଠୁ । କିନ୍ତୁ ତାହା ଅଶୋଭନୀୟ ବା ଅଗ୍ରହଣୀୟ ବୋଲି ପିଲାମାନେ ଜାଣିବେ କିପରି ? କେଉଁ କେଉଁ କାର୍ଯ୍ୟ କରିବା ଅଶୋଭନୀୟ ସେ ବିଷୟରେ ସେମାନଙ୍କୁ ପୂର୍ବରୁ ଅବଗତ କରେଇଦେବା ହିଁ ପିତାମାତାଙ୍କର ପ୍ରାଥମିକ କର୍ତ୍ତବ୍ୟ । କେଉଁ କେଉଁ ପ୍ରକାରର ବ୍ୟବହାର ଦେଖେଇବା ଉଚିତ ଓ କେଉଁ କେଉଁ ପ୍ରକାରର ବ୍ୟବହାର ଦେଖେଇବା ଉଚିତ ନୁହେଁ – ଏହି ଉଭୟ ବିଷୟରେ ସେମାନଙ୍କୁ ଜଣାଇବା ଉଚିତ ।

ଉଦାହରଣ ସ୍ୱରୂପ, ସାନ ପୁଅଝିଅଙ୍କୁ ସାଙ୍ଗରେ ଧରି କୌଣସି ଦୋକାନକୁ ଗଲେ ଦୋକାନରେ ସେ କଅଣ ସବୁ ଦେଖିବାକୁ ପାଇବ ଓ ସେଠାରେ କଅଣ କଅଣ କରିବା ଠିକ୍ ନୁହେଁ, ତାହା ଘରୁ ବାହାରିବା ପୂର୍ବରୁ ତାକୁ କହିଦେବା ଆବଶ୍ୟକ । କୌଣସି ଜନ୍ମଦିନ ଉତ୍ସବରେ କଅଣ କଅଣ କରାଯାଏ, ଯାହାର ଜନ୍ମଦିନ ପାଳିତ ହେଉଛି ତାକୁ କିପରି ଅଭିନନ୍ଦନ ଜଣାଇବା କଥା, ଉପହାର ଆଦାନପ୍ରଦାନରେ କିପରି ବିଧି ପାଳନୀୟ, ଖାଇବା ଟେବୁଲ୍ ଉପରେ କିପରି ଆଚରଣ ଦେଖାଇବା ଉଚିତ ଇତ୍ୟାଦି ସମ୍ପର୍କରେ ପୂର୍ବରୁ ତାଲିମ୍ ବା ପରାମର୍ଶ ଦେଇଥିଲେ କାହାର ଜନ୍ମଦିନ ଉତ୍ସବରେ ସେ ଗର୍ହିତ ଆଚରଣ କରିବନି କି ତା'ର ଆଚରଣ ଯୋଗୁ ନିଜକୁ ଲଜ୍ଜିତ ହେବାକୁ ପଡ଼ିବନି ।

ସାଙ୍ଗ ମେଳରେ ଖେଳିଲାବେଳେ ଯେ ଜିତିବା ଓ ହାରିବା ଯେକୌଣସି ଗୋଟିକର ସମ୍ଭାବନା ଅଛି, ତାହା ପିଲାମାନେ ଆଗରୁ ଜାଣିରଖିଥିଲେ, ହାରିଗଲେ ମଧ୍ୟ ତାହା ସେମାନଙ୍କ ପାଇଁ ବିଶେଷ ଅସ୍ୱସ୍ତିକର ହୁଏନାହିଁ । ଏଥିପାଇଁ ମନଦୁଃଖ ହେବାର ମାତ୍ରା ମଧ୍ୟ ସ୍ୱାଭାବିକ ଭାବରେ କମ୍ ହୋଇଥାଏ ।

କୌଣସି ସଭା କକ୍ଷରେ କିପରି ଆଚରଣ ଦେଖାଇବା ଉଚିତ, ବସ୍ କି ଟ୍ରେନ୍‌ରେ ଯାତ୍ରା କଲାବେଳେ କେଉଁ ଧରଣର ବ୍ୟବହାର ସ୍ପୃହଣୀୟ, ଘରକୁ ଅତିଥି ଆସିଲେ ତାଙ୍କ ଉପସ୍ଥିତିରେ ନିଜର ଆଚାର ବ୍ୟବହାର କିପରି ହେବା ଦରକାର, ଅନ୍ୟ କାହା ଘରକୁ ବୁଲିଗଲେ ସେଠାରେ କି ପ୍ରକାରର ଆଚାର ଆଚରଣ ଦେଖେଇବା ଆବଶ୍ୟକ – ଏହିସବୁ ବିଷୟରେ ପିଲାମାନଙ୍କୁ ପୂର୍ବରୁ ପରାମର୍ଶ ଦେବା ପିତାମାତାଙ୍କର ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ।

ସେହିପରି, ନିଜ କୋଠରିକୁ କିପରି ପରିଷ୍କାର ରଖାଯାଏ, ଘରେ ଜୋତାମୋଜା କେଉଁଠି ରଖାଯିବ, କେଉଁଠି ରହିବ ଜାମାପଟା, ବହିଖାତାକୁ କିପରି ସଜାଡ଼ି ରଖାଯିବ, କିପରି ପରିଷ୍କାର ରଖାଯିବ ବିଛଣାପତ୍ର – ଏପ୍ରକାରର କାର୍ଯ୍ୟ ମଧ୍ୟ ତାକୁ ଏକାଧିକଥର

ବତେଇଦେବେ । ଆପଣଙ୍କ ପରାମର୍ଶ କାର୍ଯ୍ୟକାରୀ ହେଉଛି କି ନା, ତାହା ମଧ୍ୟ ତଦାରଖ କରିବେ । କୌଣସି ତ୍ରୁଟିବିଚ୍ୟୁତି ଦେଖିଲେ ଦଣ୍ଡ ନଦେଇ ସଂଶୋଧିତ ହେବାର ସୁଯୋଗ ଦେବେ ।

ମନେ ରଖିବା ଦରକାର ଯେ ଗାଳିଦେଇ କି ଥାପଡ଼ ମାରି କୌଣସି ମହତ୍ ଶିକ୍ଷା ଦେଇ ହୁଏନି । ଧୈର୍ଯ୍ୟଧରି, ବୁଝେଇ ସୁଝେଇ, ହସିହସି ପରାମର୍ଶ ଦେଲେ ତାହା ଅଧିକ ଗ୍ରହଣୀୟ ହୋଇଥାଏ । ଏପରି କଲେ ବାତାବରଣ ଗମ୍ଭୀର ହେବାର ସମ୍ଭାବନା ଉପୁଜେ ନାହିଁ । ବାପମା' ଓ ପୁଅଝିଅ କେହି ଚାପର ବଶବର୍ତ୍ତୀ ହେଉନଥିବାରୁ ଶିକ୍ଷାପ୍ରଦାନ ଓ ଶିକ୍ଷାଗ୍ରହଣ ହୋଇପଡ଼େ ଅଧିକ ଫଳପ୍ରଦ । ତେବେ ପିଲାମାନଙ୍କର ଅଳିଅର୍ଦ୍ଦଳି ସହ୍ୟ କରିବାର ଦ୍ୱାହି ଦେଇ ସେମାନଙ୍କର ସବୁ ଦାବିକୁ ମାନିନେବା ମଧ୍ୟ ଆଦୌ ହିତକର ନୁହେଁ । ପିଲାମାନେ ନିଜର ସୀମା ସରହଦ ଭିତରେ ଦାବି ଜଣେଇବା ଓ ପିତାମାତାମାନେ ପରିବାରର ସମ୍ବଳକୁ ଚାହିଁ ଓ ପିଲାମାନଙ୍କ ସୁଦୂରପ୍ରସାରୀ ଭବିଷ୍ୟତକୁ ଆଖିରେ ରଖି କେଉଁ ଦାବି ମାନିବେ ଏବଂ କେଉଁ ଦାବିକୁ ପ୍ରତ୍ୟାଖ୍ୟାନ କରିବେ ତା'ର ନିଷ୍ପତ୍ତି ନେବା ବାଞ୍ଛନୀୟ । ତେବେ ଘରେ ପିଲାମାନେ ନାନାପ୍ରକାରର କାର୍ଯ୍ୟକଳାପରେ ଜଡ଼ିତ ହୋଇଥାଆନ୍ତି । ଏହି ପ୍ରତ୍ୟେକ କାର୍ଯ୍ୟପ୍ରତି ବାପମା'ଙ୍କର ପଦକ୍ଷେପ କଅଣ ହେବା ଉଚିତ, ସେ ସମ୍ପର୍କରେ ଏଠାରେ ପୁଙ୍ଖାନୁପୁଙ୍ଖ ଭାବରେ ଆଲୋଚନା କରିବା ସମ୍ଭବ ନୁହେଁ । ପରିସ୍ଥିତିକୁ ଚାହିଁ କଅଣ କରଣୀୟ ଓ କଅଣ ଅକରଣୀୟ, ତାହା ପିତାମାତା ନିଜର ବୁଦ୍ଧିବିବେକ ଖଟେଇ ସ୍ଥିର କରିବେ ।

ହଁ, ଆଉ ଗୋଟିଏ କଥା । ପିଲାମାନେ ଖୁବ୍ ଅନୁକରଣପ୍ରିୟ । ବାପମା' ଯାହା ଯାହା କରନ୍ତି, ପିଲାମାନେ ତାକୁ ଟିକିନିଖି ଲକ୍ଷ୍ୟ କରୁଥାନ୍ତି ଓ ନିଜେ ଠିକ୍ ସେହିପରି କରିବା ପାଇଁ ସ୍ଥିର କରନ୍ତି ଏବଂ ସୁଯୋଗ ପାଇଲେ ଠିକ୍ ସେହିପରି କରନ୍ତି ମଧ୍ୟ ।

ବାପମା' ଯଦି ନିଜର ଜୋତା, ପୋଷାକପତ୍ର, ବହି, ଖାତା କଲମ, ଚାବି ଇତ୍ୟାଦି ଏଣେତେଣେ ଅବିନ୍ୟସ୍ତ ଭାବରେ ରଖିବାରେ ଅଭ୍ୟସ୍ତ, ପିଲାମାନେ ସେଗୁଡ଼ିକୁ ସଜେଇ ରଖିବା ଶିଖିପାରନ୍ତି ନାହିଁ, ଏପରିକି 'ସଜେଇ ରଖ' ବୋଲି ପରାମର୍ଶ ଦେବା ସତ୍ତ୍ୱେ ! ଖବରକାଗଜ ଓ ପତ୍ରପତ୍ରିକାଗୁଡ଼ିକୁ ବାପମା' ଯଦି ଯେଉଁଠି ଇଚ୍ଛା ସେଠି ଫିଙ୍ଗି ଦିଅନ୍ତି, ଯଥାସ୍ଥାନରେ ରଖ ବୋଲି ପରାମର୍ଶ ଦେବାରେ ବାପମା'ଙ୍କର କି ଅଧିକାର ଅଛି ଭାବନ୍ତୁ ତ !

ତେଣୁ ବାପମା' କେବଳ ପରାମର୍ଶଦାତା ଭୂମିକାରେ ରହିଲେ ହେବନାହିଁ, ସେମାନେ ପିଲାମାନଙ୍କ ପାଇଁ ଦୃଷ୍ଟାନ୍ତ ଭାବେ ଅବତୀର୍ଣ୍ଣ ହେବା ଉଚିତ । ପୁଣି ପିଲାମାନେ ବାପମା'ଙ୍କ ପରାମର୍ଶକୁ ଠିକ୍ ଠିକ୍ ପାଳନ କଲେ, ସେଥିପାଇଁ ସେମାନଙ୍କୁ ପ୍ରଶଂସା କରିବା ଓ ଧନ୍ୟବାଦ ଦେବା ମଧ୍ୟ ବାଞ୍ଛନୀୟ । ଭଲ କାମ ପାଇଁ ପିଲାମାନଙ୍କୁ ପ୍ରଶଂସା କଲେ ସେମାନେ ଖୁବ୍ ଖୁସି ହୁଅନ୍ତି ଓ ସେଭଳି ଆଚରଣକୁ ସ୍ଥାୟୀ ଭାବରେ ବଜାୟ ରଖିବା ନିମନ୍ତେ ଉତ୍ସାହିତ ହୋଇଥାନ୍ତି । ଏପରିକି ଦିନମାନ ଭିତରେ ଏକାଧିକବାର ପ୍ରଶଂସା କଲେ ତା'ର ପ୍ରଭାବ ଖୁବ୍ ଅନୁକୂଳ ହୋଇଥାଏ ।

ଏବେ ଟେଲିଭିଜନ୍‌ରେ ବିଭିନ୍ନ ବିଜ୍ଞାପନ ଦେଖି ପିଲାମାନେ ବିଜ୍ଞାପନରେ ପ୍ରଦର୍ଶିତ ଜିନିଷ ନିଜ ପାଇଁ କିଣିବା ନିମନ୍ତେ ଜିଦ୍ କରୁଛନ୍ତି । ଏହା କିନ୍ତୁ ବହୁ ପରିବାରର ସମ୍ବଳ ଦୃଷ୍ଟିରୁ ସମ୍ଭବ ନୁହେଁ କି ପିଲାମାନଙ୍କ ଇଚ୍ଛାକୁ ବି ରୋକ୍‌ଠୋକ୍ ଭାଙ୍ଗିଦେବା ଶୋଭନୀୟ ନୁହେଁ । ଏ' କ୍ଷେତ୍ରରେ ପିଲାମାନଙ୍କ ଉପରେ ବିରକ୍ତ ନହୋଇ ନିଜ ନିଜ ଭିତରେ କିଛି ବୁଝାମଣାରେ ପହଞ୍ଚିବା ଶ୍ରେୟସ୍କର । ପରିବାରର ସମ୍ବଳକୁ ଚାହିଁ ମଝିମଝିକିଆ କୌଣସି ନିଷ୍ପତ୍ତି ନେବା ଉଚିତ ।



# ଦଣ୍ଡ ପ୍ରଦାନ ଚରିତ୍ର ସଂଶୋଧନର ମାଧ୍ୟମ ହୋଇପାରେନା

"ପିଲାକୁ ପିଟିବା ପୂର୍ବରୁ ଆଗେ ନିଶ୍ଚିତ ହୋଇଯାଆନ୍ତୁ ଯେ ତା'ର ମନ୍ଦ କାମ ପାଇଁ ଆପଣ ନିଜେ ଦାୟୀ ନୁହନ୍ତି ।"

–ଅଷ୍ଟିନ୍ ଓ. ମାଲ୍ଲି

**ପ୍ର : କେଉଁ ପ୍ରକାରର ଆଚରଣ ଦେଖାଇବା ଉଚିତ ସେ ସମ୍ପର୍କରେ ଆଗରୁ ପିଲାକୁ ପରାମର୍ଶ ଦେଇନଥିଲେ ବାପମା' କ'ଣ ତାକୁ ଦଣ୍ଡଦେବା ଉଚିତ ନୁହେଁ ?**

ଉ : ହଁ ଉଚିତ, ତେବେ ଏହା ଆଂଶିକ ସତ୍ୟ । ମନ୍ଦ ଆଚରଣର ଚିକିତ୍ସା ପାଇଁ ଦଣ୍ଡ ହିଁ ମହୌଷଧି ବୋଲି ରହିଥିବା ଧାରଣା ପୁରୁଣାକାଳିଆ । ଏହି ଧାରଣା ଧୀରେ ଧୀରେ ଲୋପ ପାଇ ଆସୁଛି । ବରଂ ପିଲାର ଭୁଲ୍‌କୁ ଶାନ୍ତ ଭାବରେ ବୁଝାଇ ଦେବାର ପ୍ରଭାବ ଅତି ଅନୁକୂଳ । ଧରାଯାଉ ଯେ ବାରଣ ସତ୍ତ୍ୱେ ପିଲାଟି ଘର ଭିତରେ ବଲ୍ ଖେଳି କାନ୍ଥରେ ଟଙ୍ଗା ହୋଇଥିବା ବନ୍ଧେଇ ଫଟୋର କାଚକୁ ଭାଙ୍ଗିଦେଲା । ଏ' କ୍ଷେତ୍ରରେ ତା'ର କାର୍ଯ୍ୟପ୍ରତି ଆମର ଅପସନ୍ଦ ସେ ଜାଣିବା ଦରକାର । କେହି କେହି କହିପାରନ୍ତି ଯେ ତା'ର ଏହି ଦୁଷ୍ଟାମି ପାଇଁ ସେ ଦଣ୍ଡପାଇବା ଯୋଗ୍ୟ । ଅନ୍ୟ କେହି ଅନ୍ୟ ପ୍ରକାରର ଦଣ୍ଡ ଦେବା ପସନ୍ଦ କରିପାରନ୍ତି । ଦଣ୍ଡସ୍ୱରୂପ ତାକୁ ଦୁଇଦିନ ପାଇଁ ଟେଲିଭିଜନ ଦେଖିବା ମନା କରିପାରନ୍ତି, ବାହାରକୁ ଖେଳିବା ପାଇଁ ଯିବାରେ ବାରଣ କରିପାରନ୍ତି, କିଛିଦିନ ପାଇଁ ତା'ର ପକେଟ୍ ଖର୍ଚ୍ଚା ବନ୍ଦ କରିଦେଇ ପାରନ୍ତି କି ତାକୁ ଚକୋଲେଟ୍‌ରୁ ବଞ୍ଚିତ କରିପାରନ୍ତି । ଏହି ପ୍ରତ୍ୟେକ ପଦକ୍ଷେପ ଏକ ଏକ ପ୍ରକାରର ଦଣ୍ଡ । ହେଲେ ମନେ ରଖିବାର କଥା ଯେ ଏ' ଧରଣର ଦଣ୍ଡ ପାଇବା ପରେ ସେ ନିଜର ଭୁଲ୍ ବୁଝିପାରିଲେ ଓ ଏଥିପାଇଁ ଦଣ୍ଡପ୍ରଦାନକାରୀ ବାପମା'ଙ୍କ ଉପରେ ରୁଷ୍ଟ ନହେଲେ, ଏଭଳି ପରିଣତି ସ୍ୱାଗତଯୋଗ୍ୟ । ସନ୍ତାନକୁ ଦଣ୍ଡଦେବା ପିତାମାତାଙ୍କ ଉଦ୍ଦେଶ୍ୟ ନ ହେବା ଉଚିତ । ବରଂ ତା'ଠାରେ ଏକ ସଚେତନ ନୈତିକତା ଜାଗ୍ରତ କରାଇବା ହିଁ ସେମାନଙ୍କର କର୍ତ୍ତବ୍ୟ ।

**ପ୍ର : ସନ୍ତାନଠାରେ ନୈତିକ ସଚେତନତା ଜାଗ୍ରତ କରାଯାଇପାରିବ କିପରି ?**

ଉ : ସନ୍ତାନର ମନ୍ଦ ଆଚରଣ ପାଇଁ ତାକୁ ଦଣ୍ଡ ନଦେଇ ତାକୁ ସଂଶୋଧିତ ହେବାର ସୁଯୋଗ ଦେବାର ପରିଣତି ସର୍ବଦା ମଙ୍ଗଳକର ହୋଇଥାଏ । କିନ୍ତୁ ଆଗରୁ ପରାମର୍ଶ ଦେଇ ଥିଲେ ସିନା ସଂଶୋଧନର ପ୍ରଶ୍ନ ଉଠିବ । ତେଣୁ ଆଗେ ଭଲ ଆଚରଣ ସମ୍ପର୍କରେ ସୂଚନା ପ୍ରଦାନ ବା ପରାମର୍ଶ ପ୍ରଦାନ ଓ ସେହି ପରାମର୍ଶର ଅବମାନନା କଲେ ପରେ ସଂଶୋଧନୀ ପଦକ୍ଷେପ ଗ୍ରହଣ । ଏହି ପ୍ରକାରେ ପିଲାଠାରେ ଜାଗ୍ରତ କରାଯାଇପାରେ ନୈତିକ ସଚେତନତା ।

ପିଲାଙ୍କ ଆଚରଣ ବା ବ୍ୟବହାରର ବିଭିନ୍ନ ଦିଗକୁ ଆଖିରେ ରଖି ପିତାମାତା ତଦନୁଯାୟୀ ନିଜକୁ ପ୍ରସ୍ତୁତ ରଖିବା ଦରକାର । ସେମାନଙ୍କୁ ୩ ରୁ ୪ ବର୍ଷ ହେବା ବେଳକୁ ଆଚରଣ ସଂକ୍ରାନ୍ତ ଅନେକ ବିଷୟ ବାପମା' ଜଣାଇ ସାରିଥିବା ଆବଶ୍ୟକ ।

ଧରାଯାଉ ଯେ ଘର ବାହାରେ ଖୋଲା ଜାଗାରେ କ୍ରିକେଟ୍ ଖେଳିଲେ କ୍ରିକେଟ୍ ବଲ୍ ବାଜି ଘରର ଝରକା କାଚ ଭାଙ୍ଗିଯାଇପାରେ ବୋଲି ବାପମା' ପୁଅକୁ ସତର୍କ କରେଇ ସାରିଛନ୍ତି । ଏହା ସତ୍ତ୍ୱେ ପୁଅ କ୍ରିକେଟ୍ ଖେଳୁଖେଳୁ ସତକୁ ସତ ବଲ୍‌ବାଜି ଝରକାର କାଚ ଭାଙ୍ଗିଗଲା ।

ଏବେ ପୁଅର ଦୃଷ୍ଟିକୋଣରୁ ବିଚାର କରନ୍ତୁ । ସେ କ'ଣ ଜାଣିଶୁଣି ଝରକା କାଚକୁ ବଲ୍ ମାରିଛି ? ବଲ୍ ବାଜିଲେ କାଚର ଅବସ୍ଥା କ'ଣ ହୁଏ, ତାହା କ'ଣ ସେ ଆଗରୁ ଜାଣିଛି ? ନୂଆ କାଚ ଖଣ୍ଡେ କିଣି ସେହି ଝରକାରେ ଲଗାଇବାରେ ମେହେନତ କରିବାକୁ ପଡେ ଓ ଯେଉଁ ସମସ୍ୟାଗୁଡିକର ସମ୍ମୁଖୀନ ହେବାକୁ ହୁଏ, ସେ ବିଷୟରେ ତା'ର କ'ଣ କିଛି ପୂର୍ବ ଅନୁଭୂତି ଅଛି ? ସବୁପିଲାଙ୍କ ଭଳି ସେ ମଧ୍ୟ ଖେଳ ଉପରେ ଗୁରୁତ୍ୱ ଦେଇଥିଲା ଓ ଅକସ୍ମାତ୍ ବଲ୍ ବାଜି ଝରକାର କାଚ ଭାଙ୍ଗିଗଲା ।

ଏବେ ବିଚାର କରନ୍ତୁ ବାପମା'ଙ୍କର ପ୍ରତିକ୍ରିୟା । ବାପମା' ତାକୁ ଏ ବିଷୟରେ ଯେ ଆଗରୁ ସାବଧାନ କରେଇଦେଇଥିଲେ ତାହା ସତ । କିନ୍ତୁ ଏଇ ସାବଧାନ କରେଇଦେବାରେ ତ ନୂଆ କାଚ କାଚ ଲଗେଇବାର ସମସ୍ୟା ବିଷୟ ସ୍ଥାନ ପାଇ ନଥିଲା । ପାଇଥିଲେ ବି ସମସ୍ୟାକୁ ପ୍ରତ୍ୟକ୍ଷ ଭାବରେ ନ ଭୋଗିଲେ ସମସ୍ୟାର ଗଭୀରତା ବିଷୟରେ ଜ୍ଞାନ ଆସିବ କୁଆଡୁ ? ଏଥିପାଇଁ ତାକୁ ଦଣ୍ଡଦେଲେ ଝରକାରେ କ'ଣ ନୂଆ କାଚଟିଏ ଆପେ ଆପେ ଲାଗିଯାଇପାରିବ ? ବରଂ ତାକୁ ସାଥିରେ ନେଇ ବଜାରକୁ ଯିବା, ବଜାରରୁ ବାଛି ବାଛି ନୂଆ କାଚଟିଏ କିଣିବା, କାଚଟିକୁ ହେପାଜତରେ ଘରକୁ

ଆଣିବା, କାଚ ଲଗେଇବା ପାଇଁ ମିସ୍ତ୍ରୀ ଡାକିବା, ମିସ୍ତ୍ରୀ ପାଖରେ ଠିଆ ହୋଇ କାମ ତଦାରଖ କରିବା, କାଚ ଲାଗିସାରିବା ପରେ ସେଥିରେ ରଙ୍ଗ ଦେବା ଇତ୍ୟାଦି କାମଗୁଡ଼ିକୁ ପୁଅର ଉପସ୍ଥିତିରେ କରିଥିଲେ କାଚ ଭାଙ୍ଗିବାପାଇଁ ସେ ନିଜକୁ ଦାୟୀ କରି ଅନୁତପ୍ତ ହେବାର ସମ୍ଭାବନା ଅଛି । ବାପମା'ଙ୍କ କଥା ମାନିଥିଲେ ଏତେ ସମସ୍ୟା ଉପୁଜି ନଥାନ୍ତା ବୋଲି ତା'ର ନିଶ୍ଚୟ ହୃଦ୍‌ବୋଧ ହେବ ଓ ଏହାପରେ ବାପମା'ଙ୍କ ପରାମର୍ଶ ପ୍ରତି ସେ ଅଧିକ ଧ୍ୟାନ ଦେବ । ପରାମର୍ଶକୁ ଅବମାନନା କରିବା ପାଇଁ ସେ ଜମା ସାହସ କରିବନି । ଏହାପରେ ସେ ଘର ନିକଟରେ କ୍ରିକେଟ୍ ନ ଖେଳି ପଡ଼ିଆରେ ଖେଳିବା ପାଇଁ ନିଜ ଆଡୁ ନିଷ୍ପତ୍ତି ନେବ ।

ହଠାତ୍ ଦଣ୍ଡ ଦେବା ପାଇଁ ଆଗେଇଗଲେ ତାହା ଚରିତ୍ରରେ ସଂଶୋଧନ ଆଣେନାହିଁ କି ଚରିତ୍ରର ବିକାଶରେ ସାହାଯ୍ୟ କରେନାହିଁ । କିନ୍ତୁ ଧୈର୍ଯ୍ୟ ଧରି ପିଲାକୁ ସମସ୍ୟାଗୁଡ଼ିକ ସହ ପ୍ରତ୍ୟକ୍ଷ ଭାବରେ ପରିଚିତ କରେଇପାରିଲେ ଏହା ଚରିତ୍ରର ବିକାଶ ପାଇଁ ଯଥେଷ୍ଟ ଅବଦାନ ଦେଇପାରିବ । ପିଲା ନିଜେ ନିଜେ ଯେପରି ତା'ର ଭୁଲ୍ ବୁଝିପାରିବ, ସେଥିପ୍ରତି ପିତାମାତା ଅଧିକ ଧ୍ୟାନ ଦେବା ଉଚିତ । ତାହାଠାରେ ଅଭିଜ୍ଞତା ଜାତ କରିବାର ପ୍ରଭାବ ସ୍ଥାୟୀ, ପିଟିବା କି ଦଣ୍ଡ ଦେବାର ପ୍ରଭାବ ଅସ୍ଥାୟୀ । ଅଭିଜ୍ଞତା ଚରିତ୍ରରେ ସଂଶୋଧନ ଆଣେ ସିନା, ଦଣ୍ଡ ପ୍ରଦାନ ଦ୍ୱାରା ଚରିତ୍ର ଗଠନ କରାଯାଇପାରିବ ବୋଲି ଧାରଣା କରିବା ଭୁଲ୍ ।

କିନ୍ତୁ ଚିନ୍ତା କରନ୍ତୁ ତ ! ବାପମା' ଓ ପିଲାଙ୍କ ଭିତରେ ଯଦି ଉତ୍ତମ ସମ୍ପର୍କ ସ୍ଥାପିତ ହୋଇନାହିଁ, ପରସ୍ପର ପରସ୍ପରକୁ ବିଶ୍ୱାସ କରିପାରୁ ନାହାନ୍ତି, ପିଲା ତା'ର ବାପମା'ଙ୍କ ପରାମର୍ଶକୁ ସମ୍ମାନ ଦେଉନି, ସେ କ୍ଷେତ୍ରରେ ପିଲାର ଭୁଲ୍‌ଭଟକା ସଂଶୋଧନ କରିବାର ସମସ୍ୟା ଟିକିଏ ବେଶୀ । ହେଲେ ବାପମା' ସନ୍ତାନକୁ ବିଶ୍ୱାସ କଲେ ସନ୍ତାନ ତା'ର ବାପମା'ଙ୍କୁ ବିଶ୍ୱାସ କରେ । ତେଣୁ ବାପମା' ପିଲାମାନଙ୍କ ସହ ଘନିଷ୍ଠ ସମ୍ପର୍କ ସ୍ଥାପନ କରିବା ହେଉଛି ପ୍ରାଥମିକ ଆବଶ୍ୟକତା । ଯେଉଁମାନେ ଘନିଷ୍ଠ ସମ୍ପର୍କ ସ୍ଥାପନ କରିନାହାନ୍ତି, ସେମାନେ ଏ ଦିଗରେ ତୁରନ୍ତ ପଦକ୍ଷେପ ନେବା ବାଞ୍ଛନୀୟ । ସମ୍ପର୍କ ରହିଥିଲେ ହିଁ ସନ୍ତାନ ବାପମା'ଙ୍କ ଉପରେ ଗଭୀର ବିଶ୍ୱାସ ସ୍ଥାପନ କରିଥାଏ । କିନ୍ତୁ ସମ୍ପର୍କ ନଥିଲେ ବାପମା'ଙ୍କ ପ୍ରତିକ୍ରିୟା ଓ ତା' ଯୋଗୁ ହୋଇଥିବା କ୍ଷତି ପ୍ରତି ସେ କୌଣସି ନିଘା ଦିଏନାହିଁ । ପରାମର୍ଶ ପ୍ରଦାନ କରିବା, ମାର୍ଗଦର୍ଶନ କରିବା ଓ ଆଚରଣରେ ସଂଶୋଧନ ଆଣିବାର ଭିତ୍ତିଭୂମି ହେଉଛି ବାପମା' ଓ ସନ୍ତାନମାନଙ୍କ ଭିତରେ ରହିଥିବା ନିବିଡ଼ ସମ୍ପର୍କ ।

ମନେ ରଖିବାର କଥା ଯେ ପିଲାମାନଙ୍କ ଆଚରଣର ବିଭିନ୍ନ କାରଣ ରହିଛି । କେତେବେଳେ ଏହା ପ୍ରାକୃତିକ ତ ଅନ୍ୟ କେତେବେଳେ ଏହା ତାକୁ ଚିଡ଼େଇବାର ପରିଣାମ । ଅନ୍ୟ କେତେବେଳେ ସେ କୌଣସି ଚିନ୍ତା ନ କରି ଓ ଭଲମନ୍ଦ ବିଚାର ନକରି ହଠାତ୍ ସେପରି ଆଚରଣ ପ୍ରଦର୍ଶନ କରିଥାଏ । ଶେଷୋକ୍ତ ଆଚରଣ ପ୍ରତି ବାପ'ମା ଅଧିକ ଗୁରୁତ୍ୱ ଦେବା ଉଚିତ । ପିଲାଟି ଯଦି କତୁରି ଧରି ବିଛଣା ଚଦର କାଟିବା ଆରମ୍ଭ କରେ, ତେବେ ତାହାଠାରୁ କତୁରିଟିକୁ ଛଡ଼େଇ ଆଣିବାରେ କିଛି ଦୋଷ ନାହିଁ । ବିଛଣା ଚଦର କଟିଗଲେ କଅଣ କ୍ଷତି ହେବ, ତା'ର ସେ ଜ୍ଞାନ ନଥାଏ । ତେଣୁ ପରେ ତାକୁ ଏ ବିଷୟରେ ଭଲ ଭାବେ ବୁଝେଇ ଦେବା ଦରକାର ।

ଏହା ମଧ୍ୟ ଜାଣିରଖିବା ଉଚିତ ଯେ ପିଲା କୌଣସି ଅସଙ୍ଗତ କାମ କରି ବସିଲେ ଏହି ଦୋଷ ପିଲା ଉପରେ ନ ଲଦି ବାପମା'.ଉଭୟେ ଏହି ଦୋଷରେ ଭାଗୀଦାର ହେବା ହିଁ ଯୁକ୍ତିଯୁକ୍ତ । ତେଣୁ ପିଲାକୁ ଦଣ୍ଡ ଦେବା ପାଇଁ ଯଦି ଭାବୁଥାନ୍ତି, ନିଜେ ମଧ୍ୟ କିଛି ଦଣ୍ଡ ଭୋଗିବାକୁ ପ୍ରସ୍ତୁତ ଥିବା ଆବଶ୍ୟକ । ବାପମା' ସିନା ପିଲାକୁ ଦଣ୍ଡ ଦେଇ ପାରିବେ ହେଲେ ପିଲାଟିଏ ତ ତା'ର ବାପମା'ଙ୍କୁ ଦଣ୍ଡ ଦେଇପାରିବନି । ସୁତରାଂ ବାପମା' ନିଜଆଡୁ ନିଜ ପାଇଁ ଦଣ୍ଡର ବ୍ୟବସ୍ଥା କରିପାରିବେ । ଏଠାରେ ବାପମା'ଙ୍କ ଦଣ୍ଡକୁ ଶାରୀରିକ ଦଣ୍ଡ ରୂପେ ଭାବନ୍ତୁ ନାହିଁ । ବାପା ଯଦି ଡେରିରେ ଅଫିସରୁ ଫେରିବା ଫଳରେ ପିଲାର ଘରପଢ଼ା ତଦାରଖ କରିପାରୁ ନାହାନ୍ତି, ତେବେ ଦଣ୍ଡ ସ୍ୱରୂପ ସେ ସପ୍ତାହରେ ଅନ୍ତତଃ ତିନିଥର ଠିକ୍ ସମୟରେ ଘରକୁ ଫେରି ପିଲାକୁ ନିଜେ ପଢ଼ାଇବାର ଦାୟିତ୍ୱ ସ୍ୱୀକାର କରିବାକୁ ପଡ଼ିବ । ଏହି ବ୍ୟବସ୍ଥା ତ ବାପାଙ୍କ ପାଇଁ ଏକ ଦଣ୍ଡ ସ୍ୱରୂପ ।

ତେବେ ପିଲାକୁ ଅନ୍ୟମାନଙ୍କ ସମ୍ମୁଖରେ ଆଦୌ ଦଣ୍ଡ ଦେବେ ନାହିଁ କି ତା'ର ମନ୍ଦ ଆଚରଣକୁ ସହି ଯିବେନି । ତା'ର ଖରାପ ଆଚରଣକୁ ସହିନେଲେ ସେ ସେହି ପ୍ରକାର ଆଚରଣ କରିବା ନିମନ୍ତେ ପ୍ରଶ୍ରୟ ପାଇଯାଏ । ତେବେ ସେ ଯେପରି ଭଦ୍ର ବ୍ୟବହାର ଦେଖାଏ, ସେଥିପାଇଁ ସଚେତନ ଭାବେ ଓ ବୁଝେଇବା ଢଙ୍ଗରେ ତାକୁ ଅବଗତ କରେଇଦେବା ବାପମା'ଙ୍କ କର୍ତ୍ତବ୍ୟ ।

ହଁ, ବେଳେବେଳେ ବାପମା' ମଧ୍ୟ ନିଜ ସମସ୍ୟାରେ ଘାରି ହେଉଥାନ୍ତି । କଠିନ ପରିଶ୍ରମ ପରେ କ୍ଳାନ୍ତ ହୋଇପଡ଼ିଥାନ୍ତି । ସେତେବେଳେ ପିଲାଙ୍କ ଅଶୋଭନୀୟ ଆଚରଣର ସଂଶୋଧନ ପାଇଁ ତାଙ୍କର ମନ ହୁଏନାହିଁ । ହେଲେ, ଏହି ଅଶୋଭନୀୟ ଆଚରଣ ଦୃଷ୍ଟିରେ ପଡ଼ିବା ସତ୍ତ୍ୱେ ତାକୁ ଉପେକ୍ଷା କରିବା ଆଦୌ ଶୋଭନୀୟ ନୁହେଁ । ଏହା ଏତେ ସହଜ

ନୁହେଁ ସତ ; କିନ୍ତୁ ପିତାମାତା ହୋଇଥିବାରୁ ହିଁ ଏମାନେ ଏହି ତ୍ୟାଗ କରିବାକୁ ବାଧ । ନୋହିଲେ ପିଲା ଏଥିରୁ ଫାଇଦା ଉଠାଇ ତା'ର ଅଶୋଭନୀୟ ଆଚରଣ ଅନୁମୋଦନୀୟ ବୋଲି ଧରିନେବ ।

ତେବେ ପିଲାପାଇଁ ବହୁ କ୍ଷେତ୍ରରେ ବିଶେଷ କିଛି ନିୟମ ବାନ୍ଧି ଦେବେନି । କାରଣ ନିୟମ ବାନ୍ଧିଦେଲେ ନିୟମ ଭାଙ୍ଗିବା କାରଣରୁ ସନ୍ତାନ ସହ ସଂଘର୍ଷ ଉପୁଜିବାର ସମ୍ଭାବନା ରହିଛି । ତଥାପି ସବୁ କ୍ଷେତ୍ରରେ କୋହଳ ମନୋଭାବ ସ୍ପୃହଣୀୟ ନୁହେଁ । ଦେହ ଭଲ ନଥିଲେ ପିଲା ରାଜି ନହେଉଥିଲେ ମଧ୍ୟ ତା'କୁ ବୁଝେଇ ସୁଝେଇ ଡାକ୍ତରଖାନାକୁ ନେବା ଉଚିତ ସିନା, ତା' ପାଇଁ ଖାଇବା ପ୍ରସ୍ତୁତ ହୋଇଥିବା ସତ୍ତ୍ୱେ ତାକୁ ବାରମ୍ବାର ଡାକି ମଧ୍ୟ ସେ ଖାଇବାକୁ ନ ଆସିଲେ, ତା'ର ଖାଦ୍ୟକୁ ଢାଙ୍କୁଣୀରେ ଘୋଡ଼େଇ ଦେଇ ପିତାମାତା ଅନ୍ୟ କାମରେ ଲାଗିବା କିଛି ଦୋଷାବହ ନୁହେଁ ।

ହଁ, ଆଉ ଗୋଟିଏ କଥା ମନେରଖିବା ଉଚିତ । ପିଲାମାନଙ୍କୁ ମଧ୍ୟ ଆକଟ କରିବାର ଆବଶ୍ୟକତା ଅଛି । ଆକଟ କଲାବେଳେ କୋହଳ ହେବା ଆଦୌ ସ୍ପୃହଣୀୟ ନୁହେଁ । ଏପରି କଲେ ପିଲା ଆକଟ ପ୍ରତି କୌଣସି ଗୁରୁତ୍ୱ ଦିଏନି । ତେଣୁ ପିତାମାତା ବହୁ କ୍ଷେତ୍ରରେ ନିଜ ନିଷ୍ପତ୍ତିରେ ଦୃଢ଼ ରହିଲେ, ପିଲା ତାକୁ ମାନିନେବାକୁ ବାଧ ହୋଇଥାଏ । ଏପରିକି ଆପଣଙ୍କ ଦୃଢ଼ତା ଯୋଗୁ ପିଲା କନ୍ଦାକଟା କଲେ ମଧ୍ୟ ନିଜ ନିଷ୍ପତ୍ତି ଆଦୌ ବଦଳେଇବେ ନାହିଁ କି ତା'ର କନ୍ଦାକଟା ପ୍ରତି ଗୁରୁତ୍ୱ ଦେବେନାହିଁ । ଏପରି କଲେ ସେ ଆପଣଙ୍କ ଦୃଢ଼ ନିଷ୍ପତ୍ତିକୁ କୋହଳ କରିବା ନିମନ୍ତେ କନ୍ଦାକଟାକୁ ଏକ ଅସ୍ତ୍ର ରୂପେ ବ୍ୟବହାର କରିବାରେ ଉତ୍ସାହୀ ହେବନାହିଁ ।



# ପିଲାମାନଙ୍କ ପାଠପଢ଼ା

**"ଶିଶୁକୁ ସାତବର୍ଷ ହେବା ପର୍ଯ୍ୟନ୍ତ ତାକୁ ମୋ' ପାଖରେ ଛାଡ଼ିଦିଅ । ମୁଁ ତାକୁ ଏପରି ଭାବରେ ଗଢ଼ିଦେବି ଯେ ଏହାପରେ ତାକୁ ଭଗବାନଙ୍କୁ କି ସଇତାନକୁ ଦେଇଦେଲେ ମଧ୍ୟ ସେ ତା'କୁ ଆଦୌ ବଦଳେଇ ପାରିବେନି ।"**

**–ଜଣେ ଶିକ୍ଷକ**

ପ୍ର : କେଉଁ ବୟସରେ ପିଲାମାନଙ୍କୁ ସ୍କୁଲ୍‌କୁ ପଠେଇବା ନିରାପଦ ?

ଉ : ଏ ସମ୍ପର୍କରେ କାର୍‌ସନ୍ ମାକ୍‌କର୍ଲସ୍‌ଙ୍କ ଉକ୍ତିଟିକୁ ମନେ ପକାନ୍ତୁ । ସେ କହିଛନ୍ତି, "ଛୋଟ ପିଲାମାନଙ୍କର ହୃଦୟ ବଡ଼ କୋମଳ ଅଙ୍ଗ । ଶାରୀରିକ ଓ ମାନସିକ ନିର୍ଯାତନା ଭିତରେ ଜୀବନ ଆରମ୍ଭ କଲେ ଏହି ନିର୍ଯାତନାର ପ୍ରଭାବରେ ସେମାନଙ୍କ ହୃଦୟଗୁଡ଼ିକ କିମ୍ଭୂତକିମାକାର ହୋଇଯାଏ ।"

ଏବେ ସବୁ ବାପମା' ପିଲାକୁ ସ୍କୁଲ୍‌କୁ ପଠାଇବା ପାଇଁ ବ୍ୟାକୁଳ । ପଡ଼ୋଶୀ ଘରର ସମବୟସ୍କ ପିଲାଟି ସ୍କୁଲ୍‌ରେ ନାଁ ଲେଖେଇ ସାରିଲାଣି ବୋଲି ଶୁଣିଦେଲେ ନିଜ ପିଲା ଏ' ପର୍ଯ୍ୟନ୍ତ ସ୍କୁଲ୍‌ରେ ଭର୍ତ୍ତି ହୋଇନାହିଁ ଭାବି ବାପମା'ଙ୍କ ଚିନ୍ତା ବଢ଼ିଯାଉଛି । କିନ୍ତୁ ସେମାନେ ମନେରଖିବା ଉଚିତ ଯେ ଘର ପରିବେଶରେ ଓ ବାପମା', ଅଜା ଆଈ ଇତ୍ୟାଦିଙ୍କ ଗହଣରେ ମଜା ମାରୁଥିବା ପିଲାଟି ପାଇଁ ସ୍କୁଲ୍ ଏକ ପ୍ରତିକୂଳ ଇଲାକା । ତେଣୁ ଶାରୀରିକ ଦୃଷ୍ଟିରୁ, ସାମାଜିକ ଦୃଷ୍ଟିରୁ ଓ ଆବେଗିକ ଦୃଷ୍ଟିରୁ ବିଚାର କଲେ ଏହା ପିଲା ଉପରେ ଅସ୍ୱାଭାବିକ ମାନସିକ ଚାପ ଜାତ କରିବାରେ କିଛି ବିଚିତ୍ରତା ନାହିଁ ।

ଘରଛାଡ଼ି ଓ ମା'କୁ ଛାଡ଼ି କିଛି ଘଣ୍ଟା ପାଇଁ ତାକୁ ସ୍କୁଲ୍‌ରେ ରହିବାକୁ ହୁଏ । ତେଣୁ ତା'ଠାରେ ଏକୁଟିଆ ରହିବା କାରଣରୁ ଉତ୍କଣ୍ଠା ବଢ଼ିବା ସ୍ୱାଭାବିକ । ସ୍କୁଲ୍‌ରେ ରହଣି ସମୟରେ ତାକୁ ଝାଡ଼ା ମାଡ଼ିପାରେ, ପରିସ୍ରା ଲାଗିପାରେ । ଝାଡ଼ା ପରିସ୍ରାକୁ ରୋକିପାରିବା

ପାଇଁ ସେ ସାମର୍ଥ୍ୟ ହାସଲ କରିଛି ତ ! ସ୍କୁଲ୍‌ରେ ସେ ଦେଖେ ଶିକ୍ଷକ-ଶିକ୍ଷିକାଙ୍କୁ ଓ ଅନ୍ୟ ଛାତ୍ରଛାତ୍ରୀମାନଙ୍କୁ ମଧ୍ୟ । ସେମାନଙ୍କ ସହ ଭାବ ଆଦାନପ୍ରଦାନ କରିବା ନିମନ୍ତେ ତା'ର ସୀମିତ ଭାଷାଜ୍ଞାନ ଅଛି କି ନାହିଁ ? ନିଜ ମନକଥା ସେ ଅନ୍ୟମାନଙ୍କ ଆଗରେ ଭଲ ଭାବରେ ବ୍ୟକ୍ତ କରିପାରୁଛି ତ ? ଅନ୍ୟମାନେ ଯାହା କହୁଛନ୍ତି, ତାକୁ ସେ ବୁଝିପାରୁଛି ତ ? ଏହିସବୁ ପ୍ରକାରର ସାମର୍ଥ୍ୟ ବିଭିନ୍ନ ପିଲାଙ୍କ କ୍ଷେତ୍ରରେ ଭିନ୍ନ ଭିନ୍ନ ହୋଇପାରେ । ତଥାପି ୩ ବର୍ଷ ବୟସ ନହେବା ଯାଏଁ ଶିଶୁଠାରେ ଏ'ପ୍ରକାରର ସାମର୍ଥ୍ୟ ବିଶେଷ ବିକାଶ ଲାଭ କରିନଥାଏ । ସୁତରାଂ ୩ ବର୍ଷ ନହେବା ପର୍ଯ୍ୟନ୍ତ ତାକୁ ସ୍କୁଲ୍‌କୁ ପଠାଇବା ଉଚିତ ନୁହେଁ । ବରଂ ତାକୁ ୪-୫ ବର୍ଷ ହେଲାପରେ ସ୍କୁଲ୍‌ରେ ଭର୍ତ୍ତିକଲେ ଅଧିକ ଉପକାର ମିଳେ ।

ଅବଶ୍ୟ ୩ ବର୍ଷ ବୟସ ହେବାବେଳକୁ ପିଲା ସ୍କୁଲ୍‌କୁ ଗଲେ, କେତେକ ଦୃଷ୍ଟିରୁ ଭଲ । କିନ୍ତୁ ତାହା ପାଠ ପଢ଼ାଉଥିବା ସ୍କୁଲ୍ ନହୋଇ ଖେଳସ୍କୁଲ୍ ବା 'ପ୍ଲେ-ସ୍କୁଲ୍' ହୋଇଥିବା ଦରକାର । କାରଣ ଏ' ପ୍ରକାରର ସ୍କୁଲ୍ ପାରମ୍ପରିକ ସ୍କୁଲ୍‌ଠାରୁ ଅଲଗା । ଖେଳ-ସ୍କୁଲ୍‌ରେ ଖେଳ ଉପରେ ପ୍ରାଧାନ୍ୟ ଦିଆଯାଏ ଓ ଖେଳକୁ ମାଧ୍ୟମ ରୂପେ ବ୍ୟବହାର କରି ଅଳ୍ପ କିଛି ପାଠ ପଢ଼ାଯାଏ । ତେଣୁ ପିଲା ସ୍କୁଲ୍‌କୁ ବହିଖାତା ନେଇ ଯାଏନି ।

ତେବେ ପ୍ରଶ୍ନ ଉଠେ ଯେ ପିଲା ଯଦି ଖେଳିବା ପାଇଁ ସ୍କୁଲ୍‌କୁ ଯିବ, ତେବେ ତିନି ବର୍ଷ ପୂର୍ବରୁ ଗଲେ କ୍ଷତି କଅଣ ? ଏହାର କାରଣ ହେଲା, ତିନିବର୍ଷ ପୂର୍ବରୁ ବାପମା' ଓ ପରିବାରର ଅନ୍ୟ ସଦସ୍ୟମାନଙ୍କୁ ଛାଡ଼ି ସେ ଅନ୍ୟମାନଙ୍କର ବିଶେଷ ସାନ୍ନିଧ ଲୋଡ଼ି ନଥାଏ । ୩ ବର୍ଷର ହୋଇଗଲେ ଘରେ ରହି ରହି ତା'ଠାରେ ବିରକ୍ତି ଜାତ ହୁଏ । ଫଳରେ ସେ ସାଙ୍ଗସାଥୀ ଚାହେଁ । ସେମାନଙ୍କ ସହ ଖେଳିବା ଓ ହସକୌତୁକ କରିବାର ମଜା ଉପଭୋଗ କରିବାକୁ ଇଚ୍ଛା କରେ । ଏହି ଦୃଷ୍ଟିରୁ ଖେଳ-ସ୍କୁଲ୍ ବେଶ୍ ଉପଯୋଗୀ ।

ଏହାଛଡ଼ା ସ୍କୁଲ୍‌କୁ ଗଲେ ହିଁ ସେ 'ସ୍କୁଲ୍' ବିଷୟରେ ପ୍ରତ୍ୟକ୍ଷ ଧାରଣା ଅର୍ଜନ କରିଥାଏ । ଅନ୍ୟମାନଙ୍କ ସହ ସେ ଭାବର ଆଦାନପ୍ରଦାନ କରିବାକୁ ଶିଖେ । ଶିଖେ ଶୃଙ୍ଖଳା ଓ ପାରସ୍ପରିକ ସାମାଜିକ ସହଯୋଗ । ତାହାଛଡ଼ା ସେ ଉପଭୋଗ କରିଥାଏ କିଛି ସ୍ୱାଧୀନତା ମଧ୍ୟ ।

କେବଳ ସେତିକି ନୁହେଁ । ସ୍କୁଲ୍‌ରେ ସେ ପରିଚିତ ହୁଏ ଅକ୍ଷରଗୁଡ଼ିକ ସହ । ଅକ୍ଷରଗୁଡ଼ିକ ଲେଖିବା ଓ ଉଚ୍ଚାରଣ କରିବା ଦ୍ୱାରା ତାହାଠାରେ ଜାତ ହୁଏ 'ଶିକ୍ଷିତ' ବୋଲେଇବାର ସନ୍ତୋଷ ।

କିନ୍ତୁ ତା' ବୟସର ଅନ୍ୟମାନେ ସ୍କୁଲ୍‌କୁ ଯାଉଥିବା ବେଳେ ସେ ଘରେ ବସିଲେ ସେ ଏହାର କାରଣ ଖୋଜେ । କାରଣ ଜାଣିବା ପାଇଁ ବାପମା'ଙ୍କୁ ପଚାରେ । ତା' ନିଜ ଭାବନାରେ ସେ କଳ୍ପନା କରିବସେ ଯେ ତାହାଠାରେ ହୁଏତ କୌଣସି ସମସ୍ୟା ଥିବାରୁ ତା' ପାଇଁ ସ୍କୁଲ୍ ଯିବା ମନା !

ବାପମା'ଙ୍କ ଦୃଷ୍ଟିକୋଣରୁ ବିଚାର କଲେ ପିଲା ସ୍କୁଲ୍‌କୁ ଗଲେ ସେମାନେ ମଧ୍ୟ ଅନ୍ୟ ପାରିବାରିକ କାମଧନ୍ଦା ପାଇଁ ସମୟ ପାଇଥାନ୍ତି ।

ପିଲାକୁ ପାଞ୍ଚବର୍ଷ ହେବା ପର୍ଯ୍ୟନ୍ତ ସେ ଖେଳ ସ୍କୁଲ୍‌ରେ ରହିଲେ ଭଲ । ତା'ପରେ ତାକୁ ଉପର ସ୍କୁଲ୍‌ରେ ଭର୍ତ୍ତି କରାଇବା ଉଚିତ । କାରଣ ଉପର ସ୍କୁଲ୍‌ରେ ସେ ପଢ଼ି ଶିଖିବ, ଲେଖି ଶିଖିବ ଓ ଅଙ୍କ ବା ଗଣିତ ସହ ପରିଚିତ ହେବ । ହାତ ଓ ଆଙ୍ଗୁଠିଗୁଡ଼ିକର ସୂକ୍ଷ୍ମ ମାଂସପେଶୀରେ ନିୟନ୍ତ୍ରଣ କ୍ଷମତା ନ ଆସିବାଯାଏ, ଆଖି ଓ ହାତର ସମନ୍ୱିତ କ୍ରିୟା ପ୍ରକାଶ ନ ପାଇବାଯାଏ କି ବୁଝି ପାରିବାର ସମାର୍ଥ୍ୟ ବିକାଶ ଲାଭ ନ କରିବା ଯାଏ, ତାକୁ ଉପର କ୍ଲାସ୍‌ରେ ଭର୍ତ୍ତିକଲେ କିଛି ଫାଇଦା ମିଳେନାହିଁ । ବରଂ ତାହା କିଛି କ୍ଷତି କରିଥାଏ । ଛଅବର୍ଷ ବୟସ ପୂର୍ବରୁ ଶିଶୁଠାରେ ଏହିସବୁ ସାମର୍ଥ୍ୟ ଆସିନଥିବାରୁ ତା'କୁ ଉପର କ୍ଲାସ୍‌ରେ ବସେଇବା ଆଦୌ ଉପକୂଳ ନୁହେଁ । ହୁଏତ ସେ ୭ ବର୍ଷରେ ସ୍କୁଲ୍‌କୁ ଯାଇପାରେ । ଗୋଟିଏ ବର୍ଷର ବ୍ୟବଧାନ ତା'ର ଭବିଷ୍ୟତକୁ ଓଲଟପାଲଟ କରିଦେବ ନାହିଁ । କିନ୍ତୁ ଅଳ୍ପ ବୟସରେ ସ୍କୁଲ୍‌ରେ ଭର୍ତ୍ତି ହୋଇ ସେ ଯଦି ପାଠକୁ ପାରିଲାନି, ଜାଣିବା ପାଇଁ ଅହରହ ଚେଷ୍ଟା ଚଳେଇ ଚାଲିଲା, ସାଙ୍ଗସାଥୀମାନଙ୍କଠାରୁ ପଛରେ ପଡ଼ିଗଲା, ଏହାର ମନସ୍ତାତ୍ତ୍ୱିକ ପ୍ରତିକୂଳ ପ୍ରଭାବ ତାକୁ ସାରାଜୀବନ ଭୋଗିବାକୁ ପଡ଼ିପାରେ ।

**ପ୍ର : ତିନିବର୍ଷ ବୟସର ପିଲାମାନଙ୍କ ପାଇଁ କେଉଁ ପ୍ରକାରର ସ୍କୁଲ୍ ଅଧିକ ଉପଯୋଗୀ ?**

ଉ: ପୂର୍ବରୁ କୁହାଗଲା ଯେ 'ପ୍ଲେ-ସ୍କୁଲ୍' ବା ଖେଳ-ସ୍କୁଲ୍ ହିଁ ସେମାନଙ୍କ ପାଇଁ ବେଶୀ ହିତକର । କାରଣ ଏ' ଧରଣର ସ୍କୁଲ୍‌ରେ ପାରମ୍ପରିକ ପାଠପଢ଼ା ପ୍ରତି ଆଦୌ ଗୁରୁତ୍ୱ ଦିଆଯାଏ ନାହିଁ । କେବଳ ଅଳ୍ପ କେଇଘଣ୍ଟା ପାଇଁ ଘର ଛାଡ଼ିବା ବ୍ୟତୀତ ତାକୁ ମିଳିଯାଏ ତା'ର ମନଲାଖି ପରିବେଶ । ଏଠାରେ ସେ ଖେଳନାଗୁଡ଼ିକ ସହ ଖେଳିବାର ସ୍ୱାଧୀନତା ପାଏ । ସ୍କୁଲ୍ ପରିସରରେ ଦୋଳିରେ ଝୁଲେ, ନାଗର ଦୋଳିରେ ଘୂରେ, ଶିଢ଼ିରେ ଉଠି ତଳକୁ ଖସେ, ରଙ୍ଗବେରଙ୍ଗ କ୍ରେୟନ୍‌ରେ ଛବି ଆଙ୍କେ, ପଶୁପକ୍ଷୀଙ୍କ ରଙ୍ଗିନ

ଚିତ୍ର ଦେଖି ଖୁସିହୁଏ, ଏପରିକି ପଞ୍ଜୁରିରେ ରଖାଯାଇଥିବା ନାନାରଙ୍ଗର ଚଢ଼େଇ ଏବଂ ଠେକୁଆକୁ ଜିଅନ୍ତା ଦେଖିବାକୁ ପାଇ ଉଲ୍ଲସିତ ହୋଇଉଠେ । ଖେଳ ମାଧ୍ୟମରେ ତଥା ମନୋରଞ୍ଜନ ମାଧ୍ୟମରେ ହିଁ ଘଟେ ତା'ର ଅକ୍ଷର ପରିଚୟ । ପ୍ଲେ-ସ୍କୁଲ୍‌ରେ ଶିଶୁର ସ୍ୱାଧୀନତା ବଜାୟ ରଖିବା ହେଉଛି ମୁଖ୍ୟ, ତା' ଉପରେ ଶୃଙ୍ଖଳା ତଥା ନିୟମ ଜାହିର କରିବା ହେଉଛି ଗୌଣ । ଖେଳିବାର ମଜା ନେବା ପାଇଁ ସାଙ୍ଗସାଥୀମାନଙ୍କର ମଧ୍ୟ ଅଭାବ ନଥାଏ ଏଠାରେ । ସ୍କୁଲ୍‌ର ଶିକ୍ଷିକାମାନେ ବାସ୍ତବରେ ଶିକ୍ଷିକାର ଭୂମିକା ନିର୍ବାହ କରନ୍ତି ନାହିଁ, ସେମାନେ ନିର୍ବାହ କରିଥାନ୍ତି ମା'ର ଭୂମିକା । ତେଣୁ ପିଲାମାନେ ସେମାନଙ୍କୁ ଭୟ କରିବାର ପ୍ରଶ୍ନ ହିଁ ଉଠେ ନାହିଁ କି ପିଲାମାନେ କୌଣସି ଚାପ ଅନୁଭବ କରିବାର ପ୍ରଶ୍ନ ଉଠେ ନାହିଁ ।

ଏ' ପ୍ରକାରର ପରିବେଶ ପିଲାମାନଙ୍କର ସକାରାତ୍ମକ ତଥା ଅନୁକୂଳ ବିକାଶ ପାଇଁ ଅତି ଉପଯୋଗୀ । କାରଣ ପିଲାର ମନ କଡ଼ା ଶୃଙ୍ଖଳାକୁ ଗ୍ରହଣ କରିପାରେ ନାହିଁ । ବରଂ କଡ଼ା ଶୃଙ୍ଖଳାକୁ ଗୁରୁତ୍ୱ ଦେଉଥିବା ସ୍କୁଲ୍ ପିଲାଠାରେ ସ୍କୁଲ୍ ପ୍ରତି ଆତଙ୍କ ତଥା ଘୃଣା ଜାତ କରାଇବାର କାରଣ ରୂପେ ଉଭା ହୋଇପଡ଼େ । ତେବେ ଯେଉଁ ସ୍କୁଲ୍‌ରେ ଖେଳ-ସ୍କୁଲ୍ ସ୍ତରରୁ ଆରମ୍ଭ କରି କଲେଜ୍ ସ୍ତରର ଶିକ୍ଷା ଦେବାର ବ୍ୟବସ୍ଥା ଥାଏ, ସେପରି ସ୍କୁଲ୍‌କୁ ପସନ୍ଦ କରିବା ଭଲ ।

ପିତାମାତାମାନେ ମନେ ରଖିବା ଦରକାର ଯେ ପାଠପଢ଼ା, ଖେଳ, ସଙ୍ଗୀତ, ନୃତ୍ୟ, ଚିତ୍ରାଙ୍କନ, ତର୍କ ପ୍ରତିଯୋଗିତା ଇତ୍ୟାଦି ବିବିଧ ବିଷୟରେ ସେମାନଙ୍କର ସନ୍ତାନ ବ୍ୟୁତ୍ପତ୍ତି ଲାଭ କରିବା ସ୍ୱାଗତଯୋଗ୍ୟ ସତ, ହେଲେ, ଯେଉଁ ସ୍କୁଲ୍ ଛାତ୍ରର ଅନ୍ତର୍ନିହିତ ସାମର୍ଥ୍ୟର ବିକାଶ ପାଇଁ ପଦକ୍ଷେପ ନିଏ ଏବଂ ତାହାଠାରେ ଆତ୍ମବିଶ୍ୱାସ, ଆତ୍ମ-ମର୍ଯ୍ୟାଦା, ମୂଲ୍ୟବୋଧ, ସାମାଜିକତା ଓ ବ୍ୟକ୍ତିତ୍ୱର ବିକାଶକୁ ଅଗ୍ରାଧିକାର ଦେଇଥାଏ, ସେପରି ସ୍କୁଲ୍‌କୁ ନିର୍ବାଚନ କରିବା ହିଁ କାମ୍ୟ ।

ସ୍ୱାଧୀନତା ପ୍ରଦାନ ମାଧ୍ୟମରେ ଶୃଙ୍ଖଳା ଶିକ୍ଷା ଦେବାର ଧାରା ଅଧିକ ମଙ୍ଗଳକର । କାରଣ ଏ' ପ୍ରକାରର ଶୃଙ୍ଖଳା ଆପେ ଆପେ ଛାତ୍ର ଦ୍ୱାରା ଗ୍ରହଣୀୟ ହୋଇଥାଏ ଓ ସେ ଏହାକୁ ବିରୋଧ କରିବା କି ଏହା ବିରୋଧରେ ପ୍ରତିକ୍ରିୟା ପ୍ରକାଶ କରିବାର ପ୍ରଶ୍ନ ଉଠେନାହିଁ । ଶିକ୍ଷକଶିକ୍ଷୟିତ୍ରୀ ଓ ଛାତ୍ରଛାତ୍ରୀ ଗୋଟିଏ ପରିବାରର ସଦସ୍ୟ ରୂପେ ବିବେଚିତ ହୋଇପାରିଲେ ହିଁ ସ୍କୁଲ୍‌ର ସଫଳତା ପ୍ରମାଣିତ ।

**ପ୍ର. : ଉପର ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେବାପାଇଁ ପରୀକ୍ଷାର ବ୍ୟବସ୍ଥା ରହିବା ଉଚିତ କି ?**

ଉ : କୌଣସି ଛାତ୍ରଛାତ୍ରୀ କି ସେମାନଙ୍କର ପିତାମାତା ପରୀକ୍ଷିତ ହେବାକୁ ଚାହାନ୍ତି ନାହିଁ । କାରଣ ପରୀକ୍ଷାର ଚାପ କାହାରି ପାଇଁ ବି ଉପଭୋଗ୍ୟ ନୁହେଁ । ତେଣୁ ତଳ ଶ୍ରେଣୀଗୁଡ଼ିକରୁ ପରୀକ୍ଷା ବ୍ୟବସ୍ଥା ଉଠେଇ ଦେବା ଭଲ । ପରୀକ୍ଷା ରହିଲେ ପାସ୍ ଫେଲ୍ ରହିବ ହିଁ ରହିବ, ରହିବ ଶ୍ରେଣୀ ବିଭାଗ । ଯେଉଁ ଛାତ୍ର ପରୀକ୍ଷାରେ କୃତିତ୍ୱ ପ୍ରଦର୍ଶନ କରିନଥାଏ ସେ ବାପମା' ଓ ଶିକ୍ଷକମାନଙ୍କ ଲାଞ୍ଛନାର ଶିକାର ହୋଇଥାଏ । ଫଳରେ ତାହାଠାରେ ଜାତ ହୁଏ ବିଷାଦ ଓ ହୀନମନ୍ୟତା । ଶିକ୍ଷା ଗ୍ରହଣକୁ ଡିଗ୍ରୀ ନିର୍ଭରଶୀଳ କରିବାରୁ ହିଁ ଆମ ପିଲାମାନେ ଜ୍ଞାନ ଅର୍ଜନକୁ ଉପଭୋଗ କରିପାରୁନାହାନ୍ତି ।



# ସ୍କୁଲ୍‌କୁ ଯିବାପାଇଁ ଡର

"ଆମର ପୂର୍ବପୁରୁଷମାନେ ସେମାନଙ୍କର ବିଜ୍ଞତା ବଳରେ ସ୍ଥିର କରିନେଲେ ଯେ ପିଲାମାନେ ହେଉଛନ୍ତି ସେମାନଙ୍କ ଉପରେ ଏକ ଅସ୍ୱାଭାବିକ ବୋଝ । ତେଣୁ ସେମାନେ ଗଢ଼ିଦେଲେ ସ୍କୁଲ୍-ରୂପକ ବନ୍ଦିଶାଳା । ବନ୍ଦିଶାଳାରେ ଖଞ୍ଜିଦେଲେ ଶିକ୍ଷା ନାମକ ନିର୍ଯାତନା । ତୁମ୍ଭେମାନେ ପିତାମାତା ଓ ବିଭିନ୍ନ ସଂସ୍ଥାର କାମରେ ଲାଗିପାରୁ ନଥିବାରୁ ତୁମ୍ଭମାନଙ୍କୁ ସ୍କୁଲ୍‌ରେ ଭର୍ତ୍ତି କରିଦିଆଯାଉଛି ।"

–ଜନ୍ ଅପ୍‌ଡାଇକ୍

ପ୍ର : ପିଲାମାନଙ୍କଠାରେ ସ୍କୁଲ୍‌ପ୍ରତି ପ୍ରୀତି ଜାଗ୍ରତ କରାଯାଇପାରିବ କିପରି ? ସେମାନେ ସ୍କୁଲ୍‌ର ନାଁ ଶୁଣିଲେ ଛାନିଆ ହୋଇପଡୁଛନ୍ତି କାହିଁକି ?

ଉ : କୌଣସି ପିଲା ଘର ଓ ବାପମା'ଙ୍କୁ ଛାଡ଼ି ସ୍କୁଲ୍‌କୁ ଯିବାପାଇଁ ଚାହାନ୍ତି ନାହିଁ । ତେଣୁ ବାପମା' ପ୍ରଥମରୁ ପିଲାମାନଙ୍କଠାରେ ସ୍କୁଲ୍ ପ୍ରତି ଏକ ଆକର୍ଷଣ ଜାଗ୍ରତ କରାଇବା ଦରକାର । ପିଲାମାନଙ୍କୁ ବୁଝେଇ କହିବା ଉଚିତ ଯେ ପ୍ରତ୍ୟେକ ବ୍ୟକ୍ତି ସ୍କୁଲ୍‌କୁ ଯାଇଥିଲେ ଏବଂ ସେମାନେ ମଧ୍ୟ ପିଲାଥିଲା ବେଳେ ସ୍କୁଲ୍ ଯାଉଥିଲେ । ପିଲାଏ ବାପମା'ଙ୍କୁ ବିଶ୍ୱାସ କରୁଥିବାରୁ ବାପମା'ଙ୍କ ଭଳି ହେବା ନିମନ୍ତେ ସେମାନେ ମନେ ମନେ କାମନା ପୋଷଣ କରିଥାନ୍ତି ଓ ବାପମା'ଙ୍କୁ ଆଦର୍ଶ ଭାବି ସ୍କୁଲ୍‌କୁ ଯିବା ନିମନ୍ତେ ଆଗ୍ରହ ପୋଷଣ କରିପାରନ୍ତି ।

ସେମାନଙ୍କୁ ଏହା ମଧ୍ୟ ବୁଝେଇ କହିବା ଦରକାର ଯେ ସ୍କୁଲ୍‌କୁ ଗଲେ ଅଳ୍ପ କେତେ ସମୟ ପାଇଁ ସେମାନଙ୍କୁ ଘର ବାହାରେ ସ୍କୁଲରେ କଟାଇବାକୁ ପଡ଼ିବ । ଏପରି କହିବା ଫଳରେ ସେମାନେ ବାହାରେ ରହିବା ପାଇଁ ମାନସିକ ସ୍ତରରେ ପ୍ରସ୍ତୁତ ହୋଇଚାଲନ୍ତି । ସ୍କୁଲ୍ ଛୁଟି ପରେ ବାପା କିମ୍ବା ମା' ସ୍କୁଲ୍‌କୁ ଯାଇ ତାଙ୍କୁ ଘରକୁ ଆଣିବାର ପ୍ରତିଶ୍ରୁତି ମଧ୍ୟ ଦେବାକୁ ପଡ଼ିବ । ଏହା କହିଲେ ସେମାନେ ନିଜକୁ ଏକୁଟିଆ କି ଅସହାୟ ମନେ କରିବେ ନାହିଁ । କାରଣ ସେମାନଙ୍କର ଧାରଣା ଥାଏ ଯେ ସେମାନଙ୍କୁ ଘରେ ରଖିବା ନିମନ୍ତେ

ପିତାମାତା ଚାହୁଁନଥିବାରୁ ସ୍କୁଲ୍‌କୁ ପଠେଇ ଦେଉଛନ୍ତି ଓ ସେଠାରୁ ଆଉ ସେମାନଙ୍କୁ ଫେରେଇ ଆଣିବେନି !

ତେବେ ସ୍କୁଲ୍ ବିଷୟରେ ପିଲାମାନଙ୍କୁ କିଛି ମିଛ କହିବେନି, ଅବାସ୍ତବ କଥା କହିବେନି କି ଅତିରଞ୍ଜନ କରି ସ୍କୁଲ୍ ସମ୍ପର୍କରେ କୌଣସି ରଙ୍ଗିନ୍ ଚିତ୍ର ଦେବେନି । କାରଣ ଆପଣମାନଙ୍କ କଥା ଓ ପିଲାର ପ୍ରତ୍ୟକ୍ଷ ଅନୁଭୂତିରେ ପାର୍ଥକ୍ୟ ଥିଲେ ପିଲା ଆପଣମାନଙ୍କ କଥାକୁ ଆଉ ବିଶ୍ୱାସ କରିବ ନାହିଁ । ଯେଉଁ ସ୍କୁଲ୍‌କୁ ପିଲାକୁ ପଠାଇବେ, ସେହି ସ୍କୁଲ୍‌ର ପ୍ରକୃତ ସ୍ଥିତି ବିଷୟରେ ହିଁ ପିଲାକୁ ଅବଗତ କରାଇବେ ।

ସ୍କୁଲ୍‌କୁ ଯିବା ପାଇଁ ପିଲା ପ୍ରଥମେ ପ୍ରଥମେ ଛାନିଆ କି ଉତ୍କଣ୍ଠିତ ହୋଇପଡ଼ିବାରେ ଅସ୍ୱାଭାବିକତା ନାହିଁ । କାରଣ ତା' ପାଇଁ ତାହା ଏକ ଅଜଣା ଜାଗା ଓ ସେଠାକାର ଶିକ୍ଷକଶିକ୍ଷିକା ଏବଂ ଅନ୍ୟମାନେ ମଧ୍ୟ ଅଜଣା । ପ୍ରଥମ ଦିନ ହୁଏତ କୌଣସି ସମସ୍ୟା ଉପୁଜି ନପାରେ । କିନ୍ତୁ ପରେ ପରେ ସ୍କୁଲ୍‌କୁ ଯିବା ନିମନ୍ତେ ସେ ଅମଙ୍ଗ ହୋଇପାରେ । ଏପରିକି ସନ୍ତାନକୁ ସ୍କୁଲ୍‌ରେ ଛାଡ଼ିସାରିଲା ପରେ ମା'ର ମଧ୍ୟ ଉତ୍କଣ୍ଠା ବଢ଼ିଯାଏ । ମା'ର ଉତ୍କଣ୍ଠାକୁ ସନ୍ତାନ ଠିକ୍ ପଢ଼ିପାରେ ଓ କିଛି ଗୋଟାଏ ଅଘଟଣ ଘଟିବାକୁ ଯାଉଛି ବୋଲି ସନ୍ଦେହ କରିପାରେ । ତେଣୁ ବାପା କିମ୍ବା ମା' ହସି ହସି ପିଲାକୁ ନେଇ ସ୍କୁଲ୍‌ରେ ଛାଡ଼ିଲେ ଓ ସ୍କୁଲ୍ ଛୁଟି ପରେ ସେଠାରେ ଉପସ୍ଥିତ ରହି ଘରକୁ ଆଣିଲେ, ତା'ର ସନ୍ଦେହ କମିଯାଏ ।

କେତେକ ପିଲା ସ୍କୁଲ୍‌କୁ ଯିବା ପୂର୍ବରୁ ଖୁବ୍ କନ୍ଦାକଟା କରନ୍ତି । ମା'ର କାନି ଟାଣି ଧରି କାନି ଛାଡ଼ନ୍ତି ନାହିଁ । "ମୋ ପେଟ କାଟୁଛି" ବୋଲି ବାହାନା କାଢ଼ନ୍ତି । ପିଲାପକ୍ଷେ ଏପରି ପ୍ରତିକ୍ରିୟା ସ୍ୱାଭାବିକ ସତ, ହେଲେ ବାପମା' ଏଥିରେ ଭଳିଯିବା ଉଚିତ ନୁହେଁ । "ଆଛା, ଆଜି ପଛେ ନ ଯା, ଆସନ୍ତାକାଲି ଯିବୁ ତ ?" – ବୋଲି ପଚାରି ପ୍ରତିଶ୍ରୁତି ଆଦାୟ କରିବାର ମଧ୍ୟ କିଛି ମାନେ ହୁଏନା । କାରଣ ଆସନ୍ତାକାଲି ମଧ୍ୟ ଠିକ୍ ସମାନ ଅବସ୍ଥା ଉପୁଜିବ । ତେଣୁ ପିଲାର ସ୍କୁଲ୍‌କୁ ଯିବାର ପ୍ରଥମ କେଇଦିନ ନିଜର ଆବେଗ ସତ୍ତ୍ୱେ ବାପମା' ନିଜ ନିଷ୍ପତ୍ତିରେ ତଥା ପିଲାକୁ ସ୍କୁଲ୍ ପଠାଇବାରେ ଦୃଢ଼ତା ଅବଲମ୍ବନ କରିବା ବାଞ୍ଛନୀୟ ।

ତା'ର କନ୍ଦାକଟା, ପେଟ କାମୁଡ଼ିବାର ବାହାନା ଇତ୍ୟାଦି କିଛି କାମ ଦେଉନି ବୋଲି ଜାଣିନେଲେ କିଛି ଦିନ ପରେ କୌଣସି ସମସ୍ୟା ସୃଷ୍ଟି ନକରି ସେ ଆପେ ଆପେ ସ୍କୁଲ୍‌କୁ ଯିବା ଆରମ୍ଭ କରିଦେବ । ତେବେ କେଉଁ କେଉଁ ପିଲା କ୍ଷେତ୍ରରେ ଏଥିପାଇଁ ଅଳ୍ପ

କେଇଦିନ ଲାଗିପାରେ ତ ଆଉ କାହା କାହା କ୍ଷେତ୍ରରେ ପିଲାଟି ସ୍କୁଲ୍‌କୁ ଗ୍ରହଣ କରିନେବାର ଅବଧି ଦୁଇ ତିନିମାସ ହୋଇଯାଇପାରେ । ହେଲେ ବାପମା' ସେମାନଙ୍କ ଦୃଢ଼ ମନୋଭାବକୁ କୋହଳ କରିବା ଉଚିତ ନୁହେଁ ଓ ଏ' ସମ୍ପର୍କରେ ଶିକ୍ଷକଙ୍କ ସହ ଯୋଗାଯୋଗ ରଖିବା ମଧ୍ୟ ଉଚିତ । କିନ୍ତୁ ତା'ର କନ୍ଦାକଟା ଓ ଅସୁସ୍ଥତାର ବାହାନା ପାଖରେ ଥରେ ମୁଣ୍ଡ ନୁଆଁଇ ଦେଲେ ସୁଯୋଗ ହାତଛଡ଼ା ହୋଇଯିବ ।

ତେବେ ପିଲା ସ୍କୁଲ୍‌ରେ ଅନୁପସ୍ଥିତ ରହିବା ଏବଂ ସ୍କୁଲ୍‌କୁ ଯିବାପାଇଁ ନ ଚାହିଁବା ଭିତରେ ପାର୍ଥକ୍ୟ ଅଛି । ପ୍ରଥମୋକ୍ତ କ୍ଷେତ୍ରରେ ପିଲା ସ୍କୁଲ୍‌କୁ ଯିବ ବୋଲି ଘରୁ ବାହାରିଯାଏ; କିନ୍ତୁ ସ୍କୁଲ୍‌କୁ ନ ଯାଇ ବାହାରେ ଖେଳାଖେଳି କରି କିମ୍ବା ଅନ୍ୟ ଠକ ପିଲାଙ୍କ ସହ ସମୟ କଟେଇ ସାରି ସ୍କୁଲ୍‌ରୁ ଫେରିବା ସମୟ ବେଳକୁ ଘରେ ପହଞ୍ଚିଯାଏ । ହେଲେ ଶେଷୋକ୍ତ କ୍ଷେତ୍ରରେ ପିଲା ସ୍କୁଲ୍‌କୁ ଯିବା ପାଇଁ ଡରେ ଏବଂ ଘରେ ରହିବା ପାଇଁ ଜିଦ୍ କରେ । ତେଣୁ ସ୍କୁଲ୍‌ରେ ତା'ର ଅନୁପସ୍ଥିତି ବିଷୟ ପରିବାରରେ ସମସ୍ତେ ଜାଣିଥାନ୍ତି । କିନ୍ତୁ ଘରୁ ସ୍କୁଲ୍‌କୁ ଯିବା ଉଦ୍ଦେଶ୍ୟରେ ବାହାରି ସ୍କୁଲ୍‌କୁ ନଯାଇ ବାହାରେ ସମୟ ବିତେଇଲେ ସ୍କୁଲ୍‌ରେ ତା'ର ଅନୁପସ୍ଥିତି ସହଜରେ ଜଣାପଡ଼େନି । ପରେ ଅବଶ୍ୟ ତା'ର ଏହି ଠକାମି ଧରାପଡ଼ିଯାଏ । ଟିକିଏ ବଡ଼ ପିଲାଙ୍କ କ୍ଷେତ୍ରରେ ଏପରି ଠକାମି ପରିଲକ୍ଷିତ ହୋଇଥାଏ ।

ପୁଣି ପ୍ରଶ୍ନ ଉଠେ ଯେ ପିଲାମାନେ ସ୍କୁଲ୍‌ର ନାଁ ଶୁଣିଲେ ଛାନିଆ ହୋଇ ପଡ଼ନ୍ତି କାହିଁକି ? ସ୍କୁଲ୍‌କୁ କାହିଁକି ସେମାନଙ୍କର ଭୟ ?

ନିମ୍ନଲିଖିତ କାରଣ ଯୋଗୁ ପିଲାଏ ସ୍କୁଲ୍ ଯିବାପାଇଁ ଡରିଥାନ୍ତି –

**୧. ବାପମା'ଙ୍କୁ ଛାଡ଼ିଯାଉଥିବାର ଉତ୍କଣ୍ଠା :**

ବାପମା'ଙ୍କୁ ଛାଡ଼ି ଅନ୍ୟ କୌଣସି ସ୍ଥାନରେ ରହିବା ପିଲାପାଇଁ ନୂଆ । ତେଣୁ ସ୍କୁଲ୍ ଭଳି ଏକ ଅଜଣା ଜାଗାରେ ଅଜଣା ଲୋକଙ୍କ ଗହଣରେ ରହିବା ପାଇଁ ସେ ଭୟ କରିବା ସ୍ୱାଭାବିକ । ଏହି କାରଣରୁ ସେ ସ୍କୁଲ୍‌କୁ ଯିବାପାଇଁ ମଙ୍ଗେ ନାହିଁ ।

**୨. ମାନସିକ ଓ ଆବେଗିକ ପ୍ରସ୍ତୁତିର ଅଭାବ :**

ସ୍କୁଲ୍ ବୋଇଲେ କଅଣ ଓ ସେଠାରେ କେଉଁମାନେ ଥାଆନ୍ତି ଏବଂ କଅଣ ସବୁ କରନ୍ତି ଏ ସମ୍ପର୍କରେ ପୂର୍ବରୁ ପିଲାର କୌଣସି ମାନସିକ ଓ ଆବେଗିକ ପ୍ରସ୍ତୁତି ନଥାଏ । ତେଣୁ ତାକୁ ଆଗରୁ ଯଥେଷ୍ଟ ଧାରଣା ଦେଇସାରି ସ୍କୁଲ୍‌କୁ ପଠେଇବା ଉଚିତ ।

**୩. ଶିକ୍ଷକଙ୍କୁ ନେଇ ସମସ୍ୟା :**

ସବୁ ଶିକ୍ଷକ ଛାତ୍ରବତ୍ସଳ ନୁହନ୍ତି କି ପ୍ରଥମଥର ପାଇଁ ସ୍କୁଲର ଦ୍ୱାର ମାଡୁଥିବା ପିଲାଙ୍କ ମନସ୍ତତ୍ତ୍ୱ ପ୍ରତି ସଚେତନ ନୁହନ୍ତି । ତେଣୁ ଅନ୍ୟ କୌଣସି ପିଲାକୁ ଶିକ୍ଷକ ବାଡ଼ାଉଥିବାର କି ଗାଳି ଦେଉଥିବାର ଦେଖିଲେ ନୂଆ ହୋଇ ସ୍କୁଲ୍‌କୁ ଯାଉଥିବା ପିଲା ଭୟ ପାଇଯିବାରେ ବିଚିତ୍ରତା ନାହିଁ । ସେ ଧାରଣା କରିନିଏ ଯେ ସ୍କୁଲ୍ ହେଉଛି ଏପରି ଏକ ସ୍ଥାନ ଯେଉଁଠାରେ ଶିକ୍ଷକମାନେ ପିଲାମାନଙ୍କୁ ପିଟନ୍ତି ଓ ଗାଳି ଦିଅନ୍ତି ।

**୪. ଦୁଷ୍ଟ ପିଲାଙ୍କ ନିର୍ଯାତନା :**

ସ୍କୁଲ୍‌ରେ ଏପରି କେତେକ ପିଲା ଥାଆନ୍ତି ଯେଉଁମାନେ ଅନ୍ୟ ପିଲାମାନଙ୍କୁ ଡରେଇବା, ମାରିବା, ଚିଡ଼େଇବା ଇତ୍ୟାଦି କାର୍ଯ୍ୟ କରି ଆନନ୍ଦ ପାଇଥାନ୍ତି । ଏପରି ପିଲାଙ୍କ କବଳରୁ ରକ୍ଷା ପାଇବା ପାଇଁ ପିଲାଏ ସ୍କୁଲ୍‌କୁ ଯିବା ନିମନ୍ତେ ରାଜି ହୁଅନ୍ତି ନାହିଁ ।

**୫. ପାଠରେ ଖଇଚା :**

ଏପରି କେତେକ ପିଲା ଅଛନ୍ତି ଯେଉଁମାନେ ଭଲ ପଢ଼ାପଢ଼ି କରନ୍ତିନି । ଅନ୍ୟ ପିଲାଏ ପାଠରେ ଆଗେଇଗଲା ବେଳେ ଏମାନେ ପଛେଇଯାଆନ୍ତି । ଫଳରେ ଏମାନଙ୍କୁ ଶିକ୍ଷକଙ୍କ ରୋଷର ଶିକାର ହେବାକୁ ପଡ଼େ । ତେଣୁ ସେମାନେ ସ୍କୁଲ୍‌କୁ ଯିବା ନିମନ୍ତେ ଚାହାନ୍ତିନି । ପିଲାଟି କାହିଁକି ଶ୍ରେଣୀରେ ଭଲ କରୁନି ସେ ସମ୍ପର୍କରେ ଶିକ୍ଷକଙ୍କ ସହ ଓ ସ୍ଥଳ ବିଶେଷରେ ଡାକ୍ତରଙ୍କ ସହ ପରାମର୍ଶ କରିବା ଉଚିତ । ଦରକାର ପଡ଼ିଲେ ତାକୁ ଉପର କ୍ଲାସ୍‌କୁ ଉତ୍ତୀର୍ଣ୍ଣ ନକରାଇ ସେହି କ୍ଲାସ୍‌ରେ ଆଉ ଗୋଟିଏ ବର୍ଷ ରଖି ଦିଆଯାଇପାରେ ।

**୬. ଅନ୍ୟାନ୍ୟ କାରଣ :**

ବହି ପଢ଼ି ଶୁଣେଇବା, ପଦ୍ୟ ମୁଖସ୍ଥ କରି ପଢ଼ାଦେବା, ଝାଡ଼ା ପରିସ୍ରା ଯିବା ପାଇଁ ଶିକ୍ଷକଙ୍କୁ ଅନୁମତି ମାଗିବା ଇତ୍ୟାଦି କାର୍ଯ୍ୟ ମଧ୍ୟ କେତେକ ପିଲାଙ୍କ ପାଇଁ ସମସ୍ୟା ରୂପେ ଉଭା ହୋଇଥାଏ । ବୟସ୍କ ବ୍ୟକ୍ତିଙ୍କ ପାଇଁ ଏହିଭଳି ସମସ୍ୟା ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ ସିନା, କିନ୍ତୁ ନିର୍ଦ୍ଦିଷ୍ଟ ପିଲାଙ୍କ କ୍ଷେତ୍ରରେ ଏହି ସମସ୍ୟାକୁ ଉପେକ୍ଷା କରାଯାଇପାରେନା । କାରଣ ଏଗୁଡ଼ିକ ମଧ୍ୟ ପିଲାଠାରେ ଭୀତିସଞ୍ଚାର କରିପାରେ । ତେଣୁ ବଡ଼ ସାବଧାନତାର ସହ ପଚରାପଚରି କରି ପିଲାଠାରୁ ଏହି କାରଣକୁ ଆଦାୟ କରିବାକୁ ହୋଇଥାଏ ।

ସ୍କୁଲ୍‌କୁ ଯିବା ପାଇଁ ଭୟ ବିଭିନ୍ନ ଲକ୍ଷଣ ମାଧ୍ୟମରେ ପ୍ରକାଶ ପାଇପାରେ । "ମୁଁ ସ୍କୁଲ୍‌କୁ ଯିବି ନାହିଁ" ବୋଲି ସିଧାସଳଖ ବାପମା'ଙ୍କୁ ନ କହି ଅମଙ୍ଗ ହେଉଥିବା ପିଲା

'ମୋ' ପେଟ କାଟୁଛି', 'ମୋ' ମୁଣ୍ଡ ବିନ୍ଧୁଛି', 'ମୋତେ ବାନ୍ତି ମାଡୁଛି' ଇତ୍ୟାଦି ଅଭିଯୋଗ ବାଢ଼ିଥାଏ । ବିଶେଷ କରି ସକାଳେ ସ୍କୁଲ୍‌କୁ ଯିବା ସମୟ ହୋଇଗଲେ ପିଲାଏ ଏହିଭଳି ଛଳନାର ଆଶ୍ରୟ ନେଇଥାନ୍ତି । ସେମାନଙ୍କର ଅଭିଯୋଗ ସତ କି ମିଛ ତାହା ଜାଣିବା ବେଳେ ବେଳେ ସମସ୍ୟା ଜାତ କରିଥାଏ । କିନ୍ତୁ ମିଛ ବୋଲି ନିଶ୍ଚିତ ହୋଇଗଲେ ପିଲାକୁ ବାଧ୍ୟ କରି ସ୍କୁଲ୍‌କୁ ପଠାଇବା ଉଚିତ ।

**ପ୍ର : ସ୍କୁଲ୍ ପ୍ରତି ପିଲାର ଭୟକୁ ଦୂର କରାଯାଇପାରିବ କିପରି ?**

ଉ: ବାପମା'ମାନେ ମନେରଖିବା ଦରକାର ଯେ ପିଲାକୁ ସ୍କୁଲ୍‌ରେ ଅନୁପସ୍ଥିତ ରହିବା ନିମନ୍ତେ ଆଦୌ ପ୍ରଶ୍ରୟ ଦେବେନି । ନୋହିଲେ ଏହି 'ବ୍ୟାଧି'କୁ ଆରୋଗ୍ୟ କରାଯାଇପାରିବନି । ତେବେ ସେ ସ୍କୁଲ୍‌କୁ ଯିବା ନିମନ୍ତେ କାହିଁକି ମଙ୍ଗୁନାହିଁ, ଆଗେ ସେହି କାରଣ ଅନୁସନ୍ଧାନ କରିବେ । ସନ୍ତାନ ସହ ଓ ଶିକ୍ଷକଙ୍କ ସହ କଥାବାର୍ତ୍ତା ହୋଇ ଏହି କାରଣ ନିର୍ଦ୍ଧାରଣ କରିହେବ । ବାପମା'ଙ୍କୁ ଛାଡ଼ିଯିବାର ଉତ୍କଣ୍ଠାକୁ ଛାଡ଼ିଦେଲେ ଅନ୍ୟ କାରଣଗୁଡ଼ିକୁ ଦୂର କରିବା ନିମନ୍ତେ ପିତାମାତା ତୁରନ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଉଚିତ । ଏ' କ୍ଷେତ୍ରରେ ଶିକ୍ଷକଙ୍କ ସହଯୋଗ ଲୋଡ଼ିବା ଅପରିହାର୍ଯ୍ୟ ।

ପ୍ରଥମ କେଇଦିନ ଧରି ବାପ କିମ୍ବା ମା' କିମ୍ବା ଉଭୟେ ପିଲାକୁ ନେଇ ସ୍କୁଲ୍‌ରେ ଛାଡ଼ିବେ ଓ ସ୍କୁଲ୍ ଛୁଟି ପରେ ତାକୁ ସ୍କୁଲ୍‌ରୁ ଘରକୁ ଆଣିବା ନିମନ୍ତେ ଯିବେ । ତେବେ ମା' ସାଥିରେ ନ ଯାଇ ବାପା ସାଥିରେ ଗଲେ ଭଲ । କାରଣ ପିଲାର କାନ୍ଦକୁ ମା' ସହିପାରେ ନାହିଁ । କୌଣସି ପରିସ୍ଥିତିରେ ବି ଅଧାବାଟରୁ ପିଲାକୁ ଘରକୁ ଫେରେଇ ଆଣିବେନି । ଏପରି କଲେ ପିଲାଟି ବାପମା'ଙ୍କ ଏହି ଦୁର୍ବଳତାର ଫାଇଦା ନେବାପାଇଁ ଆଗେଇ ଆସିବ । ସମସ୍ୟାର ସମାଧାନ ପାଇଁ ଶିକ୍ଷକଙ୍କ ସାହାଯ୍ୟ ଲୋଡ଼ିବା ବୁଦ୍ଧିମାନର କାର୍ଯ୍ୟ ।

ତେବେ ପିଲା ଆଦୌ ରାଜି ନ ହେଲେ ତାକୁ ଅଳ୍ପ କିଛି ସମୟ ପାଇଁ ସ୍କୁଲ୍‌ରେ ରଖି ଘରକୁ ନେଇ ଆସିହେବ । ହେଲେ ଏହା ଏକ ଅସ୍ଥାୟୀ ବ୍ୟବସ୍ଥା ଓ ସବୁଦିନେ ଏପରି କରି ଚାଲିବା ଠିକ୍ ନୁହେଁ ।

ପିଲାର ଆଚାର-ଆଚରଣ ଅସ୍ୱାଭାବିକ ବୋଧହେଲେ ଡାକ୍ତରଙ୍କ ସହ ପରାମର୍ଶ କରିବା ବାଞ୍ଛନୀୟ । ଜାଣିରଖିବା ଦରକାର ଯେ ଦୀର୍ଘଦିନ ଧରି ସେ ଯେପରି ସ୍କୁଲ୍‌ରୁ ଅନୁପସ୍ଥିତ ନରହେ ।

**ପ୍ର : ପିଲା ଭଲ ପଢୁ ନଥିଲେ କଅଣ ଏହାର ପ୍ରତିକାର ?**

ଉ: ଆଗେ ଜାଣିରଖନ୍ତୁ ଯେ ଅଧିକାଂଶ ପିଲା ହେଉଛନ୍ତି ସମାନ ଭାବରେ ମେଧାବୀ; ଆପଣଙ୍କ ପିଲା ମଧ୍ୟ । ତେଣୁ ବାପମା' ଓ ପିଲା ଚାହିଁଲେ କୃତିତ୍ୱ ହାସଲ ଆଦୌ ଏକ ସମସ୍ୟା ନୁହେଁ । କିନ୍ତୁ ବହୁ ପିତାମାତା ସନ୍ତାନର କୃତିତ୍ୱ ବିଷୟରେ ଅସ୍ୱାଭାବିକ ପ୍ରତ୍ୟାଶୀ ହୋଇପଡୁଛନ୍ତି । ଆବଶ୍ୟକତାଠାରୁ ବହୁତ କିଛି ବେଶୀ ଆଶା କରୁଛନ୍ତି ପିଲାଠାରୁ । ଫଳରେ ସେ ଆପଣଙ୍କ ପ୍ରତ୍ୟାଶାକୁ ଚାହିଁ କୃତିତ୍ୱ ଦେଖାଇପାରୁ ନଥିବାରୁ ଆପଣ ନିରାଶ ହୋଇପଡୁଛନ୍ତି । କହିବାକୁ ଗଲେ ପିଲା ଭଲ ନ ପଢ଼ିବାରେ ବାପମା'ଙ୍କ ଅବଦାନ କିଛି କମ୍ ନୁହେଁ ।

ଅବଶ୍ୟ ବିଷାଦ ଓ ଉହଣ୍ଠାର ଶିକାର ହୋଇପଡ଼ିଲେ ପିଲାମାନେ ଭଲ ପଢ଼ନ୍ତି ନାହିଁ; ପୁଣି ଭଲ ନକରିବା ଯୋଗୁ ହିଁ ସେମାନଙ୍କଠାରେ ଜାତ ହୋଇଥାଏ ଏହି ବିଷାଦ ଓ ଉହଣ୍ଠା । ତେଣୁ ବିଷାଦ ଓ ଉହଣ୍ଠା ହେଉଛି ଅସଫଳତାର କାରଣ ଓ ଅସଫଳତାର ପରିଣାମ ମଧ୍ୟ ।

ତାହାଛଡ଼ା ପିଲାଠାରେ କେତେକ ଦୀର୍ଘକାଳିକ ରୋଗ ମଧ୍ୟ ସେମାନଙ୍କର ଦୁର୍ବଳ ପ୍ରଦର୍ଶନ ପାଇଁ ଦାୟୀ । ବିଶେଷ କରି ଚକ୍ଷୁଦୋଷ ଓ ଶ୍ରବଣଦୋଷ ଥିଲେ ଏପରି ପରିଣାମ ଉପୁଜିପାରେ । ଅନ୍ୟାନ୍ୟ କେତେକ ରୋଗ ମଧ୍ୟ ଏହାର କାରଣ ହୋଇପାରେ । ଏଥିପାଇଁ ଡାକ୍ତରଙ୍କୁ ପରାମର୍ଶ କରିବା ଜରୁରୀ ।

ଏତଦ୍‌ବ୍ୟତୀତ କେତେକ ପିଲା ପାଠର ବୋଝକୁ ସମ୍ଭାଳି ପାରନ୍ତି ନାହିଁ । ପାଠପଢ଼ା ସହ ନିଜକୁ ଖାପଖୁଆଇ ନପାରିଲେ ସେମାନେ ବିଷାଦଗ୍ରସ୍ତ ହୋଇପଡ଼ନ୍ତି । ଫଳରେ ପାଠପଢ଼ାରେ ଏକାଗ୍ର ହୋଇପାରନ୍ତିନି ।

ଅନ୍ୟ କେତେକ ପିଲାଙ୍କଠାରେ ଥାଏ ଆତ୍ମବିଶ୍ୱାସର ଅଭାବ । ପାଠ ଜାଣିଥିଲେ ମଧ୍ୟ 'ପାଠ ଜାଣିନି' ବୋଲି ଧାରଣା କରିନେଇ ଏମାନେ ଘାରି ହେଉଥାନ୍ତି ଓ ଭଲ ଭାବରେ ଜାଣିବା ନିମନ୍ତେ ସେହି ପୁରୁଣା ପାଠକୁ ବାରମ୍ବାର ପଢୁଥାଆନ୍ତି । ପୁରୁଣା ପାଠର ପଢ଼ାରେ ଲାଗିଥିବାରୁ ପଢ଼ା ହୋଇଚାଲିଥିବା ନୂଆ ପାଠ ପ୍ରତି ସେମାନେ ଧ୍ୟାନ ଦେଇ ପାରନ୍ତି ନାହିଁ । ଏହାର ପରିଣାମରେ ସେମାନେ ଶ୍ରେଣୀରେ ପଛୁଆ ରହିଯାନ୍ତି ।

ତେଣୁ ପିଲା ଭଲ ପଢ଼ାପଢ଼ି କରୁନଥିଲେ ବାପମା', ଶିକ୍ଷକ ଓ ଡାକ୍ତରଙ୍କ ମିଳିତ ଉଦ୍ୟମରେ ଏହାର କାରଣ ନିର୍ଦ୍ଧାରଣ କରିବା ଓ କାରଣକୁ ଚାହିଁ ପ୍ରତିକାର ବ୍ୟବସ୍ଥା କରିବା ବାଞ୍ଛନୀୟ ।

ତେବେ ବାପମା' ସର୍ବଦା ସକାରାତ୍ମକ ମନୋଭାବ ପୋଷଣ କରିବା ଓ ପିଲା ଉପରେ ସବୁଯାକ ଦୋଷ ନ ଲଦି ଧୈର୍ଯ୍ୟର ସହ ସମାଧାନ ପନ୍ଥା ଆବିଷ୍କାର କରିବା ଉଚିତ । ସନ୍ତାନଠାରୁ ଅସ୍ୱାଭାବିକ କିଛି ଆଶା କରିବା ଆଦୌ ନିରାପଦ ନୁହେଁ । ଏହା ପିଲାର ମଙ୍ଗଳ କରିବା ପରିବର୍ତ୍ତେ ଅଶେଷ କ୍ଷତି ସାଧନ କରିଥାଏ ।



# ଘରପାଠ ଓ ଟିଉସନ୍

"ଅନ୍ୟମାନେ ଖେଳରେ ମଜା ମାରୁଥିବାବେଳେ ଆମ ପିଲାଏ ଲୁହ ଗଡ଼ାଉଥାଆନ୍ତି ।"

–ଏଲିଜାବେଥ୍ ବାରେଟ୍ ବ୍ରାଉନିଂ

ପ୍ର : ପିଲାମାନଙ୍କୁ ଘରପାଠ ଦିଆଯିବା ଉଚିତ କି ?

ଉ : ପିଲାମାନଙ୍କୁ ଘରପାଠ ଦିଆନଗଲେ ଭଲ । ସେମାନେ ସକାଳ ଛଅଟା ବେଳେ ବିଛଣାରୁ ଉଠୁଛନ୍ତି । ଅଧିକାଂଶ କ୍ଷେତ୍ରରେ ଆଠଟା ବେଳକୁ ପହଞ୍ଚି ଯାଉଛନ୍ତି ସ୍କୁଲରେ । କେଉଁ ପିଲା ସ୍କୁଲରେ ଏଗାରଟା ପର୍ଯ୍ୟନ୍ତ ରହୁଛି ତ ଆଉ କିଏ ରହୁଛି ଅପରାହ୍ନ ଗୋଟାଏ କି ତିନିଟା ଚାରିଟା ପର୍ଯ୍ୟନ୍ତ । ଘରକୁ ଫେରିଲାବେଳକୁ ସେ ସମ୍ପୂର୍ଣ୍ଣ କ୍ଳାନ୍ତ । ଖେଳରେ ମଜିଯାଇ ସେ ହୁଏତ କ୍ଳାନ୍ତି ଦୂର କରିପାରନ୍ତା । କିନ୍ତୁ ତା' କାନ୍ଧରେ ସବାର ହୋଇଛି ଘରେ ପ୍ରସ୍ତୁତ କରି ସ୍କୁଲରେ ଦେଖାଇବାର ପାଠ ବା ଘରପାଠ ।

ପୁଣି ସ୍କୁଲପାଠ ଘରେ କରିବା ପାଇଁ ପିଲା ପାଖରେ ବସିବାକୁ ପଡୁଛି ବାପା କିମ୍ବା ମାଆଙ୍କୁ । ସବୁ ବାପମା' ଶିକ୍ଷିତ ନୁହନ୍ତି କି ଶିକ୍ଷିତ ହୋଇଥିଲେ ବି ଭଲ ପଢ଼େଇପାରନ୍ତି ନାହିଁ । ତାହାଛଡ଼ା ସେମାନଙ୍କର ପଢ଼େଇବା ଧାରା ସ୍କୁଲ୍ ଶିକ୍ଷକଙ୍କ ପଢ଼ାଇବା ଧାରାଠାରୁ ଭିନ୍ନ ହୋଇପାରେ ମଧ୍ୟ । ପୁଣି ବାପମା'ଙ୍କ ପାଠ ପଢ଼େଇବା ଉପରେ ପିଲାମାନଙ୍କର ମଧ୍ୟ ବିଶେଷ ଆସ୍ଥା ନଥାଏ । ଏ' କ୍ଷେତ୍ରରେ ସେମାନେ ଶିକ୍ଷକଙ୍କୁ ଅଗ୍ରାଧିକାର ଦେଇଥାନ୍ତି ।

ପୁଣି ପ୍ରଶ୍ନ ଉଠେ ଯେ ଶିକ୍ଷକମାନେ ନିଜେ ସେମାନଙ୍କର କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରୁଥିଲେ ଘରପାଠର କ'ଣ ସତରେ ଆବଶ୍ୟକତା ଅଛି ? ପିଲାର ବୟସ, କ୍ଲାସ୍ ଓ ନିର୍ଦ୍ଧାରିତ ପାଠ୍ୟକ୍ରମକୁ ଚାହିଁ ସେ ଯେତେ ସମୟ ସ୍କୁଲରେ ଅତିବାହିତ କରୁଛି, ତାହା କ'ଣ ସ୍କୁଲରେ ପାଠକାମ ସାରି ଦେବାପାଇଁ ଯଥେଷ୍ଟ ନୁହେଁ ?

ଅବଶ୍ୟ ଘରପାଠ ସପକ୍ଷରେ ଶିକ୍ଷକଶିକ୍ଷିକାମାନଙ୍କ ଯୁକ୍ତିର ବି କିଛି ସାରବତ୍ତା ଅଛି । ପିଲାମାନଙ୍କ ଉପରୁ ପାଠପଢ଼ାର ବୋଝ କମେଇ ଦେଲେ ଘରପାଠର ବୋଝ ହୁଏତ କମିଯାଇପାରେ ।

ପ୍ର : ପିଲାମାନେ ଟିଉସନ୍ ହେବା ଦରକାର କି ?

ଉ : ଏବେ ପାଠ୍ୟକ୍ରମ ବା ସିଲାବସ୍ ବଢ଼ିଚାଲିଛି । ବଢ଼ିଚାଲିଛି ବହିର ସଂଖ୍ୟା ଓ ଘରପାଠ । ତେଣୁ ଏହାକୁ ସମ୍ଭାଳିବା ପିଲାମାନଙ୍କ ପକ୍ଷେ ସମ୍ଭବ ହେଉନି । ଫଳରେ ଛାତ୍ରଛାତ୍ରୀ ଓ ପିତାମାତା ଟିଉସନ୍ ଉପରେ ଗୁରୁତ୍ୱ ଦେବାକୁ ବାଧ ହେଉଛନ୍ତି । ଅଧିକାଂଶ ବ୍ୟକ୍ତିଙ୍କ ମତରେ ଟିଉସନ୍ ହେବା ଓ ପରୀକ୍ଷାରେ କୃତିତ୍ୱ ଅର୍ଜନ କରିବା ମଧ୍ୟରେ ରହିଛି ପ୍ରତ୍ୟକ୍ଷ ସମ୍ପର୍କ ତଥା ଆନୁପାତିକ ସମ୍ବନ୍ଧ ।

କିନ୍ତ ଟିଉସନ୍ ହେବା ଦ୍ୱାରା ପିଲାର ବୋଝ ବଢ଼ିଯାଏ । ତା'ର ଖେଳ ସମୟ ସଙ୍କୁଚିତ ହୋଇ ସମୟ ବାହାରେ ଟିଉସନ୍ ପାଇଁ । କହିବାକୁ ଗଲେ କ୍ଲାନ୍ତି ଓ ବିରକ୍ତି ହୁଏ ତା'ର ସହଚର, ଆରାମ ଓ ମନୋରଞ୍ଜନ ହୁଏ ସ୍ୱପ୍ନ ।

ତାହାଛଡ଼ା ଟିଉସନ୍ ହେବା ଯୋଗୁ ଜାତ ହୁଏ ନିର୍ଭରଶୀଳତାର ସଂସ୍କୃତି । ନିଜର ସଫଳତା ପାଇଁ ପିଲା ନିଜର ପ୍ରଚେଷ୍ଟା ଓ ସୃଜନଶୀଳତା ଉପରେ ଆଶ୍ରୟ ନକରି ଟିଉସନ୍‌କୁ ଭରସା କରେ ।

ଏଥିପାଇଁ କେଉଁ ପରିବାରରେ ଟିଉସନ୍ ଶିକ୍ଷକ ନିଯୁକ୍ତ କରିବାକୁ ପଡ଼େ ତ ଅନ୍ୟ କେଉଁ ପରିବାରରେ ପିତାମାତା ହୁଅନ୍ତି ସନ୍ତାନର ଟିଉସନ୍ ଶିକ୍ଷକ । ଦୁଇଟି ସନ୍ତାନ ଥିବା ପରିବାରରେ ପିତା ଗୋଟିଏ ସନ୍ତାନକୁ ପଢ଼ାଉଥିବା ବେଳେ ମା'ଙ୍କୁ ପଢ଼ାଇବାକୁ ପଡ଼େ ଅନ୍ୟ ସନ୍ତାନକୁ ।

ଟିଉସନ୍ ହେଉଥିବା ଛାତ୍ରଛାତ୍ରୀ ଟିଉସନ୍-ନିର୍ଭରଶୀଳ ହୋଇପଡୁଥିବାରୁ ତାଙ୍କଠାରେ ଆତ୍ମବିଶ୍ୱାସ ଜାଗ୍ରତ ହୋଇପାରେନି କି ନିଜର ସାମର୍ଥ୍ୟ ବିଷୟରେ କଳନା କରିବାର ସୁଯୋଗ ମିଳେନି ସେମାନଙ୍କୁ ।

ତେଣୁ ପ୍ରଥମରୁ ହିଁ ପିତାମାତାମାନେ ସନ୍ତାନମାନଙ୍କୁ ନିଜ ପାଠପଢ଼ା ବିଷୟରେ ଆତ୍ମନିର୍ଭରଶୀଳ ହେବାପାଇଁ ଶିକ୍ଷାଦେବା ଉଚିତ । ପାଠପଢ଼ାରେ ପିଲାମାନେ ସମସ୍ୟାର ସମ୍ମୁଖୀନ ହେଲେହିଁ ବିକଳ୍ପ ବ୍ୟବସ୍ଥା ଚିନ୍ତା କରାଯାଇପାରେ ।

**ପ୍ର : ଛାତ୍ରଛାତ୍ରୀମାନେ ଶାରୀରିକ ଦଣ୍ଡ ପ୍ରଦାନ କରିବା ଉଚିତ କି ?**

ଉ : 'ବେତମାଡ଼ ନ ଖାଇଲେ ପିଲା ମଣିଷ ହେବନି' ବୋଲି ଧାରଣା ଏବେ ମଧ୍ୟ ସମାଜରେ ବଳବତ୍ତର ରହିଛି । କିନ୍ତୁ ଶାରୀରିକ ଦଣ୍ଡ ପ୍ରଦାନ ଏକ ଅମାନବୀୟ କାର୍ଯ୍ୟ । ଦଣ୍ଡ ଦେବାଦ୍ୱାରା ଶିକ୍ଷକମାନେ ସମସ୍ୟାର ଅସ୍ଥାୟୀ ସମାଧାନ କରିଥାନ୍ତି ସିନା, ହେଲେ ସେମାନଙ୍କର ଏ'ପ୍ରକାରର କାର୍ଯ୍ୟ ଅପୂରଣୀୟ କ୍ଷତି ସାଧନ କରିଥାଏ । କାରଣ ଦଣ୍ଡ ହିଁ ଛାତ୍ରଛାତ୍ରୀଙ୍କ ମନରେ ଜାତ କରେ ଆତଙ୍କ ଓ ଭୟ । ଭୟ ଫଳରେ ବିପର୍ଯ୍ୟସ୍ତ ହୋଇପଡ଼େ ସେମାନଙ୍କର ମାନସିକତା, ପରିବର୍ତ୍ତିତ ହୋଇଯାଏ ବ୍ୟକ୍ତିତ୍ୱ । ଫଳରେ କେହି କେହି ଭୀରୁତା ପ୍ରଦର୍ଶନ କରୁଥିବାବେଳେ ଅନ୍ୟ କିଏ ହୋଇଉଠେ ବିଦ୍ରୋହୀ ।

'ଭଲ' ଓ 'ମନ୍ଦ'ର ପାର୍ଥକ୍ୟ ଦର୍ଶାଇ ଅନୁକୂଳ ଆଚରଣ ଓ ପ୍ରତିକୂଳ ଆଚରଣର ତଫାତ୍ ବତେଇ ଦେବା ହେଉଛି ଶିକ୍ଷକମାନଙ୍କର କର୍ତ୍ତବ୍ୟ । କୌଣସି ପିଲା ଜାଣିଶୁଣି ଖରାପ କାମ କରେନାହିଁ କି ପିତାମାତା ଓ ଶିକ୍ଷକଶିକ୍ଷିକାମାନଙ୍କ ବିରାଗଭାଜନ ହେବାପାଇଁ ଚାହେଁନାହିଁ । ଯେଉଁ କେତେକ ତଥାକଥିତ ଦୁଷ୍ଟପିଲା ଏହାର ବ୍ୟତିକ୍ରମ, ସେମାନଙ୍କୁ ସଂଶୋଧନ କରିବା ପାଇଁ ପନ୍ଥା ଆବିଷ୍କାର କରିବା ଶିକ୍ଷକ ଓ ପିତାମାତାଙ୍କ ନିମନ୍ତେ ଏକ ଆହ୍ୱାନ ।



# ମାଆମାନଙ୍କୁ ଚିଠି

**ଆମର ଅତି ଆପଣାର ମାଆମାନେ,**

ଆମେ ଯେଉଁଦିନ ଜନ୍ମ ନେଲୁ, ସେଦିନ ବି ତୁମେ ଆମକୁ କୋଳରେ ଜାକି ଧରିଲେ ଆମର କାନ୍ଦ ବନ୍ଦ ହୋଇଯାଉ ନଥିଲା ? ଏଇଥିରୁ କ'ଣ ପ୍ରମାଣ ପାଇଲନି ଯେ ଜନ୍ମ ହେବା ପରେ ପରେ ପ୍ରତ୍ୟେକ ପିଲା ସ୍ନେହଶ୍ରଦ୍ଧା ପାଇବା ନିମନ୍ତେ ଆକୁଳ ହେଉଥାନ୍ତି ? ତିନିଚାରି ସପ୍ତାହ ବେଳକୁ ତୁମେ ଆମକୁ କାଖକଲେ କି କୋଳକୁ ନେଇଗଲେ ଆମକୁ ଖୁବ୍ ଖୁସିଲାଗେ । ଏଇ ଖୁସି ଯୋଗୁ ଆମ ଓଠରେ ହସ ଫୁଟିଉଠେ । ତୁମେ ସିନା କିଛି ବୁଝିପାରନା, ହେଲେ ସେହି ନିରବତା ଭିତରେ ବି ଆମେ ନିଜର ଏହି ଖୁସିହେବା କଥା ତୁମକୁ ଜଣେଇବାରେ ହେଳା କରୁନା । ଆଉ ଟିକିଏ ବଡ଼ ହୋଇଗଲେ ତୁମେ ଆମକୁ ହତାଦର କଲେ ଆମେ ତାହା ଠିକ୍ ଜାଣିପାରୁ । ଆମକୁ ଛାଡ଼ି ତୁମେ ଆଉ କାହାକୁ କାଖ କି କୋଳ କଲେ ଆମ ମନରେ ଦୁଃଖ ହୁଏ । ଆମେ କାନ୍ଦି ଉଠୁ । ମୁହଁ ଶୁଖାଉ ।

ବର୍ଷକରୁ ହୋଇଗଲେ ତୁମକୁ କ୍ଷଣକ ପାଇଁ କୁଆଡ଼େ ଛାଡ଼ିବା ନିମନ୍ତେ ଆମର ମନ ଡାକେନା । ସବୁବେଳେ ତୁମକୁ ପାଖରେ ଦେଖିବାକୁ ଆମର ମନ ହାଇଁପାଇଁ ହୁଏ ।

ରାତିରେ ଭୟାନକ ସ୍ୱପ୍ନ ଦେଖିଲେ, କେହି ବଡ଼ ପାଟିରେ ଶବ୍ଦ କଲେ କି ବାଣ ଫୁଟେଇଲେ ଆମେ ଡରିଯାଉ । ଗୋରୁଗାଈ, କୁକୁର, ବିଲେଇ ଆଦି ଦେଖି ଛାନିଆ ହୋଇପଡୁ । ଏପରି ଅବସ୍ଥାରୁ ରକ୍ଷା କରିବାରେ ବାପମା' ଏକମାତ୍ର ଭରସା ବୋଲି ମନେକରୁ ଆମେ । ବାପମା'ଙ୍କ ଉପରେ ଆମେ ଆଶ୍ରା କରିବାର ପ୍ରମାଣ ତ ଭୂରି ଭୂରି । ଆମର ଦେହ ଅସୁଖ ହେଲେ, ଆମେ କୌଣସି ଯନ୍ତ୍ରଣା ପାଇଲେ, ପଡ଼ିଯାଇ ଖଣ୍ଡିଆଖାବରା ହେଲେ ଆଦର ଯତ୍ନ ପାଇବା ନିମନ୍ତେ ଆମର ଆତୁରତାର ସୀମା ନଥାଏ ।

ବାପମା' ଯେ ଆମର ଏକମାତ୍ର ସହାୟ ସେଥିରେ ଆମର କୌଣସି ସନ୍ଦେହ ନଥାଏ । ସେମାନଙ୍କଠାରୁ ସ୍ନେହଶ୍ରଦ୍ଧା ଓ ଆଶ୍ୱାସନା ପାଇବା ଏବଂ ସେମାନଙ୍କର ଗେହ୍ଲାହେବା ଆମର ଜନ୍ମଗତ ଅଧିକାର ବୋଲି ଧରିନେଉ । ଆମେ ତେଣୁ ଏକ ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ । ଆମ ପ୍ରତ୍ୟେକଙ୍କର ଅଧିକାର ମଧ୍ୟ ସ୍ୱତନ୍ତ୍ର ଏବଂ ବିଚିତ୍ର । ଆମେ ଯେ ବାପମା'ଙ୍କ ପାଇଁ ଅପରିହାର୍ଯ୍ୟ, ଏହି ଧାରଣା ଆମ ମନକୁ ସବୁବେଳେ ଆବୋରି ରଖିଥାଏ । ବିଶେଷ କରି ରାଗିଗଲେ, ବିରକ୍ତ ହେଲେ, ଚିଡ଼ି ଉଠିଲେ କି କାନ୍ଦି ପକେଇଲେ, ଏହାର ଉପଶମ ପାଇଁ ଆମେ ବାପମା'ଙ୍କ ଉପରେ ହିଁ ସମ୍ପୂର୍ଣ୍ଣ ନିର୍ଭରଶୀଳ ।

ତେଣୁ ଏହିସବୁ ବିଷୟ ଜାଣି ମଧ୍ୟ ବେଳେ ବେଳେ ତୁମେମାନେ ଆମ ଉପରେ ହଠାତ୍ ରାଗିଯାଅ କାହିଁକି ? ତୁମେ କୁହ – 'ତୁ' ଗୋଟାଏ ଖରାପ ପିଲା । ତୁ'ଟା ଦୁଷ୍ଟ' । ମୁଁ ତୋତେ ଭଲ ପାଏନି । ତୁ' କଥା ନ ମାନିଲେ ମୁଁ ଘରଛାଡ଼ି ପଳେଇବି । ତୋତେ ଘରୁ ବାହାର କରିଦେବି ଇତ୍ୟାଦି ?'

ଆଚ୍ଛା କହିଲ, ମାଆମାନେ କ'ଣ ଏଭଳି କଡ଼ା କଥାସବୁ କହିବା ଠିକ୍ ? ମାଆ' ପରା ମାଆ' । ମାଆ ନାହିଁ ଯାହାର ସାହା ନାହିଁ ତାହାର । ଗେଲବସର ସନ୍ତାନର ମନ ଦୁଃଖେଇଲାଭଳି ଏମିତି କଥା ସବୁ ମାଆ ତୁଣ୍ଡକୁ ଆସେ କେମିତି କେଜାଣି ?

ମାଆମାନେ ସିନା ପିଲାକୁ ସାହସ ଦିଅନ୍ତେ । ଭରସା ଦିଅନ୍ତେ । ସ୍ୱାଧୀନତା ଦିଅନ୍ତେ । ସ୍ନେହଶ୍ରଦ୍ଧା ଆଉ ଆଦର ଯତ୍ନରେ ବୁଡ଼େଇ ରଖନ୍ତେ । ଏ'ସବୁ କରି ପାରିଲେ, ଆମେ ତୁମମାନଙ୍କ କଥା ମାନନ୍ତୁନି ? ତୁମ ବୋଲ ଶୁଣନ୍ତୁନି ?

ବଡ଼ ମଜାର କଥା କ'ଣ ଜାଣିଚ ନା ? ତୁମେ ବାପାମାଆମାନେ ଭାବୁଛ ଯେ ଆମେ ଯେତେବେଳେ ଯାହା ଚାହୁଁ ବା ମାଗୁ, ତାହା ଦେଇଦେଲେ ଆମେ ସ୍ନେହଶ୍ରଦ୍ଧା ଆଉ ଆଦର ଯତ୍ନ ପାଇଗଲୁ । ସେଇଥିପାଇଁ ହୁଏତ ତୁମେମାନେ ଆମପାଇଁ ବଢ଼ିଆ ବଢ଼ିଆ ଖେଳନାମାନ କିଣିଆଣ । ଉପହାରମାନ ଆଣି ଆମ ଆଗରେ ଗଦା କରି ପକାଅ । ରଙ୍ଗବେରଙ୍ଗ ଜାମାପଟା ନେଇଆସ ଆମ ପାଇଁ । ସେଗୁଡ଼ିକ ଯେ ଆମ ମନ ଖୁସି ନକରେ ତାହା ନୁହେଁ, ହେଲେ କହିଲ ଦେଖି, ମା'ର ଆଦର ଯତ୍ନଠାରୁ କ'ଣ ସେଗୁଡ଼ିକ ବେଶୀ ମୂଲ୍ୟବାନ ? କେଉଁ ଖେଳନାଟା ଅବା ମା'ଠାରୁ ବଳି ବେଶୀ ଭଲ ? ମାଆ ସାଙ୍ଗରେ ଖେଳିବା ଆଉ ଖେଳନା ସାଙ୍ଗରେ ଖେଳିବା ଭିତରେ କେଉଁଥିରୁ ବେଶୀ ଆନନ୍ଦ ମିଳେ ?

ମାଆ ପାଖରେ ଥିଲେ ତ ଆମ ପାଇଁ ସବୁ ତୁଚ୍ଛ । ବୁଝିଲ ମାଆ, ଆମର ମାତ୍ର ଦୁଇଟି କଥା ଦରକାର । ଦରକାର ତୁମର 'ସମୟ' ଆଉ ତୁମର ସ୍ନେହ । ବାସ, ସେତିକିରେ ଆମର ସ୍ୱର୍ଗସୁଖ ।

ଆମକୁ ସବୁବେଳେ ସମାଲୋଚନା କଲେ, ଆମର ଦୋଷଗୁଣ ବାଛିଲେ, 'କର' ଆଉ 'କରନା'ର ତାଲିକା ଧରି ସଦାସର୍ବଦା ଆମ ପଛେ ପଛେ ଲାଗିଥିଲେ ଆମ ମନରେ ରାଗ ଆସିବନି ? ମନଟା ବିଷପିତା ହୋଇଯିବନି ? ଆମର ଚାଲିଚଳଣ ଆଉ ଆଚାର ବ୍ୟବହାର ବେତାଳିଆ ଧରିବନି ? ପଡ଼ିଶା ଘରର ପିଲାମାନେ ଶାନ୍ତ, ଶିଷ୍ଟ ଆଉ ସୁଧାର, ଏବଂ ଆମେ ଦୁଷ୍ଟ ଆଉ ବଦ୍‌ମାସ୍ – ଏମିତି ତୁଳନା କଲେ ଆମଠାରେ କ୍ରୋଧ ଜାତ ହେବନି ? ମନଟା ନିରାଶରେ ଭାଙ୍ଗି ପଡ଼ିବନି ?

ବୁଝିଲ ମାଆ, ଆମର ଦୁନିଆଟା ଆମର ଦୁନିଆ । ତାକୁ ବୁଝିପାରିବା ଏତେ ସହଜ ନୁହେଁ । ଆମେ ହେଲୁ ନରମ କାଦୁଅ ପିଣ୍ଡୁଳା । ସେଥିରୁ ଜୀବନ୍ତ କଣ୍ଢେଇ ଗଢ଼ିବା କି ମାଙ୍କଡ଼ ଗଢ଼ିବା, ତାହା ତୁମ ହାତର କଥା ।

ଆମେ ଯେତେବେଳେ ଅତି ଛୋଟ ଥାଉ, ସେତେବେଳେ ପାଟିରେ ଆଙ୍ଗୁଠି ପୂରେଇ ଚୁଚୁମୁ । ପାଟିରେ ଆଙ୍ଗୁଠି ପୂରେଇଲେ ତୁମେମାନେ ଭାରି ଖୁସି ହୁଅ । ପ୍ରଶଂସା କର । କିନ୍ତୁ ଆମେ କାହିଁକି ଆଙ୍ଗୁଠି ଚୁଚୁମୁ, ସେ କଥା କେବେ ଭାବିଛ ? ଆଙ୍ଗୁଠି ଚୁଚୁମିଲେ ଆମକୁ ଭାରି ମଜା ଲାଗେ । ମନ ଖୁସି ରହେ । ମନରେ ଆନନ୍ଦ ଆସେ । ତୁମ ଥନକୁ ଚୁଚୁମିବାର ଆନନ୍ଦରୁ ତ ଏହା ସୃଷ୍ଟି ହୋଇଛି । ତୁମ ଛାତି ଆଉ ଥନରେ ମୁହଁ ଗୁଞ୍ଜିବା, ମୁଣ୍ଡ ଥାପିବାର ମଜା ମାପି ହବନି । ତେଣୁ ଆଙ୍ଗୁଠି ଚୁଚୁମୁଛୁ ବୋଲି ତୁମେ ଡରିଯାଉଛ କାହିଁକି ? ତାହାଛଡ଼ା ଆମକୁ ନିଦ ଆସିଲେ, ଭୋକ କଲେ କି ହାଲିଆ ଲାଗିଲେ ବି ଆଙ୍ଗୁଠି ଚୁଚୁମିବାକୁ ଆମ ମନ ଡାକେ । ବେଳେ ବେଳେ ଆମ କାନ୍ଦ ବନ୍ଦ କରିବା ନିମନ୍ତେ ତୁମେମାନେ ଆମ ଆଙ୍ଗୁଠିକୁ ନେଇ ଆମ ପାଟି ଭିତରେ ଭର୍ତ୍ତି କରିଦିଅନି ? ସେପରି କଲେ ଆମର କାନ୍ଦ ବନ୍ଦ ହୋଇଯାଏନି ?

ହେଲେ ବର୍ଷେ ପୂରିଲାବେଳକୁ ତ ପାଟିରେ ଆଙ୍ଗୁଠି ପୂରେଇବା ଅଭ୍ୟାସ ଆପେ ଆପେ ଚାଲିଯାଏ । ହୁଏତ କାହାକାହାଠାରେ ଏହା ଚାରି ବର୍ଷ ପର୍ଯ୍ୟନ୍ତ ରହିଯାଏ । ହେଲା ଏବେ ଅଭ୍ୟାସଟା ରହିଗଲା । ଏହାବୋଲି ବୁଝେଇ ସୁଝେଇ କ'ଣ ତାହା ଛଡ଼େଇ

ହେବନି ? ତା' ନକରି 'ତୋ' ଆଙ୍ଗୁଠି କାଟିଦେବି', 'ତୋ' ଦାନ୍ତ ଭାଙ୍ଗିଦେବି' ବୋଲି ଧମକ ଦେବା କେତେଦୂର ସମୀଚୀନ ?

ଆମେ ପାଟିରେ ଆଙ୍ଗୁଠି ପୂରାଉଛୁ ବୋଲି ବେଳେ ବେଳେ ତୁମେ ଆମକୁ ଗୋଟିଏ ଗୋଟିଏ ଚୁଚୁମା ଧରେଇ ଦିଅନି ? ସତ କହିଲ, ଆମ ଜିଦ୍‌ରୁ ମୁକ୍ତି ପାଇବ ବୋଲି ଏହା କର କି ନାହିଁ? ଏଥିପାଇଁ ତୁମେ ଦାୟୀ ? ଚୁଚୁମା ଧରେଇବ ତୁମେ, ଗାଳି ଖାଇବୁ ଆମେ । ବାଃ, ଭଲ ନ୍ୟାୟ ତ !

ଆମେ ବହି ଘୋଷାରି ନେଲେ କି ଦରକାରୀ ଜିନିଷପତ୍ର ଟଣାଟଣି କଲେ ତୁମେ ନା' ନା' କହି ଆମକୁ ସତର୍କ କରିପାରନ୍ତନି ? ଖେଳନା ପତ୍ର ଦେଇ ଆମ ମନ ବହଲେଇ ଦେଇପାରନ୍ତନି ? ବାରମ୍ବାର ନା' ନା' କହି ଆମକୁ ନିରୁତ୍ସାହିତ କଲେ ନା' ନା' ଶବ୍ଦଟା ଆମ ମନରେ ଲାଖିଯାଆନ୍ତା । ନା' ବୋଇଲେ କରନା' ବୋଲି ଆମେ ଜାଣିନିଅନ୍ତୁ । ଧମକ ନଦେଇ କ'ଣ ଶାସନ କରି ହବନି ? ଆଦର ଦେଇ କ'ଣ ଦୃଢ଼ତା ଦେଖେଇ ହବନି ? ତା' ନକରି 'ମୁଁ ତତେ ଖେଲନା ଦେବିନି' 'ତୋତେ ବୁଲେଇ ନେବିନି, 'ତୁ' ମୋ' କଥା ନ ମାନିଲେ ମୁଁ ତୋତେ ଛାଡ଼ି ପଳେଇବି' କି 'ତୋତେ ଛାଡ଼ିଦେଇ ପାଖ ଘରୁ କୁନିକୁ ଆଣି ପାଖରେ ରଖିବି' – ଇତ୍ୟାଦି କହିବା କେତେଦୂର ସଙ୍ଗତ ? ବୁଝିଲ ମାଆ, ଏ' ହେଲା ଚାଲି ନ ଜାଣି ବାଟର ଦୋଷ । କିପରି ନା' କହିବାକୁ ହୁଏ, ତାହା ହୁଏତ ତୁମକୁ ମାଲୁମ ନାହିଁ ।

ଏତିକି କ'ଣ ବୁଝିପାରୁନା ଯେ ଆମେ ହେଲୁ ପିଲାଲୋକ । କିଛି ନା କିଛି କରିବା ପାଇଁ ଆମ ହାତ ସବୁବେଳେ ଖୁଜୁବୁଜୁ ହେଉଥାଏ । ଅଳସୁଆ ହୋଇ ବସି ବୋକାଙ୍କ ଭଳି ଚାହିଁ ରହିବା ଆମ ଜାତକରେ ନାହିଁ । ତେଣୁ ଆମ ଖେଳିବା ପାଇଁ ପର୍ଯ୍ୟାପ୍ତ ସୁଯୋଗ ଦିଅ । ଦେଖିବ ଆମର ଦୁଷ୍ଟାମି କମି କମି ଯିବ । ଖେଳନା ଦିଅ । ଛବି ବହି ଦିଅ, ପେନ୍‌ସିଲ୍‌ଟି ଧରେଇ ଦିଅ, ଧରେଇ ଦିଅ ପୁରୁଣା ଖବରକାଗଜ । ବାସ୍, ଆମ ମନ ସେଥିରେ ଭଳିଯିବ । ନା' କହିବାର କଳାଟା ଆଗେ ଶିଖିନିଅ । ଦେଖିବ ତୁମ ପାଟିରୁ ନା' ଶବ୍ଦ ବାହାରିବା ମାତ୍ରେ ତୁମେ ଆମକୁ ବାରଣ କରୁଛ ବୋଲି ଆମେ ଜାଣିନେବୁ । ତୁମ ସାଙ୍ଗରେ କାହା ଘରକୁ ବୁଲିଗଲେ, ସେ ପରିବାରର ଲୋକଙ୍କୁ ଅତିଷ୍ଠ କରିବୁନି କି ଉତ୍ପାତ ଆରମ୍ଭ କରି ତାଙ୍କ ଘରର ଜିନିଷପତ୍ର ଭଙ୍ଗାରୁଜା କରିବୁନି ।

ଆମେ କ'ଣ ତୁମର ଶତ୍ରୁ ? ତୁମେ ବାପାମାଆମାନେ ଆମକୁ ନାଲିଆଖି ଦେଖେଇବାର ଅର୍ଥ ? ଏତେ କଡ଼ା ଶୃଙ୍ଖଳା ଜାହିର କରିବାର ଉଦ୍ଦେଶ୍ୟ ? ଆମକୁ ଭଲ ବାଟକୁ ଆଣିବା ଯଦି ତୁମର ଲକ୍ଷ୍ୟ, ଆମକୁ ଭଲ ମଣିଷ କରି ଗଢ଼ିବା ଯଦି ତମର ଇଚ୍ଛା, ତେବେ ଦୃଢ଼ ଶାସନ କ'ଣ ତା'ର ଏକମାତ୍ର ବାଟ ? ବେତ କ'ଣ କାଉଁରି କାଠି ?

ହଁ, ଆମେ ମାନୁଛୁ ଯେ ଆମ ଭିତରେ ଜଣେ ଜଣେ ବଡ଼ ଜିଦିଆ । ଯାହା ଅଡ଼ି ବସିଥିବେ ସେଇଆ । ଏହା ବୋଲି କ'ଣ ତୁମେ ବଡ଼ମାନେ ମଧ୍ଯ ଆମ ଜିଦ୍ ସାଙ୍ଗରେ ଟକ୍କର ଦେବ ? ପ୍ରତିଯୋଗିତା ଚଳେଇବ ? ରାଗିଯାଇ ଆମକୁ ବିଧା ଚଟକଣି କଷି ପକେଇବ ? ପିଟି ପକେଇବ ଆମକୁ ? ଆମକୁ ଛିଗୁଲେଇ ପରିହାସ କରିବ ? ମଜା ଉଡ଼େଇବ ଆମର ? ମାଡ଼ ନ ଦେଇ କ'ଣ ନରମ ଭାବରେ ଥାପଡ଼ଟାଏ ଦେଇପାରିବନି ତୁମେମାନେ ? ଆମ ରାଗ ତ ପାଣିଫୋଟକା ଭଳି । ଏବେ ଅଛି, ପର ମୁହୂର୍ତ୍ତରେ ନାହିଁ । କିନ୍ତୁ ତୁମେ ରାଗିବ । ପୁଣି ଘଣ୍ଟା ଘଣ୍ଟା ଧରି ମୁହଁ ଓହଳେଇ ବୁଲିବ । ଆମ ସାଙ୍ଗରେ କଥାବାର୍ତ୍ତା ବନ୍ଦ କରିଦେବ । କି ଲଜ୍ଜାର କଥା !

ଆମେ ଯଦି ବାପମା'ଙ୍କର ଏକମାତ୍ର ସନ୍ତାନ ହୋଇଥାଉ ତ ବାପାମାଆଙ୍କର ଅବସ୍ଥା ନ କହିବା ଭଲ । ଆମେ ଖାଇଲୁ କି ନଖାଇଲୁ, ଶୋଇଲୁ କି ନଶୋଇଲୁ, ଖେଳିଲା ବେଳେ କାଳେ ପଡ଼ିଯାଇ ଖଣ୍ଡିଆଖାବରା ହେବୁ, କାଳେ ଆମର ଦେହ ଖରାପ ହେବ – ଏମିତି କେତେ ନା କେତେ ଚିନ୍ତା ଘାରିବସେ ସେମାନଙ୍କୁ । ଆମକୁ ସବୁବେଳେ ଖୁସି କରିବା ପାଇଁ ସେମାନେ ଖେଳନା, ଉପହାର,ଜାମାପ୍ୟାଣ୍ଟ ଆଣି ଗଦେଇ ଦିଅନ୍ତି । ଆମକୁ ବୁଲେଇ ନେଇ ଆଇସ୍‌କ୍ରିମ୍, ଚକୋଲେଟ୍ ଖାଇବାକୁ ଦିଅନ୍ତି । ଛାଇଭଳିଆ ଲାଖିରହିଥାଆନ୍ତି ଆମ ସାଙ୍ଗରେ । ଆମର ସବୁ ଅଳି ଅର୍ଦ୍ଦଳି ସହିବାକୁ ତତ୍ପର ଥାଆନ୍ତି । ଆମର ଦାବି ଆଉ ଖିଆଲକୁ ତଳେ ପକେଇ ଦିଅନ୍ତିନି ।

ଏକୋଇର ବଳା ବିଶିକେଶନର ସୁରକ୍ଷା ପାଇଁ ଅସ୍ୱାଭାବିକ ଭାବରେ ଉତ୍କଣ୍ଠା ଦେଖାଇବା ଯେ କେତେଦୂର ଅନିଷ୍ଟକର, ତାହା କ'ଣ ତୁମେ ଜାଣିପାରନି ? ଏପରି କଲେ ଆମଠାରେ ନିରାଶା ବସା ବାନ୍ଧେ । ଭୀରୁତା ପ୍ରକାଶ ପାଏ । ଆମେ ପ୍ରତିକଥାରେ ତୁମମାନଙ୍କ ଉପରେ ନିର୍ଭରଶୀଳ ହୋଇପଡ଼ୁ । ତୁମ୍ଭମାନଙ୍କର ଏହି ଦୁର୍ବଳତାରୁ ବେଶ୍ ଫାଇଦା ଉଠାଉ । ଆମର ଜିଦ୍ ବଢ଼ି ବଢ଼ିଯାଏ । ଜିଦ୍ ପୂରଣ ପାଇଁ ଅଡ଼ିବସୁ । ଖାଇବା

ପିଇବା ବନ୍ଦ କରିଦେଉ । ରାଗରେ ତୁମ୍ଭିତୋଫାନ ଆରମ୍ଭ କରିଦେଉ । ଭଙ୍ଗାରୁଜା କରୁ । ସେଥିପାଇଁ ତ ଆମେ କହୁଛୁ ଯେ ଆମକୁ ଅତି ବେଶୀ ପ୍ରଶ୍ରୟ ଦେବା ଲୋଡ଼ା ନାହିଁ କି ଅତି ରାଗରୋଷ ଲୋଡ଼ା ନାହିଁ । ତୁମ୍ଭେମାନେ ଆମ୍ଭମାନଙ୍କୁ ଉଠ୍‌ବସ୍ କରାଇବା କି ଆମ ବୋଲରେ ତୁମେମାନେ ଉଠ୍‌ବସ୍ ହେବା ଆମର ପସନ୍ଦ ନୁହେଁ ।

ଆମେ ତ ତୁମମାନଙ୍କ ଭଳିଆ ବୁଝିଲା ସୁଝିଲା ଲୋକ ନୋହୁଁ । ଆମେ କେତେବେଳେ କଅଣ କରୁ ଓ କାହିଁକି କରୁ, ତାହା ଆମ୍ଭମାନଙ୍କୁ ବି ଜଣା ନଥାଏ । ତେବେ ଆମର ମନ ଭଲ ନଥିଲେ କି ଆମେ ବିବ୍ରତ କି ଛାନିଆ ହୋଇପଡ଼ିଥିଲେ ତା'ର ଉପଚାର ମାତ୍ର ଗୋଟିଏ । ସେତେବେଳେ ଆମପାଇଁ ଦରକାର ଅଧିକ ସ୍ନେହଶ୍ରଦ୍ଧା, ଅଧିକ ଆଦର ଯତ୍ନ । କାନମୋଡ଼ି, ଚାପୁଡ଼ାମାରି, ମାଡ଼ଦେଇ, ବାନ୍ଧିପକେଇ, ଆମଠାରୁ ଆମର ପ୍ରିୟ ଖେଳନାପତ୍ର ଛଡ଼େଇ ନେଇ ଆମକୁ ଆକଟ କରିବାରେ ଫାଇଦା ପରିବର୍ତ୍ତେ ବେଶୀ କ୍ଷତି । ବାପା କଡ଼ାମିଜାଜସର ହୋଇଥିଲେ ଆମେ ଡରରେ ତାଙ୍କ ବୋଲରେ ଉଠ୍‌ବସ୍ ହୋଇଥାଉ ସିନା, କିନ୍ତୁ ସେ ଘରେ ନଥିଲାବେଳେ ଦୁଇଗୁଣ ଦୁଷ୍ଟାମି କରି ଆମ ଅପମାନର ପ୍ରତିଶୋଧ ନେଇଯାଉ ।

ଆଉ ଗୋଟିଏ କଥା ଦେଖ । ତୁମେ ମାଆମାନେ ଶ୍ରଦ୍ଧାରେ ଯାହାଯାହା ରାନ୍ଧି ଆମକୁ ଖାଇବାକୁ ଦିଅ, ତାହା କ'ଣ ସବୁବେଳେ ଆମକୁ ସୁଆଦିଆ ଲାଗିବାକୁ ବାଧ ? ପୁଣି ଗିନାରୁ ସରିବାଯାଏ ବି ଖାଇଚାଲିବାକୁ ବାଧ ଆମେ । ଟିକିଏ ବଡ଼ ହୋଇଗଲୁ ବୋଲି ପ୍ୟାଣ୍ଟରେ ଝାଡ଼ା ପରିସ୍ରା କରିବୁନି ? ବିଛଣାରେ ମୂତ ପକେଇବୁନି ? ଆମ ଖେଳନାପତ୍ର ଆଉ କାହାକୁ ନଦେବା କ'ଣ ଏଡ଼େ ବଡ଼ ଦୋଷଟାଏ ? ତେଣୁ ଆମକୁ ରଗେଇଲେ ଆମେ ରାଗିବୁ । ଅବାଧ ହେବୁ । ରାଗିଯାଇ ଲାଲ୍ ପଡ଼ିଯିବୁ । କାନ୍ଦିକାନ୍ଦି ଭୂଇଁରେ ଗଡ଼ିଯିବୁ । ଗୋଡ଼ କଚାଡ଼ି ମୁଣ୍ଡ ବାଡ଼େଇ କାନ୍ଦିବୁ । ତୁମକୁ ବିଧା ଗୋଇଠା କଷି ଦେଇଯିବୁ । କାମୁଡ଼ି ପକେଇବୁ ।

ଆମ ଜିଦ୍‌ର ପ୍ରତିକାର କ'ଣ ତୁମର ଜିଦ୍ ? ଉଭୟେ ନିଜ ନିଜ ଜିଦ୍‌ରେ ଅଟଳ ରହିଲେ ପ୍ରତିକାର କାହିଁ ? ତୁମେ ବି ଏତେ ଛୋଟ ଛୋଟ କଥାରେ ଏତେ ଜିଦ୍‌ଧର କାହିଁକି ? ଆମର ନାଲି ଜାମାପ୍ୟାଣ୍ଟ୍ ପିନ୍ଧିବାକୁ ଇଚ୍ଛା ନ ହେଲେ ତୁମେ ସେହି ନାଲି ଜାମାପ୍ୟାଣ୍ଟ୍ ପିନ୍ଧେଇବ ବୋଲି ଅଡ଼ିବସ କାହିଁକି ? ଆମେ ଆଇସ୍‌କ୍ରିମ୍ ଖାଇବାକୁ କହିଲେ,

'ଭାତ ଖାଇବାବେଳ ହେଲାଣି, ଏବେ ଆଇସ୍‌କ୍ରିମ୍ ଦିଆହେବନି' ବୋଲି ବାରଣ କର କାହିଁକି ? ଆମର ଇଚ୍ଛା ହେଉନଥିଲେ ବି ଖେଳ ବନ୍ଦ କରି ଶୋଇବା ପାଇଁ ଆମକୁ ଟାଣିଟାଣି ନିଅ କାହିଁକି ? ଆମ ସ୍ୱାର୍ଥ ପାଇଁ ତୁମର ଶୃଙ୍ଖଳାକୁ ଟିକିଏ ଢିଲା କରିଦେଲେ କ'ଣ ମହାଭାରତ ଅଶୁଦ୍ଧ ହୋଇଯିବ ? ତୁମ ଜିଦ୍‌କୁ ଚାପିଦେଇ ଧୈର୍ଯ୍ୟ ଧରି ଆମକୁ ବୁଝେଇ ସୁଝେଇବାରେ କ'ଣ ତମକୁ ଅପମାନ ହୋଇଯିବ ?

ଆମେ ଅବଶ୍ୟ ବୁଝୁଛୁ ଯେ ତୁମେମାନେ କାମଧନ୍ଦା କରି ହାଲିଆ ହୋଇପଡ଼ିଥିଲେ, କୌଣସି କାରଣରୁ ଉତ୍ତ୍ୟକ୍ତ ହୋଇପଡ଼ିଥିଲେ, ତୁମର ଦେହପା' ଖରାପ ଥିଲେ ଆମକୁ ବୁଝେଇ ସୁଝେଇବା ପାଇଁ ତୁମର ଧୈର୍ଯ୍ୟ ନଥାଏ । ହେଲେ ଆମର ସେଥିରେ ଯାଏ ଆସେ କେତେ ? ଆଗରୁ ତ କହିଛୁ ଯେ ଆମେ ହେଲୁ ପରିବାରର ସ୍ୱତନ୍ତ୍ର ସଦସ୍ୟ । ସ୍ୱତନ୍ତ୍ର ସଦସ୍ୟମାନଙ୍କ ପାଇଁ ଲୋଡ଼ା ସ୍ୱତନ୍ତ୍ର ଧରଣର ଚର୍ଚ୍ଚା ଆଉ ଆଚାର ବ୍ୟବହାର । ଲୋଡ଼ା କି ନାହିଁ ?

ଆମକୁ ଗାଳିମନ୍ଦ କଲେ, ମାଡ଼ ମାରିଲେ, ଧମକଚମକ ଦେଲେ ଆମେ ମିଛ କହିବାକୁ ଶିଖିବୁନି ? ତୁମଠାରୁ କଥା ଲୁଚେଇବୁନି ? ସାଙ୍ଗପିଲାଙ୍କ ବ୍ୟାଗ୍‌ରୁ ଚକ୍, ରବର, ପଇସା ଚୋରିକରି 'ମୋର' ବୋଲି କହିବୁନି ?

କହିଲ ଦେଖି, 'ସତକଥା', 'ମିଛକଥା'ର ଫରକ କ'ଣ ବୁଝୁଛୁ ଆମେ ? ଆମ ସ୍ୱାର୍ଥକୁ ଯେତେବେଳେ ଯାହା ସୁହାଇଲା, ତାହା ହେଲା ଆମ ପାଇଁ ଠିକ୍ । ବୟସ ବଢ଼ିଲେ ସିନା 'ସତ୍ୟତା' ଆଉ 'ସାଧୁତା'ର ମୂଲ୍ୟ ବିଷୟରେ ଆମର ଧାରଣା ଆସିବ । ପୁଣି ତାହା ଶିଖେଇବ ତୁମେ । ଆମ ଆଗରେ ମିଛ କହି କହି ଆମକୁ 'ସତ୍ୟବାଦୀ' କରେଇବା ଏକ ଅପଚେଷ୍ଟା ମାତ୍ର ।

'ଆଜି ତୋ ପାଇଁ ଖେଳନା ଆଣିଦେବି' କହି କେତେ ଆଜି– ଆଜି ଗଡ଼ିଯାଏନି ? ବୁଲେଇନେବି କହି କହି ବାରମ୍ବାର ଠକି ନଥାଅ ତୁମ୍ଭେମାନେ ? ତୁମେ ଯଦି ନିଜ କଥା ରଖି ନପାରୁଛ, ନ ଠକିବା, ମିଛ ନ କହିବା, ଚୋରି ନ କରିବା ଭଳି ତୁମର ପରାମର୍ଶର କି ମୂଲ୍ୟ ? ତାହାଛଡ଼ା ଯଦି ଅବା କିଛି ମିଛ କହି ପକେଇଲୁ କି ଛୋଟକାଟିଆ ଚୋରି କରି ପକେଇଲୁ, ବୁଝେଇ ସୁଝେଇ କ'ଣ ସେ ଅଭ୍ୟାସ ଦୂର କରି ପାରିବନି ତୁମେ ? 'ଚୋର' 'ମିଛୁଆ' କହି ସମସ୍ତଙ୍କ ଆଗରେ ଆମକୁ ଅପମାନ ଦେଲେ କି ମାଡ଼ ବସେଇଲେ କ'ଣ ଆମେ ସାଧୁ ପାଲଟିଯିବୁ ?

ବେଳେବେଳେ ଆମ ପାଟିରୁ ଅଶ୍ଳୀଳ, ଅକୁହା କଥା ବାହାରିପଡ଼େ । ସେଥିରେ ତୁମେ ଖୁବ୍ ବିବ୍ରତ ହୋଇପଡ । ଆଚ୍ଛା କହିଲ, ଅନ୍ୟ କାହାଠାରୁ ସେହି ଶବ୍ଦମାନ ଶୁଣି ନଥିଲେ ତାହା ଆମେ ପିଲାଏ ଜାଣିଥାନ୍ତୁ ଅବା କିପରି ? ତାହାଛଡ଼ା ଶ୍ଳୀଳ ଅଶ୍ଳୀଳ, କୁହା ଅକୁହାର ପାର୍ଥକ୍ୟ କ'ଣ ଅବା ଆମେ ଜାଣିଛୁ ? ବଡ଼ମାନେ ରାଗିଯାଇ ଶଳା ବଦ୍‌ମାସ୍ ବୋଲି କହିଲେ ଆମେ ଧରିନେଉ ଯେ ରାଗିଗଲେ ଶଳା ବଦ୍‌ମାସ୍ ବୋଲି କହିବା ହିଁ ଦରକାର ।

ଆମେ ଭାରି ଜିଦ୍‌ଖୋର ବୋଲି ଆମ ନାଆଁରେ ତୁମେ ଅଭିଯୋଗ ବାଢ଼ନି ? କିନ୍ତୁ ଆମେ ଜିଦ୍‌ଖୋର ହେବା ମୂଳରେ ତ ତୁମେମାନେ ହିଁ ଦାୟୀ । 'ମୁଁ କହିଯାଇଥିଲି କାହିଁକି ପଢ଼ା ସାରିନୁ', 'ମୁଁ କହି ଯାଇଥିଲି ଘରଛାଡ଼ି କୁଆଡ଼େ ବୁଲିଯିବୁନି, କାହିଁକି ଘରୁ ଗୋଡ଼ କାଢ଼ିଲୁ' – ଏଭଳି କହି ତୁମେମାନେ ଯଦି ନିଜ କଥାରେ ଜିଦ୍‌ଧର, ତେବେ ଆମେ ଜିଦ୍ ଧରିଲୁ ବୋଲି କ'ଣ ପାପ ହୋଇଗଲା ? ତୁମେ ଆଗେ ନିଜ ଜିଦ୍ ଛାଡ଼, ଆମର ଜିଦ୍ ତିନିବର୍ଷ ପୂରିଲାବେଳକୁ ଆପେ ଆପେ ଚାଲିଯିବ ।

ଆମକୁ ଛାନିଆ ଲାଗିଲେ, ଆମ ମନରେ ଡର ପଶିଗଲେ କି ଆମଠାରେ ଉତ୍ତେଜନା ପ୍ରକାଶ ପାଇଲେ ଆମ ଭିତରୁ କେହି କେହି ନଖ କାମୁଡ଼ିଥାଆନ୍ତି । ତେଣୁ ଆମର ନଖ କାମୁଡ଼ିବା ଦେଖିଲେ ତୁମେମାନେ ଘରେ ଆଉ ସ୍କୁଲରେ ଏହାର କାରଣ ଖୋଜି ବସିବା ଦରକାର । ପଢ଼ାର ଚାପ ସମ୍ଭାଳି ନ ପାରିଲେ, କଡ଼ା ଶୃଙ୍ଖଳା ଭିତରେ ରଖିଲେ, ଆମଠାରୁ ଅଧିକ ସଫଳତାର ଆଶା ରଖିଲେ ଏବଂ ଆମ ପଛରେ ଜୋକ ଭଳି ଲାଗିରହିଲେ ଆମେ ଆତ୍ମବିଶ୍ୱାସ ହରେଇ ଆତଙ୍କିତ ହୋଇପଡୁ । ଫଳରେ ନଖ କାମୁଡ଼ିବା ଉପରେ ଭରସା କରୁ । ଏବେ କହୁନ, ଆମ ନଖ ଖାଇବା ମୂଳରେ କିଏ ଦାୟୀ ? ଆମେ ନା ତୁମେ ଆଉ ଆମର ଶିକ୍ଷକମାନେ ?

ଏହିସବୁ କାରଣ ଯୋଗୁ ବି ଆମ ଭିତରୁ କେହି କେହି ଆଖିମିଟିକା ମାରନ୍ତି, ଆଖିଡୋଳା ଘୂରାନ୍ତି, ମୁଣ୍ଡ ତଳ ଉପର କରନ୍ତି, କାନ୍ଧ ଓ ହାତ ଚାଳନା କରନ୍ତି । ପରେ ଏହା ଅଭ୍ୟାସରେ ପଡ଼ିଯାଏ । ମାଡ଼ଗାଳି ଦେଲେ ଏ ଅଭ୍ୟାସ ଦୂର ହୁଏନି । ବରଂ ଆମର ସମସ୍ୟା ଦୂରେଇଦେଲେ ଏହି ଅଭ୍ୟାସ ଦୂରେଇ ଯାଏ ।

ବେଳେବେଳେ ଆମେ ପିଲାଏ ଆମ ଯୌନାଙ୍ଗକୁ ମୁଠେଇ ଧରୁ । ଧରି ଏପଟ ସେପଟ କରୁ । ତା'ସହ ଖେଳୁ । ଏଥିରେ ତୁମର ଆତଙ୍କିତ ହେବାର କୌଣସି କାରଣ ନାହିଁ କି ଏହା ଉପରେ ବିଶେଷ ଗୁରୁତ୍ୱ ଦେବାର ଆବଶ୍ୟକତା ନାହିଁ । ଏଥିପାଇଁ ଧମକ ଚମକ କି ଗାଳିଫଜିତ୍ କରିବାରେ କିଛି ଲାଭ ନାହିଁ । ତୁମେମାନେ ଏଥିପ୍ରତି ଏକ ସହନଶୀଳ ମନୋଭାବ ପୋଷଣ କରିପାରିଲେ ତାହା ଆପେ ଆପେ ଚାଲିଯାଏ ।

ଲେଖୁଲେଖୁ ବଡ଼ ଲମ୍ବା ହୋଇଗଲା ଚିଠିଟା । ଏତିକିରେ ବି ଆମର ଅଭିଯୋଗ ଶେଷ ହେଉନି । ପର ଚିଠିରେ ଅବଶିଷ୍ଟ କଥା ଲେଖିବୁ ।

ସେ ଯାହାହେଉ, ତୁମେ ମାଆମାନେ ଜାତିସଂଘର ଘୋଷଣାନାମାକୁ ଟିକେ ପଢ଼ନ୍ତନି ? ସେଥିରେ ଲେଖାଅଛି ଯେ ଆମ ପିଲାଙ୍କର ମଧ୍ୟ ଏକ ଅଧିକାର ଅଛି । ସ୍ନେହଶ୍ରଦ୍ଧା ଓ ଆଦର ଯତ୍ନ ପାଇବା ଏବଂ ଗେହ୍ଲାହେବା ଆମର ସ୍ୱତନ୍ତ୍ର ଅଧିକାର । ତାହା ଆମକୁ ଯୋଗାଇଦେବା ନିମନ୍ତେ ବାପମାଆମାନେ ସମାଜଠାରେ ଉତ୍ତରଦାୟୀ, ତେଣୁ ତୁମ୍ଭେମାନେ ଆମକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେବାକୁ ଅଙ୍ଗୀକାରବଦ୍ଧ । ଆମର ଖେଳିବା, ମଉଜ ମଜଲିସ୍ କରିବା ଏବଂ ଫୂର୍ତ୍ତି କରିବା ପାଇଁ ସମସ୍ତ ସୁବିଧା ସୁଯୋଗ ସୃଷ୍ଟି କରିବା ତୁମର ନୈତିକ କର୍ତ୍ତବ୍ୟ ।

ଆମର ଆଶା ଆଉ ବିଶ୍ୱାସ ଯେ ଜାତିସଂଘ ତୁମ୍ଭମାନଙ୍କ ଉପରେ ଏହି ଯେଉଁ ଗୁରୁଦାୟିତ୍ୱ ଅର୍ପଣ କରିଛି, ତୁମେ ସେଥିପ୍ରତି ଉପଯୁକ୍ତ ସମ୍ମାନ ଦେବ ଓ ତୁରନ୍ତ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିଦେବ । କଅଣ କଲ, ଲେଖିବ ।



# ଦିଅଁ ହୋଇଯାଏ ମାଙ୍କଡ଼

ମାଇକେଲ୍ ଫାରାଡ଼େଙ୍କ ବାପା ଥିଲେ ଜଣେ ଗାଁ କମାର । ବଡ଼ ଗରିବ ଥିଲେ ସେମାନେ । ସେଇଥିପାଇଁ ଫାରାଡେଙ୍କୁ ଜଣେ ବହିବନ୍ଧାଳିରୂପେ ଚାକିରି କରିବାକୁ ପଡ଼ିଥିଲା । ପରେ ସେ ହୋଇପାରିଥିଲେ ଜଣେ ବିଶ୍ୱବିଖ୍ୟାତ ବୈଜ୍ଞାନିକ । ବିଦ୍ୟୁତ୍‌ଶକ୍ତିକୁ ସାଧାରଣ ଲୋକଙ୍କ କାମରେ ଲଗାଇବାର କୌଶଳ ଉଦ୍ଭାବନ କରିଥିଲେ ସେ । ସେ ଆବିଷ୍କାର କରିଥିଲେ ଡାଇନାମୋ ଯନ୍ତ୍ରର ମୂଳତତ୍ତ୍ୱ ।

ମାଇକେଲ ଫାରାଡ଼େ ଭଲ ପଢୁନଥିଲେ । ଅସ୍ତ ହୋଇଯାଉଥିବା ସୂର୍ଯ୍ୟକୁ ଚାହିଁରହିବା ଥିଲା ତାଙ୍କର ନିତିଦିନିଆ ସଉକ । କଥା କହିଲାବେଳେ ତାଙ୍କର ପାଟି ଲାଗୁଥିଲା, କଥା ବୁଝି ହେଉନଥିଲା । ତେଣୁ ସେ ସବୁଦିନେ ମାଷ୍ଟରାଣୀଙ୍କଠାରୁ ଗାଳି ଖାଉଥିଲେ । ମାଡ଼ ଦେବାରେ ମାଷ୍ଟରାଣୀଙ୍କର ଥିଲା ମହା ଆନନ୍ଦ । ପିଲାଙ୍କୁ ବେତମାଡ଼ ଦେବା ଥିଲା ତାଙ୍କର ବଡ଼ ସଉକ ।

କୌଣସି କାରଣ ନଥାଇ ଥରେ ମାଷ୍ଟରାଣୀ ଜଣକ ଫାରାଡ଼େଙ୍କୁ ପିଟିବାକୁ ଚାହିଁଲେ । ଫାରାଡ଼େଙ୍କ ସାନଭାଇ ରବର୍ଟ ମଧ୍ୟ ଫାରାଡ଼େଙ୍କ ସାଙ୍ଗରେ ସମାନ ଶ୍ରେଣୀରେ ପଢୁଥିଲେ । ତେଣୁ ମାଷ୍ଟରାଣୀ ରବର୍ଟଙ୍କୁ ପାଖକୁ ଡାକିଲେ । ତା' ହାତରେ କିଛି ପଇସା ଧରେଇ ଦେଇ ଆଦେଶ ଦେଲେ ବେତ ଖଣ୍ଡିଏ କିଣି ଆଣିବାକୁ । ସବୁ ପିଲାଙ୍କ ଆଗରେ ଫାରାଡ଼େଙ୍କୁ ବେତମାଡ଼ ହେବ ବୋଲି ଆଗରୁ ଘୋଷଣା କରିଦେଲେ ସେ । ନିଜ ଭାଇଙ୍କୁ ବେତମାଡ଼ ହେବା ରବର୍ଟ୍ ସହିଥାନ୍ତେ ଅବା କିପରି ? ବେତ କିଣିବା ନିମନ୍ତେ ମାଷ୍ଟରାଣୀ ଦେଇଥିବା ପଇସାକୁ ଝରକାବାଟେ ଫୋପାଡ଼ି ଦେଇ ରବର୍ଟ୍ ଧାଇଁଲେ ଘରକୁ । ମାଆଙ୍କ ଆଗରେ ବଖାଣିଗଲେ ମୂଳରୁ ଶେଷଯାଏ । ତାଙ୍କ ମାଆ ସବୁ ଶୁଣିଲେ । ନିଷ୍ପତ୍ତି ନେବାକୁ ତାଙ୍କୁ ମୁହୂର୍ତ୍ତେ ବି ସମୟ ଲାଗିଲାନି । ପରଦିନଠାରୁ ଫାରାଡ଼େ ଏବଂ ରବର୍ଟ୍‌ଙ୍କର ସ୍କୁଲ୍‌ଯିବା

ବନ୍ଦ କରିଦେଲେ ସେ । ସେହିଦିନଠାରୁ ମଧ ପାଠପଢ଼ା ବନ୍ଦ ହୋଇଗଲା ଫାରାଡ଼େଙ୍କର । ବେତମାଡ଼ ଯୋଗୁଁ ପୋଥିରେ ଡୋରି ବାନ୍ଧିଥିବା ଫାରାଡ଼େ ପରବର୍ତ୍ତୀକାଳରେ ହୋଇପାରିଥିଲେ ଜଣେ ପ୍ରସିଦ୍ଧ ବିଜ୍ଞାନୀ ।

ଫାରାଡ଼େଙ୍କ ପାଇଁ ଏହି ସଫଳତା ହୁଏତ ଥିଲା ଆକସ୍ମିକ । କିନ୍ତୁ ପାଠ ପଢ଼ିବାକୁ ଯାଇ ବେତମାଡ଼ର ଡରରେ ଅପାଠୁଆ ହୋଇ ରହିଯିବା କ'ଣ ବରଦାସ୍ତ କରିହେବ ? ହେଲେ ତାହାହିଁ ଏବେ ଘଟିଚାଲିଛି ଗୋଟିଏ ଦୁଇଟି ପିଲାଙ୍କ କ୍ଷେତ୍ରରେ ନୁହେଁ, ଶହ ଶହ ପିଲାଙ୍କ କ୍ଷେତ୍ରରେ । କେବଳ ଆମ ଦେଶରେ ନୁହେଁ, ପ୍ରାୟ ସବୁ ଦେଶରେ ।

ଏଇ ଶୁଣନ୍ତୁ ରାକେଶର କଥା । ରାକେଶ ନୂଆଦିଲ୍ଲୀସ୍ଥିତ ଯେଉଁ ସ୍କୁଲ୍‌ରେ ପଢ଼େ, ସେହି ସ୍କୁଲ୍‌ରେ ଅଛି ପାଣି କୁଣ୍ଡଟିଏ । ଦିନେ କ୍ଲାସ୍‌କୁ ନଯାଇ ସହପାଠୀଙ୍କ ସହ ମିଶି ରାକେଶ ପାଣିକୁଣ୍ଡରୁ ପାଣି ନେଇ ଗାଧୋଇବାରେ ଲାଗିଥାଏ । ହଠାତ୍ ଦୃଷ୍ଟିପଡ଼ିଲା ମାଷ୍ଟରାଣୀଙ୍କର । ଚିହିଁକିଉଠି ସେ ମାଡ଼ି ଆସିଲେ ରାକେଶ ପାଖକୁ । ତାକୁ ଧରି ପୂରା ଲଙ୍ଗଳା କରିଦେଇ ଦୀର୍ଘ ତିନିଘଣ୍ଟା ଧରି ସ୍କୁଲରେ ବୁଲେଇଲେ । ସେହିଦିନଠାରୁ ସ୍କୁଲ୍ ପ୍ରତି ରାକେଶର ତୀବ୍ର ଘୃଣା । କେବଳ ବାପମା'ଙ୍କ ବାଧରେ ସିନା ସେ ସ୍କୁଲ୍‌କୁ ଯାଉଛି, ହେଲେ ଏକଦା ପ୍ରିୟ ଥିବା ନିଜର ସେହି ସ୍କୁଲ୍ ସହପାଠୀ ଏବଂ ଅନ୍ୟମାନଙ୍କୁ ସେ ଜମା ଆଦରି ନେଇପାରୁନି । ବରଂ ତା' ମତ ଉପରେ ଛାଡ଼ିଦେଲେ, ସେ ପାଠ ନ ପଢ଼ିବାକୁ ବେଶୀ ପସନ୍ଦ କରିବ । କାରଣ ସ୍କୁଲ୍‌ରେ ସକାଳର ସେହି ନିର୍ଯାତନା ଏବଂ ଅପମାନକୁ ସେ ଆଦୌ ମନରୁ ପୋଛି ଦେଇପାରୁନି ।

ନିକଟରେ ଦିଲ୍ଲୀସ୍ଥିତ କେତୋଟି ସ୍କୁଲ୍‌ରେ କରାଯାଇଥିଲା ଏକ ସର୍ଭେ । ଉକ୍ତ ସର୍ଭେର ଫଳାଫଳ ଅନୁଯାୟୀ ପ୍ରଥମରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଯେତେ ଛାତ୍ରଛାତ୍ରୀ ସ୍କୁଲ୍‌ରେ ଭର୍ତ୍ତି ହୋଇଥିଲେ ସେମାନଙ୍କ ମଧ୍ୟରୁ ଶତକଡ଼ା ୨୫ଭାଗ ଅଧାରୁ ପାଠପଢ଼ା ବନ୍ଦ କରିଦେଲେ । ପୁଅମାନଙ୍କ ତୁଳନାରେ ଅଧାରୁ ପାଠ ଛାଡ଼ିଥିବା ଝିଅମାନଙ୍କର ସଂଖ୍ୟା ଥିଲା ବେଶୀ ।

କିନ୍ତୁ ସେମାନେ ଅଧାରୁ ପାଠଛାଡ଼ି ଦେଉଛନ୍ତି କାହିଁକି ? ପାଠପଢ଼ା ଛାଡ଼ିଦେବାର ମୁଖ୍ୟ କାରଣ ହେଉଛି ସ୍କୁଲ୍‌ରେ ଦିଆଯାଉଥିବା ମାଡ଼ ଏବଂ ଅନ୍ୟାନ୍ୟ ନିର୍ଯାତନା । ଶିକ୍ଷକମାନେ ଯାହାକୁ ଇଚ୍ଛା ତାକୁ, ଯେତେବେଳେ ଇଚ୍ଛା ସେତେବେଳେ ପିଟି ପକାଉଛନ୍ତି, ଆଣ୍ଠେଇ ପକାଉଛନ୍ତି । ଉପର ଶ୍ରେଣୀର ପିଲାକୁ ନେଇ ବସାଇ ଦେଉଛନ୍ତି ତଳ ଶ୍ରେଣୀରେ ।

ପିଲାଙ୍କୁ ସ୍କୁଲ୍‌ରୁ ବାହାର କରି ଦିଆଯିବ ବୋଲି ଧମକ ଦେଉଛନ୍ତି । ନାଲି ଆଖି ଦେଖାଉଛନ୍ତି । ତାଚ୍ଛଲ୍ୟ କରି ଅପମାନ ଦେଉଛନ୍ତି । ବିଶେଷ କରି ଯେଉଁ ଛାତ୍ରଛାତ୍ରୀମାନେ ଅପେକ୍ଷାକୃତ ଗରିବ ପରିବାରରୁ ଆସିଛନ୍ତି, ସେମାନଙ୍କ ଉପରେ ଶିକ୍ଷକଙ୍କ ଅତ୍ୟାଚାରର ମାତ୍ରା ବେଶୀ ।

ଅନ୍ୟ କେହି କେହି ଯୁକ୍ତି କରୁଛନ୍ତି ଯେ, ଅଧାରୁ ପାଠପଢ଼ା ଛାଡୁଥିବା ଛାତ୍ରମାନଙ୍କର ବାପ'ମା ଦରିଦ୍ର । ସେହି ପିଲାମାନେ ବି ସ୍କୁଲ୍‌ରେ ଭଲ ପଢ଼ାପଢ଼ି କରନ୍ତିନି । କାହାର କାହାର ବ୍ୟବହାର ବା ଆଚରଣ ସମ୍ପର୍କିତ ମାନସିକ ତ୍ରୁଟି ରହିଛି । ତେଣୁ ସ୍କୁଲ୍‌ଛାଡ଼ି ପଳେଇ ଯାଉଛନ୍ତି ସେମାନେ ।

ତଥାପି ପିଲାମାନଙ୍କୁ ମାଗଣା ବହି, ମାଗଣା ପୋଷାକପତ୍ର ଓ ମାଗଣା ମଧ୍ୟାହ୍ନ ଭୋଜନ ଯୋଗାଇ ଦେଇ ମଧ ଅଧାରୁ ପାଠପଢ଼ା ବନ୍ଦ କରି ଦେଉଥିବାର ଧାରାରେ କୌଣସି ପରିବର୍ତ୍ତନ ଲକ୍ଷ୍ୟ କରାଯାଇପାରୁନି । ଅର୍ଥାତ୍ ସେମାନେ ସ୍କୁଲ୍ ପ୍ରତି ଆଦୌ ଆକର୍ଷିତ ହେଉନାହାନ୍ତି । କିନ୍ତୁ କାହିଁକି ? ହୁଏତ ପାଠପଢ଼ାର ବୋଝ ସେମାନେ ସମ୍ଭାଳି ପାରୁନାହାନ୍ତି । ଶିକ୍ଷକମାନେ ସେମାନଙ୍କର ମନଲାଖି ହୋଇପାରୁନାହାନ୍ତି । ନିଜ ଘରେ ସ୍କୁଲ୍‌ର ପରିବେଶ ଉପଭୋଗ କରିନପାରିଲେ ମଧ ସ୍କୁଲ୍‌ରେ ଉପଭୋଗ କରିପାରୁନାହାନ୍ତି ଘରର ପରିବେଶ । ଶିକ୍ଷକ ଛାତ୍ରଙ୍କୁ ପିତୃସ୍ନେହ ଦେବାରେ ବୀତସ୍ପୃହ । ଶିକ୍ଷିକା ମା'ର ଭୂମିକା ନେବାକୁ ନାମଙ୍ଗ, ତେଣୁ କେଉଁ ଆକର୍ଷଣ ବଳରେ ସେମାନେ ବାନ୍ଧି ହୋଇ ରହିବେ ସ୍କୁଲ୍‌ରେ ?

ଏବେ ତ ପାଠଶାଳାମାନେ ପାଲଟିଛନ୍ତି ବନ୍ଦିଶାଳା । ସେଠାରେ ଜେଲ୍ ଭୋଗୁଛି ପାଠ । ଜେଲ୍ ଭୋଗୁଛନ୍ତି ଛାତ୍ରଛାତ୍ରୀ । ସ୍କୁଲ୍ ପାଇଁ ଶୃଙ୍ଖଳାର ସଂଜ୍ଞା ସ୍ୱତନ୍ତ୍ର । ତାହାହେଲା, ଛାତ୍ରଛାତ୍ରୀମାନେ ପାଟିତୁଣ୍ଡ ନକରି ଧୀରସ୍ଥିର ଭାବରେ କଟେଇ ଚାଲିବେ ଘଣ୍ଟା ପରେ ଘଣ୍ଟା । ଯେଉଁ ଛାତ୍ର ବେଶ୍ ଶାନ୍ତ, ପରୀକ୍ଷାରେ ଭଲ ନମ୍ବର ରଖେ କିମ୍ବା ଭଲ ଖେଳାଖେଳି କରେ ସେ ହେଲା ଭଲ ଛାତ୍ର । ଚିନ୍ତା କରିବା ତା' ପାଇଁ ମନା । ତା' ନିଜ ମସ୍ତିଷ୍କକୁ ସ୍କୁଲ୍‌ଫାଟକ ପାଖରେ ଛାଡ଼ିଦେଇ ଆସି ଶିକ୍ଷକଙ୍କ ଚିନ୍ତା ଅନୁସାରେ ପରିଚାଳିତ ହେବ ସେ ସ୍କୁଲ୍‌ରେ ଥିବା ପର୍ଯ୍ୟନ୍ତ । ତା'ଠାରେ କୌଣସି ବ୍ୟତିକ୍ରମକୁ ବରଦାସ୍ତ କରିବା ଶିକ୍ଷକଙ୍କ ଦ୍ୱାରା ଜାରି କରାଯାଇଥିବା ଶୃଙ୍ଖଳାର ଅବମାନନା । ଶିକ୍ଷକର ଶିକ୍ଷକ ଯେଉଁଭଳି ଥିଲେ, ଠିକ୍ ସେହିଭଳି ଢଙ୍ଗରେ ଗଢ଼ି ଉଠିଛନ୍ତି ଶିକ୍ଷକ ଗୋଷ୍ଠୀ ।

ଆପଣମାନେ କେବେକେବେ ସ୍କୁଲ୍‌ର ଖେଳ ଉତ୍ସବକୁ ଯାଇଥିବେ ନିଜ ନିଜ ପିଲାଙ୍କୁ ନେଇ । ଆପଣ ମନେ ମନେ ଭାବୁଥିବେ, "ମୋ ପୁଅ ଆଗେ ଦୌଡ଼ିଯାଇ ଫାଷ୍ଟ ହୋଇଯାଆନ୍ତା କି ?" କିନ୍ତୁ ଦଉଡ଼ା ଆରମ୍ଭ କରିବା ପାଇଁ ହୁଇସିଲ୍ ବାଜିବା ମାତ୍ରେ ଆପଣଙ୍କ ପୁଅ, ତାଙ୍କ ଝିଅ ଏବଂ ସେମାନଙ୍କ ଭଳି ଆଉ କେତେକ ପିଲା ଦଉଡ଼ିବା ବଦଳରେ ଠିଆ ହୋଇ ରହିଯାଆନ୍ତି । କେହି କେହି ଅଧା ବାଟରୁ ବାଟ ଭାଙ୍ଗି ପଛକୁ ଫେରିଆସନ୍ତି । କାଉଟିଏ ଆଖିରେ ପଡ଼ିଲେ ଦଉଡ଼ିବା ଛାଡ଼ି କାଉକୁ 'ହାସୁ, ହାସୁ' କରି ହୁରୁଡ଼େଇବାରେ ଲାଗିଯା'ନ୍ତି । ଆପଣଙ୍କ ପୁଅର ଏହି ବ୍ୟବହାରରେ ବ୍ୟଥିବ ହୋଇପଡ଼ନ୍ତି ଆପଣ । ଭାବନ୍ତି, 'ମୋ ପିଲାଟା ବଡ଼ ଅନ୍ୟମନସ୍କ । ଯାହା ଶିଖେଇ ଶିଖେଇ ଏଠାକୁ ଆଣିଥିଲି ସବୁ ଭୁଲିଗଲା ସେ ।' କିନ୍ତୁ ଆପଣ ଯଦି ଚିନ୍ତା କରିଥାନ୍ତେ ଯେ, ଆପଣଙ୍କ ପିଲାଟି ପିଲାଟିଏ ମାତ୍ର । ପିଲାଏ ଯେମିତି ବ୍ୟବହାର ଦେଖାଇଥାନ୍ତି, ସେ ଠିକ୍ ସେହିଭଳି ଆଚରଣ ମାତ୍ର ଦେଖାଇଛି, ତେବେ ଆପଣଙ୍କ ମନ ଭାଙ୍ଗି ପଡ଼ି ନଥାନ୍ତା । ବରଂ ମଜା ଲାଗିଥାନ୍ତା ଆପଣଙ୍କୁ । ହସ ଫୁଟି ଉଠିଥାନ୍ତା ଆପଣଙ୍କ ଓଠରେ । କିନ୍ତୁ କେଇଜଣ ବାପମା' ଅବା ଏଭଳି ଧାରାରେ ଚିନ୍ତା କରିଥାନ୍ତି ?

ପ୍ରତ୍ୟେକ ପିତାମାତା ଏବଂ ଶିକ୍ଷକ ମନେ ରଖିବାର କଥା ଯେ, ଛୋଟ ପିଲାମାନେ ଯାହା ଯାହା ଭାବନ୍ତି, ତାହା ସବୁବେଳେ ପ୍ରକାଶ କରିପାରନ୍ତିନି ଭାଷା ମାଧ୍ୟମରେ । ସେମାନେ ପ୍ରଶ୍ନ ପଚାରନ୍ତି । ଉତ୍ତର ନମିଳିଲେ ପ୍ରଶ୍ନ ପଚାରିବାର ସେମାନଙ୍କର ଉତ୍ସାହ ମରିଯାଏ । ସେମାନେ ନିଜ ଢଙ୍ଗରେ ପ୍ରତିବାଦ ମଧ୍ୟ ଜଣାଇଥାନ୍ତି । କିନ୍ତୁ ସେଥିପ୍ରତି ଧ୍ୟାନ ନ ଦେଲେ ଚୁପ୍ ରହିବାକୁ ଶ୍ରେୟସ୍କର ମଣନ୍ତି ସେମାନେ । ସ୍କୁଲ୍‌ରେ ଶିକ୍ଷକଙ୍କଠାରୁ ଦଣ୍ଡପାଇଲେ ଏବଂ ପରିବାରରେ ବାପମା'ଙ୍କ ଠାରୁ ଦଣ୍ଡ ପାଇଲେ ସାନ୍ତ୍ୱନା ପାଇଁ କାହାର ଶରଣ ପଶିବେ ସେମାନେ ? ସେମାନେ ଶରଣ ପଶିବେ ମିଛର, କାରଣ କେବଳ 'ମିଛ' କହିଦେଲେ ହିଁ ସେମାନେ ସାମୟିକ ଅବ୍ୟାହତି ପାଇଯାଆନ୍ତି ଦଣ୍ଡ ପାଇବାରୁ । ତେଣୁ ନିଜ ସୀମିତ ଚିନ୍ତା ଓ ବୁଦ୍ଧିକୁ 'ମିଛ' ତିଆରିରେ ଲଗେଇଥାନ୍ତି ସେମାନେ । ଫଳରେ ପିଲାମାନଙ୍କର ସୃଜନଶୀଳ ଚିନ୍ତାର ହୁଏ କରୁଣ ଅପଚୟ ।

ଛୋଟ ପିଲାମାନେ ସ୍ୱାଭାବିକ ଭାବରେ କୌତୂହଳୀ । ସେମାନେ ମଧ୍ୟ ନିଜ ନିଜ ଦୁନିଆରେ 'ଚିନ୍ତାଶୀଳ ବ୍ୟକ୍ତି' । ପ୍ରକୃତି ହେଉଛି ସେମାନଙ୍କର ସୀମାହୀନ କ୍ରୀଡ଼ାକ୍ଷେତ୍ର ।

ପ୍ରକୃତିର ବୃକ୍ଷଲତା ପାଣିପବନ, ଗୋଡ଼ିମାଟି, ପଶୁପକ୍ଷୀ, ପୋକଜୋକ ଇତ୍ୟାଦି ସେମାନଙ୍କର ଖେଳ ସାମଗ୍ରୀ ଓ ସେମାନଙ୍କର ଅନୁକୂଳ ଚିନ୍ତା ଉଦ୍ରେକକାରୀ ।

କିନ୍ତୁ ଦୁର୍ଭାଗ୍ୟର କଥା ଯେ, ତିନି ଚାରି ବର୍ଷରେ ପହଞ୍ଚିଗଲେ ଆମେ ଶିକ୍ଷକମାନେ, ବାପାମାଆମାନେ ଏବଂ ବୟସ୍କ ବ୍ୟକ୍ତିମାନେ ସେମାନଙ୍କ ଚିନ୍ତାକୁ ବଳପୂର୍ବକ ଅପହରଣ କରିନେଉ । ସେମାନଙ୍କ ଚିନ୍ତାରେ ଆମର ଦାବି ସାବ୍ୟସ୍ତ କରୁ । ଆମେ ପାଲଟିଯାଉ ସେମାନଙ୍କ ଚିନ୍ତାର ସ୍ଥପତି । ଫଳରେ ସେମାନଙ୍କ ସୃଜନାତ୍ମକ ଚିନ୍ତାର ଅକାଳ ମୃତ୍ୟୁ ଘଟି ସେଠାରେ ଉଭା ହୁଏ ଆମ ବୟସ୍କମାନଙ୍କ ଅନମନୀୟ ଚିନ୍ତାର ଏକ ପ୍ରତିରୂପ ।

ସେଇଥିପାଇଁ ଉଇଲିୟମ୍ ଆଲ୍ଲିଙ୍ଗାନ୍ କ୍ଷୋଭ ପ୍ରକାଶ କରି କହିଥିଲେ –

"Where do all the children go to?
All the stupids all they grow to."

ଅର୍ଥାତ୍ – "କାହିଁ ଯା'ନ୍ତି ଶିଶୁ ଯେତେ ସୁକୁମାର ମତି ?
ଏଇ ମୂଢ଼ ନରନାରୀ ତାଙ୍କ ପରିଣତି ।"



# ଭ୍ରାନ୍ତ ଧାରଣାରେ ବିସ୍ଫୋରଣ-୧

ସଦ୍ୟ ବିବାହିତ ? ପତ୍ନୀ ସଦ୍ୟ ଗର୍ଭବତୀ ? ବାସ୍, ବିନା ଫିସ୍‌ରେ ଆପଣ ଦୁହିଁଙ୍କୁ ପରାମର୍ଶ ମିଳିବା ଆରମ୍ଭ ହୋଇଯିବଣି ? ପରାମର୍ଶଦାତାମାନଙ୍କୁ ଅବିଶ୍ୱାସ କରିବାର କୌଣସି କାରଣ ମଧ୍ୟ ନାହିଁ । ସେମାନେ ବୟସ୍କ । ଦୁଇ ତିନୋଟି ପିଲାଙ୍କର ମାଆବାପା । କାହା ପିଲା ଛୋଟ ତ ଆଉ କାହା ପିଲା ବଡ଼ । ପିଲା ପାଳିବାରେ ସେମାନଙ୍କର ରହିଛି ବ୍ୟକ୍ତିଗତ ଅଭିଜ୍ଞତା । ଏ' ପିଲା ପାଳିବା ଦୁନିଆରେ ତ ଆପଣ ଦୁହେଁ ହାଲି ପାଦ ପକେଇଲେ । ମା' ପେଟରେ ବଢୁଥିବା ପିଲାଟିର ଭଲମନ୍ଦ କଥା ଭାବି ମନରେ କିଛି କିଛି ଡର ଲାଗିବା ସ୍ୱାଭାବିକ । ଡର ଲାଗିଲେ ସମସ୍ତଙ୍କ କଥା କାନଡେରି ଶୁଣିବାକୁ ଭଲ ଲାଗେ । ତାହାଛଡ଼ା, ସେହି ପରାମର୍ଶଦାତାମାନଙ୍କର କୌଣସି ମନ୍ଦ ଉଦ୍ଦେଶ୍ୟ ନଥାଏ । ସେମାନେ ପ୍ରତ୍ୟେକେ ଆପଣଙ୍କର ହିତାକାଂକ୍ଷୀ ; କିଏ ନିଜ ଘର ଆତ୍ମୁ ତ କିଏ ଶ୍ୱଶୁର ଘର ଆତ୍ମୁ ; ପୁଣି କିଏ ପଡ଼ୋଶୀ ତ ଅନ୍ୟ କେହି କେହି ଆପଣ ଦୁହିଁଙ୍କର ପିଲାଦିନରୁ ପରିଚିତ । କିନ୍ତୁ ସେହି ସବ୍-ଜାନ୍‌ତା ଉପଦେଷ୍ଟାମାନଙ୍କର ଅଧିକାଂଶ ଉପଦେଶ ଭ୍ରାନ୍ତ ଧାରଣା ଉପରେ ପର୍ଯ୍ୟବସିତ ।

ଶୁଣିବେ କେତୋଟି ନମୁନା ? ଶୁଣନ୍ତୁ ତେବେ–

ତରୁଣୀ ଜଣକ ପ୍ରଥମ ପୋଖତି । ବଡ଼ ବ୍ୟସ୍ତ ହୋଇ କହି ପକେଇଲେ, "ଝିଅଟା ସବୁବେଳେ କାନ୍ଦୁଛି ; ନିଜେ ଶୋଉନି କି କାହାକୁ ଟିକିଏ ଶୁଆଇ ଦଉନି ।"

ତା'ପରେ ତାଙ୍କ ପାଖରେ ଅଜାଡ଼ି ହୋଇ ପଡ଼ିଲା ଉପଦେଶ । ଗୋଟିଏ ତ ନୁହେଁ, ପୂରା ୨୦ଟି ।

ଜଣେ କହିଲେ, "ନିଶ୍ଚୟ ତା'ର କାନ ବିନ୍ଧୁଛି, କାନରେ ଠୋପାଏ ଦିଠୋପା ତେଲ ପକେଇଦେ ।"

ଅନ୍ୟ ଜଣେ – "ଝାଡ଼ା ଅଟକିଚି ବୋଲି କାନ୍ଦୁଚି, ମଳଦ୍ୱାର ବାଟେ ପିଲାଙ୍କ-ସପୋଜିଟୋରିଟିଏ ଭର୍ତ୍ତି କରିଦେ । ଝାଡ଼ାଫେରି ପେଟ ଉଶ୍ୱାସ ହୋଇଗଲେ କାନ୍ଦିବା ବନ୍ଦ ହୋଇଯିବ ।"

୩ୟ ବ୍ୟକ୍ତି – "ପେଟ କାମୁଡୁଥିବ । ତା' ପେଟକୁ ଟିକିଏ ଜୋର୍‌ରେ ଚିପି ଧରିବୁ । ତାହାହେଲେ ଚାଲିଯିବ ପେଟକାମୁଡ଼ା ।"

୪ର୍ଥ ବ୍ୟକ୍ତି – "ଆଖିରେ ବଥା ହଉଥିବ । ଆଖିରେ କଳା ପିନ୍ଧେଇ ଦେ ।"

୫ମ – "ଜର ହେଇଥିବ ମ । କମ୍ବଳ ଘୋଡ଼େଇ ଦେ ।"

ବିଚରା ମାଆଟି ଏବେ କରିବ କଅଣ ? ସବୁତକ ପରାମର୍ଶ ଗୋଟିକ ପରେ ଗୋଟିଏ କରି ପାଳନ କରିବ ନା ସବୁତକ ପାଳନ କରିବ ଏକାବେଳକେ ? ସବ୍-ଜାନ୍‌ତା ଲୋକମାନଙ୍କର 'ଭ୍ରାନ୍ତ-ଧାରଣା-ସଂଗ୍ରହାଳୟ'ରୁ ଜ୍ଞାନ ନେବେ ନା ଜ୍ଞାନ ନେବେ ବିଶେଷଜ୍ଞ ଡାକ୍ତରମାନଙ୍କ ପାଖରୁ ?

ପିଲା ପାଳିବା ବିଷୟରେ ପ୍ରଚଳିତ କେତେକ ଭୁଲ୍‌ଧାରଣା ସମ୍ପର୍କରେ ଏଠାରେ ସୂଚନା ଦିଆଯାଉଛି । କୁହାଯାଉଛି ଠିକ୍ ଧାରଣାଟି ସମ୍ପର୍କରେ ।

ଭୁଲ୍ ଧାରଣା : ପିଲା ଜନ୍ମ ହେବାର ଚାରିଦିନ ପରେ ହିଁ ମା' ସ୍ତନରେ କ୍ଷୀର ଆସିଥାଏ । ତେଣୁ ଚତୁର୍ଥ କି ପଞ୍ଚମ ଦିନ ବେଳକୁ ମା' ଛୁଆକୁ ସ୍ତନ୍ୟପାନ କରାଇବା ଉଚିତ ।

ଠିକ୍ ଧାରଣା : ପିଲା ଜନ୍ମ ନେବା ପୂର୍ବରୁ ମାଆ ସ୍ତନରୁ କ୍ଷୀର ଝରିବା ଆରମ୍ଭ ହୋଇଯାଇଥାଏ । କିନ୍ତୁ ପିଲା ସ୍ତନ ଚୁଚୁମିବା ଆରମ୍ଭ କରିବା ମାତ୍ରେ କ୍ଷୀରର ପରିମାଣ ବଢ଼ିଯାଏ । ତେଣୁ ଜନ୍ମ ହେବାର ଠିକ୍ ପରେ ପରେ ପିଲା ମା' କ୍ଷୀର ଖାଇବା ଆରମ୍ଭ କରିଦେବା ଉଚିତ । ଖୁବ୍ ବେଶୀରେ ମାତ୍ର ଏକ ଘଣ୍ଟା ବିଳମ୍ବ କଲେ ଚଳିବ, ବେଶୀ ବିଳମ୍ବ କରିବା ଆଦୌ ନିରାପଦ ନୁହେଁ । ପିଲାର ଓଠ ମାଆର ସ୍ତନ ଛୁଇଁବା କ୍ଷଣି ମାଆଠାରୁ କ୍ଷରିତ ହୁଏ ଦୁଇଟି ହରମୋନ୍ । ଗୋଟିଏ ହରମୋନ୍ ସ୍ତନରେ କ୍ଷୀର ତିଆରି ବଢ଼େଇ ଦିଏ; ଅନ୍ୟଟି ବଢ଼େଇଦିଏ ସ୍ତନରୁ କ୍ଷୀର ଝରିବା । ତେଣୁ ମାଆଠାରେ ସିଜାରିଆନ୍ ଅପରେସନ୍ କରାଯାଇ ଶିଶୁ ଭୂମିଷ୍ଠ ହୋଇଥିଲେ ଓ ମାଆଠାରେ ସାଲାଇନ୍ ଲାଗିଥିଲେ ମଧ ଯେତେ ଶୀଘ୍ର ସମ୍ଭବ, ପିଲା ମାଆଠାରୁ ଖାଇବା ଦରକାର । କୌଣସି ଜଣେ ଆତ୍ମୀୟ ପିଲାକୁ ନେଇ ମାଆ ସ୍ତନ ଚୁଚୁମିବାରେ ସାହାଯ୍ୟ କରିବା ଆବଶ୍ୟକ । ଅପରେସନ୍

ଯୋଗୁ ମାଆ ଅସ୍ୱସ୍ତି ଅନୁଭବ କରୁଥିଲେ ମଧ୍ୟ ଛୁଆର ମଙ୍ଗଳ ପାଇଁ ତୁରନ୍ତ ସ୍ତନ୍ୟପାନ କରାଇବା ଉଚିତ ।

ଭୁଲ୍ : ସ୍ତନରୁ ବାହାରୁଥିବା ପ୍ରଥମ କ୍ଷୀର 'ଡାଆଣୀ କ୍ଷୀର' । ଏହା ପୂଯ ଭଳି ଦେଖାଯାଉଥିବାରୁ ପୂଯ ଭଳି ଅପରିଷ୍କୃତ ଓ ପିଲାପାଇଁ କ୍ଷତିକାରକ ।

ଠିକ୍ : ସ୍ତନରୁ ବାହାରିଥିବା ପ୍ରଥମ କ୍ଷୀରକୁ 'କଷ କ୍ଷୀର' ବୋଲି କୁହାଯାଏ । ଡାକ୍ତରୀ ଭାଷାରେ କୁହାଯାଏ 'କୋଲେଷ୍ଟ୍ରମ୍' । ଏଥିରେ ଥାଏ ବେଶୀ ପରିମାଣର ଭିଟାମିନ୍ ଓ ପ୍ରୋଟିନ୍ । ପିଲାଙ୍କୁ ବିଭିନ୍ନ ଜୀବାଣୁ ଓ ଭୂତାଣୁ ଆକ୍ରମଣରୁ ସୁରକ୍ଷିତ ରଖିପାରୁଥିବା ଇମ୍ୟୁନୋଗ୍ଲୋବୁଲିନ୍ ମଧ୍ୟ ଅଧିକ ପରିମାଣରେ କଷ କ୍ଷୀରରେ ଥାଏ । ପୁଣି ଏଥିରେ ଏପରି ଏକ ପ୍ରକାରର ଇମ୍ୟୁନୋଗ୍ଲୋବୁଲିନ୍ ଥାଏ, ଯାହା ପିଲାର ଅନ୍ତ୍ରନଳୀର ଭିତର ପଟେ ଲାଖିଯାଇ ତାହାଠାରେ ଆଜ୍‌ମା ଓ ଏକ୍‌ଜିମା ଭଳି ଆଲର୍ଜି ସମ୍ପର୍କିତ ରୋଗ ନିବାରଣ କରିପାରେ । ପିଲା ବଡ଼ ହୋଇଗଲେ ମଧ୍ୟ ଏହି ସୁରକ୍ଷା ବ୍ୟବସ୍ଥା ବଳବତ୍ତର ଥାଏ ।

ଭୁଲ୍ : ମା' କ୍ଷୀର ଖାଇବା ସଙ୍ଗେ ସଙ୍ଗେ ପିଲାଙ୍କୁ ମଝିରେ ମଝିରେ ପାଣି ପିଆଇବା ମଧ୍ୟ ଉଚିତ ।

ଠିକ୍ : ପିଲାପାଇଁ ଦିନମାନ ଭିତରେ ଯେତିକି ଜଳ ଓ ଖାଦ୍ୟ ଉପାଦାନ ଦରକାର ପଡ଼େ, ସବୁତକ ମାଆ କ୍ଷୀରରୁ ହିଁ ମିଳିଯାଏ । ଏପରିକି ଗ୍ରୀଷ୍ମଦିନେ ଓ ଶୁଖିଲା ପାଗରେ ମଧ୍ୟ ମାଆ କ୍ଷୀର ଯୋଗାଇଦିଏ ଯଥେଷ୍ଟ ଜଳ । ତେଣୁ କେବଳ ମାଆ କ୍ଷୀର ଖାଉଥିବା ଛୁଆଙ୍କୁ ପାଣି ପିଆଇବାର କୌଣସି ଆବଶ୍ୟକତା ନାହିଁ ।

ଭୁଲ୍ : ନୂଆ ଜନ୍ମ ନେଇଥିବା କଅଁଳା ପିଲାଟି ପାଇଁ ମଲ୍‌ଟି ଭିଟାମିନ୍ ଓ ଭିଟାମିନ୍ 'ସି' 'ରହିଥିବା ଡ୍ରପ୍ସ ଓ ଗ୍ରାଇପ୍ ୱାଟର୍ ଦେବା ଦରକାର ।

ଠିକ୍ : ସ୍ତନ୍ୟପାନ କରୁଥିବା ଶିଶୁ ପାଇଁ ଅତିରିକ୍ତ ଭିଟାମିନ୍‌ର ଆବଶ୍ୟକତା ପଡ଼େ ନାହିଁ । ବରଂ ମାଆଙ୍କୁ ହିଁ ପୁଷ୍ଟିକର ଖାଦ୍ୟ ଖାଇବାକୁ ଦେବା ଉଚିତ । କାରଣ କ୍ଷୀରବାଟେ ମାଆ ଦେହରୁ ଶ୍ୱେତସାର, ସ୍ନେହସାର, ପୁଷ୍ଟିସାର, ଧାତୁସାର, ଭିଟାମିନ୍ ଓ ଜଳ ବାହାରିଯାଏ । ଫଳରେ ମାଆଠାରେ ଖାଦ୍ୟ ଉପାଦାନଗୁଡ଼ିକର ଅଭାବ ଘଟିବା ସ୍ୱାଭାବିକ । ତେଣୁ ମାଆଙ୍କୁ ଅଧିକ ଖାଦ୍ୟ ଦେବା ଖୁବ୍ ଗୁରୁତ୍ୱପୂର୍ଣ୍ଣ ।

ଗ୍ରାଇପ୍ ୱାଟର୍‌ରେ ଥାଏ କିଛି ମାତ୍ରାର ଆଲକହଲ୍ । ଏହା ନିଦ କରାଇଥାଏ । ତାହାଛଡ଼ା ଗ୍ରାଇପ୍ ୱାଟର୍ ଖାଇଲେ ପିଲାର ପେଟରୁ ଗ୍ୟାସ୍ ବାହାରିଯାଏ । ପ୍ରତି କଥାରେ ତାକୁ ଗ୍ରାଇପ୍ ୱାଟର୍ ଦେବା କିମ୍ବା ନିୟମିତ ଭାବରେ ଦେବା ଆଦୌ ଉଚିତ ନୁହେଁ । କେବଳ କାଁଭାଁ ଏହାକୁ ଦିଆଯାଇପାରେ । ତାହାଛଡ଼ା, ଗ୍ରାଇପ୍ ୱାଟରକୁ ଔଷଧର ସ୍ୱୀକୃତି ମିଳିନାହିଁ । ପିଲାର କୌଣସି ଅସୁବିଧା ଉପୁଜିଲେ ଡାକ୍ତରଙ୍କ ପରାମର୍ଶରେ ତାକୁ ଆବଶ୍ୟକ ଔଷଧ ଦେବା ହିଁ ଯଥାର୍ଥ ।

ଭୁଲ୍ : କେବଳ ମାଆ କ୍ଷୀର ଖାଇଲେ ପିଲାର ପତଳା ଝାଡ଼ା ହୁଏ ଓ ବାନ୍ତି ମଧ୍ୟ ହୁଏ ।

ଠିକ୍ : କେବଳ ମାଆ କ୍ଷୀର ଖାଉଥିବା ପିଲା ଅଧିକ ଥର ଝାଡ଼ା ଫେରିଥାଏ । ଝାଡ଼ା ମଧ୍ୟ ପତଳା ହୁଏ । ପୁଣି ବେଳେବେଳେ, ଏହା ଲାଳୁଆ ଓ ଶାଗୁଆ ହୋଇଥାଏ । କିନ୍ତୁ ପିଲାଟି ଯଦି ସୁସ୍ଥ ଥାଏ ଓ ଫୂର୍ତ୍ତି ରହିଥାଏ, ତେବେ ତା'ର ଝାଡ଼ାକୁ ନେଇ ଚିନ୍ତିତ ହେବାର କୌଣସି କାରଣ ନାହିଁ ।

ଭୁଲ୍ : ପ୍ରତ୍ୟେକ ଥର ଖୁଆଇବା ବେଳେ ପିଲା ଦୁଇଟିଯାକ ସ୍ତନରୁ ହିଁ ଖାଇବା ଉଚିତ ।

ଠିକ୍ : ପିଲା ମାଆ ସ୍ତନରୁ କ୍ଷୀର ଶୋଷିବା ବେଳେ ପ୍ରଥମେ ଯେଉଁ କ୍ଷୀର ବାହାରେ ତାହା ବେଶୀ ଢଳୁଆ । ସେଥିରେ ଥାଏ ବେଶୀ ପରିମାଣର ପୁଷ୍ଟିସାର, ଶ୍ୱେତସାର, ଭିଟାମିନ୍ ଏବଂ ଧାତୁସାର । ଖାଇବା ସରି ଆସିବାର କିଛି ସମୟ ପୂର୍ବରୁ ବାହାରୁଥିବା କ୍ଷୀର ଦେଖିବାକୁ ବେଶୀ ଧଳା । ଏଥିରେ ସ୍ନେହସାରର ପରିମାଣ ବେଶୀ । ତେଣୁ ପିଲା ଗୋଟିଏ ସ୍ତନରୁ ହିଁ ପେଟ ପୂରେଇ ଖାଇନେବା ଦରକାର । ଏପରି ହେଲେ ସେହି ସ୍ତନରୁ କ୍ଷୀରତକ ସରିଯାଏ । ଅନ୍ୟ ସ୍ତନଟିରେ ଭରପୂର କ୍ଷୀର ଥିବାରୁ ପରବର୍ତ୍ତୀ ଥର ସେ ସେହି ଅନ୍ୟ ସ୍ତନଟିରୁ କ୍ଷୀର ଖାଇବା ଉଚିତ । ପ୍ରଥମ ସ୍ତନରୁ କ୍ଷୀର ଖାଇସାରି ପରଥରକୁ ଦ୍ୱିତୀୟ ସ୍ତନରୁ କ୍ଷୀର ଖାଇବାର ଅବଧିରେ କ୍ଷୀର ତିଆରି ହୋଇ ପ୍ରଥମ ସ୍ତନଟି ପୁନଶ୍ଚ କ୍ଷୀରପୂର୍ଣ୍ଣ ହୋଇଉଠେ । ତେଣୁ ପିଲା ପ୍ରତ୍ୟେକ ଥର କେବଳ ଗୋଟିଏ ସ୍ତନରୁ ହିଁ କ୍ଷୀର ଖାଇବା ଦରକାର ଓ ଗୋଟିକ ପରେ ଅନ୍ୟଟିରୁ କ୍ରମରେ ଖାଇବା ଦରକାର ।

ଭୁଲ୍ : ଋତୁସ୍ରାବ ସମୟରେ ମାଆ ପିଲାକୁ ସ୍ତନ୍ୟପାନ କରାଇବା ଉଚିତ ନୁହେଁ । ମାଆ ଅସୁସ୍ଥ ଥିଲେ, ଛୁଆ ମାଆଠାରୁ ଖାଇବା ନିରାପଦ ନୁହେଁ ।

ଠିକ୍ : ଋତୁସ୍ରାବ ସମୟରେ ଓ ଅସୁସ୍ଥ ଥିବାବେଳେ ମାଆ ଛୁଆକୁ ସ୍ତନ୍ୟପାନ କରାଇବା ମଧ୍ୟ ନିରାପଦ । ତେବେ ମାଆ 'ଏଚ୍.ଆଇ.ଭି. ପଜିଟିଭ୍' ହୋଇଥିଲେ ସ୍ତନ୍ୟପାନ କରାଇବାରୁ ବିରତ ରହିବା ବାଞ୍ଛନୀୟ ।

ଭୁଲ୍ : ଶିଶୁକୁ ସ୍ତନ୍ୟପାନ କରେଇଲେ ମାଆଠାରେ ସୌନ୍ଦର୍ଯ୍ୟହାନି ଘଟେ ।

ଠିକ୍ : ସ୍ତନ୍ୟପାନ କରାଇଲେ ମାଆର ଓଜନ କମିଯାଏ ଓ ଖୁବ୍ ଶୀଘ୍ର ସେ ଗର୍ଭାବସ୍ଥା ପୂର୍ବର ସୌନ୍ଦର୍ଯ୍ୟ ଫେରିପାଏ । କିନ୍ତୁ ଯେଉଁମାନେ ସ୍ତ୍ୟନପାନ କରାନ୍ତି ନାହିଁ, ସେମାନେ ବେଶୀ ମୋଟା ରହିଯାନ୍ତି । ସେମାନଙ୍କ ଶରୀରରେ ଚର୍ବି ଜମି ରହି ପୃଥୁଳ କରି ପକାଏ । ତାହାଛଡ଼ା, ସ୍ତନ୍ୟପାନ କରାଉଥିବା ନାରୀମାନଙ୍କୁ ସ୍ତନକର୍କଟ ରୋଗ ଓ ଡିମ୍ବାଶୟ କର୍କଟ ରୋଗ ହେବାର ସମ୍ଭାବନା କମ୍ ।

ଭୁଲ୍ : ସ୍ତନର ଆକାର ଛୋଟ ଥିଲେ ସେଥିରୁ କମ୍ କ୍ଷୀର ବାହାରେ ।

ଠିକ୍ : ସ୍ତନରେ କ୍ଷୀର ପ୍ରସ୍ତୁତିର ପରିମାଣ ସ୍ତନର ଆକାର ଉପରେ ନିର୍ଭର କରେ ନାହିଁ । ସ୍ତନର ଆକାର ଛୋଟ ରହିଥିଲେ ପିଲା କ୍ଷୀର ଖାଇ ଚାଲିଲେ ସେଥିରୁ କ୍ଷୀର ଝରି ଚାଲିଥାଏ । ତେଣୁ ପିଲାପାଇଁ କ୍ଷୀର ଅଭାବ ହୁଏନାହିଁ ।

ଭୁଲ୍ : ଅନ୍ତତଃ ଗୋଟିଏ ବର୍ଷ ପର୍ଯ୍ୟନ୍ତ ପିଲାକୁ କେବଳ ମାଆକ୍ଷୀର ଖୁଆଇବା ଉଚିତ । କିମ୍ବା ପିଲାର ପ୍ରଥମ ଦାନ୍ତ ଉଠି ସାରିବା ପର୍ଯ୍ୟନ୍ତ ସେ କେବଳ ମାଆକ୍ଷୀର ଖାଉଥିବା ଦରକାର ।

ଠିକ୍ : ପିଲା ଛଅମାସର ହେବା ପର୍ଯ୍ୟନ୍ତ ସେ କେବଳ ମାଆକ୍ଷୀର ଖାଇବା ଉଚିତ । କାରଣ ଛଅମାସ ହେବା ପର୍ଯ୍ୟନ୍ତ ମାଆ କ୍ଷୀର ତା'ର ସମ୍ପୂର୍ଣ୍ଣ ଆବଶ୍ୟକତା ପୂରଣ କରିଥାଏ । କିନ୍ତୁ ଛଅମାସ ପୂରିଗଲା ପରେ, ମାଆ କ୍ଷୀର ତା'ର ଆବଶ୍ୟକତା ପୂରଣ କରିପାରେ ନାହିଁ । ଅର୍ଥାତ୍ ତା'ର ଆବଶ୍ୟକତା ବଢ଼ି ବଢ଼ି ଯାଉଥିବା ବେଳେ କ୍ଷୀରରେ ଖାଦ୍ୟ ଉପାଦାନଗୁଡ଼ିକର ପରିମାଣ କମି କମି ଆସେ । ଏହି କାରଣରୁ, ପିଲା ଚାରି-ଛଅ ମାସର ହୋଇଗଲେ, ତାକୁ ପାଚିଲା କଦଳୀ, ଆମ୍ବ,ଅମୃତଭଣ୍ଡା, ଭାତ, ରୁଟି, ପାଉଁରୁଟି ଇତ୍ୟାଦିକୁ ଦଳି ଦିଆଯାଇପାରିବ । ଆଳୁ ଓ ସେଓ ବା ଆପଲ୍‌କୁ ସିଝେଇ ଚକଟି ଦେଇହେବ । ଚାଉଳ କି ସୁଜିର ଖିରି ଓ ଖେଚଡ଼ି ମଧ୍ୟ ବେଶ୍ ଉପଯୋଗୀ । ଚାଉଳ, ଗହମ ଓ ଡାଲିକୁ ଭାଜି ପ୍ରସ୍ତୁତ କରାଯାଇଥିବା ଛତୁଆକୁ କ୍ଷୀରରେ ଗୋଳି ଓ ଚିନି ମିଶେଇ ଦେଇହେବ ।



# ଭ୍ରାନ୍ତ ଧାରଣାରେ ବିସ୍ଫୋରଣ-୨

ଭୁଲ୍ : ପିଲାକୁ ସବୁଦିନେ ଗାଧୋଇଦେଲେ ଓ ପଙ୍ଖା ତଳେ ଶୁଆଇଲେ ତାକୁ ସର୍ଦ୍ଦି ହୁଏ, ଥଣ୍ଡା ଧରେ ।

ସର୍ଦ୍ଦି ହେଲେ ତାକୁ ସ୍ୱେଟର୍ ପିନ୍ଧେଇ, ମୁଣ୍ଡରେ ଟୋପି ଲଗେଇ ଓ ଦେହରେ କମ୍ବଳ ଢାଙ୍କି ରଖିବା ଉଚିତ ।

ପିଲାର ଜ୍ୱର ଥିଲେ କି ତାକୁ ଥଣ୍ଡା ଧରିଥିଲେ ପାଣିରେ ପୋଛାପୋଛି କରିବା ଦ୍ୱାରା ତାକୁ ନିମୋନିଆ ହୋଇଯାଏ ।

ଲେମ୍ବୁ, କମଳା ଭଳି ଖଟାଫଳ ଖାଇଲେ ଓ କୋଲଡ୍‌ଡ୍ରିଙ୍କ୍ ପିଇଲେ ଥଣ୍ଡା ଧରେ ।

ଠିକ୍ : କାଶ ସର୍ଦ୍ଦି ରୋଗ ଭୂତାଣୁ ଆକ୍ରମଣ ଯୋଗୁ ହୋଇଥାଏ । ଏହି ଭୂତାଣୁ ବାୟୁରେ ଥାଏ । ସର୍ଦ୍ଦି ରୋଗ ଭୋଗୁଥିବା ଶିଶୁର ଓ ବୟସ୍କ ବ୍ୟକ୍ତିର ଜାମାପଟା ଓ ବାସନକୁସନ ମଧ ଭୂତାଣୁ ସଂକ୍ରମିତ ହୋଇଥାଏ । ସେହି ରୋଗୀର କାଶଛିଙ୍କରେ ମଧ ଭୂତାଣୁ ବାହାରି ଆସିଥାନ୍ତି । ତେଣୁ ସୁସ୍ଥ ଶିଶୁ ସର୍ଦ୍ଦି ରୋଗରେ ଆକ୍ରାନ୍ତ ବ୍ୟକ୍ତି କିମ୍ବା ତାଙ୍କଦ୍ୱାରା ବ୍ୟବହୃତ ଜିନିଷପତ୍ରଗୁଡ଼ିକର ସଂସ୍ପର୍ଶରେ ଆସିଲେ ରୋଗାକ୍ରାନ୍ତ ହୋଇପଡ଼ିବାର ସମ୍ଭାବନା ସୃଷ୍ଟି ହୁଏ । ପିଲାକୁ ବେଶୀଗୁଡ଼ାଏ ଗରମ ଜାମାପଟା ପିନ୍ଧେଇ ଘୋଡ଼େଇ ଘାଡ଼େଇ ରଖିଲେ ସେ ବରଂ ଖୁବ୍ ଅସ୍ୱସ୍ତି ତଥା ଅସ୍ଥିରତା ଅନୁଭବ କରିଥାଏ ସିନା, ସେ ଭୂତାଣୁମୁକ୍ତ ହୋଇପାରେ ନାହିଁ । ଖଟାଳିଆ ଫଳ ଓ କୋଲଡ୍‌ଡ୍ରିଙ୍କ୍ ପ୍ରତି ଆଲର୍ଜି ଥିଲେହିଁ ପିଲାଠାରେ ସର୍ଦ୍ଦିର ଲକ୍ଷଣ ପ୍ରକାଶ ପାଇପାରେ । ଏହା ସହ ଭୂତାଣୁ ସଂକ୍ରମଣର କୌଣସି ସମ୍ବନ୍ଧ ନାହିଁ ।

ଭୁଲ୍ : ସର୍ଦ୍ଦି ହେଲେହିଁ ପିଲା ଛିଙ୍କିଥାଏ ।

ଠିକ୍ : ନାକ ବାଟେ କୌଣସି ବାହାର ଜିନିଷ ପଶିଗଲେ ତାକୁ ନିକାଳି ଦେବାପାଇଁ ଛିଙ୍କ ହୁଏ । ନାକ ଭିତରକୁ ପରିଷ୍କାର ରଖିବାରେ ମଧ ଛିଙ୍କ ସାହାଯ୍ୟ କରେ । ଏହା ଏକ ପ୍ରାକୃତିକ କ୍ରିୟା ଓ ଆମର ମଙ୍ଗଳ ପାଇଁ ହିଁ ପ୍ରକୃତି ଆମଠାରେ ଛିଙ୍କ ହେବାର ବ୍ୟବସ୍ଥା ଖଞ୍ଜିଛି । ତେଣୁ ପିଲା ଛିଙ୍କିଲେ ତାକୁ ସର୍ଦ୍ଦି ଧରିଛି ବୋଲି ଭାବିନେବା ଭୁଲ୍ । କିନ୍ତୁ ପିଲାକୁ ସର୍ଦ୍ଦି ଧରି ତା' ନାକରୁ ପାଣି ବୋହୁଥିଲେ, ନାକ ଭିତରୁ

ପାଣି ବାହାର କରିଦେଇ ନିଃଶ୍ୱାସ ପ୍ରଶ୍ୱାସ ନେବା ସହଜ କରିବା ନିମନ୍ତେ ସେ ଘନଘନ ଛିଙ୍କିଥାଏ ।

ଭୁଲ୍ : ଦାନ୍ତ ଉଠିଲେ ପିଲାକୁ ଜ୍ୱର ଓ ପତଳା ଝାଡ଼ା ହୋଇଥାଏ ।

ଠିକ୍ : ଦାନ୍ତ ଉଠିବା ହେତୁ ପିଲାର ଜ୍ୱର କି ପତଳା ଝାଡ଼ା ହୋଇନଥାଏ । ବରଂ ଦାନ୍ତ ଉଠୁଥିବା ବେଳେ ପିଲାର ମାଢ଼ି ଶୂଳେଇ ହୁଏ । ତେଣୁ ତା' ହାତରେ ଯାହା ପଡ଼େ, ସେ ତାକୁ ପାଟିରେ ପୂରେଇ ମାଢ଼ିରେ ଘଷେ କିମ୍ୱା ମାଢ଼ିରେ ଦାବିଥାଏ । ଏପରି କରିବା ଫଳରେ ପାଟିବାଟେ ଜୀବାଣୁ, ଭୂତାଣୁ ଇତ୍ୟାଦି ଦେହରେ ପ୍ରବେଶ କରି ରୋଗ କରାଇଥାଏ ।

ଭୁଲ୍ : ମୋଟାସୋଟା ପିଲା ଅଧିକ ସୁସ୍ଥ ।

ଠିକ୍ : ପିଲା ବେଶୀ ମୋଟା ହେବା ସୁସ୍ଥତାର ଲକ୍ଷଣ ନୁହେଁ କି ବେଶୀ ପତଳା ହେବା ମଧ ସୁସ୍ଥତାର ଲକ୍ଷଣ ନୁହେଁ । ଯେଉଁମାନେ ମୋଟା, ସେମାନଙ୍କଠାରେ ଥାଏ ବେଶୀ ସଂଖ୍ୟାରେ ଚର୍ବି କୋଷ । ଏମାନେ ଭବିଷ୍ୟତରେ ପୃଥୁଳତା ଓ ଏହି ସମ୍ପର୍କିତ ଅନ୍ୟ ରୋଗଗୁଡ଼ିକର ଶିକାର ହୋଇପଡ଼ିବାର ସମ୍ଭାବନା ଅଧିକ । କେତେକ ପିଲା ପତଳା ହୋଇଥାନ୍ତି ଓ ପ୍ରାୟତଃ ପତଳା ରହିଯାନ୍ତି । ପତଳା ହୋଇ ମଧ ପିଲା ସମ୍ପୂର୍ଣ୍ଣ ସୁସ୍ଥ ରହିପାରେ ।

ଭୁଲ୍ : ପିଲାର ପତଳା ଝାଡ଼ା ହେଉଥିଲେ ତାକୁ କିଛି ଖାଇବାକୁ ନଦେଇ ଉପାସ ରଖିବା ଦ୍ୱାରା ସେ ଶୀଘ୍ର ଆରୋଗ୍ୟ ହୋଇଯାଏ ।

ଠିକ୍ : ପତଳା ଝାଡ଼ା ହେଲେ ଝାଡ଼ାବାଟେ ଜଳ ଓ କେତେକ ଖାଦ୍ୟ ଉପାଦାନ ଦେହରୁ ବାହାରିଯାଏ । ଫଳରେ ପିଲା ବେଶୀ ଦୁର୍ବଳ ହୋଇପଡ଼େ । ଏହି କାରଣରୁ ପିଲାକୁ ଉପାସ ରଖିବା ଉଚିତ ନୁହେଁ । ଉପାସ ରଖିଲେ ଝାଡ଼ାରେ ଜଳ ଓ ଖାଦ୍ୟ ଉପାଦାନର କ୍ଷୟ ଲାଗିରହି ପିଲାକୁ ଅଧିକ ଦୁର୍ବଳ କରି ପକାଏ ।

ଭୁଲ୍ : ପିଲାଟି ଦିନକୁ ୮-୧୦ ଥର ଝାଡ଼ା ଫେରିଲେ ସେ ଡାଇରିଆରେ ଆକ୍ରାନ୍ତ ଓ ଦୁଇଦିନ ଧରି ଆଦୌ ଝାଡ଼ା ନ ଫେରିଲେ ସେ କୋଷ୍ଠବଦ୍ଧତା ବା କନ୍‌ଷ୍ଟିପେସନ୍ ଦ୍ୱାରା ଆକ୍ରାନ୍ତ ।

ଠିକ୍ : ପିଲା ଦିନକୁ ୮-୧୦ଥର ଅର୍ଦ୍ଧତରଳ ଝାଡ଼ା ଫେରିବାରେ ଅସ୍ୱାଭାବିକତା କିଛି ନାହିଁ । ବରଂ ଅନେକ ପିଲାଙ୍କ କ୍ଷେତ୍ରରେ ଏହା ସାଧାରଣ । ସେହିପରି ଦୁଇଦିନରେ ଥରେ ଝାଡ଼ା ଫେରିବାରେ ମଧ କୌଣସି ଅସ୍ୱାଭାବିକତା ନଥାଏ । ଡାଇରିଆ ହେଲେ ଝାଡ଼ା ପାଣି ଭଳି ପତଳା ହୁଏ । ଶାଗୁଆ ଦେଖାଯାଇପାରେ ଓ ଦୁର୍ଗନ୍ଧ

ହୁଏ । କୋଷ୍ଠବଦ୍ଧତା ହେଲେ ଝାଡ଼ା କଠିନ ହୁଏ ଓ ଝାଡ଼ା ଫେରିଲାବେଳେ ପିଲାକୁ କୁନ୍ଥାଇବାକୁ ପଡ଼େ ଓ ଯନ୍ତ୍ରଣା ହେଉଥିବାରୁ ସେ କାନ୍ଦିଥାଏ ।

ଭୁଲ୍ : ପିଲାର ଭୋକ ଓ ଓଜନ ବଢ଼େଇବା ପାଇଁ ତାକୁ ଭିଟାମିନ୍ ଡ୍ରପ୍ସ୍ ଓ ଟନିକ୍ ଖୁଆଇବା ଉଚିତ ।

ଠିକ୍ : ଭାତ, ରୁଟି, ଡାଲି, ତରକାରି, ତେଲ, ଘିଅ, ମିଠା ଇତ୍ୟାଦି ଆବଶ୍ୟକତା ଅନୁସାରେ ଖାଇଲେ ଶରୀରର ଓଜନ ଠିକ୍ ରହେ; ବେଶୀ ପରିମାଣରେ ଖାଇଲେ ଦେହରେ ଚର୍ବି ଜମି ଓଜନ ବଢ଼େ । ଭିଟାମିନ୍‌ର ଅଭାବ ହେଲେ ଭୋକ ନ ହେବା ଏକ ବିରଳ ଲକ୍ଷଣ । ବରଂ ପିଲାକୁ ଜୋର୍ ଜବରଦସ୍ତି ଖୁଆଇଲେ, ସେ ପସନ୍ଦ କରୁନଥିବା ଖାଦ୍ୟ ଖାଇବାପାଇଁ ବାଧ କଲେ, ଖାଇବା ସମୟର ଅବ୍ୟବହିତ ପୂର୍ବରୁ ତାକୁ ମିଠା କି ମିଠା ପାନୀୟ ଖୁଆଇଲେ କିମ୍ବା ସଂକ୍ରମଣ ହେତୁ କି ଅନ୍ୟ କୌଣସି କାରଣରୁ ସେ ଅସୁସ୍ଥ ହୋଇପଡ଼ିଥିଲେ ଖାଇବା ପ୍ରତି ତା'ର ଆଗ୍ରହ ମରିଯାଏ । ତାହାଛଡ଼ା, ଡ୍ରପ୍ସ୍ କି ସିରପ୍ ଖାଇଲେ ଡ୍ରପର୍ ଦ୍ୱାରା ଖାଉଥିବାରୁ ପାଟିବାଟେ ଜୀବାଣୁ-ଭୂତାଣୁ ପଶିଯିବାର ଆଶଙ୍କା ବେଶୀ । ସ୍ୱାଭାବିକ ଖାଦ୍ୟ ଖାଉଥିବା କୌଣସି ସୁସ୍ଥ ଶିଶୁ ପାଇଁ ଭିଟାମିନ୍ ଟନିକ୍‌ର ଆଦୌ ଆବଶ୍ୟକତା ନାହିଁ ।

ଭୁଲ୍ : ପିଲାକୁ ଗାଧୋଇଦେବା ପାଇଁ ସବୁବେଳେ 'ବେବି ସୋପ୍' ବ୍ୟବହାର କରିବା ଉଚିତ ।

ଠିକ୍ : ଯେକୌଣସି ସାଧାରଣ ଗାଧୋଇବା ସାବୁନ୍ ପିଲାର ଗାଧୁଆ ପାଇଁ ନିରାପଦରେ ବ୍ୟବହାର କରାଯାଇପାରେ । କିନ୍ତୁ କୌଣସି ଏକ ସାବୁନ୍ (କିମ୍ବା ବେବି ସାବୁନ୍) ବ୍ୟବହାର କରିବା ଫଳରେ ଚର୍ମରେ ଫଳିଗଲେ କି ଅଗିଆ ବାତ ବାହାରିଗଲେ ତାକୁ ପୁନର୍ବାର ବ୍ୟବହାର ନକରି ଅନ୍ୟ କୌଣସି ପ୍ରକାରର ସାବୁନ୍ ବ୍ୟବହାର କରିବା ଆବଶ୍ୟକ । ଦାମିକା ବେବି ସୋପ୍ ବ୍ୟବହାରରୁ ବିଶେଷ କୌଣସି ଲାଭ ମିଳି ନଥାଏ । ଛୋଟ ପିଲା ପ୍ରାୟତଃ ଧୂଳିମଳିର ସଂସ୍ପର୍ଶରେ ଆସୁନଥିବାରୁ ସାବୁନ୍ ବ୍ୟବହାର ନକରି ସବୁଦିନେ କେବଳ ଉଷୁମ ପାଣିରେ ଗାଧୋଇଦେଲେ କିଛି କ୍ଷତି ନାହିଁ । କାଖ, ଜଙ୍ଘସନ୍ଧି, ବେକମୂଳ ଓ ମଳଦ୍ୱାର ପାଖକୁ ସଫା ରଖିବା ନିମନ୍ତେ କେବଳ ସେହିସବୁ ସ୍ଥାନରେ ସାବୁନ୍ ଲଗେଇଲେ ଚଳିବ ।

ଭୁଲ୍: ପିଲାକୁ ଗାଧୋଇଦେଇ ସାରିବା ପରେ ତା' ଦେହସାରା ଦେହଲଗା ପାଉଡ଼ର ବୋଳିଦେବା ଆବଶ୍ୟକ ।

ଠିକ୍ : କେବଳ ଖରାଦିନେ ଏବଂ ଦେହର ସନ୍ଧି ଜାଗାଗୁଡ଼ିକରେ ପାଉଡ଼ର୍ ଲଗାଇ ଦେବାର ଅଧିକ ଆବଶ୍ୟକତା ରହିଛି । ନୋହିଲେ ନିୟମିତ ଭାବରେ ଦେହସାରା ପାଉଡ଼ର ବୋଳିବାରେ ସ୍ୱାସ୍ଥ୍ୟଗତ କାରଣରୁ କୌଣସି ଦରକାର ନାହିଁ । ବରଂ ପାଉଡ଼ର ନାକ ଭିତରେ ପଶିଯାଇ ପିଲାର ନାକକୁ ଅବରୋଧ କରିପାରେ ଓ ଏହି କାରଣରୁ ନିଃଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟଜାତ ହୋଇପାରେ ।

ଭୁଲ୍ : ନବଜାତ ପିଲାକୁ ସୁସ୍ଥସବଳ ରଖିବା ନିମନ୍ତେ ତାକୁ ସବୁଦିନେ ତେଲ ମାଲିସ୍ କରିଦେବା ଉଚିତ । ଏହାଦ୍ୱାରା ମାଂସପେଶୀ ଓ ହାଡ଼ ଦୃଢ଼ ହୋଇଥାଏ ।

ଠିକ୍ : ପିଲାର ଦୈନନ୍ଦିନ କାର୍ଯ୍ୟକଳାପ ଦ୍ୱାରା ତା'ପାଇଁ ଯଥେଷ୍ଟ ବ୍ୟାୟାମ ହୋଇଥାଏ । ତେଣୁ ତେଲ ମାଲିସ୍ କଲେ ଓ କ୍ଷୀର ସର ଘଷିଲେ ଅଧିକ କିଛି ଫାଇଦା ମିଳେ ନାହିଁ । ବରଂ ତେଲ, କ୍ଷୀରସର ଇତ୍ୟାଦି ଘଷିବା ଫଳରେ ଚର୍ମରେ ଆଲର୍ଜି ଜାତ ହେବାର ସମ୍ଭାବନା ଥାଏ । ତାହାଛଡ଼ା, ଯେଉଁମାନେ ପିଲାମାନଙ୍କୁ ତେଲ ମାଲିସ୍ କରେଇ ଦିଅନ୍ତି, ସେମାନଙ୍କଠାରେ ଯକ୍ଷ୍ମା କି ଅନ୍ୟ କୌଣସି ସଂକ୍ରାମକ ରୋଗ ଥିଲେ, ସେମାନଙ୍କଠାରୁ ତାହା ପିଲାମାନଙ୍କୁ ଡେଇଁଥାଏ ।

ଭୁଲ୍ : ପ୍ରତ୍ୟେକ ପୁଅ ପିଲାଙ୍କଠାରେ ସୁନତ୍ (ଏହାକୁ ଡାକ୍ତରୀ ଭାଷାରେ 'ସର୍କ୍ୟୁମ୍‌ସିସନ୍' ବୋଲି କହନ୍ତି । ଏହି ଅପରେସନ୍‌ରେ ପିଲାର ମୂତ୍ରାଙ୍ଗର ସାମନା ଚର୍ମକୁ କାଟି ଦିଆଯାଇଥାଏ । ଚୁଚୁନ୍ଦ୍ରି ରୋଗ ଥିଲେ ଏହି ଧରଣର ଅପରେସନ୍ କରାଯାଏ ।) କରାଇଦେବା ଆବଶ୍ୟକ ।

ଠିକ୍ : ପିଲାଠାରେ ଚୁଚୁନ୍ଦ୍ରି ରୋଗ ନଥିଲେ କି ପରିସ୍ରା କଲାବେଳେ ତା'ର ଯନ୍ତ୍ରଣା ହେଉନଥିଲେ ସୁନତ୍ କରିବାର ଆଦୌ ଆବଶ୍ୟକତା ନାହିଁ ।

ଭୁଲ୍ : ଛୋଟ ପିଲାଙ୍କର ଆଖିକୁ 'ଥଣ୍ଡା' ରଖିବା ନିମନ୍ତେ ସେମାନଙ୍କୁ କଜ୍ଜଳ ଲଗାଇଦେବା ଉଚିତ ।

ଠିକ୍ : କଜ୍ଜଳରେ 'ଲେଡ୍' ବା ସୀସା ରହିଥିବାର ସମ୍ଭାବନା ବେଶୀ । ଏହି ପ୍ରକାର କଜ୍ଜଳ ଲଗେଇଦେଲେ ସୀସା ଶୋଷି ହୋଇ ପିଲାର ରକ୍ତରେ ମିଶେ । ଏହାର କୁପ୍ରଭାବ ଯୋଗୁ ପିଲାର ପେଟ କାମୁଡ଼ିବା ସଙ୍ଗେ ସଙ୍ଗେ ରକ୍ତହୀନତା ରୋଗ ଜାତ ହୋଇପାରେ । ଏହା ପିଲାର ମାନସିକ ସାମର୍ଥ୍ୟ ହାସଲ କରିପାରେ ବୋଲି କେହି କେହି ମତ ଦେଇଥାନ୍ତି । କାରଣ ସୀସା ମସ୍ତିଷ୍କ ଉପରେ ଖରାପ ପ୍ରଭାବ ପକାଇଥାଏ ।



# ଭ୍ରାନ୍ତ ଧାରଣାରେ ବିସ୍ଫୋରଣ-୩

ଭୁଲ୍ : ପିଲାର କାଶ ସର୍ଦ୍ଦି ଥିଲେ ତାକୁ ପୋଲିଓ କିମ୍ବା ଅନ୍ୟ କୌଣସି ପ୍ରତିଷେଧକ ଟିକା ଦେବା ଉଚିତ ନୁହେଁ ।

ଠିକ୍ : ପିଲାଠାରେ ସାମାନ୍ୟ ଧରଣର କାଶ ସର୍ଦ୍ଦି ଥିଲେ ତାକୁ ସବୁ ପ୍ରକାରର ପ୍ରତିଷେଧକ ଟିକା ଦିଆ ଯାଇପାରିବ । ତେଣୁ ଯେଉଁଦିନ ତାକୁ ପ୍ରତିଷେଧକ ଟିକା ଦେବାର ପାଳି, ସେଦିନ ସେ କାଶସର୍ଦ୍ଦିରେ ଆକ୍ରାନ୍ତ ହୋଇଥିଲେ ମଧ୍ୟ ତାକୁ ଟିକା ଦିଆଯିବ ।

ଭୁଲ୍ : ପୋଲିଓ ବୁନ୍ଦା ଖୁଆଇ ସାରିବାର ଅନ୍ତତଃ ଏକ ଘଣ୍ଟା ପର୍ଯ୍ୟନ୍ତ ପିଲାକୁ କିଛି ଖାଇବାକୁ ଦିଆଯିବା ନିରାପଦ ନୁହେଁ ।

ଠିକ୍ : ପୋଲିଓ ବୁନ୍ଦା ଖାଇସାରିବା ପରେ ପରେ ପିଲା ମାଆକ୍ଷୀର ଏବଂ ଅନ୍ୟ ଯେକୌଣସି ଖାଦ୍ୟ ନିରାପଦରେ ଖାଇପାରିବ । ତାକୁ ଘଣ୍ଟାଏ ପର୍ଯ୍ୟନ୍ତ ଉପବାସରେ ରଖିବାର କୌଣସି କାରଣ ନାହିଁ ।

ଭୁଲ୍ : ପିଲାର ନାହି ପାଖରେ ମୁଦ୍ରାଟିଏ ବାନ୍ଧିଦେଲେ ନାହି ପାଖରେ ହୋଇଥିବା ହାର୍ଣ୍ଣିଆ ଭିତରକୁ ପଶିଯାଏ ।

ଠିକ୍ : ନାହି ପାଖରେ ପେଟ ଭିତରର ଅନ୍ତ୍ର ବାହାରକୁ ଫୁଲି ରହିଥିଲେ ତାକୁ ଅମ୍ବିଲିକାଲ୍ ହାର୍ଣ୍ଣିଆ କୁହଯାଏ । ଏହି ସ୍ଥାନରେ ମାଂସପେଶୀ ଦୁର୍ବଳ ଥିଲେ ଅନ୍ତ୍ରନଳୀ ସେହି ବାଟ ଦେଇ ଭିତରକୁ ଠେଲି ହୋଇ ବାହାରିବାର ଚେଷ୍ଟା କରିଥାଏ । ଏହି କାରଣରୁ କୌଣସି କୌଣସି ପିଲାଙ୍କଠାରେ ନାହି ଡିମା ହୋଇ ଫୁଲିଥାଏ । ପିଲାକୁ ତିନିବର୍ଷ ବୟସ ହେବା ବେଳକୁ ଏହା ମନକୁମନ ଚାଲିଯାଏ । ତେଣୁ ମୁଦ୍ରା ବାନ୍ଧିବା ଯୋଗୁ ମୁଦ୍ରାର ପ୍ରଭାବରେ ହାର୍ନିଆ ଭିତରକୁ ପଶିଯାଏ ନାହିଁ । ବରଂ ମଇଳା ମୁଦ୍ରାଟିଏ ସେଠାରେ ଝୁଲିରହି ନାହିରେ ସଂକ୍ରମଣ ସୃଷ୍ଟି କରିପାରେ ।

ଭୁଲ୍ : ମିଠା ଖାଇଲେ, ଚିନି କି ଗୁଡ଼ ଖାଇଲେ ପିଲାଠାରେ ବଥ ବାହାରେ ଓ ତାହାଠାରେ କୃମିରୋଗ ହୋଇଥାଏ ।

ଠିକ୍ : ବଥ ହୋଇଥାଏ ଚର୍ମରେ ଜୀବାଣୁ ସଂକ୍ରମଣ ଯୋଗୁ । ଏହା ସହ କୌଣସି ନିର୍ଦ୍ଦିଷ୍ଟ ଖାଦ୍ୟର ସମ୍ବନ୍ଧ ନାହିଁ । ସେହିପରି ଚିନି କି ଗୁଡ଼ କିମ୍ବା ମିଠେଇ ଖାଇଲେ କୃମିରୋଗ ହୁଏନାହିଁ । କିନ୍ତୁ ମିଠା ଜିନିଷରେ ମାଛି ବସିଥିଲେ ମାଛିର ଗୋଡ଼ରେ ଲାଖିଥିବା କୃମିର ଅଣ୍ଡା ମିଠା ଉପରେ ଲାଖିଯାଏ । ସେହି ମାଛିବସା ମିଠା ଖାଇଲେ କୃମିର ଅଣ୍ଡା ପିଲାର ପେଟ ଭିତରକୁ ଯାଇ କୃମିରୋଗ କରାଇପାରେ । ମିଠାରେ ମାଛି ବସିନଥିଲେ ସେପରି ମିଠା ଖାଇବା ଦ୍ୱାରା କୃମିରୋଗ ହେବାର ଆଦୌ ସମ୍ଭାବନା ନାହିଁ ।

ଭୁଲ୍ : ମିଳିମିଳା ପିଲାର ଦେହରୁ ତାତି ବାହାର କରିଆଣେ । ମିଳିମିଳା ପ୍ରତିଷେଧକ ଟିକା ନେଇଥିଲେ ମଧ୍ୟ ପିଲାକୁ ମିଳିମିଳା ହୋଇପାରେ ।

ଠିକ୍ : ମିଳିମିଳା ଏକ ଭୂତାଣୁଜନିତ ରୋଗ । ଏହି ରୋଗରେ ଜ୍ୱର, କାଶ, ସର୍ଦ୍ଦି ହେବା ସଙ୍ଗେ ସଙ୍ଗେ ଚର୍ମରେ ଗିବିରିବି ହୋଇ ଫଳିଯାଏ । ପୂର୍ବରୁ (ଏବେ ମଧ୍ୟ କେହି କେହି) ଲୋକେ ବିଶ୍ୱାସ କରୁଥିଲେ ଯେ ଠାକୁରାଣୀଙ୍କ କୋପ ଫଳରେ ମିଳିମିଳା ହୁଏ ଓ ମିଳିମିଳା ହେଲେ ରୋଗୀ ଦେହରୁ ତାତି ବାହାରି ପଳାଏ । ମିଳିମିଳାରେ ଭୀଷଣ ଜ୍ୱର ହୁଏ ସତ; କିନ୍ତୁ କୌଣସି ଅଦୃଶ୍ୟ ଶକ୍ତିର ପ୍ରଭାବରୁ ଏହା ହୋଇନଥାଏ । ଏହା ହେଉଛି ସଂକ୍ରମଣ ପ୍ରକ୍ରିୟାର ଶାରୀରିକ ପ୍ରତିକ୍ରିୟା । ପ୍ରତିଷେଧକ ଟିକା କଥା ବିଚାର କଲେ, କୌଣସି ପ୍ରତିଷେଧକ ଟିକାଟି ଶତକଡ଼ା ଶହେ ଫଳପ୍ରଦ ନୁହେଁ । ଟିକା ନେବା ସତ୍ତ୍ୱେ ଜଣଜଣଙ୍କ କ୍ଷେତ୍ରରେ ଏହା ବିଫଳ ହୋଇଥାଏ ଓ ତାଙ୍କୁ ରୋଗ ହୋଇପାରେ । ମିଳିମିଳା କ୍ଷେତ୍ରରେ ଏହି ସମାନ କଥା ପ୍ରଯୁଜ୍ୟ । ମିଳିମିଳା ଟିକା ନେଇଥିବା ସତ୍ତ୍ୱେ କେହି କେହି ପିଲା ମିଳିମିଳାରେ ଆକ୍ରାନ୍ତ ହୋଇପାରନ୍ତି । କିନ୍ତୁ ସବୁପିଲାଙ୍କ କ୍ଷେତ୍ରରେ ଏପରି ଘଟେ ନାହିଁ ।

ଭୁଲ୍ : ପିଲା କଡ଼ମାଡ଼ି ଶୋଇଲେ ତା'ର ମୁଣ୍ଡ ବଙ୍କାତେଢ଼ା ହୋଇଯାଏ ।

ଠିକ୍ : ପିଲାଟି ଯଦି ପ୍ରାୟତଃ ଗୋଟିଏ ନିର୍ଦ୍ଦିଷ୍ଟ କଡ଼ ମାଡ଼ି ଶୋଇଥାଏ, ତା'ର ଖପୁରି ହାଡ଼ଗୁଡ଼ିକ ବେଶ୍ ନରମ ଥିବାରୁ, ହାଡ଼ର ଆକାର ପରିବର୍ତ୍ତିତ ହୋଇପାରେ । କିନ୍ତୁ ଏହି ପରିବର୍ତ୍ତନ ସମ୍ପୂର୍ଣ୍ଣ ଅସ୍ଥାୟୀ । ପିଲାଟି ବଡ଼ ହୋଇ ଚାଲି ଶିଖିଲେ ମୁଣ୍ଡ ପୁନର୍ଗଠିତ ହୋଇ ତା'ର ସ୍ୱାଭାବିକ ଆକାର ଫେରି ପାଇଥାଏ ।

ଭୁଲ୍ : ବର୍ଷେ ପୂରିବା ପୂର୍ବରୁ ପିଲାକୁ ବାହାର ଖାଦ୍ୟ ତଥା କଠିନ ଖାଦ୍ୟ ଖାଇବାକୁ ଦେଲେ ତା'ର ପେଟ ଫାମ୍ପେ ।

ଠିକ୍ : ମୁଖ୍ୟତଃ ତିନିଟି କାରଣରୁ ପେଟ ଫାମ୍ପିଥାଏ । ବୋତଲରେ ଖାଉଥିବା ପିଲା ଯେଉଁ ବୋତଲରେ ଖାଉଥାଏ, ତା'ର ରବର କି ନାଇଲନ୍ ଠିପିରେ ତ୍ରୁଟି ଥିଲେ କ୍ଷୀର ସହ ପିଲା ବେଶ୍ କିଛି ବାୟୁ ମଧ୍ୟ ଢୋକିଥାଏ । ଏହି ବାୟୁ ପାକସ୍ଥଳୀ ଭିତରକୁ ଯାଇ ପାକସ୍ଥଳୀକୁ ଫୁଲେଇ ଦିଏ । ତାହାଛଡ଼ା ପିଲା ଯେଉଁ କ୍ଷୀର ଖାଉଥାଏ, ସେହି କ୍ଷୀର ପ୍ରତି ତା'ଠାରେ ଆଲର୍ଜି ଥିଲେ ମଧ୍ୟ ପେଟ ଫାମ୍ପିପାରେ । କେତେକ ପିଲାଙ୍କଠାରେ ରକ୍ତହୀନତା କିମ୍ବା ଭିଟାମିନ୍ 'ଡି'ର ଅଭାବ ଥାଏ । ଏଭଳି ପିଲାଙ୍କ ପେଟର ମାଂସପେଶୀ ଅପେକ୍ଷାକୃତ ଦୁର୍ବଳ ହୋଇଯାଇଥିବାରୁ ସେମାନଙ୍କ ପେଟ ଫୁଲିବା ଭଳି ଦେଖାଯାଏ । ପୁନଶ୍ଚ, ପିଲାଠାରେ କୃମିରୋଗ ଥିଲେ ପେଟ ଫାମ୍ପିପାରେ ।

ଭୁଲ୍ : ମଇଁଷି କ୍ଷୀର ଖାଇଲେ ବୁଦ୍ଧି କମିଯାଏ ଓ ଭଲ ମନେ ରହେନାହିଁ ଏବଂ ଆଲମଣ୍ଡ୍ ଜାତୀୟ ଫଳ ଖାଇଲେ ମେଧା ବୃଦ୍ଧି ପାଏ ।

ଠିକ୍ : ପିଲା ଯଦି କମ୍ ମେଧା ନେଇ ଜନ୍ମ ହୋଇଥାଏ, କୌଣସି ଖାଦ୍ୟ ଖୁଆଇବା ଦ୍ୱାରା ତା'ର ଉନ୍ନତି ସମ୍ଭବ ହୁଏ ନାହିଁ । ମଇଁଷି କ୍ଷୀର ଖାଇବା ସହ ମଧ୍ୟ ମେଧାର କମ୍-ବେଶୀର ସମ୍ପର୍କ ନଥାଏ । ତେବେ ପିଲାର ପ୍ରଥମ କେଇବର୍ଷ ତା'ର ମାନସିକ ବିକାଶ ପାଇଁ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ପିତାମାତା ସନ୍ତାନର ଘନିଷ୍ଠ ସାନ୍ନିଧ୍ୟରେ ଆସି ତାହା ସହ ଯେତେ ବେଶୀ ଭାବର ଆଦାନପ୍ରଦାନରେ ଭାଗୀଦାର ହୋଇପାରିବେ, ପିଲାର ମେଧା ଉନ୍ନତି କରିବାରେ ତାହା ସେତେ ବେଶୀ ଅବଦାନ ଦେଇପାରିବ । ଆଲମଣ୍ଡ୍ ଖାଇବା ସହ ମେଧା ବୃଦ୍ଧିର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନାହିଁ ।

ଭୁଲ୍ : ପିଲାର ପିଚାକୁ ଧରି ଉଠେଇଲେ କି ତାକୁ ୱାକର୍ ସାହାଯ୍ୟରେ ଚାଲିବା ଶିଖେଇଲେ ତା'ର ଗୋଡ଼ ଦୁଇଟି ବଙ୍କା ହୋଇଯାଏ ।

ଠିକ୍ : ପିଲାଠାରେ ଭିଟାମିନ୍ 'ଡି'ର ଅଭାବ ହେଲେ ତା'ର ହାଡ଼ରେ କ୍ୟାଲ୍‌ସିୟମ୍ ସଞ୍ଚୟ ହୋଇପାରେ ନାହିଁ । ଫଳରେ ହାଡ଼ ଶକ୍ତ ନହୋଇ ଦୁର୍ବଳ ହୋଇଯାଏ । ନରମ ହାଡ଼ ବୃଦ୍ଧି ପାଉଥିବା ପିଲାର ଶରୀର ଓଜନକୁ ସମ୍ଭାଳି ନପାରି ବଙ୍କା ହୋଇପଡ଼େ । ରିକେଟସ୍ ନାମକ ରୋଗରେ ଏଭଳି ପରିଣତି ଉପୁଜେ । କିନ୍ତୁ

ପିଲାକୁ ଭିଟାମିନ୍ 'ଡି' ଥିବା ଔଷଧ ଖାଇବାକୁ ଦେଲେ ବଙ୍କାଗୋଡ଼ କିଛିତ୍ ସୁଧୁରିପାରେ । ତେବେ ଜନ୍ମ ପରେ ପରେ ପିଲାର ଗୋଡ଼ ସାମାନ୍ୟ ବଙ୍କାଥାଏ । ଏହା ସ୍ୱାଭାବିକ ଓ ତିନିବର୍ଷ ବୟସ ସୁଦ୍ଧା ଆପେ ଆପେ ଠିକ୍ ହୋଇଯାଏ । ପିଚାକୁ ଧରି ପିଲାକୁ ଟେକିବା ସହ ଗୋଡ଼ ବଙ୍କା ହେବାର କୌଣସି ସମ୍ପର୍କ ନାହିଁ ।

ଭୁଲ୍ : ପିଲାର କାନ ଟଣକୁଥିଲେ କାନରେ ତେଲ ପକେଇଦେଲେ ଟଣକିବା ବନ୍ଦ ହୋଇଯାଏ ।

ଠିକ୍ : ପିଲାର ମଧ୍ୟକର୍ଣ୍ଣ (କାନ ପରଦାର ପଛପଟେ ରହିଥିବା ଅଂଶ) ସଂକ୍ରମିତ ହେଲେ କାନ ଟଣକେ । ମଧ୍ୟକର୍ଣ୍ଣରେ ଜୀବାଣୁ ପଶିଗଲେ ଏଭଳି ପରିଣତି ଉପୁଜେ । ତେଣୁ ଏଭଳି ରୋଗକୁ ଆଣ୍ଟିବାୟୋଟିକ୍ ଔଷଧ ଦ୍ୱାରା ଚିକିତ୍ସା କରିବା ଉଚିତ । କିନ୍ତୁ କାନ ଟଣକୁଥିଲେ ଆକ୍ରାନ୍ତ କାନରେ ତେଲ ପକେଇଲେ ତେଲ ଦ୍ୱାରା ମଧ୍ୟ ଜୀବାଣୁ ଯାଇ କାନ ଭିତରକୁ ପ୍ରବେଶ କରିଥାନ୍ତି । କାନପରଦା କଣା ହୋଇଯାଇଥିଲେ ସେହି କଣାବାଟେ ତେଲ ମଧ୍ୟକର୍ଣ୍ଣରେ ପହଞ୍ଚିଯାଏ ଓ ତେଲରେ ରହିଥିବା ଜୀବାଣୁମାନଙ୍କ ଯୋଗୁ ସଂକ୍ରମଣ ଅଧିକ ପ୍ରସାର ଲାଭ କରେ । ତାହାଛଡ଼ା, ତେଲ ଜୀବାଣୁ ଓ କବକ ଦ୍ୱାରା ସଂକ୍ରମିତ ହୋଇପଡ଼ିବାର ସମ୍ଭାବନା ଖୁବ୍ ବେଶୀ । ତେଣୁ କାନ ଟଣକୁଥିଲେ କାନରେ ତେଲ ପକେଇଲେ ଟଣକିବା ତ ବନ୍ଦ ହୁଏ ନାହିଁ, ବରଂ ଏହା ବଢ଼ିଯାଇପାରେ ।

ଭୁଲ୍ : ପ୍ରତି ସପ୍ତାହରେ ଅନ୍ତତଃ ଥରଟିଏ ପିଲାକୁ ଝାଡ଼ା କରେଇବା ଔଷଧ ଖୁଆଇବା ଉଚିତ ।

ଠିକ୍ : ଝାଡ଼ା କରେଇବା ଔଷଧ ଖୁଆଇଲେ ତାହା ପିଲାର ଅନ୍ତ୍ରନଳୀରେ ପ୍ରତିକୂଳ ପ୍ରଭାବ ପକାଇବାରୁ ପିଲାଠାରେ ପତଳା ଝାଡ଼ା ବା ଡାଇରିଆ ପ୍ରକାଶ ପାଇପାରେ । ତେଣୁ ପିଲାକୁ ଝାଡ଼ା କରେଇବା ଔଷଧ ଖୁଆଇବା କ୍ଷତିକାରକ ।



# ସନ୍ତାନ ପାଇଁ ସମୟ ଦାନ

ପିଲାମାନଙ୍କୁ ବହି ଦିଅନ୍ତୁ, ଟେପ୍ ଦିଅନ୍ତୁ, କମ୍ପ୍ୟୁଟର ଖେଳର ସୁଯୋଗ ଦିଅନ୍ତୁ; ଏଥିରେ କିଛି ମନା ନାହିଁ । କିନ୍ତୁ ତା'ପାଇଁ ସର୍ବଶ୍ରେଷ୍ଠ ଉପହାର କଅଣ ଜାଣନ୍ତି ? ତା'ପାଇଁ ସର୍ବଶ୍ରେଷ୍ଠ ତଥା ସର୍ବୋତ୍କୃଷ୍ଟ ଉପହାର ହେଉଛି 'ସମୟ' । ତା'ପାଇଁ ଯେଉଁ ସମୟ ଦେବେ, ସେହି ସମୟରେ ତା'ସହ କଥାବାର୍ତ୍ତା ହେବେ, ତା'ସହ ହସିବେ, ତାକୁ ଗୀତ ଗାଇ ଶୁଣେଇବେ, ଗପ କହିବେ, ବହିରୁ ପଢ଼ି ଶୁଣେଇବେ ଗପ ଆଉ ଗୀତ ।

ଏବେ ଅନେକ ବୈଜ୍ଞାନିକ ଅନୁଧାନରୁ ପ୍ରମାଣ ମିଳୁଛି ଯେ ଶିଶୁ, ପିଲା, ଏପରିକି କିଶୋରକିଶୋରୀମାନଙ୍କ ସହ କଥୋପକଥନ କରିବାର ସୁଫଳ ସୁଦୂରପ୍ରସାରୀ । ତେଣୁ ଯେତେବେଳେ ସୁବିଧା ମିଳୁଛି କିମ୍ବା କୌଣସି ପ୍ରକାରେ ସମୟ ବାହାର କରି ପିତାମାତା ସନ୍ତାନମାନଙ୍କ ସହ ଗପସପରେ ମାତିଯିବା ଉଚିତ । ପୁଣି ଏହାକୁ ଯେତେ କମ୍ ବୟସରୁ ଆରମ୍ଭ କରାଯାଏ ସେତେ ମଙ୍ଗଳ ।

ସବୁ ପିତାମାତା ଚାହାନ୍ତି ଯେ ସେମାନଙ୍କ ପିଲା ଭଲ ପଢ଼ୁ, ଭଲ ଲେଖୁ ଓ ଗଣିତରେ ପାରଙ୍ଗମ ହେଉ । ପିଲାମାନଙ୍କ ସହ ଖୁବ୍ କମ୍ ବୟସରୁ କଥାବାର୍ତ୍ତା କରିବା ଆରମ୍ଭ କରିଦେଲେ ଏହିସବୁ ଲକ୍ଷ୍ୟ ସାଧିତ ହେବାରେ ସମସ୍ୟା ରହିବନି ବୋଲି ଗବେଷଣାରୁ ଜଣାପଡ଼ିଲାଣି ।

ତେବେ ଆପଣମାନେ ହୁଏତ ଭାବୁଥିବେ ଯେ ଆପଣମାନେ ଏଥିରେ କିଛି ହେଲା କରୁନାହାନ୍ତି; ତାହାଛଡ଼ା ଘରେ ରହି ପିଲାମାନଙ୍କ ସହ କଥାବାର୍ତ୍ତା ହେବା ତ ସବୁ ବାପମା'ଙ୍କ ପାଇଁ ଏକ ସ୍ୱାଭାବିକ କାର୍ଯ୍ୟ । କିନ୍ତୁ ପିଲାମାନେ ସ୍କୁଲ୍‌ରେ ନାଁ ଲେଖେଇବା ପରେ ଆପଣମାନଙ୍କ ପିଲାଙ୍କ ବିଷୟରେ ସ୍କୁଲ୍‌ର ହେଡ୍‌ମାଷ୍ଟରମାନଙ୍କ ଅନୁଭୂତି ଭିନ୍ନ । ପ୍ରଧାନ ଶିକ୍ଷକମାନେ ନିଜ ଅଭିଜ୍ଞତାକୁ ଆଧାର କରି ମତ ଦେଉଛନ୍ତି ଯେ ପ୍ରଥମ କରି ସ୍କୁଲ୍‌ରେ ନାଁ ଲେଖାଉଥିବା ପିଲାମାନଙ୍କ ମଧ୍ୟରୁ ଅଧାଅଧି ପିଲା ଭାବ ଆଦାନପ୍ରଦାନ

କରିବାରେ ବଡ଼ ଦୁର୍ବଳ । ଯେଉଁ ପିଲା ସ୍କୁଲ୍‌ରେ ଭର୍ତ୍ତି ହେବା ବେଳକୁ ଭାବ ଆଦାନ ପ୍ରଦାନ କରିବାରେ ଦୁର୍ବଳ, ସେ ସ୍କୁଲ୍ ଛାଡ଼ିବା ବେଳକୁ ଯେ ପାଠପଢ଼ାରେ ଦୁର୍ବଳ ରହି ସ୍କୁଲ୍ ଛାଡ଼ିବ, ଏହା ନିଃସନ୍ଦେହ ବୋଲି ଗବେଷକମାନଙ୍କର ମତ ।

ଗବେଷକ ଆଲାନ୍ ଫ୍ରେଲ୍ସଙ୍କର ପରାମର୍ଶ ହେଲା, ବାପମା ଓ ପିଲାମାନଙ୍କ ମଧ୍ୟରେ ଯେତେବେଶୀ ଭାବବିନିମୟ ଘଟିପାରିବ, ତାହା ପିଲାମାନଙ୍କ ପାଇଁ ସେତେ ବେଶୀ ହିତକର । ଗବେଷଣା ଆଧାରିତ ତଥ୍ୟ ଅନୁଯାୟୀ ମା' ଗର୍ଭାଶୟରେ ବଢୁଥିବା ଭ୍ରୂଣ ୬ ମାସ ବୟସରେ ପହଞ୍ଚିଗଲେ ସେ ଶୁଣିପାରିବାର ସାମର୍ଥ୍ୟ ହାସଲ କରିପକାଏ । ସେ ସିନା କହିପାରେନି କି ଦେଖିପାରେନି,ହେଲେ ଅନ୍ୟମାନଙ୍କର କଥା ସେ ଶୁଣିପାରେ । ତେଣୁ ତା' ସହ କଥାବାର୍ତ୍ତା କରିବା ଓ ତାକୁ ଗୀତ ଶୁଣେଇବା ଆଦୌ ପାଗଳାମି ନୁହେଁ ବୋଲି ମତ ପ୍ରକାଶ ପାଉଛି । ଏପରିକି ମା' ଖୁସୀମିଜାଜ୍‌ରେ ଅଛି କି ଦୁଃଖ ଓ ଚାପ ଭିତରେ ଅଛି, ମା' ଦ୍ୱାରା ଉଚ୍ଚାରିତ ବାକ୍ୟଗୁଡ଼ିକରୁ ତାହା ଗର୍ଭସ୍ଥ ଶିଶୁ କୁଆଡ଼େ ଜାଣିପାରିଥାଏ । ଏହି ତଥ୍ୟକୁ ବିଚାରକୁ ନେଇ ଗର୍ଭବତୀର ପେଟ ଉପରେ ଟେପ୍ ରେକର୍ଡ଼ର୍‌ରେ ଟେପ୍ ବଜାଇ ଗର୍ଭସ୍ଥ ଶିଶୁକୁ ଭଜନ ଓ ଜଣାଣ ଆଦି ଶୁଣେଇବା ନିମନ୍ତେ ପରାମର୍ଶ ଦିଆଗଲାଣି ।

ଲିନ୍ନେ ମୁରେ ହେଉଛନ୍ତି ଦକ୍ଷିଣ ଇଂଲଣ୍ଡରେ ଅବସ୍ଥିତ ରିଡ଼ିଙ୍ଗ୍ ବିଶ୍ୱବିଦ୍ୟାଳୟର ବିକାଶମୂଳକ ମନସ୍ତତ୍ତ୍ୱ ବା ଡେଭେଲପ୍‌ମେଣ୍ଟାଲ ସାଇକୋଲୋଜି ବିଭାଗର ମୁଖ୍ୟ । ତାହାଛଡ଼ା "ସାମାଜିକ ଶିଶୁ : ଭୂମିଷ୍ଠ ହେବା ପରଠାରୁ ଶିଶୁମାନଙ୍କ ଭାବ ବିନିମୟ ସଂକ୍ରାନ୍ତ ଅନୁଧ୍ୟାନ" ବା "ଦି ସୋସିଆଲ୍ ବେବି : ଅଣ୍ଡରଷ୍ଟାଣ୍ଡି ବେବିସ୍' କମ୍ୟୁନିକେଶନ୍ ଫ୍ରମ୍ ବାର୍ଥ" ପୁସ୍ତକର ସେ ହେଉଛନ୍ତି ଅନ୍ୟତମ ଲେଖିକା । ମୁରେ କହନ୍ତି, "କଥାବାର୍ତ୍ତା କରିବାର ସାମର୍ଥ୍ୟ ବହନ କରିସାରି ଶିଶୁମାନେ ଭୂମିଷ୍ଠ ହୋଇଥାନ୍ତି । କେବଳ ସେତିକି ନୁହେଁ, ଜନ୍ମ ହୋଇପଡ଼ିବା ମାତ୍ରେ ସେମାନେ ମା'ଙ୍କ ସହ ଭାବ ବିନିମୟ କରିବା ନିମନ୍ତେ ବେଶ୍ ଉତ୍କଣ୍ଠା ପ୍ରକାଶ କରିଥାନ୍ତି । କାରଣ ମା'ଙ୍କ କଣ୍ଠସ୍ୱର ସହ ସେମାନେ ଥାଆନ୍ତି ସବୁଠାରୁ ବେଶୀ ପରିଚିତ ।"

ମୁରେ ପୁନଶ୍ଚ କହନ୍ତି ଯେ ବିଶ୍ୱର ବିଭିନ୍ନ ରାଷ୍ଟ୍ରର ଅତି ଛୋଟ ଶିଶୁମାନଙ୍କ ସହ ମା'ମାନଙ୍କ କଥାବାର୍ତ୍ତାରେ ବିଶେଷ କୌଣସି ପାର୍ଥକ୍ୟ ପରିଲକ୍ଷିତ ହେଉନାହିଁ ବୋଲି ଗବେଷଣାରୁ ଜଣାପଡୁଛି । ଅର୍ଥାତ୍ ସବୁ ଦେଶର ମା'ମାନେ ଶିଶୁମାନଙ୍କ ସହ କଥାବାର୍ତ୍ତା କଲାବେଳେ ଯେଉଁ ଅବୋଧ ବୋଲି ବ୍ୟବହାର କରିଥାନ୍ତି, ତାହା କୁଆଡ଼େ ମୋଟାମୋଟି

ଭାବରେ ସମାନ । ପୁଣି ଯେଉଁ ସ୍ୱରରେ କହନ୍ତି, ତାହା ଶୁଣିବା ପାଇଁ ଓ ତାକୁ ଶିଖିବା ପାଇଁ କୁଆଁଡ଼େ ସେହି କଅଁଳା ଶିଶୁମାନେ କାନ ଡେରିଥାଆନ୍ତି । କେବଳ ସେତିକି ନୁହେଁ, ମା' କଅଁଳା ଶିଶୁଙ୍କୁ ଯାହା ଯାହା ସବୁ କହିଥାଏ, ମା' ବ୍ୟତୀତ ଅନ୍ୟମାନେ ତାକୁ ଅନୁକରଣ କରିବା ପାଇଁ ଲାଜ କରିଥାନ୍ତି ବୋଲି କହନ୍ତି ମୁରେ । ଶିଶୁମାନେ ମଧ୍ୟ ବିଭିନ୍ନ ଶବ୍ଦ ଜରିଆରେ ମା' ସହ ଭାବ ଆଦାନପ୍ରଦାନ କରିଥାନ୍ତି । ତେଣୁ କହିବାକୁ ଗଲେ କଅଁଳା ପିଲା ଓ ମା' ଭିତରେ ଚାଲୁଥିବା କଥାବାର୍ତ୍ତା ହୁଏତ ବ୍ୟକ୍ତିଗତ ; ସେମାନଙ୍କ ଭାଷା ବୁଝିବା ପାଇଁ ଅନ୍ୟମାନେ ଅକ୍ଷମ !

ସଂଗୀତରେ ଯେପରି ତାଳ, ଲୟ, ଛନ୍ଦ ଓ ସ୍ୱରଭଙ୍ଗୀ ଇତ୍ୟାଦି ଥାଏ, କଅଁଳା ଶିଶୁର ବୋଲିରେ ମଧ୍ୟ ଠିକ୍ ସେହିପରି ତାଳ, ଛନ୍ଦ ଓ ସ୍ୱରଭଙ୍ଗୀ ଆଦି ରହିଥାଏ । ଶିଶୁମାନଙ୍କର ଦରୋଟି ଭାଷାକୁ ହେୟଜ୍ଞାନ କରିବା ଆଦୌ ଉଚିତ ନୁହେଁ । ଏହା ଅସ୍ଫୁଟ ତଥା ଅବ୍ୟକ୍ତ ପ୍ରତୀତ ହେଉଥିଲେ ମଧ୍ୟ ଏହା ଅତି ଗୁରୁତ୍ୱପୂର୍ଣ୍ଣ ।

ଗ୍ରେଟ୍ ବ୍ରିଟେନ୍‌ରେ ରହିଛି ମୌଳିକ କାର୍ଯ୍ୟ ସାଧନ ସଂକ୍ରାନ୍ତ ସଂସ୍ଥା ବା ବେସିକ୍ ସ୍କିଲ୍ ଏଜେନ୍‌ସୀ । ଏହି ସଂସ୍ଥା ତରଫରୁ ନିକଟରେ ଏକ ପୁସ୍ତିକା ପ୍ରକାଶ ପାଇଛି । ପିତାମାତାମାନଙ୍କୁ ପରାମର୍ଶ ଦେଇ ପୁସ୍ତିକାଟିରେ କୁହାଯାଇଛି ଯେ ସେମାନେ ସେମାନଙ୍କ ପିଲାମାନଙ୍କ ସହ ଗପସପ ହେବାର କୌଣସି ସୁଯୋଗକୁ ହାତଛଡ଼ା କରିବା ବାଞ୍ଛନୀୟ ନୁହେଁ । ଏପରିକି ଗାଡ଼ିରେ ଯାତ୍ରା କଲାବେଳେ, ଗାଧୁଆ ଘରେ ଥିବାବେଳେ କି ପୋଷାକ-ପତ୍ର ପିନ୍ଧିବା ବେଳେ ସେମାନେ ଗୀତ ଗାଇବାର ଅନୁକୂଳ ପ୍ରଭାବ ସୁଦୂରପ୍ରସାରୀ ।

ଏଡ଼ିନ୍‌ବରା ବିଶ୍ୱବିଦ୍ୟାଳୟର ଶିଶୁ-ମନସ୍ତତ୍ତ୍ୱ ବିଭାଗର ପ୍ରଫେସର୍ କୋଲୱିନ୍ ଟ୍ରେଭାରଥେନ୍‌ଙ୍କ ଦୃଷ୍ଟିକୋଣ ହେଲା – 'ଆପଣଙ୍କ ଗୀତରୁ ଶିଶୁ ସନ୍ତାନଟି ହୁଏତ କିଛି ବୁଝି ନପାରେ । କିନ୍ତୁ ସେ ପାଇଥାଏ ଅନେକ ଆଭାସ ଯାହା ପୁଷ୍ଟ କରିଥାଏ ତା'ର ଅନ୍ତର୍ଦୃଷ୍ଟିକୁ । ଗପସପ କରିବା ଓ ଗୀତ ଗାଇବା ଦ୍ୱାରା ଶିଶୁଠାରେ ଶବ୍ଦଜ୍ଞାନ ବୃଦ୍ଧିପାଇବା ସଙ୍ଗେ ସଙ୍ଗେ ତା'ର ଆବେଗର ନିୟନ୍ତ୍ରଣ ମଧ୍ୟ ସୁଗମ ହୋଇଯାଏ ।'

ଶିଶୁମାନଙ୍କ ସହ ଗପସପ ହେବାରେ ଫାଇଦା କଅଣ ? ଫାଇଦା ହେଉଛି, ସେମାନଙ୍କ ସହ ଗପସପ ହେଲେ ସେମାନଙ୍କଠାରେ ଭରସା ଜାତ ହୁଏ । ସେମାନଙ୍କର ଯତ୍ନ ନିଆଯାଉଛି ବୋଲି ମନରେ ନିଶ୍ଚୟତା ଜାଗେ । ଏପରିକି ସେମାନେ କୁଆଡ଼େ ଭାବିନିଅନ୍ତି ଯେ ସେମାନଙ୍କର ଅଳି ବି ବାପମା' ପୂରଣ କରିଦେବେ ।

ମୁରେ ଓ ଟ୍ରେଭାର୍‌ଥେନ୍ ମଧ ଲକ୍ଷ୍ୟ କରିଛନ୍ତି ଯେ କଅଁଳା ଶିଶୁମାନଙ୍କ ସହ ଗପସପରେ ମଜିଯିବା ଓ ସେମାନଙ୍କୁ ଗୀତ ଗାଇ ଶୁଣେଇବା ତଥା ସେମାନଙ୍କ ଅସ୍ଫୁଟ ସ୍ୱରକୁ କାନେଇବା କଥାଶୁଣି ବହୁ ବାପମା' ହସରେ ଉଡ଼େଇ ଦେଉଛନ୍ତି । କିନ୍ତୁ ମା ଓ ପିଲା, ଏପରକି ମାଆ ଏବଂ ଅତି ଛୋଟ ପିଲାଙ୍କ ଭିତରେ ପାରସ୍ପରିକ ଭାବ ବିନିମୟର ଭିଡ଼ିଓ ଚିତ୍ର ଦେଖିଲା ପରେ 'ଶୁଣିବା' ଓ 'ଗପସପ' ହେବାରେ ଶିଶୁର ସାମର୍ଥ୍ୟକୁ ଲକ୍ଷ୍ୟ କରି ଆବାକାବା ହୋଇଯାଉଛନ୍ତି ସେମାନେ ।

ମାଆ କିଛି କହିବାକୁ ଆରମ୍ଭ କଲେ ମାଆର ଶବ୍ଦ ଯେଉଁ ଦିଗରୁ ଆସୁଛି, କଅଁଳା ଶିଶୁ ସେଇ ଆଡ଼କୁ ମୁହଁ ବୁଲେଇ ଦେଉଛି, ହାତ ସାହାଯ୍ୟରେ କିଛି ଇଙ୍ଗିତ ପ୍ରଦାନ କରୁଛି, ସେ କିପରି ଅନୁଭବ କରୁଛି ମୁଖଭଙ୍ଗୀ ମାଧମରେ ତାହା ପ୍ରକାଶ କରିପାରୁଛି, ମା'ର ଆଖି ସହ ନିଜର ଆଖି ମିଳେଇ ମା' ଦ୍ୱାରା ଉଚ୍ଚାରିତ ବାକ୍ୟରୁ ଆହରଣ କରିବାକୁ ଚେଷ୍ଟା କରୁଛି ବିଭିନ୍ନ ଧାରଣା ।

ଏହିସବୁ ବିଷୟକୁ ଦୃଷ୍ଟିରେ ରଖି ଶିଶୁମାନଙ୍କ ପାଳନ-ପୋଷଣରେ ପିତାମାତା ଓ ଶିଶୁମାନଙ୍କ ମଧ୍ୟରେ କଥୋପକଥନ ଓ ଭାବ ବିନିମୟକୁ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରାଯାଉଛି । ଏହି କ୍ରିୟାକୁ କିପରି ଅଧିକ ଉପଯୋଗୀ କରାଯାଇପାରିବ ସେଥିପାଇଁ ପ୍ରସୂତିବିଶେଷଜ୍ଞ, ବାକ୍‌ଶକ୍ତି ବିଶେଷଜ୍ଞ, ମନସ୍ତତ୍ତ୍ୱବିତ୍ ଓ ଶିକ୍ଷକମାନଙ୍କର ସମ୍ମିଳିତ ତଥା ସମନ୍ୱିତ ଉଦ୍ୟମର ଆବଶ୍ୟକତା ଯଥେଷ୍ଟ ମହତ୍ତ୍ୱପୂର୍ଣ୍ଣ । ଏହା ନିଃସନ୍ଦେହ ଯେ ସନ୍ତାନ ସହ ଗପସପ କରିବାରେ ଯେଉଁ ସମୟ ବ୍ୟୟିତ ହୋଇଥାଏ, ତାହା ସମୟର ଆଦୌ ଅପବ୍ୟୟ ନୁହେଁ ।

କେବଳ ଯେ ଛୋଟ ଶିଶୁଙ୍କ ପାଇଁ ବାପମା'ଙ୍କ ସମୟ ଉପରେ ଚାପ ପଡ଼ିଥାଏ, ତାହା ନୁହେଁ, କୈଶୋରରେ ଉପନୀତ ହୋଇଥିବା ପୁଅଝିଅ ମଧ ବାପମା'ଙ୍କ ସମୟରୁ ନିଜ ପାଇଁ ସମ୍ଭବ ଦାବି କରିଥାନ୍ତି । ବିଶେଷଜ୍ଞମାନେ ମତ ଦେଉଛନ୍ତି ଯେ ଛୋଟ ଛୁଆଙ୍କୁ ପାଳନ କରିବା ଯେତିକି କଷ୍ଟ, ତାହା ତୁଳନାରେ କିଶୋର ବୟସର ସନ୍ତାନମାନଙ୍କୁ ପାଳିବା ପୋଷିବା ଅନେକ ଗୁଣ ଅଧିକ କଷ୍ଟ ।

କିଶୋର କିଶୋରୀମାନଙ୍କ ଆବଶ୍ୟକତାର ସୀମା ନଥାଏ । କୈଶୋରର ଚାପ ସେମାନଙ୍କ ପାଇଁ ଅସହ୍ୟ । ସେହି ଚାପ ସହ ଯୁଝି ଯୁଝି ସେମାନେ ଅବସନ୍ନ । କାହାର ଥାଏ ଶାରୀରିକ ସମସ୍ୟା ତ କିଏ ମନସ୍ତାତ୍ତ୍ୱିକ ସମସ୍ୟାକୁ ନେଇ ବ୍ୟସ୍ତ । କିଏ ପ୍ରଜନନ ସଂକ୍ରାନ୍ତ ସମସ୍ୟାକୁ ନେଇ ଚାପଗ୍ରସ୍ତ ତ ଅନ୍ୟ କିଏ ସାମାଜିକ ସମସ୍ୟାରେ ଗଳଦ୍‌ଘର୍ମ ।

ତାହାଛଡ଼ା ରହିଛି ଶିକ୍ଷାଗତ ସମସ୍ୟା । ହେଲେ ଏହିସବୁ ସମସ୍ୟାରେ ଛନ୍ଦି ହୋଇ ପଡୁଥିଲା ବେଳେ ସେମାନେ ଲୋଡ଼ନ୍ତି ବାପମା'ଙ୍କର ନିରାପଦ ଆଶ୍ରୟ । ସେମାନଙ୍କର ଲୋଡ଼ା ଭରସା, ପ୍ରଶଂସା, ଆଶ୍ୱାସନା । ଏସବୁ ପାଇଁ ବାପମା'ଙ୍କ ଘନିଷ୍ଠ ସାନ୍ନିଧ ଅପରିହାର୍ଯ୍ୟ । ବାପମା' ଘନିଷ୍ଠ ସାନ୍ନିଧ ଯୋଗାଇଦେବା ନିମନ୍ତେ ସମୟ ବାହାର କରିବା ଉଚିତ । କୁହାଯାଉଛି ଯେ ବାପମା'ଙ୍କ ସମୟ ହିଁ କିଶୋରକିଶୋରୀମାନଙ୍କ ପାଇଁ ସବୁଠାରୁ ମୂଲ୍ୟବାନ; କାରଣ ଏହା ସେମାନଙ୍କ ନିମନ୍ତେ କ୍ରମେ ଦୁଷ୍ପ୍ରାପ୍ୟ ହୋଇପଡୁଛି ।

ତେଣୁ କିଶୋର ବୟସର ସନ୍ତାନମାନଙ୍କ ପାଇଁ ନିଜ ସମୟରୁ ଭାଗ ଦେବା ଆଜିକାଲିକାର ପିତାମାତାଙ୍କ ନିମନ୍ତେ ଏକ ଆହ୍ୱାନ । ଏହି ଆହ୍ୱାନର ସଫଳ ମୁକାବିଲା କରିବା ବାପମା'ଙ୍କ ପାଇଁ ଏକ ବିରାଟ ଦାୟିତ୍ୱ । ସନ୍ତାନର ଭବିଷ୍ୟତକୁ ଦୃଷ୍ଟିରେ ରଖି, ସେମାନଙ୍କ ସାମଗ୍ରିକ ବିକାଶକୁ ସୁଗମ କରିବା ନିମନ୍ତେ ବାପମା' ପ୍ରୟାସୀ ହୋଇପାରିଲେ ଓ ସେମାନଙ୍କ ନିମନ୍ତେ ଅଧିକରୁ ଅଧିକ ସମୟ ଦେଇ ପାରିଲେ ସନ୍ତାନମାନଙ୍କ ପାଇଁ ତାହା ହେବ ସର୍ବୋତ୍କୃଷ୍ଟ ଉପହାର । ପ୍ରତ୍ୟୁପହାର ରୂପେ ବାପମା'ଙ୍କୁ ମିଳିପାରିବ ସନ୍ତାନମାନଙ୍କର ସର୍ବାଧିକ ସମ୍ମାନ ।



# ହୋଇଯାଆନ୍ତି କି ପିଲାଟିଏ

ବ୍ରାୟେନ୍ ଆଲ୍‌ଡିସ୍ କହିଥିଲେ, "ଶୈଶବ ମରିଗଲେ ତା'ର ଶବଗୁଡ଼ିକ ପାଲଟିଯାଆନ୍ତି ବୟସ୍କ ବ୍ୟକ୍ତି । ବୟସ୍କ ବ୍ୟକ୍ତିଙ୍କୁ ଘେରିବସେ ନରକ ରାଜ୍ୟ । ହେଲେ, ନିଜ ସମ୍ମାନକୁ କଳଙ୍କିତ ନକରିବା ପାଇଁ ବୟସ୍କ ବ୍ୟକ୍ତିମାନେ ଏହି ନରକ ରାଜ୍ୟର ନାଁ ଦେଇଛନ୍ତି 'ସମାଜ' । ସେଥିପାଇଁ ଶିଶୁମାନଙ୍କୁ ଭଲ ପାଉଥିଲେ ମଧ୍ୟ ବୟସ୍କ ବ୍ୟକ୍ତିମାନେ ସେମାନଙ୍କୁ ମନେମନେ ଭୟ କରିଥାନ୍ତି । କାରଣ ଶିଶୁମାନେ ହିଁ ବୟସ୍କ ବ୍ୟକ୍ତିମାନଙ୍କୁ ସ୍ମରଣ କରେଇ ଦେଇଥାନ୍ତି ସେମାନଙ୍କ ଚାରିତ୍ରିକ ଅବକ୍ଷୟ ସମ୍ପର୍କରେ ।

ୱାର୍ଡ୍‌ସ୍‌ୱର୍ଥ ମଧ୍ୟ କହିଛନ୍ତି ଯେ ଶୈଶବରେ ହିଁ ଶିଶୁମାନଙ୍କୁ ଘେରି ରହିଥାଏ ସ୍ୱର୍ଗରାଜ୍ୟ ।

ସ୍ୱର୍ଗ ଓ ନରକ ହେଉଛି ମଣିଷର କଳ୍ପନା । ମଣିଷର କଳ୍ପନାରେ ସ୍ୱର୍ଗ ସର୍ବସୁଖମୟ ସ୍ଥାନ ଓ ଶାସ୍ତିଭୋଗର ସ୍ଥାନ ହେଉଛି ନରକ । ସତରେ କ'ଣ ଶୈଶବରେ ଦିବ୍ୟତା ଅବସ୍ଥାନ କରିଥାଏ ଓ ବୟସ ବୃଦ୍ଧି ପାଇଲେ ତାହା ଅପସାରିତ ହୋଇଚାଲେ ? ହୁଏତ ଏହା ଠିକ୍ । ଶିଶୁ ଓ ବୟସ୍କ – ଏହି ଉଭୟ ଗୋଷ୍ଠୀଙ୍କ ଚରିତ୍ର ଅନୁଧ୍ୟାନ କଲେ ପରିଲକ୍ଷିତ ହୁଏ ବିରାଟ ପାର୍ଥକ୍ୟ ।

ଉଦାହରଣ ସ୍ୱରୂପ, ଆମେ ସମସ୍ତେ ପ୍ରାୟତଃ ଏକମତ ଯେ ଶିଶୁ ମାତ୍ରକେ ସୃଜନଶୀଳ । ଶୈଶବର ସରଳତା ହିଁ ତା'ର ସୃଜନଶୀଳତା ପାଇଁ ଦାୟୀ । ବୟସ ବଢ଼ିଲେ ଆମେ ସରଳତାକୁ ହରେଇବସୁ । ବୟସ ଆଗେଇ ଚାଲିଲେ ପଛରେ ପଡ଼ିଯାଏ ସରଳତା । ସତରେ ଯେମିତି ସରଳତା ପରିହାର ନକଲେ ବୟସ୍କାବସ୍ଥା ବ୍ୟର୍ଥ ହୋଇଯିବ । କିନ୍ତୁ ସାଧାରଣତଃ ଦେଖାଯାଇଥାଏ ଯେ ଯେଉଁମାନେ ସୃଜନଶୀଳ, ସେମାନେ ବୟସ୍କ ହୋଇଥିଲେ ମଧ୍ୟ ସେମାନଙ୍କଠାରୁ ସରଳତା ବହିଷ୍କୃତ ହୋଇନଥାଏ କି ପଛରେ ଅଟକି ଯାଇନଥାଏ । ସେମାନଙ୍କର କେଉଁ ଏକ ନିଭୃତ ସ୍ଥାନରେ ବାସ କରିଥାଏ ଶୈଶବ ।

ସେଇଠି ସୁରକ୍ଷିତ ରହି ତାହା ଲାଳିତପାଳିତ ହେଉଥାଏ ଓ ଅନ୍ତରଙ୍ଗ ସମ୍ପର୍କରେ ଯୋଡ଼ି ହୋଇଥାଏ ସେହି ବୟସ୍କ ବ୍ୟକ୍ତିଟି ସହ ।

ଏହି ପରିପ୍ରେକ୍ଷୀରେ ଦେଖିଲେ ଆମ ଭିତରେ ରହିଥିବା ସେହି ଶିଶୁଟି ଆମ ପାଇଁ ଅତି ମୂଲ୍ୟବାନ୍ । ତେଣୁ ପ୍ରଶ୍ନଉଠେ ଯେ ଯେଉଁମାନଙ୍କଠାରୁ ସେହି ଶିଶୁସୁଲଭ ଚରିତ୍ର ଅନ୍ତର୍ହିତ ହୋଇଯାଇଛି, ତାହାକୁ କ'ଣ ସେମାନେ ଫେରି ପାଇପାରନ୍ତି ? ହୁଏତ ତାହା ସମ୍ଭବ । ହେଲେ ଏଥିପାଇଁ ଶିଶୁ ସୁଲଭ ଚରିତ୍ର ତଥା ଆଚରଣକୁ ନିଜଠାରେ ଲାଳନପାଳନ କରି ତା'ର ପରିପ୍ରକାଶ କରାଇବାକୁ ପଡ଼ିବ । ପୁଣି ଶିଶୁମାନଙ୍କୁ ଖୁବ୍ ଏକାଗ୍ରତାର ସହ ଲକ୍ଷ୍ୟ ନକଲେ ସେମାନଙ୍କ ସହଜାତ ଚରିତ୍ରଗୁଡ଼ିକ ସହ ପରିଚିତ ହେବା କଷ୍ଟ । ତାହାହେଲେ ଶିଶୁ ଓ ବୟସ୍କ ବ୍ୟକ୍ତିମାନଙ୍କ ମଧ୍ୟରେ ଚରିତ୍ରଗତ ପାର୍ଥକ୍ୟମାନ କଅଣ ?

ପ୍ରଥମ କଥା ହେଲା ମଣିଷ ଏକ ହସକୁରା ପ୍ରାଣୀ । ମଣିଷ ବ୍ୟତୀତ ଅନ୍ୟ କୌଣସି ପ୍ରାଣୀ ହସିପାରିବା ନିମନ୍ତେ ସମର୍ଥ ନୁହେଁ । ଶିଶୁ ଓ ବୟସ୍କ ବ୍ୟକ୍ତି ଉଭୟେ ହସିବା ନିମନ୍ତେ ସମର୍ଥ ସିନା, ହେଲେ ବୟସ୍କ ବ୍ୟକ୍ତିମାନଙ୍କ ତୁଳନାରେ ଶିଶୁମାନେ ବେଶୀଥର ମୁରୁକିହସା ଦେଇଥାନ୍ତି ତଥା ହସିଥାନ୍ତି । ପୁଣି ଅତି ସାମାନ୍ୟ କଥାରେ ବି ସହଜରେ ହସିପକାନ୍ତି । ବୟସ୍କ ବ୍ୟକ୍ତିମାନେ ମଧ୍ୟ ଦିନମାନ ଭିତରେ ଅନେକ ଥର ହସିଥାନ୍ତି, ହେଲେ ସେହି ହସଗୁଡ଼ିକ ମଧ୍ୟରୁ ଅଧିକାଂଶ ହେଉଛି ଛଳନା । ମନଖୋଲା ହସର ସଂଖ୍ୟା ଯଥେଷ୍ଟ କମ୍ । ଛୋଟ ପିଲା କପଟ ହସ ହସେନାହିଁ କି ଅନ୍ୟ କାହାକୁ ଖୁସି କରିବାର ଉଦ୍ଦେଶ୍ୟ ରଖି ହସେନାହିଁ । ତା'ର ହସ ହେଉଛି ସ୍ୱତଃସ୍ଫୂର୍ତ୍ତ । କିନ୍ତୁ ବଡ଼ମାନଙ୍କ ହସରେ ରହିଥାଏ ସ୍ୱାର୍ଥର ଗନ୍ଧ !

ପିଲାମାନେ ହିଁ ପଚାରି ଚାଲିଥାନ୍ତି 'କଅଣ', 'କାହିଁକି', 'କିପରି' ଆଦି ନାନା ଜାତିର ପ୍ରଶ୍ନ । ଆଇନ୍‌ଷ୍ଟାଇନ୍‌ଙ୍କୁ ଯେତେବେଳେ ପଚରାଗଲା, "ଜୀବନରେ ସେ ଯାହାସବୁ ଶିଖିଛନ୍ତି, ସେଥିମଧ୍ୟରୁ କେଉଁଟା ସବୁଠାରୁ ବେଶୀ ଗୁରୁତ୍ୱପୂର୍ଣ୍ଣ ।" ସେ ଉତ୍ତର ଦେଇଥିଲେ, "ମୋ' ପାଇଁ ସବୁଠାରୁ ବେଶୀ ଗୁରୁତ୍ୱପୂର୍ଣ୍ଣ ଶିକ୍ଷାଟି ହେଉଛି ଯେ ମୁଁ ଶିଶୁମାନଙ୍କର କୌତୂହଳକୁ କାନ ଡେରିଥିବି । କାରଣ ସେମାନଙ୍କଠାରୁ ହିଁ ସୂଚନା ମିଳେ ସଦ୍ୟତମ ଜ୍ଞାନ ଅନୁସନ୍ଧାନ ସମ୍ପର୍କରେ । ଶିଶୁକୁଳ ହିଁ 'କଅଣ', 'କାହିଁକି', 'କିପରି' ଆଦି ପ୍ରଶ୍ନ ପଚାରିଥାଆନ୍ତି । ବୟସ ବଢ଼ିଗଲେ ପ୍ରଶ୍ନ ପଚାରିବାର ଅଭ୍ୟାସ ମରିଯାଏ ।" ସତରେ, ଆମେ ବୟସ୍କ ବ୍ୟକ୍ତିମାନେ ପ୍ରଶ୍ନ ପଚାରିବା ନିମନ୍ତେ କୁଣ୍ଠିତ । ଆମର ମତ ଯେ ପ୍ରଶ୍ନ

ପଚାରିବା ଦ୍ୱାରା ଅଜ୍ଞତା ଲୁଚି ନରହି ଜଣାପଡ଼ିଯାଏ । ଆମେ ଯେ ଜାଣିନାହୁଁ, ତାହା ଅନ୍ୟମାନେ ଜାଣିନିଅନ୍ତି । ତେଣୁ ପ୍ରଶ୍ନ ପଚାରି ନିଜର ଅଜ୍ଞତା ପ୍ରକାଶ କରିବା ଅତି ଅସ୍ୱସ୍ତିକର ବୋଲି ଧାରଣା କରିନେଇଛନ୍ତି ବୟସ୍କ ଗୋଷ୍ଠୀ ।

ପୁଣି ପିଲାମାନଙ୍କର ଲାଜସରମ ନଥାଏ । କେଉଁ ଆଚରଣ ଲଜ୍ଜାଜନକ କି ଅସମ୍ମାନଜନକ, ତାହା ସେମାନେ ଜାଣନ୍ତି ନାହିଁ । ଅପମାନବୋଧ ସମ୍ପର୍କରେ ସେମାନେ ବିଶେଷ ସଚେତନ ନୁହନ୍ତି । ତେଣୁ ବିଫଳତା ସତ୍ତ୍ୱେ ସେମାନେ ବାରମ୍ବାର ପ୍ରୟାସ କରୁଥାନ୍ତି । କିନ୍ତୁ ଆମଠାରେ ତ ଜମିରହିଛି ପରସ୍ତ ପରସ୍ତ ଅହଂସର୍ବସ୍ୱ ଭାବ । ଆମେ ଏଥିରେ ଆଞ୍ଚ୍ ଆଣିବାକୁ ଦେଉନଥିବାରୁ ହାତେ ମାପି ଚାଖଣ୍ଡେ ଚାଲୁ । କାଳେ ଦୁର୍ବଳତା ଧରାପଡ଼ିଯିବ, ସେଥିପାଇଁ ଚୁପ୍ ରହିବା ଶ୍ରେୟସ୍କର ମଣୁ । ଏହାଦ୍ୱାରା ଦୁର୍ବଳତା ପ୍ରୋତ୍ସାହନ ପାଏ ସିନା, ଦୂରୀଭୂତ ହୁଏନାହିଁ ।

ଅପରିଚିତ ପିଲାଙ୍କ ସହ ବନ୍ଧୁତା ସ୍ଥାପନ କରିବାରେ ପିଲାମାନଙ୍କର ବିକଳ୍ପ ନାହିଁ । ଦୁଇ ତିନିଜଣ ପିଲାଙ୍କୁ ଏକାଠି ଛାଡ଼ିଦେଲେ ସେମାନେ ଖେଳରେ ମାତିଯାଆନ୍ତି । ଖେଳ ଆରମ୍ଭ କରିବା ପୂର୍ବରୁ ସେମାନେ କ'ଣ ପରସ୍ପରକୁ ପରିଚୟ ପଚାରନ୍ତି ? କିନ୍ତୁ ଆମେ ? ଘଣ୍ଟା ଘଣ୍ଟା ଧରି ବସ୍ କି ରେଳରେ ଯାତ୍ରା କରୁଥିଲେ ମଧ୍ୟ ସହଯାତ୍ରୀଙ୍କ ସହ ପରିଚୟ ଯୋଡ଼ିବାରେ ବିଶେଷ ଉତ୍ସାହ ଦେଖାଇବା ବିରଳ ଆମ ପକ୍ଷେ ।

ଆବେଗ କି ମନର ପ୍ରତିକ୍ରିୟା ପ୍ରକାଶ କରିବାରେ ସେମାନଙ୍କଠାରେ କୁଣ୍ଠା ପରିଲକ୍ଷିତ ହୁଏନାହିଁ । ଶିଶୁମାନେ ଯେପରି ସହଜରେ ହସିପାରନ୍ତି, ସେପରି ସହଜରେ କାନ୍ଦିପାରନ୍ତି ମଧ୍ୟ । ସେମାନଙ୍କର ଆବେଗ ସ୍ୱତଃସ୍ଫୂର୍ତ୍ତ ଭାବରେ ପ୍ରକାଶ ପାଇଥାଏ । କିନ୍ତୁ ବୟସ୍କ ବ୍ୟକ୍ତିମାନେ ଆବେଗକୁ ମନ ଭିତରେ ଅଟକେଇ ରଖିବାରେ ଧୁରନ୍ଧର । ବରଂ ଆବେଗକୁ ପ୍ରକାଶ ନ କରିବାପାଇଁ ହିଁ ଆମକୁ କେତେ ନା କେତେ ପରାମର୍ଶ ଦିଆଯାଇଛି ଓ ଦିଆଯାଉଛି ।

ତାହାଛଡ଼ା, ଶିଶୁମାନେ ହେଉଛନ୍ତି ଖେଳସର୍ବସ୍ୱ । ଖେଳିବା ପାଇଁ ସେମାନେ ଖୁବ୍ ଭଲପାଆନ୍ତି ଓ ସବୁ କିଛିକୁ ଖେଳ ବୋଲି ମନେ କରିଥାଆନ୍ତି । ଗାମ୍ଭୀର୍ଯ୍ୟର ଧାର ଧାରନ୍ତି ନାହିଁ ସେମାନେ । ହେଲେ ଆମେ, ବଡ଼ମାନେ ସ୍ୱେଚ୍ଛାରେ ହିଁ ଗାମ୍ଭୀର୍ଯ୍ୟର ମୁଖା ପିନ୍ଧି ଆତଯାତ ହେଉଛେ ଓ ସବୁକଥାକୁ ଗୁରୁତ୍ୱପୂର୍ଣ୍ଣ ବିଚାରି ଉତ୍କଣ୍ଠା ଓ ଉଦ୍‌ବେଗ ଭିତରେ କାଳାତିପାତ କରୁଛେ ।

ଅବାସ୍ତବ କଳ୍ପନା କରିବା ହେଉଛି ଶିଶୁମାନଙ୍କର ସ୍ୱାଭାବିକ ଚରିତ୍ର । କିନ୍ତୁ ଆମ୍ଭମାନଙ୍କ ବିଚାରରେ ଅବାସ୍ତବ କଳ୍ପନା ହେଉଛି ଅସ୍ୱାଭାବିକ । ଫଳରେ ଶିଶୁମାନଙ୍କ ଠାରେ କଳ୍ପନାର ଉନ୍ମେଷ ଘଟୁଥିବାବେଳେ ଆମଠାରେ କଳ୍ପନା ଲଭେ ଅକାଳ ମୃତ୍ୟୁ । କିନ୍ତୁ କଳ୍ପନା ପୋଷଣ ନକଲେ କୌଣସି ଘଟଣାର ବିବିଧ ଦିଗ ଆମକୁ ପରିଦୃଷ୍ଟ ହୁଏ ନାହିଁ । ଦୃଷ୍ଟିଗତ ଚିନ୍ତାହିଁ ସୃଜନଶୀଳ କ୍ରିୟା ପାଇଁ ଅପରିହାର୍ଯ୍ୟ ।

ପିଲାମାନେ ପ୍ରାୟତଃ ଫଳ-ଆଶାୟୀ ହୋଇ କାମ କରନ୍ତି ନାହିଁ । ଫଳରେ ଅନୁସନ୍ଧିତ୍ସା ସେମାନଙ୍କଠାରେ ଉପଭୋଗ କରେ ନିରାପଦ ଆଶ୍ରୟ । ସେମାନେ ସର୍ବଦା ବିଭିନ୍ନ ସମ୍ଭାବନାର ଅନ୍ୱେଷଣରେ ବ୍ରତୀ ରହିଥାଆନ୍ତି ଓ ଆବିଷ୍କାର-ରତ ରହିଥାନ୍ତି । କିନ୍ତୁ ବୟସ୍କ ବ୍ୟକ୍ତିମାନେ 'ମା ଫଳେଷୁ କଦାଚନ'ର ମନ୍ତ୍ର ପ୍ରଚାର କରିଚାଲିଥାନ୍ତି ସିନା, ଈପ୍ସିତ ଫଳ ପାଇବା ପାଇଁ ସର୍ବଦା ଉଦ୍‌ଗ୍ରୀବ ହୋଇ ରହିଥାନ୍ତି । ତେଣୁ ସେମାନଙ୍କ କ୍ଷେତ୍ରରେ କାର୍ଯ୍ୟର ବିବିଧତା ସଙ୍କୁଚିତ ହୋଇଯାଏ । ସେମାନଙ୍କ ବାହ୍ୟଦୃଷ୍ଟି ଓ ଅନ୍ତର୍ଦୃଷ୍ଟି ପ୍ରସାରିତ ହେବାର ସୁଯୋଗ ପାଏନାହିଁ ।

ପୁଣି ପିଲାମାନେ ଅଳ୍ପକେ ସନ୍ତୁଷ୍ଟ । ତେଣୁ ସେମାନଙ୍କୁ ଖୁସି କରିବା ସହଜ । କିନ୍ତୁ ଅଳ୍ପକେ ଖୁସି ହେବା ବୟସ୍କମାନଙ୍କର ଜାତକରେ ନାହିଁ । ସର୍ବଦା ଅଧିକ ପାଇବା ପାଇଁ ଆଗ୍ରହୀ ସେମାନେ । କାମନାର ସୀମା ନଥିବାରୁ ବୟସ୍କ ବ୍ୟକ୍ତିମାନଙ୍କର ଜୀବନ ବଡ଼ କ୍ଳାନ୍ତିକର, ଆନନ୍ଦ ହେଉଛି ଦୁଷ୍ପ୍ରାପ୍ୟ ସେମାନଙ୍କ ପାଇଁ । ତେଣୁ ଶିଶୁମାନେ ଏକ ସକାରାତ୍ମକ ପରିବେଶ ଉପଭୋଗ କରି ଚାଲୁଥିବା ବେଳେ ସେମାନେ ଏଥିରୁ ବହୁଳାଂଶରେ ବଞ୍ଚିତ ।

ଉପରୋକ୍ତ ଆଲୋଚନା ପରିପ୍ରେକ୍ଷୀରେ ଦେଖିଲେ ଶିଶୁ ଓ ବୟସ୍କ ବ୍ୟକ୍ତିମାନଙ୍କ ଚରିତ୍ରରେ ପରିଲକ୍ଷିତ ହେଉଥିବା ପାର୍ଥକ୍ୟ ଅତି ସ୍ପଷ୍ଟ ଓ ସମ୍ପୂର୍ଣ୍ଣ । ତେଣୁ ଏହି ଉଭୟ ଗୋଷ୍ଠୀ ଯେ ଭିନ୍ନ ଭିନ୍ନ ଦୁନିଆରେ ଅବସ୍ଥାନ କରିଥାନ୍ତି, ଏହା ନିଃସନ୍ଦେହ । ବୟସ୍କ ଗୋଷ୍ଠୀ ନିଜ ଜୀବନକୁ ସାର୍ଥକ କରିବା ନିମନ୍ତେ ଅବରୋହଣଧର୍ମୀ ହୋଇ ଶିଶୁମାନଙ୍କ ସହ ଘନିଷ୍ଠ ସମ୍ପର୍କ ସ୍ଥାପନ କରିବା ଆବଶ୍ୟକ ।



# ସହାୟକ ଗ୍ରନ୍ଥ


1. Dr. Spock's Baby and Child Care
   Dr. Benjamin Spock and Michael B. Rothenberg.

2. Effective Parenting : Meet the Challenge
   Dr. Grace J. Lalana

3. How to Shape Your Kids Better
   Hari Datt Sharma

4. Parenting Your Child
   Dr. Mc Mathew, Anna Mathew and Beulah Wood

5. A Parent's Guide to Child Care
   Dr. Suresh Keshan

6. Effective Parenting : Some Guidelines.




ପିଲାମାନେ ନ ଥିଲେ ସଂସାରରେ ଆନନ୍ଦ ନଥାନ୍ତା। କିନ୍ତୁ ପ୍ରତ୍ୟେକ ପିଲା ଜଣେ ଜଣେ ବିସ୍ମୟ। ଆମେରିକାର ପ୍ରକୃତିତତ୍ତ୍ୱବିତ୍ ଜୋସେଫ କ୍ରୁଚ୍ ଯଥାର୍ଥରେ କହିଛନ୍ତି, "ପିଲାମାନଙ୍କୁ ଗଢ଼ିବା ବିଷୟରେ ଶିକ୍ଷା ପ୍ରଦାନ କରୁଥିବା କୌଣସି ଅନୁଷ୍ଠାନର ମୁଖ୍ୟ ଭାବରେ କାର୍ଯ୍ୟ ସଂପାଦନ କରିବା ବରଂ ଯଥେଷ୍ଟ ସହଜ, ହେଲେ ତଥାକଥିତ ଗୋଟିଏ ଦୁଷ୍ଟପିଲାକୁ ମଣିଷ କରି ଗଢ଼ିବା କାଠିକର ପାଠ।" ସେମାନଙ୍କୁ ଗଢ଼ିବାନିମନ୍ତେ ମେଧାବୀ ହେବାର ଆବଶ୍ୟକତା ନାହିଁ, ଏଥିପାଇଁ ଆବଶ୍ୟକତା ପଡୁଥିବା ଏକମାତ୍ର ଯୋଗ୍ୟତାଟି ହେଉଛି ଧୈର୍ଯ୍ୟ।

ପିଲାମାନଙ୍କୁ ଗଢ଼ିବାର ପ୍ରଶ୍ନ ଉଠିଲେ, ଆମେ ସାଧାରଣତଃ ସେମାନଙ୍କ ଆଚରଣରେ ଅନୁକୂଳ ପରିବର୍ତ୍ତନ ଆଣିବା ବିଷୟରେ ଭାବିଥାଉ। କିନ୍ତୁ ସତକଥାଟା କଅଣ ଜାଣନ୍ତି ? ସତକଥାଟା ହେଉଛି, ପିଲାଙ୍କୁ ଗଢ଼ିବା ପାଇଁ ହେଲେ ଆମ ନିଜକୁ ହିଁ ଅନୁକୂଳ ଭାବରେ ପରିବର୍ତ୍ତିତ କରିବା ଦରକାର। ପରିବର୍ତ୍ତନ ଲୋଡ଼ା ଆମ ମନୋଭାବରେ। ନିୟନ୍ତ୍ରଣ ଲୋଡା ଆମ ଆବେଗରେ। ଲୋଡା ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ହୃଦୟକୁ ବିଶାଳ କରିବା। ଆମକୁ ହେବାକ ପଡ଼ିବ ଅତିମାତ୍ରାରେ ଶିଶୁବତ୍ସଳ, ସେମାନଙ୍କ ପ୍ରତି ସହାନୁଭୂତିଶୀଳ ଏବଂ ସମାନୁଭୂତିଶୀଳ।

କିନ୍ତୁ ଏହି କାମରେ ସଫଳତା ପାଇବା କିପରି ? 'କିପରି ପିଲାଙ୍କୁ ଗଢ଼ିବା' ପୁସ୍ତକଟି ଏ ସଂପର୍କରେ କିଞ୍ଚିତ୍ ଆଲୋକପାତ କରିପାରିବ ବୋଲି ଆଶା।

—ପ୍ରକାଶକ




ISBN 81-7401-642-2
9 788174 016423


ପ୍ରେଣ୍ଟସ୍ ପବ୍ଲିଶର୍ସ